BABABUGI
by Biyatkesh Tripathy
Published by Vidyapuri, Cuttack 753002

ISBN 81-7411-514 -5

ପ୍ରଥମ ପ୍ରକାଶ, ଫେବୃଆରୀ ୨୦୦୭

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ ଟ ୧୪୦.୦୦

॥ ୧ ॥

## ଲିଙ୍ଗରାଜଙ୍କ ଛୋଟା ହାଜିରି

ଈଶ୍ୱରଙ୍କ ଭୁବନ - ଭୁବନେଶ୍ୱରରେ
ଲିଙ୍ଗରାଜଙ୍କ ମନ୍ଦିର - ଦେବ
ଦେବ ମହାଦେବଙ୍କ ଭୁବନମୋହନ
ରୂପର ଆବିର୍ଭାବ ଯେଉଁଠି !
ଯେଉଟା ଓଡ଼ିଶା, ଭାରତବର୍ଷ,
ପୃଥିବୀ, ସୌରମଣ୍ଡଳ, ବିଶ୍ୱବ୍ରହ୍ମାଣ୍ଡର
ପ୍ରସ୍ଫୁଟିତ ବର୍ଗରେ - ସହସ୍ରଦଳ
କମଳର ମଧ୍ୟ କେଶର !
ମନେ ନଥିଲେ, ଗପର ଆରମ୍ଭ ତାଙ୍କ ଛୋଟା ହାଜିରୁରୁ -
ଲିଙ୍ଗରାଜ ହେଲେ ଲିଙ୍ଗଙ୍କ ରାଜା : ଶିବ
ଲିଙ୍ଗରାଜଙ୍କ ମନ୍ଦିର ଅଛି ଈଶ୍ୱରଙ୍କ ଭୁବନ ଭୁବନେଶ୍ୱରରେ
ଯୋଉଟା ଓଡ଼ିଶା, ଭାରତବର୍ଷ, ପୃଥିବୀ ସୌରମଣ୍ଡଳ
ବିଶ୍ୱବ୍ରହ୍ମାଣ୍ଡର ପ୍ରସ୍ଫୁଟିତ ବର୍ଗରେ
ମନେ ନ ଥିଲେ, ଗପର ଆରମ୍ଭ ତାଙ୍କ ଛୋଟା ହାଜିରିରୁ

ଆଉ ଆମେ ଦେଖୁଚେ କ'ଣ ?

ମହାକାଶର ଦୂରାନ୍ତରେ ନୂଆ ଈଶ୍ୱର ସନ୍ତାନ, ବାବା ବୁଗି, ନୂଆ ବଂଶର ମେଟା-ଜାଇବର୍ଗ ଯାଜକଶ୍ରେଣୀର । ମାଡ଼ି ଆସୁଥିଲେ ପୃଥିବୀଆଡ଼େ ମଣିଷକୁ ତାର ବଢ଼ିଚାଲିଥିବା ଧର୍ମଗ୍ଲାନି ଆଉ ବ୍ୟଭିଚାରରୁ ରକ୍ଷା କରିବାକୁ, ଯେମିତି କରିଥିଲେ ତାଙ୍କ ପୂର୍ବଗାମୀ ସହୋଦରମାନେ । ଏଥର ଥିଲେ ତାଙ୍କ ସାଙ୍ଗରେ ଉପଦେଷ୍ଟା ପାରା-ସାଇବର୍ଗ ୩୨୧ ।

ଅଢ଼େଇ କଷ୍ଟ ୱାର୍ପ୍ ସମୟ । ଅନୁଧ୍ୟାନ କଲେ ପାରା-ସାଇବର୍ଗ ୩୨୧ । ଏଥର ଦିଶିବ ।

ବାବା ବୁଗି ସଞ୍ଜୀବିତ ହେଇ ଏ ସବୁ ଦେଖି ଆଶ୍ଚର୍ଯ୍ୟ ହେଲେ । ବହୁତ କଥା । ଘାଇଁ ଘାଇଁ ଅନ୍ଧାର ଆଲୁଅ । ଚୁମ୍ବକ ଧାରରେ ସାଇଁ ସାଇଁ କେତେ ମହାତାରା । ମୃତ୍ୟୁ । ଜନ୍ମ ଜନ୍ମ । ବାବା ବୁଗି ହାଇ ମାରିଲେ । ଖୁବ୍‌ଜୋରରେ ଯାନ ଚାଲିଛି ।

ସମୟ, ବାବା ବୁଗି କହିଲେ ।

ହାଃ ! କହିଲେ ଉପଦେଷ୍ଟା ପାରା-ସାଇବର୍ଗ ୩୨୧ ।

ଏଇଟାଇ ହେଇଥିବ । କ'ଣ କହନ୍ତିଟି ତାକୁ । ପୃଥିବୀ । ପୃଥିବୀଟା ଏମିତି ତା'ହେଲେ ।

ସୂର୍ଯ୍ୟ ପୂର୍ବ ଦିଗ୍‌ବଳୟରୁ ଫୁଟି ବାହାରି ଭୁବନେଶ୍ୱରକୁ ଝୁଙ୍କି ଚାହିଁଲେ । ଦିନଟା ଆରମ୍ଭ ହେଲା । ମହାବୀର ରବିବାବୁଙ୍କ ଘରେ କାମ କରେ । ରବିବାବୁ ସେକ୍ରେଟେରିଏଟ୍‌ରେ କାମ କରନ୍ତି । ତାଙ୍କ ସାଇବ, ଡିପାର୍ଟମେଣ୍ଟ୍‌ର ସେକ୍ରେଟେରୀ, ବାମାକାନ୍ତ ଦାସ । ବାମାକାନ୍ତ ଦାସଙ୍କ ମନ୍ତ୍ରୀ ହେଲେ ଭୋଳାନାଥ ମହାପାତ୍ର । ଭୋଳାନାଥଙ୍କ ମୁଖ୍ୟମନ୍ତ୍ରୀ ହେଲେ ବିଜୟବଲ୍ଲଭ ପଟ୍ଟନାଏକ ।

ଏ.ଜି. ଅଫିସ୍ ସାମନା ପୁରୁଣା ବସ୍‌ଷ୍ଟାଣ୍ଡ୍ ପାଖରେ ଗଁ ଗଁ ହେଇ ବସ୍ ଚାଲୁଥିଲା, ମହାବୀର ତା ଧଡ଼ଧଡ଼ିଆ ସରକାରୀ ସାଇକେଲ୍‌ରେ ଏକନମ୍ବର ମାର୍କେଟକୁ ଗଲାବେଳେ । ବସ୍ ହଉଚି ଗୋଟାଏ ଟିଣ ଡବା ଯୋଉଥିରେ ମଣିଷ ବସନ୍ତି । ଯାକୁ ଗୋଟେ ତେଲଗିଳା ଯନ୍ତ୍ର ଇଆଡ଼େ ସିଆଡ଼େ ଟାଣିନିଏ । ଯା ଭିତରେ କେହି କେହି ବାନ୍ତି କରନ୍ତି । ଏ.ଜି.. ଅଫିସ୍ ହଉଚି ଗୋଟାଏ କୋଠା । ଯା ଭିତରେ ଅନେକ ଲୋକ ଶାଢ଼ି, ଧୋତି, ପ୍ୟାଣ୍ଟ, ସାର୍ଟ, ବ୍ଲାଉଜ୍, କନା, ଫିତା ପିନ୍ଧି ହିସାବ ରଖନ୍ତି ।

ମହାବୀର ବଜାର କରିବାକୁ ଯାଇଥିଲା । ଡେରି ହେଇଗଲାଣି କେଜାଣି କେତେ । ରବିବାବୁ ଅଫିସ୍ ଯିବେ । କିନ୍ତୁ ସେ କ'ଣ କରିବ ? ଥାନା କଡ଼ ଏକନମ୍ବର ବଜାରରୁ ବାଇଗଣ କିଣିଲାବେଳକୁ ହରି ଡାକଛାଡ଼ିଲା । ତାକୁ ପୁଲିସ୍ ଧରି ନେଉଥିଲେ । ଯେ ସେଇ ହରି । ଦେଖିନେଇଥିଲା ମହାବୀରକୁ ।

ସେ ଡାକ ଛାଡୁଥିଲା : "ମହାବୀର ଭାଇ ! ମହାବୀର ଭାଇ ହେ ! ମତେ ବଞ୍ଚା ।"

ଥାନା ବି ଗୋଟିଏ କୋଠା । ଏଠି ପୁଲିସ୍ ଥାଆନ୍ତି । ପୁଲିସ୍ ହେଲେ ମାଟିଆ ପୋଷାକ ପିନ୍ଧା ମଣିଷ । ସେମାନେ ମାଟିଆ ପୋଷାକ ନ ପିନ୍ଧା ଲୋକମାନଙ୍କୁ କୋଠା ଭିତରକୁ ଧରି ନିଅନ୍ତି, ରଖନ୍ତି, ଛାଡ଼ି ବି ଦିଅନ୍ତି । ବେଳେବେଳେ ଛେଚନ୍ତି ।

ମହାବୀର ଡାକଟା ଶୁଣି ମୁହଁ ବୁଲାନ୍ତେ ସବୁ ଦିଶିଗଲା । ସେ ନ ଦେଖିଲା ପରି ମୁହଁଟା ବୁଲେଇ ଆଣିଲା ଜଲ୍‌ଦି । ପୁଲିସି ଫୁଲିସି ଏତେ ହେଙ୍ଗାମ ଭିତରକୁ ପଶୁଚି କିଏ । ପୁଲିସ୍ ଯଦି ତାକୁ ଧରିବ ? ଚୋରି କରିଚି କି ନାରୀ କରିଚି, ଲୋକେ ଭାବିବେ ପୁଲିସ୍ ତାକୁ ବି ଧରିଚି ।

"କିସ ବାବୁ, ନବୁ ନା ନାହିଁ ନା ?" ଆଣ୍ଠୁ ଫରଚାଇ ପରିବାବାଲୀ ରୁଷାମ୍ମା ପଚାରିଲା ।

"ଦେ କିଲେ ଦେ ।"

"ସବୁଦିନେ ତ ତିନିପା ନେଇ କିଲୋର ହିସାବ ଦବା ଲୁକ, ଆଜି କିସ କିଲେ ମାଗିଲୁଣି !"

"ପାଟି କର୍‌ନା ।"

ରୁଷାମ୍ମା ତାକୁ ଚାହିଁଲା । ରୁଷାମ୍ମାର ବୟସ ଏକତିରିଶ । ସେ ତିନିଥର ବାହା ହେଲାଣି, ପିଲା ଝିଲା କିଛି ନାହିଁ । ତା' ଏବର ବର ରିକ୍‌ସା ଟାଣେ । ରିକ୍‌ସା ଗୋଟିଏ ତିନିଚକିଆ ଯନ୍ତ୍ର । ଯା ଉପରେ ଚଢ଼ି ଗୋଡ଼ ଛାଟିଲେ ଯେ ଚାଲେ । ସେ ଭାବିଲା ମହାବୀରର ବାବୁ ଫାବୁ କିଏ ବୋଧେ ପାଖରେ ଥିବ କି କ'ଣ । ତା'ର କି ଯାଏ ଆସେ । ଯେତେ ବିକ୍ରି ସେତେ ଲାଭ । ତିନିପା ଦେଇ-କୋଉ କିଲୋକ ପଇସା ପାଉଥିଲାକି । ସେ ତିନିପା ବାଇଗଣ ଚଟ୍ କରି ଓଜନ କରିଦେଇ କହିଲା "ନେ କିଲେ ବାଙ୍ଗିଣ । ଆଉ କିସ ନବୁ ?"

"କୋବି ଦେ ।"

ହରି ମହାକୁଡ଼ ଛାଡ଼ିବା ଲୋକ ନୁହେଁ । ସେ ପୁଲିସ୍ କନଷ୍ଟେବଲ୍‌କୁ ନେହୁରା ହେଇ ଟାଣି ଭିଡ଼ି ମହାବୀର ପାଖରେ ପହଞ୍ଚିଗଲା । ରାସ୍ତାରେ ଗୋଟେ ମଟର ଗାଡ଼ି କଁଅଁ କରି ବ୍ରେକ୍ ମାରିଲା । ରିକ୍‌ସାବାଲାଟା ହାଉକିରି ପାଟିକରି ଉଠିଲା । ତା ପଛ ଚକ ମଡ଼ଗାଡ୍‌ଟା ବଙ୍କା ହେଇଯାଇଚି । ସେ ପାଟି କଲା । ତା ଗରାଖ ତିନୋଟି ନେଲି ଫ୍ରକ୍ ପିନ୍ଧା ସ୍କୁଲ୍ ଯିବା ଝିଅ ତଟସ୍ଥ ହେଇ ବସିଥାନ୍ତି, ବଡ଼ ବଡ଼ ଆଖି କରି ହାତକୁ ହାତ ଚିପି ଧରି, ବହିପତ୍ର ଜ୍ୟାମିତି ବାକ୍‌ସ ଜାବୁଡ଼ି ଧରି । ଲୋକ ମୁହୂର୍ତ୍ତକେ ଜମା ହେଇଯାଇ ଡ୍ରାଇଭରକୁ ଭିଡ଼ିଆଣି ପିଟିଲେ । ତା'ପରେ ଡ୍ରାଇଭର ପାଟିକରିବାରୁ ରିକ୍‌ସାବାଲାକୁ ଚଟାକ୍ ଚଟାକ୍ ଚଟକଣିମାନ ଦେଲେ ।

ହରି ମହାକୁଡ଼ ମହାବୀର କାନ୍ଧକୁ ହାତରେ ମୁଠେଇ ଧରିନେଲା ।

"ମହାବୀର ଭାଇ, ମତେ ବଞ୍ଚା ।"

ମହାବୀର ବୁଲି ଠିଆ ହେଲା ଉଠି ।

''କୁବି ଦି' କିଲୋ ଦେଲି । ଆଉ କିସ ନବୁ ?''

ପୁଲିସ୍‌ବାଲା ପଚାରିଲା : ''ତୋ ନାଁ' କ'ଣ ?''

''ମହାବୀର ତିଆଡ଼ି ଆଜ୍ଞା ।''

''ଶଳା ବାହ୍ମଣ !''

ମହାବୀର ଶଙ୍କିଗଲା ଓ କାନ୍ଧ ହଲେଇ ହରି ମହାକୁଢ଼ର ଜାବୁଡ଼ରୁ ଖସିବାକୁ ଚେଷ୍ଟା କଲା, କିନ୍ତୁ ହରିର ଜାବୁଡ଼ ବଡ଼ ଜବର । କାନ୍ଧଟା କାଟୁଥାଏ । ସେ ଲାଜରେ ପୁଲିସ୍‌ଆଡ଼କୁ ଚାହିଁପାରୁ ନ ଥାଏ । କାହିଁକି କେଜାଣି । ବୋଧେ ବ୍ରାହ୍ମଣ ବୋଲି । ତଥାପି ସାହସ କରି ହରିକି ପଚାରିଲା : ''କ'ଣ ହେଲା ?''

ମୁଁ କିଛି କରିନି । ମିଛରେ ମତେ ଧରିଛନ୍ତି । କିଏସେ କେଜାଣି, ଅଳପଇଷା କାଲି ରାତିରେ କଦଳୀଗଛଗୁଡ଼ାକ ହାଣି ପକେଇଚି । କାନ୍ଦିଗୁଡ଼ାକ ଛେଚି ପକେଇଚି ବୋଲୁଅରେ । ଅଗଣାଯାକ ହଗି ଦେଇଛି । ତମେ ତ ଜାଣ ମୁଁ ସକାଳୁ ଥରୁଟିଏ ଯାଏ । ଖାଇବାକୁ କ'ଣ ମିଳୁଚି ଯେ ଏତେ ହଗିବି । ଅଇଁଠା କଇଁଠାରୁ ବି ତ ଅଧେ କୁକୁରକୁ ଦେଇ ଦେବ ମାଲିକିଆଣୀ । କିନ୍ତୁ କେହି ଶୁଣୁ ନାହାନ୍ତି । ମୁଁ ସତ କହୁଚି ।''

''ବାବୁ କ'ଣ କହୁଛନ୍ତି ?''

''ବାବୁଆଣୀ ମାରି ମୁସ୍ତେଜ । ବାବୁ ତାଙ୍କ ପଛେ ସଁ ସଁ ହଉଛନ୍ତି ।''

''ଦେଖ୍ ହରି, ମୋର ଡେରି ହେଲାଣି, ଆମ ବାବୁ ଅଫିସି ଯିବେ । ଜଲଦି ନ ଗଲେ ମୋ ମୁଣ୍ଡ ରହିବନି । ତୁ ପୁଲିସିବାବୁଙ୍କ ସାଙ୍ଗେ ଯା । ତାଙ୍କୁ ସବୁ ବୁଝେଇ କହ । ମୁଁ ଶୀଘ୍ର କାମ ସାରି ଥାନାକୁ ଆସିବି ।''

''ତା ହେଲେ ଟିକିଏ କାଲୁ ଆଉ ମଧୁବାବୁଙ୍କୁ ଖବର ଦବ । ନ ହେଲେ ମୁଁ ମଲି । କିଏ ସେ ଛତରଖିଆ ଦାଉ ସାଧିଲା !''

ପୁଲିସ୍‌ବାଲା ହରିକୁ ନେଇ ଚାଲିଗଲା ଥାନାଆଡ଼େ ।

''ଦି' କିଲୋ କୁବି, ଆଉ କିସ ?''

''ଏଁ ?''

''କିସ ବାବୁ ପୁଲିସି କି ଏତେ ଡର । ସେ ତ ସବୁଦିନ ଆମ୍ଭକୁ ଧରୁଚି । ପରିବା ଚୁରେଇଲେ ଧରୁଚି, ରେଳଲାଇନ୍‌ରୁ ପୋଡ଼ା କୋଇଲା ଗୁଟେଇଲେ ଧରୁଚି । ଖଣ୍ଡଗିରିରୁ କାଠ ଆଣିଲେ ଧରୁଚି । ବିଡ଼ି ଚୁରେଇଲେ ଧରୁଚି । ଲୁଗା ଚୁରେଇଲେ ଧରୁଚି । ଆମେ ଚୁର ନାଇଁ ବାବୁ । ହେଲେ କାହା ବାଡ଼ିରୁ କଦଳୀ କାନ୍ଦିଟେ କି କୁବି ଦି'ଟା ନେଇଆସିଲେ ସରିଲା ? କିଏ ନଉ ନ ନଉ ଆମ୍ଭକୁ ଧରୁଚି । କିଏ ଖାତିର କରିଚି

ତାକୁ । ଏପଟ କରିବ ସେପଟ କରିବ । ଥାନାକୁ ନବ, କେବେ ମନହେଲେ ଚଟକଣା ମାରିବ, ଆଉ କିସ କରିବ । ଆଲୁ ଦି' କେଜି ହେଲେ ସରି । ଇନିସ୍‌ପେକ୍ଟର୍‌ର ମିସେ ଦାନ୍ତ ସମାନ କେଲେଇ ହୋଇଯିବ । କୁବିରେ କିସ ନା ଲେଖା ହେଇଛି ? ପଇସା ଦବ ବାଙ୍ଗିଣ ନବ । ପୁଲିସି ହଉ କି ଯିଏ ହଉ । ଯେ ମୋ ବାଙ୍ଗିଣ, ଆଉ କାହାର ନାହିଁ । ଆଉ କିସ ନବୁ ପରା ? ଆସ ମେଷ୍ଟ୍ରଗାରୁ, କୁଆଡ଼େ ଥିଲ ଏତେଦିନି, କିସ ଦେବି ? ଭଲ ବାଙ୍ଗିଣ ଅଛି । ସବୁ ଅଛି । ଫେରେସ୍ ।''

ପ୍ରଫେସର୍ ଏସ୍. କିସ୍‌କିନ୍ଧା ମିଶ୍ର ଗୋଟାଏ ବାଇଗଣ ମୁଠେଇ ଧରିଲେ । ପ୍ରଫେସର କିସ୍‌କିନ୍ଧା ମିଶ୍ର କବି । ମାନେ ଓଡ଼ିଆ କବି । ସେ ରୁଷାମ୍ମାକୁ ଚାହିଁ ମୁରୁକିହସା ଦେଲେ ।

''ବାଇଗଣ ମୂଳେ ଏ ଜଗତ, ଉଦ୍ଧବ କେତେ ତୁ ପଚାରୁ । ବାଃ, ଭଲ ଆକାର ହେଇଚି ଆଜି ତୋ ବାଇଗଣ ।'' ସେ ରୁଷାମ୍ମାକୁ କହିଲେ ।

''ମୁଁ ଉଦ୍ଧବ ନାହିଁରେ ବାବୁ । କେତେଥର କହିବି, ମୋ ନାଁ ପରା ରୁଷାମ୍ମା । ''ଆଜିକାଲି ଯାହାକୁ ଯିମିତି କହିବ ସାବଧାନରେ କହିବ । ଯୁଦ୍ଧ ଚାଲିଚି ପରା ମୁଖ୍ୟମନ୍ତ୍ରୀର ସ୍ମଗ୍‌ଲର୍‌ଙ୍କ ତୁଲେ । ଜୀପ୍ ଧାଉଁଚି, ଧରିନଉଚନ୍ତି ।''

''ତମ ବାଇଗଣ ଆଜି ଭାରି ସୁନ୍ଦର, ହାତ ପୂରିଯାଉଚି ।''

ନ ଧାଇଁଲେ ଟାଇମ୍‌ରେ ପହଞ୍ଚି ପାରିବନି ମହାବୀର । ସେ ପଇସା ତୁଟେଇ ଲସର ପସର ହୋଇ ଧାଇଁଲା ।

''କିସ ମେଷ୍ଟ୍ରେ,'' ରୁଷାମ୍ମା ଚପାଗଳାରେ ନରମେଇ କହିଲା, ''ଆଜି ଖାଲି ବାଙ୍ଗିଣ ଚିପୁଥିବ ? ଆଉ... ।''

ରୁଷାମ୍ମା ହସିଲା । ମାଷ୍ଟ୍ରେ ଛେପ ଢୋକିଲେ ବାଇଗଣ ଚିପୁ ଚିପୁ ରୁଷାମ୍ମା ହାତକୁ ଛୁଇଁଦେଇ । ଇଆଡ଼େ ସିଆଡ଼େ ଟିକିଏ ଚଟ୍ ପଟ୍ ଆଖି ବୁଲେଇ ନେଲେ । ରୁଷାମ୍ମା ତାଙ୍କ ହାତକୁ ଅଳ୍ପ ଚାପିଦେଲା । ହସିଲା ।

''ଘରେ ଦେଇ ଦେବି ଦି'ପହରେ ? ମାଷ୍ଟ୍ରାଣୀ ଅଛି ନା ନାହିଁ ନା ?''

ସମୟଟା ଗୋଟେ ସ୍ୱୋର୍, ବଡେଇଲେ ପାରା-ସାଇବର୍ଗ ୩୨୧ ।

ସ୍ୱୋର୍ ?

ସ୍ୱୋର୍ ।

ଆହା !

ଏଇଟା ମନକୁମନ ବଂଶ ବୃଦ୍ଧି କରେ । ଏ ବିଷୟରେ ପିଲାଙ୍କୁ ଅଙ୍କ ଦିଆଯାଏ । ଗୋଟିଏ କଙ୍କଡ଼ାର ଦାମ୍ ତିନି ଅର୍ବୁଦ ହେଲେ ତିନୋଟି ଶିଆଳର ଦାମ୍ କେତେ ?

ଚାରିରେ ଚାରି ମିଶେଇଲେ ଆଠ। ଆଠ କଣ ? ଯାକୁ ମାପିବାକୁ ମଣିଷମାନେ ସୂର୍ଯ୍ୟ, ଚନ୍ଦ୍ର, ତାରା, ବାଲି, କାଚ, ଲୁହା, ତମ୍ବା, କ୍ୱାର୍ଜ, ପେଣ୍ଡୁଲମ୍, ବାଲାନ୍ସ ହ୍ୱୀଲ୍, ବ୍ୟାଟେରି ଇତ୍ୟାଦି ଯନ୍ତ୍ର ଖଞ୍ଜିଛନ୍ତି ବୋଲି ଭାବନ୍ତି।

ଜାଣିଚ କ'ଣ !

ସମୟ ହେଇଗଲା, ଲୋକଟାଏ ଚିହ୍ନଟ କରିବାକୁ। ମତେ ପରିସୀମା ଦିଅ।

ଆହା।

ସମୟ ହେଇଗଲା। ସ୍କ୍ୟାନ୍ ନେଟ ପ୍ରସ୍ତୁତ।

ରବିବାବୁଙ୍କର କନଷ୍ଟିପେସନ୍। ଆଜି ଯାହା ହଉ ଖୁଲାସା। ତିନି କପ୍ ଚା'ରେ ହେଇଗଲା। ଦୁଇ ତିନି ଦିନ ଗଡ଼ିଗଲେ ଚିନ୍ତା ନାହିଁ। ଏ ଗୁଡ଼ାଖୁଟା ବୋଧେ ଭଲ। ସେ ଖୁବ୍ ଜୋରରେ ଗାଳି ଦଉଥିଲେ ମହାବୀରକୁ। ତାଙ୍କ ମନ ଆଜି ଭଲଥିଲା। ମହାବୀର ଚୁପ୍‌ଚାପ୍ ଶୁଣୁଥାଏ ଆଉ ବ୍ୟାଗରୁ ପରିବାକାଢ଼ି ରୋଷେଇଘର ପାଖ ବାରଣ୍ଡାରେ ମା'ଙ୍କ ପାଖେ ରଖୁଥାଏ। ମା ହେଲେ ମନମୋହିନୀ, ରବିବାବୁଙ୍କ ସ୍ତ୍ରୀ, ବଡ଼ ପନିକିଟାଏ ପକେଇ ଖଚାଖଚ୍ ପରିବା କାଟୁଥିଲେ।

''ତୁମେ ଏଥର ଗାଧେଇଗଲ। ତୁମେ ଆସିଲେ ଲଳିତା ଯିବ।''

''ଆଜି ମୁଁ ଜଲ୍‌ଦି ଆସିବି, ଟିକିଏ ରିଲାକସ୍ କରିବି, ତା ପରେ ଯିବି।''

''ପୁଣି ରିହର୍‌ସାଲ୍ ?''

''ଆଜି ପରା ଷ୍ଟେଜ୍ ରିହର୍‌ସାଲ୍। ନିଜେ ସେକ୍ରେଟେରୀ ଆସିବେ।''

''ଆଚ୍ଛା ?''

''ଭଲ ଲୋକଟା ଯେ, ଭଡ଼ଭଡ଼ିଆଟା। ସବୁ ଯିମିତି ଜାଣିଚି। ଫାଷ୍ଟ ଚାନସ୍ ଆଇ.ଏ.ଏସ୍.। ଖାଲି ଟଙ୍କା ଖାଇବାକୁ ମନ। ଏଜୁକେସନ ଡିପାର୍ଟମେଣ୍ଟରେ ବି ଟ୍ରାନସଫର୍‌ରେ ଟଙ୍କା ଖାଇବାକୁ ଭାରି ଇଚ୍ଛା, ହେଲେ କାହିଁ ? ଯାହା ବି ଅଛି ତା ମନ୍ତ୍ରୀ ଦାନ୍ତରୁ ଖସୁଚି ଯେ ଗୋଟେଇବ। ଏ ଶଳାଙ୍କର ଆଉ କିଛି କାମଧନ୍ଦା ନାହିଁ। କୋଉ ମଡ଼େଲ୍ ଗାଡ଼ି, କୋଉ କୋଉ ଜାଗାରେ ଜମି, କେତେଟା ଘର, କୋଉ ଡିପାର୍ଟମେଣ୍ଟରେ ପୋଷ୍ଟିଂ କୋଉ...''

''ଗାଧେଇ ଗଲ ନା ଦର୍ପଣ ଆଗରେ ଠିଆ ହେଇ ଗଣର ଗଣର ହଉଚ ?''

ରବିବାବୁ ରାଗିଗଲେ। ତାଙ୍କ ସାବେନା ମୁହଁଟା ତମ୍ବା ପଡ଼ିଗଲା। ସେ ଦର୍ପଣରେ ନିରେଖି ଦେଖିଲେ। ନାଃ, ମୁହଁଟାରେ ରାଗ ଅପେକ୍ଷା ଦୁଃଖ ବେଶି ଦେଖାଉଚି। ସେ ଆଖି ଦି'ଟିକୁ ବଡ଼ ବଡ଼ କରିଦେଲେ। ତା ପରେ ନିରେଖି ଦେଖିଲେ।

ଭୂଲତାଟାକୁ ଟିକିଏ କୁଞ୍ଚି ପାଖ ପାଖକୁ ଖାଞ୍ଚି ଆଣିଲେ । ତା'ପରେ ପୁଣି ନିରେଖିଲେ । ଆଗ ଅପେକ୍ଷା ଟିକିଏ ଭଲ କିନ୍ତୁ ପୂରା ନୁହେଁ । ସେ ଅମଜାଦ୍ ଖାଁ, ଅମିତାଭ୍ ବଚ୍ଚନ୍‌ଙ୍କ ମୁହଁ ମନ ଭିତରକୁ ଝିଙ୍କି ଝିଙ୍କି ଆଣି ପୁଣି ଛାଡ଼ିଦେଲେ । ନାକଟା ଟିକିଏ ଫୁଲାଇଲେ ଓ ଓଠକୁ ଚିପି ଧାଁରେ କରିଦେଲେ । ଏଥର ହେଇଚି । ଶଳା ଚବିଶ ଘଣ୍ଟାତ ଅଫିସରେ ଫାଇଲ୍ ରାମ୍ପିବ, ମୁହଁମସଲ୍ ଟ୍ରେନିଂ କରିବ କେତେବେଳେ । ଇହାପୋ ଅଫିସ୍ ମୂତ ଘରେ ଦର୍ପଣଟେ ଥିଲା ·ଯେ ତାକୁ ବି କିଏ ମାରିନେଲାଣି । ଏ ଶଳେ କ୍ଲାସ ଫୋର୍, ନ ହେଲେ ପୁଲିସ ଗାର୍ଡ଼ । କିଛି କହି ହବନି । ଦାମ କହୁଥିଲା ସେ ଦର୍ପଣଟା ଆମ ହେଡ୍‌କ୍ଲର୍କଙ୍କ ଝିଅ ବାହାଘର ବେଳେ ଗାଏବ୍ । ରଫିକ୍ କହିଲା ସେ ଦର୍ପଣ କୁଆଡ଼େ ଯାଇନି, ଅଫିସରେ ଅଛି, ସେକ୍ରେଟେରୀଙ୍କ ବାଥରୁମ୍‌ରେ । ତାଙ୍କ ଆଗପଟ ପଛପଟ ଦି'ପଟ ନ ଦିଶିବାରୁ ସେ ପଛକାନ୍ଥରେ ଏ ଦର୍ପଣଟା ନେଇ ଲଗେଇଛନ୍ତି । ଶଳା ! ଏକା ବିଧାକେ ଦର୍ପଣ ଫର୍ପଣ ସବୁ ଭାଙ୍ଗି ଚୂର୍‌ମାର କରିଦେବି ।

''ହମକୋ କ୍ୟା ସୋଚ୍ ରଖ୍‌ଖା ହୈ ? ଆରେ ଓ କାଲିଆ...''

''ଗାଧୁଆ ହବ ନା ନାଇଁମ ? ଲଳିତାର ଫାଷ୍ଟ ପିରିଅଡ୍ କ୍ଲାସ୍ । ତୁ ନ ହେଲେ ଗଲୁ ଆଗ ଗାଧେଇପଡ଼ିଲୁ । ସେ ଚେହେରା ଦେଖୁଥାନ୍ତୁ ।''

ରବିବାବୁ ଆହୁରି ଥରେ ରାଗିଗଲେ ଆଉ ଚଟ୍ କରି ଟିପେଇ ଟିପେଇ ଗାଧୁଆଘରକୁ ଚାଲିଗଲେ ଓ ନିଃଶବ୍ଦରେ ଧୀରି କରି ଦୁଆରଟା ବନ୍ଦ କରିଦେଲେ ।

ଲଳିତା ଘାଗେରା, ଶାଢ଼ି, ବ୍ଲାଉଜ୍, ଇତ୍ୟାଦି ଧରି ଗାଧୁଆ ଘର ଦୁଆରେ ପହଞ୍ଚିଲା ବେଳକୁ ଦୁଆର ବନ୍ଦ ।

ସେ ପାଟିକଲା : ''ମା ମତେ କାହିଁକି ମିଛରେ ପାଠରୁ ଉଠେଇଲୁ, ବାପାତ ଗାଧୁଆଘରେ ପଶିଲେଣି ।''

''ହଉବା, ତାଙ୍କର ତ କାକସ୍ନାନ ।''

''ମୋର ନା ପାଠ ହେଲା, ନା ଗାଧୁଆ । ଖାଲି ତ ରଡ଼ି ଛାଡୁଥିବ : ଇଆଡ଼େ ଯା ସିଆଡ଼େ ଯା, ଯା କର ତା କର । କିଛି କଥା ନ ଥିବ ରଡ଼ି ଛାଡୁଥିବ ।''

''ଚୋପ୍ ! ଟୋକୀର ବେଶି ମୁହଁ ବଢ଼ି ଯାଉଚି ।''

କବି ଲଙ୍ଗଳା ହେଇ ବାଡ଼ି ନଳାରେ ହଗି, ବାଡ଼ି କଳରେ ଛଞ୍ଚିହେଇ ଆସି ପରିବା ଡାଲା ପାଖେ ଠିଆ ହେଇ କହିଲା : ''ମା ପେଣ୍ଟେ ।''

·

ବାମାକାନ୍ତ ଦାସ, ଆଇ.ଏ.ଏସ୍. ଫାଷ୍ଟ ଚାନ୍‌ସ । ସେ ଏ ସେକେଣ୍ଡ ଚାନ୍‌ସ, ଥାର୍ଡ଼ ଚାନ୍‌ସ, ଡ୍ରପଆଉଟ୍‌ମାନଙ୍କୁ ଟାପରା କରନ୍ତି । ଯଥା ପୂର୍ଣ୍ଣାନନ୍ଦ ରଥ, ତାଙ୍କ

ସହପାଠୀ । ତାଙ୍କ ସାଙ୍ଗରେ ଆଇ.ଏ.ଏସ୍. ପରୀକ୍ଷା ଦେବାକୁ ତା ସାହସ ପଇଟିଲାନି ବୋଲି ସେ ପରବର୍ଷ ଦେଲେ । ଅବଶ୍ୟ ପାଇଗଲା, କିନ୍ତୁ ବର୍ଷେ ପରେ ବି ତାଙ୍କ ପରି ପୋଜିସନ୍ ରଖି ପାରିଲାନି ।

''ଏ ଫାଷ୍ଟ ରେଟର୍ ଇଜ୍ ଏ ଫାଷ୍ଟ ରେଟର୍ । ଏ ଥାର୍ଡ୍ ରେଟର ଇଜ୍ ଏ ଥାର୍ଡ୍ ରେଟର । ଦେଆର କ୍ୟାନ୍ ବି ନୋ କମ୍ପ୍ରମାଇଜ୍ ଅନ୍ ଦ୍ୟାଟ୍'' ।

ତାଙ୍କ ଇଚ୍ଛା ଥିଲା ଇଣ୍ଡଷ୍ଟ୍ରି, ଫରେଷ୍ଟ ବା ଓ୍ୱାର୍କସ୍ ବିଭାଗରେ ରହିବାକୁ । ସେଠି କଞ୍ଚାପଇସା । ଫିସେରୀ ହେଇଥିଲେ ବି ଚଳିଥାନ୍ତା । କାରଣ ମହାସ୍କନ୍ଧ ବିଶ୍ୱାଳ ଭଲ ଦ୍ୱିଏ ବୋଲି କହନ୍ତି । ଅବଶ୍ୟ ମନ୍ତ୍ରୀଟା ହଉଚି ପାତ୍ର । ମହାଗିଳା । ଯୋଗାଡ଼ଯନ୍ତ୍ର କରି ସହିଦନଗର ମେନ୍ ରୋଡ଼ ଓପରେ ଅଧ ଏକରେ ଜମି ପଚାଶ ହଜାରରେ ମାରି ନେଇଛନ୍ତି । କାହାକୁ କହନ୍ତିନି ଅଧଏକରେ ବୋଲି : ''ଶହେ ଫୁଟ୍‌ରେ ଶହେ ଫୁଟ୍ ଜମା । ଦ୍ୟାଟସ୍ ଅଲ୍ ଏ ପୁଅର ମ୍ୟାନ୍ ଲାଇକ୍ ମି କ୍ୟାନ୍ ଆଫୋର୍ଡ୍ ।'' ଭଲ ପୋଷ୍ଟିଂଟେ ମିଳିଥିଲେ ବର୍ଷେ ଦି' ବର୍ଷରେ ଆଠଦଶ ଲକ୍ଷର କୋଠାଟେ କରି ପାରିଥାନ୍ତେ । ଫାଇନାନ୍ସ ହେଇଥିଲେ ବି ଚଳିଥାନ୍ତା । ଇପିକଲ, ଆଇ.ଡି.ସି., ନାଲ୍‌କୋ ଇତ୍ୟାଦି କଥା ତ ଛାଡ଼ । ଚଳିଥାନ୍ତା ହେଲ୍‌ଥ ! ସିଆଡ଼େ ତଳଆଡ଼େ ଗିଳା ଡାକ୍ତର ତ ଓପରଆଡ଼େ ସର୍ବଗିଳା ମନ୍ତ୍ରୀ । ମଝିରେ ଭକୁଆ ସେକ୍ରେଟେରୀ । ତଥାପି ଚଳେଇ ନେଇଥାନ୍ତେ ସେ ଏପଟ ସେପଟ କରି । କିନ୍ତୁ ଏଜୁକେଶନ୍ !

ସେ ରାଗିଯାଇ କବିତା ଲେଖା ଆରମ୍ଭ କରିଛନ୍ତି । ବିପ୍ଳବୀ କବି । ସର୍ବହରାର ବିପ୍ଳବ କବିତା :

*ଘର ନାହିଁ ଦ୍ୱାର ନାହିଁ*
*ଜାମା ନାହିଁ ପ୍ୟାଣ୍ଟ ନାହିଁ ।।*

ସେ କିଷ୍କିନ୍ଦା ମିଶ୍ରଙ୍କର ନିମନ୍ତ୍ରଣ ଓଡ଼ିଆ ନୂଆବର୍ଷ କବିତା ପାଠୋତ୍ସବ ପାଇଁ ଗ୍ରହଣ କରିଥିଲେ ମୁଖ୍ୟ ଅତିଥି ଭାବରେ ।

''ପ୍ରତୀକବାଦୀ କବି ବାମାକାନ୍ତ,'' କିଷ୍କିନ୍ଦା ମିଶ୍ର ଆରମ୍ଭ କଲେ । ମୁଖ୍ୟ ଅତିଥି କାଗଜଟିଏ ଧରି ଗାରେଇବାକୁ ଲାଗିଲେ । ''ପ୍ରତୀକବାଦୀ ବିପ୍ଳବୀ କବି ବାମାକାନ୍ତ :''

*'ମସୃଣ ସନ୍ଧ୍ୟାର ବନ୍ଧ୍ୟା ସ୍ତନଯୁଗ ।।'*

''ଏ ସନ୍ଧ୍ୟା ସେ ସନ୍ଧ୍ୟା ନୁହେଁ । ମସୃଣ ମସୃଣ ନୁହେଁ, ବ୍ରଣାଚ୍ଛାଦିତ; ବନ୍ଧ୍ୟା ବନ୍ଧ୍ୟା ନୁହେଁ, ମନ କନ୍ଦରର ଅନ୍ଧକାରାଚ୍ଛାଦିତ ଲିବିଡ଼ୋ ରାକ୍ଷସର ଶିକୁଳି, ବନ୍ଧନ, ରିପ୍ରେସନ୍ । ସ୍ତନଯୁଗ ସ୍ତନଯୁଗ ନୁହେଁ, ସୂର୍ଯ୍ୟ ଚନ୍ଦ୍ର । କିନ୍ତୁ ସୂର୍ଯ୍ୟ ଚନ୍ଦ୍ର ସୂର୍ଯ୍ୟ ଚନ୍ଦ୍ର ନୁହେଁ, ତାଡ଼କା ପୂତନା କିନ୍ତୁ ପ୍ରକୃତରେ ତାଡ଼କା ପୂତନା ନୁହେଁ, ମନଗହ୍ୱରାନ୍ଧକାରର

ଲିବିଡ଼ୋ ରାକ୍ଷସର ସଉତୁଣୀ ସ୍ତ୍ରୀ ଦ୍ୱୟ, ରକ୍ତମୁଖୀ କ୍ଷୁଧା, ସ୍ଫିତଜାନୁ ଯୌନ। ପୋଏଟିକ ଆନାଲିସିସ୍‌ଟା କି ଚମତ୍କାର ଏକ୍‌ସରସାଇଜ, ଯେତେ କରୁଥିବ ହଉଥିବ, ଖାଲି କରିଜାଣିଲେ ହେଲା । କି ଚମତ୍କାର କବିତା ।''

ଛୋଟିଆ କାଗଜଟି ଖୋଲାହେଲା ।

''ଓ ନିଉକ୍ରିଟିକ୍ସ, ଓ ରଷିଆନ ଫର୍ମାଲିଷ୍ଟ, ଓ ଷ୍ଟ୍ରକ୍‌ଚରାଲିଷ୍ଟ, ଓ ସେମିଓଟିକ୍‌ସ୍ ବାଲା, ଡିକଣ୍ଷ୍ଟ୍ରାମିନେଟର୍‌ସ୍, ନାନା ଓ ଡିକନ୍‌ଷ୍ଟ୍ରକ୍ସନିଷ୍ଟ ଓ ପ୍ରଭୁ ସାସୁର୍, ବ୍ରୁକ୍ସ, ଷ୍ଟ୍ରାଉସ୍, ଟୋଡୋରେଭ୍, ଡେରିଡ଼ା, ୟାଉସ୍ । (ଧରିଥିଲେ ଲିଷ୍ଟ ହାତରେ, ପଡ଼ିଗଲେ ଯାଇ ଗାତରେ ।) ଆମ ଗବାକ୍ଷବିହୀନ କକ୍ଷରୁ ଆମକୁ ଉଠାଅ ଓ ପ୍ରିୟ ଈଶ୍ୱର ଟି.ଏସ୍. ଇଲିଅଟ୍ ଯାହାଙ୍କଠାରୁ ଆରମ୍ଭ ହେଲା ଏସବୁ ରଙ୍ଗ (ବାମାକାନ୍ତ ଯତିପାତ କରି ଗାରେଇ ଚାଲିଲେ ଢଙ୍ଗ, ଗଙ୍ଗ, ବଙ୍ଗ, ଜଙ୍ଘ ?) ଏପ୍ରିଲ ନିଷ୍ଠୁର ମାସ, କିନ୍ତୁ ଦେଖୁନାହାନ୍ତି ଏପ୍ରିଲ୍‌ଟା ଏପ୍ରିଲ୍ ନୁହେଁ । ମେଟୋନିମିରେ ଘୁଞ୍ଚା ଯାଇଚି ସ୍ପ୍ରିଂରୁ, କିନ୍ତୁ ସ୍ପ୍ରିଂଟା କୋଉ ସ୍ପ୍ରିଂ କି, ଏଇଟା ତ ମେଟାଫର୍ । ଦେଖନ୍ତୁ ସୂକ୍ଷ୍ମ ଭିନ୍ନତା (ଜାଗତିଆର ରୁହନ୍ତୁ ଡେରିଡାଙ୍କ ପାଖାପାଖି ପହଞ୍ଚିଗଲେଣି ।) ଟିରିଅସଙ୍କ ଶୁଖିଲା ମୂଳା, କିନ୍ତୁ ମୂଳାଟା କୋଉ ମୂଳା କି ? ହା, ହା । ୟେ ତ ମୂଳରୁ ଟିରିଅସ୍ ନୁହେଁ, ଆଧୁନିକ ସଭ୍ୟତାର ମୂଳା, ମାନେ ଧ୍ୱଂସ ସ୍ତୂପ । ଅବଶ୍ୟ ଏଇଟାର ଆଧୁନିକ ସଭ୍ୟତାର ଧ୍ୱଂସ ସାଙ୍ଗରେ କିଛି ସମ୍ପର୍କ ନାହିଁ, ଅଛି ବଦଲେୟାର୍‌ଙ୍କ ସାଙ୍ଗରେ, ଉନବିଂଶ ଶତାବ୍ଦୀର ମଝିରେ, କିନ୍ତୁ ଆପଣ ଯଦି ଇମିତି ଚଲେଇପାରିବେ, ଏସବୁ ବଦଲେୟାର୍ ଫଦଲେୟାର୍ କିଛି ନୁହଁ, ଖାଲି ଗୋଟାଏ ଅପଦାର୍ଥର କଥା ଯିଏ ମରିଯାଉଥିବ ଝାଣି ହେଇ ସିନା, ପାରୁ ନ ଥିବ କିଛି କରି ।

''ଓ ସୁନ୍ଦର କାବ୍ୟ ଚର୍ଚ୍ଚା, ଓ ଇଲିଅଟ୍, ଓ ବାମାକାନ୍ତ । କି ଚମତ୍କାର କବିତା ।''

''ଓ ମହାନ ଶୁଖିଲା ମୂଳା,'' ପଛଆଡୁ ଶବ୍ଦ ଆସିଲା ।

ଡା: ଏସ୍. କୁମାର ମିଶ୍ର ନ ଶୁଣିଲା ପରି କହିଲେ... ସେ ବି.ଜେ.ବି. କଲେଜର ପୁରୁଖା ରିଡର୍ ଇଂରାଜୀର... ସେ କହିଲେ... ସେ ବି କବି... ସେ କହିଲେ : ''ଆମର ପ୍ରତୀକବାଦୀ ବିପ୍ଳବୀ ଦାର୍ଶନିକ ଆଧ୍ୟାତ୍ମବାଦୀ ସଂଗ୍ରାମୀ କବି ଶ୍ରୀଯୁକ୍ତ ବାମାକାନ୍ତ ଦାସ, ଆଇ.ଏ.ଏସ୍, ଫାଷ୍ଟଚାନ୍‌ସ, ଆଜି ଆମର ଆଷାଢ଼ ମିଳନକୁ ସାର୍ଥକ କରିଛନ୍ତି । ମୁଁ ତାଙ୍କୁ ଯେ କି ଭାଷାରେ...''

ଇଂରାଜୀ ସାର୍ କିଷ୍କିନ୍ଧାବାବୁଙ୍କର ଫୁଲବାଣୀ ବଦଳି ହେଇଯାଇଚି । ଆଜି ସନ୍ଧ୍ୟାରେ ସେ ବିଷୟ ସେ ବାମାକାନ୍ତବାବୁଙ୍କୁ ତାଙ୍କ ଘରେ ଯାଇ କହିବେ । ତାଙ୍କର ବି.ଜେ.ବି. କଲେଜରେ ଜମା ଦଶ ବର୍ଷ । ତାଠୁ ଅଧିକବାଲା ବି ଏଠି ଅଛନ୍ତି, ରେଭେନ୍‌ସାରେ ଅଛନ୍ତି, ଯଥା ମହମ୍ମଦ୍ ବଦରୁଦ୍ଦିନ୍ ଖାଁ, ପଠାଣ ଭୋଟ ଯୋଗାଡ଼ କରି ଦବା ନାଁରେ ।

ହେଲା ଯଦି ବି.ଜେ.ବି.ରେ ଅଧିକା ଦିନ, ତେବେ ରାଜଧାନୀ, ରମାଦେବୀ, ରେଭେନ୍‌ସା, ଜେ.କେ.ବି.କେ, ଏସ୍.ବି. ତ ଅଛି । କଟକରୁ ଭୁବନେଶ୍ୱର ଭୁବନେଶ୍ୱରରୁ କଟକ କରି ଜୀବନଟା କଟିଗଲେ ରକ୍ଷା । ଫୁଲବାଣୀ ? ଇରେ ବାପରେ !

ବାମାକାନ୍ତବାବୁ ସାୱାର୍‌ଟା ଖୋଲିଦେଇ ଇମ୍ପୋଟେଡ୍ କ୍ୟାମେ ସାବୁନ୍‌କୁ କାଖ ପାଖରେ ଘଷି ପରେ ଖାଲି ହାତରେ ଘଷିବାକୁ ଲାଗିଲେ । ହ୍ୱାଟ୍ ଫ୍ରାଗ୍ରାନ୍ସ ! ଆହା ! ଇମ୍ପୋଟେଡ୍ ହେଲା ଅନ୍ୟ ଦେଶରେ ତିଆରି ଯେ କୌଣସି ଜିନିଷ, ଯଥା ସାବୁନ, ମଟରଗାଡ଼ି ବା ମାଇକିନା । ସାବୁନ୍ ହେଲା ଖଣ୍ଡାକାରରେ କଟା ଟାଣୁଆ ପଦାର୍ଥ । ଯାକୁ ପାଣି ପକେଇ ଦେହରେ ଘଷିଲେ ଫେଣ ବାହାରେ, ବାସେନା ବି ହୁଏ । ଶୁଖିଲାରେ ଘଷିଲେ କିଛି ହୁଏନି ।

ବାମାକାନ୍ତ ଦାସଙ୍କ ଟର୍କିସ୍ ଟାୱେଲ୍‌ଟା ଫୁଲୁଫୁଲୁକିଆ ହେଲେବି ଉଲୁରିବାକୁ ଆରମ୍ଭ କଲାଣି । କୋଣାର୍କର ପି. ଡବଲ୍ୟୁ. ଡି. ବଙ୍ଗଳାରେ ଭଲ ନୂଆ ଟାୱେଲ ଅଛି । ସେଠି କଲେଜ ନାହିଁ । ନ ଥାଉ । ନିମାପଡ଼ାକୁ ଟୁର୍ । କୋଣାର୍କରେ ନାଇଟ୍ ହଲ୍‌ଟ୍ । ସେ ହଠାତ୍ ଦେହପୋଛା ବନ୍ଦ କରି ସିଙ୍କ୍ ଓପର ଦର୍ପଣରେ ନିଜକୁ ଦେଖିଲେ । ସଲିଡ୍, ଲାଇକ୍ ଏ ବ୍ୟାରେଲ୍ । ଅନ୍‌ବିଟେବଲ୍ । ଆଜି ରିହରସାଲ୍‌କୁ ଯିବାକୁ ହବ । ମାଧବୀକୁ ହିରୋଇନ୍ ରୋଲ୍‌ଟା ଦବା ଉଚିତ ଥିଲା । ସି ଇଜ୍ ସୋ ସୁଇଟ୍ ! କୋଣାର୍କକୁ ଗୋଟେ ଟ୍ରିପ୍ କରିବାକୁ ହବ, ହାତରୁ ପେଟ୍ରୋଲ ପଡୁ ପଛେ । ଷ୍ଟୁଙ୍ଗ୍ ହେଡେଡ୍ । ଏ କ୍ଲର୍କଗୁଡ଼ାଙ୍କ ସାଙ୍ଗରେ ପଡୁ ନ ଥିବ ବୋଧହୁଏ । ଆଜି ସେ ଡିଲ୍ କରୁଥିବା ଫାଇଲ୍‌ଟେ ଟେକ୍ ଅପ୍ କଲେ ଡକେଇ ହବ । ମାଧବୀ !

ଏତିକି ବେଳେ ଦୁଆରଟା ଧଡ଼୍ ଧଡ଼୍ ହେଲା ।

''ଧେତ୍ତେରି !''

''ଶୁଣୁଚ ? ମିନିଷ୍ଟର ଡାକୁଚନ୍ତି ।''

''କ'ଣ ? ଆମ ଘରକୁ ? ବସାଅ, ଚା' ଦିଅ, ଗପ କର, ଯାଛାତା କର । ମୁଁ ଆସୁଚି । ଯାଅ ।''

''ହାଁ ହାଁ ଥୟଧର । ଫୋନ୍‌ରେ ଡାକୁଛନ୍ତି ।''

''ଶଳାକୁ କହିଦିଅ ମୁଁ ଅଫିସ ଗଲିଣି ।''

''ମୁଁ କହିଦେଇଚି ତୁମେ ବାଥରୁମ୍‌ରେ ବୋଲି ।''

''ରଷ୍ଟିକ୍ ଓମାନ୍ !''

''କ'ଣ କହିଲ ?''

''ଯାଉଚି ଚାଲ ।''

"ଡୋଣ୍ଟ୍ ଥିଙ୍କ୍ ୟୁ କ୍ୟାନ ଗେଟ୍ ଆୱେ ୱିଥ୍ ଇଟ୍ । ୟୁ ଲିଭ୍ ଅନ୍ ମାଇ ମନି, ରାଇଡ୍ ଇନ୍ ମାଇ କାର..."

"ସଟ୍ ଅପ୍ ୟୁ ବିଚ୍ ।"

"ହ୍ୱାଟ୍ ! ୟୁ ବାଷ୍ଟାର୍ଡ୍ !"

ଏଇଟା ଶ୍ରୀ ଭୋଳାନାଥ ମହାପାତ୍ରଙ୍କ ଫାଟକ । ଫାଟକ, କୋଠା ଚାରିପଟେ ଘେରା ପାଚିରିରେ ଲଟକା ଯାଇଥିବା ଲୁହା ବା କାଠରେ ତିଆରି ବଡ଼ ଦୁଆର । ଯାକୁ ଖୋଲିଲେ କୋଠାକୁ ଯାଇହବ । ଏଇଟା ବନ୍ଦଥିଲେ ପାଚିରି ଡେଇଁ ଭିତରକୁ ପଶିବାକୁ ପଡ଼େ ।

ଭୋଳାନାଥ ମହାପାତ୍ରଙ୍କୁ ଭୋକ ହେଲାଣି । ସକାଳେ ଚା' କପେ, ଦୁଧ ଗିଲାସେ, ଆଉ ଛେନା ଟିକେ ମାତ୍ର ପେଟେରେ ପଡ଼ିଚି । ଗାଧୁଆଟା ସାରି ଦେଇଛନ୍ତି । ସାରିଦେବାକୁ ହୁଏ, ନ ହେଲେ ସେତକ ପାଇଁ ସମୟ ମିଳେନି ଏ ଲୋକଙ୍କ ଦାଉରେ । ମଣିଷମାନଙ୍କୁ ଗାଧେଇବାକୁ ହୁଏ, ତାଙ୍କ ଦେହରୁ ମଇଳା ବାହାରେ ଯେହେତୁ । ସମସ୍ତେ ଭାବନ୍ତି ଏ ମନ୍ତ୍ରୀ ଜୀବନଟା ବଡ଼ ସୁଖମୟ । ସେମାନଙ୍କର କିଛି ଧାରଣା ଇ ନାହିଁ । ମନ୍ତ୍ରୀଟିଏ.... ମୋ ପରି ମନ୍ତ୍ରୀ ଜଣେ ଯିଏ ନିଜର କର୍ମକୁ ଧର୍ମ ମନେ କରେ ଓ ନିଜର ଜୀବନକୁ ଦେଶ, ଜାତି ଓ ଜନତା ପ୍ରତି ଉତ୍ସର୍ଗ କରିଦିଏ.... କେତେ କଷ୍ଟ ସହେ । ନିଜ କାମଧନ୍ଦା ସବୁ ଉଜାଡ଼ି, ନିଜ ପରିବାରଠୁଁ ଅଜଣା ହେଇ, ଦିନର ଚବିଶ ଘଣ୍ଟାରୁ ଶୋଇବା ସମୟଟା (ବେଳେବେଳେ ଏକୁଟିଆ), ବେଳେବେଳେ ବାଦ୍‌ଦେଇ, ବାକି ସବୁଟା ସମୟ ଅଫିସ୍ କାମରେ ନ ହେଲେ ଜନତାର ସେବାରେ ଏଠି ସେଠି ଓଡ଼ିଶା ସାରା ବୁଲି କୋଉ ଆଇ.ବି. ପିଣ୍ଡା, କୋଉ ପଡ଼ିଆ ପନ୍ଦାରରେ ଅଖିଆ ଅପିଆ କାଟିବାକୁ ପଡ଼ିଚି, ଇମିତିକି ଏକବସ୍ତ୍ର ହେଇ ଦିଲ୍ଲୀ, କଲିକତା, ମୁମ୍ବାଇ, ତ୍ରିଭାନ୍ଦ୍ରମ୍ ବି ଧାଇଁବାକୁ ପଡ଼ିଛି ଝାଳନାଳ ହେଇ ଉଡ଼ାଜାହାଜରେ । ସନ୍ତର୍ପଣରେ ପାଦ ପକାଇବାକୁ ହୁଏ ସି.ଏମ୍. ଆଉ ପି.ଏମ୍.ଙ୍କ ମଝିରେ, ଯଦି ସେମାନେ ଯୁଦ୍ଧ କରୁଥାନ୍ତି ବର୍ତ୍ତମାନ ପରି, ସୂକ୍ଷ୍ମରେ କାରବାର କରିବାକୁ ପଡ଼େ ସ୍ମଗ୍‌ଲର୍ ଆଉ ଅପରାଧୀଙ୍କ ସାଙ୍ଗେ ଯିମିତି ବ୍ଲାକ୍‌ମେଲ୍ ନ ହବ । ପ୍ରତିଟି ପଦକ୍ଷେପରେ ବିପଦ । ସେ କଥା କେହି ବୁଝନ୍ତିନି । "ଏ ଶଳା ଦେଶଟା କୃତଘ୍ନ !!!"

ଭୋଳାନାଥବାବୁ ଆଜି ସକାଳୁ ଫୋନ କରୁଥିଲେ ଇଡ୍‌କୋର ଚେୟାରମ୍ୟାନ୍‌ଙ୍କୁ, ତାଙ୍କ ନାଁ ଶ୍ରୀମନ୍ ସାହୁ, ଆଇ.ଏ.ଏସ୍. । ମଣିଷମାନେ ଫୋନ୍ ପର୍ଯ୍ୟନ୍ତ ପହଞ୍ଚିଲେଣି । ଭୋଳାନାଥବାବୁ ରାଗିଯାଇଥିଲେ ।

"ଏ ସବୁ କ'ଣ ଚାଲିଚି ?" ସେ ଫୋନ୍‌ରେ ଗର୍ଜିଲେ ।

"ଆପଣ କିଏ କହୁଛନ୍ତି ?" ଶ୍ରୀମନ୍ ବାବୁ ସଦ୍ୟ ନିଦରୁ ଉଠିଥିବା ବିରକ୍ତିରେ ପଚାରିଲେ ।

"ମହାପାତ୍ର, ମିନିଷ୍ଟର ଅଫ୍ ଏଜୁକେଶନ ।"

"ସାର୍ । ନମସ୍କାର ସାର୍ । କ'ଣ ହେଲା ସାର୍ ?"

"କିହୋ ମୋ ପୁଅ ନାଁରେ କ'ଣ ଗୋଟେ ପେମେଣ୍ଟ ନୋଟିସ୍ ପଠେଇଚ !"

"କୋଉ ବିଷୟରେ ସାର୍, ମୋର ଠିକ୍ ମନେ ପଡୁନି ।"

"ମନେ ପଡୁନି କ'ଣ, କାଲି ପରା ଦସ୍ତଖତ କରି ପଠେଇଚ । ସେ ବି ପର ଦିନ ଯାଇଥିଲା ଦେଖା କରିବାକୁ ।"

"ଓ, ମନେ ପଡ଼ିଲା, ହଁ ସେ, ଲକ୍ଷ୍ମଣନାଥ ବାବୁ, ଆସିଥିଲେ । ମୁଁ ତ କହିଦେଇଚି ସବୁ ବୁଝିବା ବୋଲି ।"

"କିହୋ କାଲି ପରା ରିପେମେଣ୍ଟ ନୋଟିସ୍ ପଠେଇଚ, ପ'ରଦିନ ସେ ଦେଖା କଲାପରେ !"

"ହଁ ସାର୍ ।"

"କିହୋ ହଁ ସାର୍ କ'ଣ ?"

"ହଁ ସାର୍, ମାନେ ନାହିଁ ସାର୍ । ଏଇଟା ଖାଲି ମସୋରୀ ଟ୍ରେନିଂ ସାର୍, ହଁ ସାର୍ କହିବାକେ । ମାନେ ସେଇଟା ଗୋଟାଏ ଫର୍ମାଲିଟି । ଆମକୁ ତ ପଠେଇବାକେ ହବା ।"

"ହବା !"

"ହବା ଆଜ୍ଞା । ପାଞ୍ଚ ଲକ୍ଷ ଟଙ୍କା ତ । ଇସ୍ ! ହବା ନାଇଁ ଆଜ୍ଞା, ହେବ ।"

"ତା ମାନେ ? ହବନି ? କ'ଣ ମୋ ସାଙ୍ଗେ ଖେଳୁଚ ?"

"ହବା ଆଜ୍ଞା, ହେବ । ବେଶୀ ଟଙ୍କାତ ନାଇଁନ । ଫେରେଇ ଦଉନ୍ ନା ।"

"ସେ ଟଙ୍କା କ'ଣ ବସିଚି ଇଡ଼କୋ ଚେୟାରମ୍ୟାନ ନବ ବୋଲି । ଦେଶ କାମରେ ଖର୍ଚ୍ଚ ହେଇଗଲାଣି ନା । ତାର ଗୋଟେ ବନ୍ଦୋବସ୍ତ କରିବ ନା । ରାଇଟ ଅଫ୍ ଫାଇଟ୍ ଅଫ୍ କିଛି କରି ।"

"ଆଜ୍ଞା ରାଇଟ୍ ଅଫ୍‌ଟା ଗୋଟେ ଜେନେରାଲ୍ ପଲିସିରେ ସିନା ହେବା, ସେଥିରେ ଅନ୍ୟ ଅନେକ ବି ଆସିଯାଇ ପାରନ୍ । କୋଟି କୋଟି ଟଙ୍କାରେ କଥା ପହଞ୍ଚିବା । ତଥାପି ଯଦି ଆପଣ ଇଣ୍ଡଷ୍ଟ୍ରି ମିନିଷ୍ଟର ଆଉ ଚିଫ୍‌ଙ୍କୁ କହି ଦିଅନ୍ ମୁଁ କରିଦେବି ।"

"ମୁଁ ତ ଚିଫ୍‌କୁ କହିବି, ଯାକୁ କହିବି ତାକୁ କହିବି, ତୁମେ କ'ଣଟା କରିବ ? କହଲ ?"

"ଆଜ୍ଞା ।"

''ଆଉ କ'ଣ ଉପାୟ କୁହ, ଆଜ୍ଞା ଆଜ୍ଞା କ'ଣ ହଉଚ। ପାଞ୍ଚ ଲକ୍ଷ ଟଙ୍କା ତ।''

''ଆମେ ଇଣ୍ଡଷ୍ଟ୍ରିଟା ଜବତ୍ କରି ପାର୍‌ବୁ କାଏଁ ?''

''ନା ନା !''

''ମାନେ ଆମେତ ଖାଲି ଇଣ୍ଡଷ୍ଟ୍ରିଆଲ୍ ଏଷ୍ଟେଟ୍‌ର ସେଡ୍‌ଟା ଜବତ କର୍‌ମୁ। ତା ଭିତେରେ କିଛି ଥିବା ଦରକାର ନାହିଁନ।''

''ନା।''

''ଆପଣ ଯଦି ଅନୁମତି ଦିଅନ୍, ସେ ଜେଲ୍‌କୁ ଯାଇ ପାର୍‌ବେ କାଏଁ ?''

''କ'ଣ ହେଲା ! ମତେ ମାରିବ କି ! ଥରେ ସେଠୁ ଫେରିଲେ ସେ ପାର୍ଟି ଟିକଟଟେ ମାରିବ ଜେଲ୍ ଯାଇଥିଲା ବୋଲି। ଲୋକଙ୍କୁ କହିବ ସେ ଜେଲ୍ ଯାଇଥିଲା। ମୋ ନିର୍ବାଚନମଣ୍ଡଳୀ ନେଇଯିବ। ମୁଁ ଯିବି କୁଆଡ଼େ ? ମୁଁ ଯୋଉ ଜେଲ୍ ଯାଇଥିଲି ସେଇଟା ତ ବହୁତ ଦିନ ହେଇଗଲାଣି, ସେ ତ ସଜ ଆସିଥିବ। ଇମିତି କିଛି କହିବାକୁ ବି ସାହସ କରନି। ସେ ବାହାରେ କାହା ସାଙ୍ଗେ କଥା ହଉଚି। ସାଙ୍ଗେ ସାଙ୍ଗେ ଚାଲିଆସିପାରେ। ନା। ଚଳିବନି। ଆଉ କିଛି ଉପାୟ ଭାବ।''

''ହଁ ସାର୍।''

''ଆଉ କ'ଣ ଉପାୟ କୁହ, ହଁ ସାର୍, ହଁ ସାର୍ କ'ଣ ହଉଚ ? ପାଞ୍ଚ ଲକ୍ଷ ଟଙ୍କାତ। ଠିଆ ହେଇଚ ?''

''ହଁ ସାର୍।''

''ବସିଯାଅ।''

''ହଁ ସାର୍।''

''ଏଥର କୁହ।''

''ସବୁତ ଆପଣଙ୍କର ସାର୍। ଜନତାର। ଆପଣତ ଜନତାର ପ୍ରତିନିଧି। ଗୋଟାଏ ସିଧା ସିଧା ଉପାୟ ଅଛି। ଲକ୍ଷ୍ମଣନାଥବାବୁ ଯଦି ବ୍ୟାଂକ୍ରପ୍‌ସି ଡିକ୍ଲେୟାର କରିଦିଅନ୍, ତାହେଲେ ସବୁ ସୁରୁଖୁରୁରେ ହେଇଯିବା।''

''ସୁରୁଖୁରୁରେ। ଶଳେ ଟାକି ବସିଚନ୍ତି। ଶାଗୁଣା ପଲ୍ଲ। କାଲି ଖବରକାଗଜରେ ବାହାର କରିଦେବେ। ଦେଶସାରା ବ୍ୟାପିଯିବ। ଶଳେ କ'ଣ କମ୍ କି। ବିପକ୍ଷବାଲାମାନେ ମତେ କେଳେଇ ପକେଇବେ। ମଡ଼ଖିଆ ଶାଗୁଣା ଶଳେ। ମୁଁ ବିପକ୍ଷକୁ ବି ପଳେଇ ପାରିବିନି।''

ଲକ୍ଷ୍ମଣନାଥବାବୁ ଓରଫ କ୍ୟାବିନେଟ ମନ୍ତ୍ରୀ ଭୋଳାନାଥବାବୁଙ୍କ ବଡ଼ପୁଅ, ବାପାଙ୍କ ଓପରେ ବିରକ୍ତ ହେଇ ଦାନ୍ତ ଚିପି ଚିପି ଗର୍ଜି ଉଠିଲେ : ''ତାକୁ କୁହ ସେ ସମ୍ବଲପୁର,

ବଲାଙ୍ଗୀର, ରାଉରକେଲାର ଅଗରଓ୍ୱାଲ୍, ପଟେଲ୍, ଆଉ ମିରଚନ୍ଦାନୀର ଯେମିତି ବ୍ୟାଡ଼୍‌ଡେଟ୍, ଜେନୁଇନ୍ ଡିଫିକଲ୍‌ଟି ଦେଖେଇ ରାଇଟ୍ ଅଫ୍ କରିଥିଲା ଲକ୍ଷେ ଲକ୍ଷେ ଟଙ୍କା ନେଇ, ଆମର ବି ସେମିତି କରୁ । ଖାଲି ଆମଠୁ ଲାଞ୍ଚଟା ନବନି । ଚୁଙ୍ଗୁଡ଼ିବାଲା ସ୍ମଗ୍‌ଲର ମହାସ୍କନ୍ଧ ବିଶ୍ୱାଳଠୁଁ ବି ନେଇ ନ ଥିଲା । ତା ହେଲେ ? ଅବଶ୍ୟ ସେଇଟା ସି. ଏମ୍. ତାକୁ ଲାଛିବାକୁ ଗୋଡ଼େଇବା ପୂର୍ବରୁ । କିନ୍ତୁ କରିଥିଲା ତ । ଆରେ ଦେଶମାଟିର ସନ୍ତାନଙ୍କ ପାଇଁ କିଛି ତ କରିବ, ନା ନାହିଁ ?''

ପି. ଏ. ଆସି ଗାଇଦେଇ ଗଲେ ବହୁତ ଲୋକ ତଳେ ଅପେକ୍ଷା କରିଚନ୍ତି । ତିନିଜଣ ସ୍କୁଲ୍ ମାଷ୍ଟର୍ ସସ୍‌ପେଣ୍ଡ ହେଇଥିବା ଭାରୀ ପକେଟ୍ କରି, ଇତସ୍ତତଃ ଲାଜମୁହାଁ ଇତ୍ୟାଦି ହେଇ କ'ଣ କହିବେ କ'ଣ କରିବେ ଭାବରେ; ଜଣେ ଇନ୍‌ସପେକ୍ଟର ଅଫ୍ ସ୍କୁଲ୍‌ସ୍ ଅନିର୍ଦ୍ଦିଷ୍ଟ କାରଣରୁ ଚାରିଜଣ ହେଙ୍କଡ଼୍ ବାଜ କଲେଜ ୟୁନିଅନ ପ୍ରେସିଡେଣ୍ଟ (ପଦମ୍‌ପୋଖରୀ, ଭୁଷଣ୍ଡପୁର, ଖଲିଆପଦା, ପଞ୍ଚପଲ୍ଲୀ) ତାଙ୍କ କଲେଜମାନଙ୍କୁ ନିମନ୍ତ୍ରଣ କରି ୟୁନିଅନ ପଇସାରେ ସମ୍ରାଟ୍ ହୋଟେଲ୍‌ରେ ଖାଇ, ପିଇ, ଶୋଇ, ଉଠି... । ବି.ଜେ.ବି, ରେଭେନ୍‌ସା, ରମାଦେବୀ କଲେଜମାନଙ୍କରୁ ତିନିଜଣ ବଦଳି ହେଇଥିବା ଅଧାପକ/ପିକା, ରସଗୋଲା, ଛେନାଗଜା, ଜିଲିପି ବଡ଼ ବଡ଼ ହାଣ୍ଡିମାନ ଧରି, ଯାହାକୁ ପି.ଏ. ଶୀଘ୍ର କରି ତାଙ୍କ ରୁମରେ ରଖି ଦେଇଛନ୍ତି କାରଣ ସବୁଗୁଡ଼ାକ ଓପରକୁ ଯିବାର କିଛି କାରଣ ନାହିଁ, ତାଙ୍କ ଭିତରେ ବିଶ୍ୱମ୍ଭର ପ୍ରଧାନ, ବୀଣାପାଣି ଷଡ଼ଙ୍ଗୀ, ଆଉ ବିମର୍ଷ ଡକ୍ଟର ଏସ୍. କୁମାର (କିଷ୍କିନ୍ଦା) ମିଶ୍ର ''ସେ ସେକ୍ରେଟେରୀଟା ଲାଞ୍ଚ ମାଗୁଚି ଆଜ୍ଞା । କହିଲା ବକ୍ତୃତା ଭଲ ଥିଲା ହେଲେ ମନ୍ଦିରକୁ କ'ଣ କେହି ଖାଲି ହାତରେ ଯାଏ ? ନଥିଂ ବିଗେଟ୍‌ସ୍ ନଥିଂ । ରିଡ଼୍ କିଂ ଲିଅର... ।'' କ୍ଲାନ୍ତ, ଆବସଲ୍ୟୁଟ୍ ଆଲକହଲ୍ ଲାବରେଟରୀରେ ପାଣି ମିଶାଇ ପିଇ ବି ମନ ଫୁଲୁନି । ଶାଗ ପରି ଲତ ପତ ।

''କ'ଣ ହେଲା ! ସେକ୍ରେଟେରୀ ଟଙ୍କା ମାଗୁଚି ମନ୍ତ୍ରୀ ଥାଉ ଥାଉ । କି ଧୃଷ୍ଟତା ! କହୁଚି ମନ୍ତ୍ରୀଙ୍କୁ ଦଉଚି କରି ଟ୍ରାନ୍‌ସଫର୍ । ହେଲେ ସହଜ ଜନ୍ତୁ କି ? ମୁଖ୍ୟଙ୍କ ଭାଣେଜୀ ଜୋଇଁ । ଏକାଥରେ ଷ୍ଟେଟ୍ ବାହାରକୁ ଆଉଟ୍ କରିଦେଲେ ଭଜୁଥିବ । କାମଟା କଷ୍ଟ । କେତେ ବର୍ଷ ହେଲାଣି କଟକ-ଭୁବନେଶ୍ୱରରେ ?''

''ଏଗାର ।''

''ଆପଣଙ୍କର ?''

''ସତର, ସାଢ଼େ ଷୋହଳ ।''

''ଆଉ... ?''

"ଦଶ ବର୍ଷ ବି ହେଇନି ।"

"କଷ୍ଟ । ଭାରି କଷ୍ଟ କାମ । ହେଲେ... କେତେ ମାଗୁଥିଲାଟି ସେ ସେକ୍ରେଟେରୀ... ?"

ଡା. ନନ୍ଦ ବିଶିଆଙ୍ଗୁଠିଟା ହଲେଇ ଖୋଜିଲେ ।

ମୁଖ୍ୟମନ୍ତ୍ରୀ କହିଲେ   "ଉଁ ଉଁ ହଃ !"

ଡା. ନନ୍ଦ କହିଲେ   "ନାଇଁ, କିଛି ହବନି, ଆଉ ଟିକିଏ ତ ।"

ସେ ଏପଟ ସେପଟ ଆଙ୍ଗୁଠି ବୁଲାଇ ଖୋଜିଲେ, ଚିପି ଦେଖିଲେ ।

ମୁଖ୍ୟମନ୍ତ୍ରୀ ମୁହଁମାଡ଼ି ଶୋଇଥିଲେ । ସେ କୁଛେଇଲେ ।

ଡା. ନନ୍ଦ ଆଙ୍ଗୁଠିଟା ଓପର ତଳ କଲେ ।

ମୁଖ୍ୟମନ୍ତ୍ରୀ କହିଲେ   "ଆହାଃ ।"

ଡା. ନନ୍ଦ କହିଲେ : "ହେଇଗଲା ।"

ସେ ଆଙ୍ଗୁଠିଟା କାଢ଼ିଆଣି ବାଥରୁମ ଭିତରକୁ ଚାଲିଯାଉଥିଲେ କିନ୍ତୁ ମୁଖ୍ୟମନ୍ତ୍ରୀ କହିଲେ   "ରୁହ, ମୁଁ ଯିବି ।"

ଡା. ନନ୍ଦ ହାତଟାକୁ ଟେକି ଧରି ବେଶ୍ ବେଳ ଅପେକ୍ଷା କଲେ ଓ କିଛି ସମୟ ପରେ ଗ୍ଲୋଭ୍‌ସ୍‌ଟା କାଢ଼ି ଝରକା ବାଟେ ଫୋପାଡ଼ିବାକୁ ଯାଉଥିଲେ ପୁଣି ରହିଗଲେ । କାଗଜରେ ଗୁଡ଼େଇ ତାକୁ ବ୍ୟାଗ୍ ଭିତରେ ପୂରେଇ ଦେଇ ପ୍ରେସ୍‌କ୍ରିପସନ୍ ଲେଖିବସିଲେ ଗୋଟିଏ ପ୍ୟାଡ୍ କାଢ଼ି । ପ୍ୟାଡ୍‌ଟି ଔଷଧ କମ୍ପାନୀ ଦେଇଥିବା ପ୍ୟାଡ୍ ନୁହେଁ, ନିଜ ନାଁ ଛପା ପ୍ୟାଡ୍ । ମୁଖ୍ୟମନ୍ତ୍ରୀ ଯେବେ କାହାକୁ ପ୍ରେସ୍‌କ୍ରିପ୍‌ସନ୍ ଦେଖେଇବେ ତା ହେଲେ । ଲୋକେ ଜାଣନ୍ତୁ । ଚିଫ୍ ବି ଯେବେ ଦେଖିବେ ନାଁଟା ଦିଶିବ ।

ମେଡିକାଲ୍ କଲେଜ୍ ଭାଷାରେ ମହା ପ୍ରୋଷ୍ଟାଟିଆ । କ୍ୟାନ୍‌ସର ହେଇ ମରନ୍ତା କି । ମରିବନି ଆଉ କ'ଣ ଦିନେ । ଯିବ କୁଆଡ଼େ ? ହେଃ ! କ'ଣ ମୁଁ ଭାବୁଚି । ଭଲ କରି ଦବାନା । ଭଲଟା କରିଦେଲେ ଆମର ଆଉ ଚିନ୍ତା ନାହିଁ । ପୋଷ୍ଟିଂ ଯୋଉଠି ଇଛା । ପ୍ରାକ୍‌ଟିସ୍ ଯେତେ ଇଚ୍ଛା । "ଡର କାହାକୁ ଭୟ କାହାକୁ ମନ୍ତରୀ ଅଛନ୍ତି ଚଉବାହାକୁ ।" କିନ୍ତୁ ଏ ଶଳା ଏନ୍‌ଲାର୍‌ଜଡ଼୍ ପ୍ରୋଷ୍ଟେଟ୍ ଓଷୁଅକୁ ମାନିବନି । କିଛିଟା ମାସାଜ୍ କରି ଇମ୍ପ୍ରୁଭ୍ କରାଯାଇପାରେ । ଶେଷକୁ ସର୍ଜରୀ ଦରକାର । କିନ୍ତୁ ତା'ହେଲେ ତ ସର୍ଜନ ବାହାବା ମାରି ନେଇଯିବ । ମେଡିସିନ୍‌ର ନନ୍ଦ ପାରିଲାନି, ସର୍ଜରୀର ମହାପାତ୍ର ଭଲ କରିଦେଲା । ଉଁହୁଁ । ଛାଡ଼ିବିନି ଶଳାକୁ କଦାପି । ଏଡ଼େ ଶୀଘ୍ର ଛାଡ଼ିବିନି । ଜମା ତ ଛାଡ଼ିବିନି । ଘୁଷୁରି ପ୍ରୋଷ୍ଟେଟ୍ ଫୋଡ଼ିବି । ନ ହେଲେ

ଯାହା ମିଳିବ ପୋଡ଼ିବି । ଦରକାର ହେଲେ ଗୋଟେ ଗୋଡ଼ ଫୁଟାପାଣିରେ ବୁଡ଼େଇ ଠିଆ କରେଇବି ।

"ଆପଣଙ୍କ ସି.ଏମ୍. କାହାନ୍ତି ?"

"ଏଁ ? ଆଜ୍ଞା ? ଓଃ..."

ଶ୍ରୀମତୀ ମୁଖ୍ୟମନ୍ତ୍ରୀ ବେଶ୍ ସୁନ୍ଦରୀ । ହସକୁଳୀ ବି । ଆଖିରେ ଚଞ୍ଚଳତା । ପାତେଳା ଛନ୍ ଛନ୍ ଛାଟି ଦେଲା ପରି ଦେହ । ଚମ୍ପାଫୁଲ ପରି ରଙ୍ଗ । ତାଙ୍କ ନାଁ ମାହେଶୀ । ତାଙ୍କ ବାପା ସ୍କୁଲ ସି.ଆଇ., ମାଷ୍ଟ୍ରଙ୍କ ଟ୍ରାନ୍ସଫର୍ ଲାଞ୍ଚ ଟଙ୍କାରୁ ସେକାଳରେ ତିରିଶହଜାର ଯଉତୁକ ଦେଇ ଝିଅ ବାହା କରେଇଥିଲେ । ଆଜିର ସି.ଏମ., ବିଜୟବଲ୍ଲଭ ପଟ୍ଟନାଏକ୍ ସେତେବେଳେ କପି କରି ଲ' ପାସ୍ କରି ଚୀନାବାଦାମ ଲଢ଼େଇ ଓକିଲ ଥିଲେ । "ଭଲ ପରିବାର । ପିଲା ପଲିଟିକ୍ସ୍ କରୁଚି । ନ ହେଲା ଏବେ ଓକିଲ ହବ । ବୟସ ଟିକେ ଅଧିକା । ଆଉ ଲୋକେ କହୁଥିବା ଚୋରି ଖୁଣୀ କଥା ଶୁଣି ବସିଲେ... ।" ସେ କହିଥିଲେ : "କାହିଁକି ବାପା ତାକୁ ପଇସା ଦବ ମ, ସେ ବଳେ ଆସିବ ।" ବାପା କହିଲେ "ଏଁ ?" ମାହେଶୀ ସେତେବେଳେ ଏମ୍.ଏ. ପଢୁଥିଲେ ।

"ଆପଣଙ୍କର ଦେଖାଦେଖି ସରିଲାଣି ?"

"ୟେ, ମାନେ, ସାର୍ ବାଥ୍ରୁମ..."

"ପି.ଆର୍. କଲେ ?"

"ଏଁ ?"

"କ'ଣ ଦେଖିଲେ ?"

"ଆଜ୍ଞା ?"

"ଆପଣ ଏମିତି ଚୋରଙ୍କ ପରି ଥଅମମ କ'ଣ ହଉଚନ୍ତି । କିଛି କ'ଣ ଅସୁବିଧା ଅଛି ?"

"ନାଇଁ ଆଜ୍ଞା । ବିଶେଷ କିଛି ନାହିଁ । ମୁଁ ସବୁ ଠିକ୍ କରିଦେବି । ତାଙ୍କୁ ମୋ ହାତରେ ଛାଡ଼ିଦିଅନ୍ତୁ ।"

"ଆଉ ଆମେ କୁଆଡ଼େ ଯିବୁ ?"

"ଆଜ୍ଞା ?"

"ବୁଝି ପାରିଲେନି ?"

"ଆଜ୍ଞା !"

''କ'ଣ ଆଉ ବିଲାତ୍ ଫିଲାତ୍ ଗଲେ । ଏତେ ପାଠ ପଢ଼ିଲେ ।''

''ଆଜ୍ଞା ।''

ମାହେଶୀ ହସଚାପି ମୁଣ୍ଡ ହଲେଇଲେ । ହାତ ପଛଟାକୁ ଭାଙ୍ଗି ବ୍ଲାଉଜ୍ ହୁକ୍ ଖୋଲିଲେ ।

''ଆପଣ ଟିକିଏ ଡ୍ରଇଁରୁମକୁ ନ ହେଲେ ବାରଣ୍ଡାକୁ ଯିବେ କି ? ନ ହେଲେ ସେପଟକୁ ମୁହଁ କରନ୍ତୁ, ମୁଁ ଲୁଗା ପାଲଟିବି, ମୋର ମିନିଷ୍ଟର୍‌ସ୍ ୱାଇଭ୍‌ସ୍ ଆସୋସିଏସନ୍‌ର ମିଟିଂ ଅଛି, ଅଧଘଣ୍ଟାଏ ଡେରି ହେଇଗଲାଣି, ପାଞ୍ଚଟା ଟେଲିଫୋନ୍ ଆସିଲାଣି । ଆଜି ଇମ୍ପୋର୍ଟାଣ୍ଟ୍ ମିଟିଂ ଅଛି । ଆଇ.ଏ.ଏସ୍.ୱାଇଭସ୍ ଆସୋସିଏସନ୍ ଆମ ସାଙ୍ଗରେ ମର୍ଜ କରିବେ ବୋଲି ଦରଖାସ୍ତ କରିଚନ୍ତି । ମଜା ନା ? ରଟର୍‌ସ୍ ।'' ସେ ହସିଲେ ।

''ମୁହଁ ବୁଲାନ୍ତୁ ।''

''ମୁଁ ବାହାରକୁ ଯାଉଚି ଆଜ୍ଞା ।''

''ଯାଆନ୍ତୁ ।''

ବାହାରି ଆସିଲାବେଳକୁ ଡା. ନନ୍ଦ ମୁହଁ ନ ବୁଲେଇ କଣେଇ ଚାହିଁଲେ ମାହେଶୀ ଦେବୀଙ୍କ ପଛପଟକୁ ।

ମୁଖ୍ୟମନ୍ତ୍ରୀ ବିଜୟବଲ୍ଲଭ ପଟ୍ଟନାଏକ୍ କଛାଟାକୁ ଭଲ କରି ଖୋଷି, ଆଶ୍ୱସ୍ତ ହେଇ, ବାହାର ରୁମ୍‌ରେ ଧାଡ଼ିବାନ୍ଧିଥିବା ଲୋକଙ୍କ ଠିଆ ନମସ୍କାରକୁ ମୁଣ୍ଡ ହଲେଇ, ପାନଖିଆ ଦାନ୍ତକୁ ହେଟାପରି ଦେଖାଇ, ନୂଆ ପୁରୁଣା ଲୋକଙ୍କୁ ଆଖିରେ ପରଖି, ସେମାନଙ୍କର ଶୀଘ୍ର ନିର୍ବାଣ କାମନା କରି ବାହାରିଆସିଲେ ଦିନକର ସଉଦା ପାଇଁ ।

ସେ ଯେତେବେଳେ ନିଜ କୋଠରିରେ ପଶିଲେ, ମୁଖ୍ୟମନ୍ତ୍ରୀ ଥମ୍ କରି ଠିଆ ହେଇଗଲେ । ତାଙ୍କର ଦଶହଜାରିଆ ବୁଲନ୍ତା ଚଉକି ଉପରେ ଗୋଡ଼ ଟେକି ବସିଥିଲେ ତାଙ୍କ ସେଇ ଆଦିମ କୁ-ଗ୍ରହ । ପିଲାଦିନ ସାଥୀ, ଯିଏ ତାଙ୍କ ଭିତର ବାହାର ସବୁ ଜାଣିଥିଲା, ଯିଏ ଏବେ ତାଙ୍କ ବିରୋଧରେ ଉଠି ତାଙ୍କ ଶତ୍ରୁ ପ୍ରଧାନମନ୍ତ୍ରୀ ସାଙ୍ଗେ ମିଶିଥିଲା । ମହାସ୍କନ୍ଧ ତା ନାଁ । ତା'ର ଆଖି ଦି'ଟା ପର୍ବତ ପରି ସ୍ଥିର, ନିଆଁ ପରି ତୀକ୍ଷ୍ଣ । ଖସି ଆସିଚି ବୋଧେ । ଆରପୁରରୁ ।

''ଆହାରେ ଆମ ମୁଖ୍ୟମନ୍ତ୍ରୀ !''

## ।। ୨ ।।

## ସମୁଦ୍ରକୁ ଶଙ୍ଖେ ପାଣି
## କ'ଣ ହବ କିଏ ଜାଣି

ଜିଂ ଜିଂ ଜିଂ ଜିଂ ଏହ୍ ଆହ୍ ଓହ୍ ଘେର୍ସ୍କୁନ୍ ।

ଇ ଇ ଇ ଇ ଇ ଇ ଇ ଇ ଇ ଇ ଇ ଇ ।

ବାବା ବୁଗିଙ୍କ ଆଖିରେ କଳାଆଲୁଅ ଘୋରି ହେଇ ଫାଟିପଡ଼ିଲା । ସେ ଉଠିପଡ଼ିଲେ ଚମକି ।

ହେଲା ହେଲା । ମୁଁ ତାକୁ ଖୋଜି ବାହାର କରିବି । କହିଲି ପରା ! ବାପାଗୁଡ଼ାକ କାହିଁକି ଥାନ୍ତି କେଜାଣି !

ସେ ଫଟ୍ କରି ଛାଡ଼ିଦେଲେ ସ୍କାନ୍ ଜାଲକୁ ମୂର୍ତ୍ତିଖୋଜ ପ୍ରୋଗ୍ରାମର ପରିସୀମା ଭଲଭାବେ ପରୀକ୍ଷା କରି । ସେ ଅପେକ୍ଷା କରି ରହିଲେ ଜୀବ-ସୃଷ୍ଟି କିରଣ ଧାରାକୁ ଧରି ।

ନୋଳିଆ ପିଲାଟି ଥମ୍ କରି ଠିଆ ହେଇପଡ଼ିଲା । ତା ଗୋଇଠି ଦି'ଟା ଓଦା ବାଲି ଭିତରେ ଦବିଗଲା । ଆଖି ଦି'ଟା ବଡ଼ ବଡ଼ କରି ସେ ନିରେଖି ଚାହିଁଲା । ବାଁ ହାତ ବୁଢ଼ାଆଙ୍ଗୁଠିଟା ପାଟିରେ ପୂରେଇ ଜୋର୍ ଜୋର୍‌ରେ ଚୁଚୁମେଇବାକୁ ଲାଗି ସେ ଆସ୍ତେ ଆସ୍ତେ ଆଗକୁ ବଢ଼ିଲା, ଆଉ କିଛିବାଟ ଆଗେଇ ଯାଇ ପୁଣି ଥମ୍ କରି ଠିଆ ହେଇପଡ଼ିଲା ।

ଜିନିଷଟି ବେଶୀ ଦୂରରେ ନ ଥିଲା ଦଶ ପନ୍ଦର ପାହୁଣ୍ଡ ହବ । କିନ୍ତୁ ସେ ବୁଝିପାରୁ ନ ଥିଲା ସେଇଟା କ'ଣ । ଗୋଟିଏ ବୁଜୁଳା ପରି କ'ଣ ମେଦାଏ ଆଗୁଆ ଢେଉର ଧାରରେ ପଡ଼ିଥିଲା, ଯାହା ତାକୁ ବେଳେ ବେଳେ ମଣିଷ ପରି, ବେଳେ ବେଳେ ସମୁଦ୍ରତଳର ଦଳବୁଦା ପରି, ବେଳେ ବେଳେ କଟାକଟି ଛିଣ୍ଡାଛିଣ୍ଡି ହେଇଥିବା ଅକ୍ଟୋପସ୍ ବା ମାଛ ପରି ଦିଶୁଥିଲା । ତାକୁ କିନ୍ତୁ କିମିତି କିମିତି ଖରାପ ଲାଗୁଥିଲା ଯିମିତି ଗୋଟେ ଅଶୁଭ, ଭୂତପ୍ରେତ, କିଛି ଗୋଟେ ଡରିବାର ଜିନିଷ । ତା କଳା ମଚ୍‌ମଚ୍ ମୁହଁରେ ଜକ୍‌ଜକ୍ ଆଖି ଦି'ଟା ତୀଖା ନଜରରେ ସେ ଜିନିଷକୁ ଚାହିଁଥାଏ । ସମୁଦ୍ରର ଘୁଁ ଘୁଁ ତା କାନ ଛୁଉଁ ନ ଥାଏ । ବଡ଼ ଢେଉ ଗୋଟିଏ ଦୂରବାଟ ମାଡ଼ିଆସି ସେ ଜିନିଷଟା ଉପରେ ଭାଙ୍ଗିପଡ଼ିଲା ଆଉ ତାକୁ ଦୋହଲେଇ ଦେଲା । କ'ଣ ଗୋଟେ ମଣିଷ ହାତଭଳିଆ ବୁଜୁଳାରୁ ବାହାରି ବାଲିରେ ପଡ଼ିଲା ପରି ଦିଶିଲା ଆଉ ତା

ସାଙ୍ଗେରେ ରଙ୍ଗୁ ଛପ୍ କରି ଢେଉ ଫେରରୁ ବୁଲିପଡ଼ି ଗାଁଆଡ଼େ ଚାହିଁଲା । ଦୂରରେ, ବେଶ୍ ଦୂରରେ ଗାଁଟା ଖୁବ୍ ଦୂର ଲାଗିଲା ତାକୁ । ଡାହାଣପଟେ ସମୁଦ୍ରଟା ଜୋର୍ ଜୋର୍‌ରେ ଫୁଲିଉଠି ମାଡ଼ିଆସିଲା ଭଳିଆ ଲାଗିଲା ତାକୁ, ଆଉ ବାଁପଟର ଝାଉଁବଣ ହଠାତ୍ ଘୋର ନିଘଞ୍ଚ ଆଉ ଅନ୍ଧାରିଆ ଦିଶିଲା । ତା ଛାତି କ'ଣ ହେଇଗଲା, ପେଟଟା କାମୁଡ଼ି ଧରିଲା ପରି ଲାଗୁଥାଏ । ମୁଣ୍ଡ ବୁଲେଇ ଚଟ୍‌କରି ପଛକୁ ଚାହିଁଲା ରଙ୍ଗୁ   ସେ ଜିନିଷଟା ଢେଉରେ ଆଉଥରେ ଉବୁକି ଉଠୁଥିଲା ।

ସେ ମୁଣ୍ଡବୁଲାଇ ଗାଁଆଡ଼କୁ ଧାଇଁବାକୁ ଲାଗିଲା ପ୍ରାଣମୂର୍ଚ୍ଛା । ଥରେ ମାତ୍ର ଅନେକ ବାଟ ଦଉଡ଼ିଗଲା ପରେ ମୁଣ୍ଡବୁଲେଇ ଚାହିଁଥିଲା ସେ, ଥରେମାତ୍ର । ଝୁଣ୍ଟି ପଡ଼ିଯାଇଥାନ୍ତା । ତାକୁ ଲାଗିଲା ଯିମିତି ଢେଉ ମାଡ଼ରେ ସେ ବୁଜୁଳାଟା ଖେଳେଇ ହେଇଯାଇ ଗୋଟେ ଅଜଣା ଜନ୍ତୁ ପରି ହଲ ହଲ ହଉଚି । ସେ ଦୌଡ଼ିଚାଲିଲା । ସେ ସୁଖନ୍ତା ଜାଲରୁ ଆଡ଼ହେଇ, ଖୋଲା ନାଆକୁ କଡ଼େଇ ଧାଇଁଗଲା । ଗାଁଟା ଦୂର ନ ଥିଲା ।

ଉବୁଡ଼ା ବଡ଼ ଡଙ୍ଗା ପାଖ କାଟି ଦୌଡ଼ିଗଲା ବେଳକୁ କାମ୍‌ଦା ଗୋଟେ ଡଙ୍ଗାର ଆରପଟେ ପେଟତଳ ଛାଇରୁ ସାପ କାତି ଭଳି ହାତ ଆଙ୍ଗୁଠିରେ ଗୁଡ଼େଇ ଧରିଲା ରଙ୍ଗୁର ଡାହାଣ ଗୋଡ଼କୁ, ସେ ଧାଇଁଗଲା ବେଳକୁ । ରଙ୍ଗୁ ଧସ୍‌କିରି କଚାଡ଼ିହେଇ ପଡ଼ିଲା ବାଲିରେ ମୁହଁମାଡ଼ି ।

''ରଣା ଇଠି ଆଉ ମୁଁ ଖୁଜୁଚି ତତେ ଏକାନି ସେକାନି । ଆରେ, କ'ଣ ହେଲା ତୋର ?''

କାମ୍‌ଦାର କଣ୍ଠୁ । ସେ ରଙ୍ଗୁକୁ ଝାଉଁବଣ ବୁଲେଇ ନବାକୁ ଖୋଜୁଥିଲା । ଏବେ ସେ ତା ଗୋଡ଼ ଛାଡ଼ିଦେଇ ଉଠିବସିଲା ଆଣ୍ଠେଇ ଡଙ୍ଗାତଳୁ ଗଡ଼ିଆସି ।

''ଆରେ ! କିଅଣ ହେଲାରେ ?''

କିଛିବେଳ ରଙ୍ଗୁ କଥା କହି ପାରିଲାନି । ଧଇଁ ପେଲୁଥିଲା । ତା'ପରେ ସେ ଦନାକ୍‌କରି ଡେଇଁ ଉଠି ବୁଲିପଡ଼ି ଧାଇଁ ପଳେଇଲା ଗାଁ ଆଡ଼େ । କାମ୍‌ଦା ତା ପଛରେ ଧାଇଁଲା, କିନ୍ତୁ ତା ଉତ୍ସାହ କମି ଯାଉଥିଲା । ତାକୁ ଡର ଲାଗୁଥିଲା କାଳେ ରଙ୍ଗୁ କହିଦବ ସମସ୍ତଙ୍କୁ, ଯିମିତି ଆଗଥର ଧମକେଇଥିଲା ।

ରଙ୍ଗୁ ସିଧା ଦୌଡ଼ିଗଲା ବୁଢ଼ା ମୁର୍ମୁ ପାଖକୁ ଆଉ ଆଣ୍ଠୁମାଡ଼ି କଚାଡ଼ି ବସିଲା ସେ ଗୋଟାଏ ଓଲଟା ଡଙ୍ଗା ପାଖରେ, ଯାହା ଓପରେ ମୁର୍ମୁ ବସି ଛିଣ୍ଡାଜାଲ ସଜାଡୁଥିଲା ସିଲେଇ କରି ।

ମୁର୍ମୁ ପିଲାଟିକୁ ଚାହିଁଲା, ତାପରେ କ୍ଷଣକ ପେଇଁ ଅଳପ ଦୂରରେ ଥମି ଯାଇଥିବା କାମ୍‌ଦାକୁ । ସେ ରଙ୍ଗୁ ଆଖିରେ ଦେଖିଲା ଭୟ ।

"କିଅଣ ହେଲାରେ ପୁଅ ?"

"ସେଠି," ରଙ୍ଗୁ ଛେପ ଢୋକି ନିଃଶ୍ୱାସ ନବାକୁ ରହିଗଲା ମୁର୍ମୁ ମୁହଁରୁ ଆଖି ନ ଛଡ଼େଇ । "ହେଇ ସେଠି । କ'ଣ ଗୋଟେ ଅଛି, ପଡ଼ିଚି । କେବେ ଦେଖିନି । ଆଉ ହାତ ହଲେଇଲା । ଗୋଟେ କ'ଣ ଖରାପଟା । ଦିହ ଶିରି ଶିରି ହେଇଗଲା । ସେଠି ଅଛି ।"

ସେଇଟା ଥିଲା ମଣିଷଟାଏ ଏକଦା । ଯାହା ବାକିଥିଲା ପଡ଼ିଥିଲା । ତା ଡାହାଣଗୋଡ଼ଟା ଭାଙ୍ଗି ଯାଇଥିଲା ନଳୀହାଡ଼ ଦି' ଖଣ୍ଡ ହେଇ, ମାଉଁସ ଚମଡ଼ା ଫୁଟି ବାହାରି ପଡ଼ିଥିଲା, ବାଁ ଗୋଡ଼ ପେଣ୍ଡାରେ ଗହୀରିଆ କଟାଟା ଆଣ୍ଠୁତଳ ବାଁ ପଟୁ ଗୋଇଠି ପର୍ଯ୍ୟନ୍ତ ଶେତା ପଡ଼ି ସୈବୁଜେଇ ଆସୁଥିଲା । ଗଣ୍ଡିରେ ତିନିଟା ଗହୀର କଟା ଛାତିରୁ ପେଟ ପର୍ଯ୍ୟନ୍ତ ଫୁଲି ଉଠିଥିଲା, କିନ୍ତୁ ସମାନ ସମାନ ସମାନ୍ତରାଳ ଯିମିତି କାରିଗରର କାରୁକାର୍ଯ୍ୟ । ମୁହଁଟା ଧର୍ଷିତ, କଟା ଖେଞ୍ଚାରେ ଗାଲରେ ଗାତ ହେଇ ଦାନ୍ତ ଦିଶୁଥିଲା, ନାକ ଛେଚାହେଇ ମେଞ୍ଚା ହେଇଯାଇଥିଲା । ଡାହାଣକପାଳ କାନମୁଣ୍ଡା ଓପର ଫୁଲି ରକ୍ତବୋଳା ଖଣ୍ଡିଆ ଖାବରା, ବାଳ ଆଉ ଚମଡ଼ା ଟାଣି ନିଆଯାଇଚି ।

ଗାଁର ପ୍ରାୟ ସମସ୍ତେ, ଯିଏ ସମୁଦ୍ରକୁ ଯାଇ ନ ଥିଲେ ମାଛମାରି, ଧାଇଁ ଆସିଲେ ସେ ଜାଗାକୁ ମୁର୍ମୁ ପଛେ ପଛେ । ରଙ୍ଗୁ ଧାଇଁଯାଇ ମୁହୂର୍ତ୍ତକରେ ଗାଁ ସାରା ଖବର ଦେଇ ଦେଇଥିଲା ।

ମାଗୀ ପିଲାଦିନୁ ତାକୁ ବାଲିରୁ ପାଇଲା ବେଳୁ ସମସ୍ତେ ତାକୁ ଏଇ ନାଁରେ ଡାକି ଆସିଚନ୍ତି, ରାଗରେ ଗରଗର ହେଇଯାଇଥିଲା, କାରଣ ତାକୁ କେହି ଚାହୁଁ ନ ଥିଲେ । ତା ଭଲ ନାଁ ଥିଲା ମାତଙ୍ଗୀ, ମୁର୍ମୁ ବାଛି ବାଛି ଠାକୁରାଣୀଙ୍କ ନାଁ ଦେଇଥିଲା ତାକୁ ଆପଣେଇନେଇ । ଗାଁ ମାଇପେ କିନ୍ତୁ ତାକୁ କୋଉ ମାଗିଖିଆର ଫୋପଡ଼ା ପିଲାବୋଲି ମାଗୀ ନାଁ ଦେଇଥିଲେ । ଗାଁ ମିଣିପେ କିନ୍ତୁ ଲୁଚେଇ ଡାକୁଥିଲେ ମାଗୀସୁନ୍ଦରୀ । ସେ ସୁନ୍ଦର ଭାବରେ ଧୀରେ ଧୀରେ ଆଣ୍ଠେଇପଡ଼ିଲା ସେ ଲୋକ ପାଖରେ, ତୃପ୍ତିକର ତା ଧୂସର ଆଣ୍ଠୁ ଦି'ଟା ବାଲିରେ ମାଡ଼ି । ଆଣ୍ଠୁ ଦି'ଟି ଭିତରେ ପ୍ରାୟ ଅଠର ଇଞ୍ଚ ଦୂରତା ତା ଅଣଓସାରିଆ ଶାଢ଼ିଟାକୁ ଟାଣିଧରିଥିଲେ, ଯିମିତିକି ପୁରୁଷର ଇଚ୍ଛା ହବ ସେ ବାଲିରେ ଗଡ଼ିପଡ଼ି ଆଖିପୂରେଇ ପିଇଯା'ନ୍ତା କୁକୁର ପରି ଜିଭ କାଢ଼ି, ଆଉ ମାଇପିମାନେ ମୁହଁ ବୁଲେଇ ନିଅନ୍ତେ ଅସହିଷ୍ଣୁତାରେ ଅନ୍ୟ ମାଇପିଙ୍କ ଗହଣରେ "ଛି ଛି !" କହି । ସ୍ୱାମୀ ଯଦି ତାଙ୍କ ପାଁଝୁଲି ପାଖେ ଲସର ପସର ହଉଥାନ୍ତେ

ଶିକୁଳିରେ ସେ କହନ୍ତେ : ''ହୁଁଃ ! ଚାଲ ଚାଲ ଏଠୁ ଯିବା ଭାରି ।'' ହୁଏତ ଏକା ଥିଲେ କାନ୍ଧ ହଲେଇ ମୁହଁ ଆଡ଼େଇ ନିଅନ୍ତେ ଦୀର୍ଘଶ୍ୱାସ ଛାଡ଼ି, ଅବା ହୁଏତ - ଏଇଟା ଷ୍ଟାଟିଷ୍ଟିକ୍ସ୍ ହିସାବରେ ଅତି ନଗନ୍ୟ ସ୍ମ୍ଭାବନା, ଯଦିଓ ଅସମ୍ଭବ ନୁହେଁ - ଖୁସୀରେ କହନ୍ତେ ଯଦି ବିଲାତି ହେଇଥାନ୍ତେ, ''ଦେଖ, କି ଆଣ୍ଟୁ !'' ଆଉ ମାର୍କିନ ହେଇଥିଲେ, ''ବ୍ୟାଓ, ଇଏ ଯେ ଆଣ୍ଟୁ !'' ଆଣ୍ଟୁ । ହୁଃ ।

ବିନା ଦ୍ୱିଧାରେ ସାବଲୀଳ ଭାବରେ ମାଗୀ ତା ଡାହାଣହାତ ବଢ଼େଇ ଲୋକଟିର ଗୋଡ଼ଟା ଛୁଇଁଲା । ଡାହାଣ ଗୋଡ଼ଟା । ମାଂସପେଶୀ ଦବିଲା ମାଛ ପରି । ହାଡ଼ ଜାଳେଣି କାଠପରି । ତା ପେଟ ଭିତର ଗଇଁଠେଇ ହେଇ ଓଟାର ଉଠିଲା । ସେ ଛେପଢୋକି ଥରିଲା ଭିତରକୁ ବାହାରୁ ଚାପିଧରିଲା । ବିଧ୍ୱସ୍ତ ମୁହଁର ଛିଣ୍ଡା ଭିଣା ଶେତା ଚମଡ଼ା ତା ଆଖି ଦି'ଟାକୁ ଭିଡ଼ି ଧରିଲା । ନିଃଶବ୍ଦରୁ ଶବ୍ଦଟାଏ କୁଆଡୁ ଆସି ତା ଛାତି ଭିତରେ ଘୋର ଗର୍ଜନ କରିଉଠିଲା । କିନ୍ତୁ କିଛି ଠିକ୍ ଶୁଭିଲାନି । ଜୀବନର ବାଇଶି ବର୍ଷରେ ତାକୁ କେବେ ଇମିତି ଲାଗି ନ ଥିଲା । ଅନେକ ପୁରୁଷଙ୍କୁ ସେ ଛୁଇଁଥିଲା । ଅନେକ ପ୍ରକାର ଅନୁଭୂତି ତାର ଥିଲା । ମଣିଷକୁ ମାଡ଼ଖାଇ ରକ୍ତାକ୍ତ ହବାର ସେ ଦେଖିଛି । ତିନୋଟି ମଲା ମଣିଷ ବି, କିନ୍ତୁ କେବେ ଇମିତି ଲାଗି ନ ଥିଲା ତାକୁ । ଯା ମୁହଁରୁ ସେ ଆଖି ଛଡ଼େଇ ଆଣିପାରିଲାନି, ଯା ଦେହରୁ ସେ ହାତ ଉଠେଇ ଆଣି ପାରିଲାନି । ସେ ଗୋଡ଼ କଡ଼େ କଡ଼େ ହାତ ଆଉଁଶି ଆଣିଲା ଗୋଇଠି ଆଡ଼କୁ ।

କାମ୍‌ଦା କହୁଥିଲା : ''ବିଲୁକୁଲୁ ମରି ଯାଇଚି । ନିଃଶ୍ୱାସ ନାହିଁ କି କିଛି ନାହିଁ । ଖଣ୍ଡିଆରେ ରକତ ବି ନାହିଁ । ପଚା ମାଛ ଦେରିଆ ।''

କାମ୍‌ଦା ଛବିଶ ବର୍ଷର ଭେଣ୍ଡିଆ, ହୃଷ୍ଟପୁଷ୍ଟ, ପ୍ୟାଣ୍ଟ୍ ସାର୍ଟ ପିନ୍ଧା ସହରୀ ଟୋକାଙ୍କ ପରି । ସେ ହେଲା ମାଛୁଆ ଗାଁର, କିନ୍ତୁ କେଉଟ କାମ କରେନି । ତା କାମ ନିଆରା । ଗାଁ ଲୋକେ ତାକୁ ଟିକିଏ ନଜର ରଖିଥାନ୍ତି ।

ବୁଢ଼ା ମୁର୍ମୁ, ଯିଏକି ଲୋକଟାର ମୁଣ୍ଡ ପାଖରେ ବସି ତା ମୁଣ୍ଡ ଚମଡ଼ାକୁ ଠିକ୍ କରି ସାଉଁଳି ଯୋଡୁଥିଲା, କ'ଣ ଗୋଟାଏ କହିଲା ନିଜୁକୁ ନିଜେ, କିଛି ଶୁଭିଲାନି । ସମସ୍ତେ ଚୁପ୍ ଚାପ୍ ଚାହିଁ ରହିଥିଲେ ।

କାମ୍‌ଦା କହିଲା : ''ପୁଲିସ୍‌କୁ ଖବର ଦବାନି । ଫୋପାଡ଼ି ଦବା ।''

ମାଗୀର ଆଙ୍ଗୁଠି ଲୋକଟାର ଗୋଇଠି ହାଡ଼ ସାଉଁଳୁ ସାଉଁଳୁ ଧୀରେ ବାଲିରେ ଅଳ୍ପ ପୋତିହେଇ ଅଟକିଗଲେ, ତା'ପରେ ପୁଣି ଲୋକଟିର ଗୋଡ଼କୁ ଫେରି ଆସିଲେ ।

ସେ କହିଲା: ''ନା ।''

କାମ୍‌ଦା ବୁଲିପଡ଼ି ରାଗ ଗରଗର ହେଇ ଚାହିଁଲା ତାକୁ । ହିଆପ ମାଇକିନା କୁତ୍ତୀ ! ପଚା ମଣିଷକୁ ଆଉଁଶୁଚି ଆଉ ମତେ ମନା କରୁଚି ! ଶୋଉଚି ସେ ଦରମରା ବୁଢ଼ାଟା ତୁଲେ । ଆଉ, ଝାଉଁବଣରେ ଧରିଲା ବେଳକୁ ମୋ ନାକଟା କାମୁଡ଼ି ଖଣ୍ଡିଆ କରିଦଉଚି ! ବାଲି ଖୋଳା ହେଇ ରହିଚି, ପାଣି ଜରୁଚି ବୁଢ଼ାର । କ'ଣ ପାଉଚି କେଜାଣି !

''ଜରୁରୀ କଥା ଆଗ,'' ମୁର୍ମୁ କହିଲା । ''ମରିଥାଉ ବଞ୍ଚିଥାଉ ୟାକୁ ହାସପାତାଳ ନବାକୁ ହବ ।''

''କିଅଣ ଲୋଡ଼ା... ।''

''ଚୁପକର୍‌ରେ !'' ମାଗୀ ରାଗି କହିଲା ଏତେ ଜୋର୍‌ରେ ଯେ କାମ୍‌ଦା ମୁହଁରୁ ତାଛଲ୍ୟ ହସ ଉଭେଇଗଲା । ରଙ୍ଗୁ ଖେଁ କରି ହସି ପାଟି ଚାପି ଧରିଲା । ମାଇପି କେତେ କୁରୁ କୁରୁ ହସକୁ ଚାପିରଖିଲେ ।

ମୁର୍ମୁ ମାଗୀକୁ ଚାହିଁଥିଲା । ମାଗୀର ଚକମକ ଆଖି ସମସ୍ତଙ୍କ ମୁହଁରୁ ହସ ପୋଛିନେଲା ଖଣ୍ଡା ଧାରରେ ।

''ତୋର କଥା ଠିକ୍ । ଏ ଲୋକକୁ ଝଟ୍ ଡାକ୍ତରଖାନାକୁ ନବା । ଆମେ କାହିଁକି ପୁଲିସ୍ ଫୁଲିସ୍ ପାଖକୁ ଯିବା ?''

ରଙ୍ଗୁ କହି ପକେଇଲା : ''ଡାକ୍ତର ଡାକ୍ତରଖାନାରେ ନା'ନ୍ତି ।''

''ତୁ କିମିତି ଜାଣିଲୁ ?''

''ଡାକ୍ତରବାବୁ ଫଟଫଟିଆରେ ସିଆଡ଼େ ଗଲେ ନୂଆ ନର୍ସକୁ ନେଇ ।'' ରଙ୍ଗୁ ପୁରୀ ଆଡ଼ୁକୁ ଯାଇଥିବା ମାରିନ ଡ୍ରାଇଭ ଓ ଝାଉଁବଣଆଡ଼େ ହାତ ଦେଖେଇଲା ।

''ଏଡ଼େ ସକାଳୁ ?'' କାମ୍‌ଦା କହିଲା ଯୋଉଠି ଠିଆ ହେଇଥିଲା ସେଇଠୁ, ତା ହଳଦିଆ ଦାନ୍ତ ଦି'ଭାଡ଼ି କିଛି ନ ଜାଣିଲା ପରି ଦେଖେଇ । ରଙ୍ଗୁ କହିଲା : ''ଏବେ ଓପରଓଳି ଆସୁନାହାନ୍ତି ଆଉ । ଭଉତୁ ଲୋକ । ଏବେ ଜଲଦି ଆସି ଡାକ୍ତରଖାନା ଫେରୁଚନ୍ତି ।''

ମୁର୍ମୁ ପଚାରିଲା : ''ତୁଇ... ।''

''କୋଉଠି ଥିବେ ଜାଣିଚି । ବଡ଼ ବୁଲାଣି ପାରିହେଇ ଝାଉଁବଣରେ ।''

କାମ୍‌ଦା କହିଲା : ''ସେ ବୋକାମି କିଆଁ କରିବା । ଏଇଟା ତ ମରି ସଢ଼ିଗଲାଣି । ପୁଲିସିକୁ ଯଦି ଖବର ନ ଦବ ନାହିଁ, ୟାକୁ ପୋତିଦେଲେ କାଳଯିବ । କେହି କିଛି ଦେଖିନେ । ବାସ୍ । ଆଉ ଯାହା କଲେ ପୁଲିସି ଆମୁକୁ ଧରି କୀଳା ପୂରେଇବ । ନ ପୋତିବ ବୋଇଲେ ପୁଲିସି କି ଖବର ଦବା ।''

ମୁର୍ମୁ, ରଙ୍ଗୁ ଆଉ ରାମ୍‌ଲୁ ଆଡୁକୁ ଅନ୍ତ ବୁଲି କହିଲା ''ଶୁଣ, ବାଲିଟ୍ରକ ଆଉଚି । ତାକୁ ଧରିଯାଅ ଡାକ୍ତରକୁ ଧରି ଝଟ ଆସ । ୟାକୁ ହାସ୍‌ପାତାଳ ଧରି ଯିବା । ଧାଅଁ ।''

ସେମାନେ ଉଠି ଧାଇଁଲେ ବିନା କଥାରେ । ରଙ୍ଗୁ ଆଗରେ ତୀରବେଗରେ, ରାମ୍‌ଲୁ ପଛେ ବୁଲି ଚାହିଁ ।

ମୁର୍ମୁ ଯେତେବେଳେ ବୁଲି ଚାହିଁଲା ମାଗୀର କହରା ଆଖି ଦି'ଟା ତା ଭିତର ଖୋଳି ଚାଲିଗଲା । ତା ନାକପୁଡ଼ା ଦି'ଟା ଫୁଲି ଉଠିଥିଲା । ତା ହାତ ଦି'ଟା ସେ ଲୋକଟାର ଡାହାଣଗୋଡ଼କୁ ଧରିଥିଲେ । ବାଁ ହାତରେ ସେ ଜାବୁଡ଼ି ଧରିଥିଲା ଗୋଡ଼ ଆଙ୍ଗୁଠିଗୁଡ଼ାକୁ, ଡାହାଣ ହାତ ଆଙ୍ଗୁଠିଗୁଡ଼ାକ ଲାଖି ରହିଥିଲେ ଗଇଁଠି ହାଡ଼ ତଳକୁ । ତା ଧନୁପରି ଟଣା ଟୋକୀ ଦେହଟା କୁହୁଳୁଥିଲା । ଆକାଶର ବିଜୁଳି ଆସି ଯିମିତି ହଠାତ୍ ତାକୁ ବାନ୍ଧି ଦେଇଥିଲା ଏ ଲୋକଟା ସାଙ୍ଗରେ ।

''ଶୁଣ !'' ସେ କହିଲା ଅସ୍ପଷ୍ଟ ଅଜଣା ଆବେଗରୁଦ୍ଧ ଗଳାରେ, ''ଶୁଣ ! ଅଛି । ଏଇଠି ଅଛି । କ'ଣ ଗୋଟେ ଭିତରେ ଚାଲିଲା ପରି ଲାଗିଲା । ହେଇଟି ହେଇଟି ପୁଣି, ଧପ୍ ଧପ୍ ହଉଛି ।''

ମୁର୍ମୁ ଚଟ୍‌କିରି ତା ଡାହାଣହାତ ଆଙ୍ଗୁଠି ଦେଲା ସେ ଲୋକର ଡାହାଣ ପଟ ବେକରେ ଲଇଁପଡ଼ି । କିନ୍ତୁ ବୁଢ଼ୀ ପେଛୀ ଘଡ଼ ଘଡ଼ କରି ନିଃଶ୍ୱାସ ନେଇ ଓହରିଗଲା ପଛକୁ ।

''କାଲୀ କଥା ମନେ ଅଛିନାରେ ମୁର୍ମୁ ?'' ପେଛୀ ପଚାରିଲା, ଦୂରରୁ ଲୋକଟାକୁ ଗାରେଡ଼େଇ ଚାହିଁ । ''ଖେରାପ୍ କାଳ ଆସୁଚି । ଭଲ ନାଇଁ । ଅଶୁଭ । ଇଟା ଖେରାପରେ । ଇ ମଲାରୁ ଫେରିବା । ଭାରି ବେତାଳ । ମୋ କଥା ଶୁଣି ରଖ । ଅସୁର କାଳ ଆସୁଚି ୟା ତୁଲେ ।''

ପେଛୀର କୁଞ୍ଚିତ ମୁହଁଟା ଆହୁରି ଶୁଖି ଯାଇଥିଲା । ଭାରୀ ରୁପା ନୋଥର ଓଜନରେ ନାକପୁଡ଼ାର କଣାଟା ଲମ୍ବି ଆସି ଅଳ୍ପକେ ରହି ଯାଇଥିଲା । କାନର କଣା ବି ସିମିତି ଆଁ କରିଥିଲେ ବଡ଼ ବଡ଼ କଳା କୋଚଟ ରୁପା କାନଦୁଲୁ ଭାରରେ । ସେ ଲୋକ ଭିତରେ କିମିତି ଗୋଟେ କଳା ମଚ ମଚ ଛାଇ ହଲିଲାପରି ତାକୁ ଲାଗିଲା । ତା ମନର ଅତଳ ଗଭୀର ଅନ୍ଧାରୁଆ ଛାଇ ସବୁ ତା ଆଖିକୁ ରୂପ ଦେଖାଉଥିଲା ।

''ହେଇଟି ! ମତେ ଦୁଉଚି ! ଦେଖ, ହଲୁଚି । କାଳିଆ ଅନ୍ଧାର, କାଳ ଅସୁର ଇଟା । ମା ବାଶେଳୀ ରକ୍ଷା କର ଲୋ । ସମୁଦ୍ର ତଳୁ ବାର୍ତ୍ତା ନେଇ ଆସିଛି ଯେ ଆଠ ଭୁଜାଠୁଁରେ, ଆଠଭୁଜାଠୁଁ । ବାଶେଳୀ ରକ୍ଷା କର ।''

''ବୁଢ଼ୀ ଡାହାଣୀ ଠିକ୍ କହୁଚି, ଆମକୁ ଖାଇଯିବ ଇଏ'', କାମ୍‌ଦା କହିଲା । ଚାଲ ୟାକୁ ଏଇଠି ଜାଳିପୋଡ଼ି ଗହୀର ଗାତରେ ପୋତିଦବା ।''

"ମୁଇଁ ବି ପାଇଚି," ମୁର୍ମୁ ଲୋକଟାର ବେକରେ ଆଙ୍ଗୁଠି ବାନ୍ଧିରଖି କହିଲା : "ଧପ ଧପ ହଉଚି ବେଳେ ବେଳେ। ବଞ୍ଚିଚି। ରହ। ଆଉ ନାଇଁ।"

"ମରିଗଲା ?" ପେଛୀ ଉହୁଙ୍କି ଚାହିଁଲା। "ଧନ୍ୟ ମା ବାଶେଳୀ।" ସେ ହାତଯୋଡ଼ି କପାଳରେ ଲଗେଇ ପ୍ରଣାମ କଲା।

କାମ୍‌ଦା ଦମ୍ଭରେ ଆଗେଇଆସି ଲୋକଟା ପାଖେରେ ବସିପଡ଼ିଲା ମୁର୍ମୁ ଆଡ଼େ ନ ଚାହିଁ ? "ଦେଖିବା କିଏ ଏ ଲୋକଟା।" ବାଁ ଗୋଡ଼ରେ ଛନ୍ଦି ହେଇଥିବା ପ୍ୟାଣ୍ଟ୍ ପକେଟ୍‌ରେ ସେ ହାତ ପୂରେଇଲା। ଚଟାପଟ୍ ସବୁ ପକେଟ୍ ଖୋଜି ପକେଇଲା, କୋଉଠି କିଛି ନ ଥିଲା। ବିଲ୍‌କୁଲ୍ ଖାଲି। ଚାରେଣିଟିଏ ବି ନାହିଁ। ବେକରେ ଗୁଡ଼େଇ ହେଇଥିବା ସାର୍ଟ ଆଡ଼େ କାମ୍‌ଦା ହାତ ବଢ଼େଇଲା। ତାକୁ ଛିଣ୍ଡେଇଆଣି ତାର ଗୋଟିକିଆ ପକେଟ ଭିତରେ ହାତ ପୂରେଇଲା। ସବା ତଳେ କ'ଣ ଛୋଟିଆଟେ ଟାଣ ହେଇ ଲାଗିଲା। ସେ ବିଶିଆଙ୍ଗୁଠି ଆଉ ମଝିଆଙ୍ଗୁଠିରେ ତାକୁ ଜାବୁଡ଼ି ଧରି ଟାଣିଆଣିଲା। ଲବଙ୍ଗଟିଏ। ଗୋଟିଏ ଲବଙ୍ଗ। ସେ ପକେଟ୍‌ଟା ଛିଣ୍ଡେଇ ଫୋପାଡ଼ି ଦେଲା।

"ପୁଣି ଚାଲିଲାଣି," ମାଗୀ ଫୁସ୍ ଫୁସ୍ କରି କହି ମୁର୍ମୁକୁ ଚାହିଁଲା। ମୁର୍ମୁ ମୁଣ୍ଡ ହଲେଇଲା।

"ନାହିଁ। କିଛି ହେଲେ ନାହିଁ," କାମ୍‌ଦା ରାଗ ଗରଗର ହୋଇ କହିଲା ସମସ୍ତଙ୍କୁ ଦେଖେଇ, କିନ୍ତୁ ସେ ଶାନ୍ତିରେ ଦୀର୍ଘଶ୍ୱାସ ମାରୁଥିଲା। "ଏଇଟା ସଫା ଚୋରି ଆଉ ମର୍ଡର କେଶ। ମୋ କଥାଟା ମନେରଖ, ପୁଲିସ୍ ଆମ ଆଡ଼େ ବାଗେଇବ। ଗାଁଟାଯାକ ଖାନ୍‌ତଲାସ କରିବ, ଭିଣି ପକେଇବେ। ଶେଷକୁ ଆମୁକୁ କୀଳା ଦେବେ। ମୁଁ କହୁଚି ୟାକୁ ଚୁପ୍‌ଚାପ୍ ପୋତି ପକେଇବା ଆଉ ୟା କଥା ଭୁଲିଯିବା ବିଲ୍‌କୁଲୁ। କେହି କିଛି ଜାଣିବେନି। ସମେତେ ତ ଜାଣିଚ ସେ ଫିସରୀ ଲୋକଟା ବୁଡ଼ି ମଲାବେଳେ କି ହଇରାଣ ହେଇଥିଲେ।"

"ବୁଡ଼ି ମରିଥିଲା ?" ମାଗୀ କାମ୍‌ଦା ଆଖିକୁ ସିଧା ଚାହିଁ କହିଲା, "ତାକୁ ଖୁଣ୍ ହେଇଥିଲା।"

"ସେମିତି ବକ୍‌ବକ୍ ହ'ନା କହୁଚି," କାମ୍‌ଦା ମାଗୀକୁ ଚାହିଁଲା। ମାଗୀବି।

"ତାକୁ ଖୁଣ୍ ହେଇଥିଲା। ଆଉ ମୁଁ ଜାଣିଚି କିଏ କରିଥିଲା।"

"ଚୁପ୍‌କର୍ !"

"ମତେ କହିବାକୁ ତୁ କିଏରେ, ଚୋର !" ସେ ମୁର୍ମୁ ଆଡ଼କୁ ବୁଲି ପଚାରିଲା : "କାଲି ରାତିରେ ସେ ସ୍ମଗ୍ଲିଂ ଟ୍ରଲର୍‌ଟା ଆସି ନ ଥିଲା କି ?"

ମୁର୍ମୁ କାମ୍‌ଦାଆଡ଼େ ଚାହିଁଲା ଫାଙ୍କାଆଖିରେ । କାମ୍‌ଦାର ଖରାଜଳା କଳାମୁହଁଟା ଟିକିଏ ଶେତା ପଡ଼ିଗଲା । ତାର ଲାଲିଆସିଆ ଆଖି ଦି'ଟା ନିଆଁ ରଡ଼ ପରି ଚିକ୍ ଚିକ୍ କରି ଉଠିଲା ଆଉ ତା ହଳଦିଆ ଦାନ୍ତ ଓଠତଳୁ ବାହାରି ପଡ଼ିଲା : ''କ'ଣ ମତଲବ୍ ତୁମର ? ମତେ ମରେଇବ ନା କ'ଣ ? କି ଟ୍ରଲର ? କାଲି ରାତିରେ କିଛି ନ ଥିଲା ସେଠି । କେହି ଶୁଣନି କିଛି । ଆମେ କିଛି ଜାଣିନେ । ଯାଉ କାହା ଆଗେ ଗୁହାରି କରିବ । କିଏ ଶୁଣିବ ଏ ଅଠରନଳା କଥା ।''

''କ'ଣ କହିଲୁ ସ୍ମଗ୍‌ଲର-ଚୋର ! ମୁଁ ପୁଲିସ୍‌କୁ କହିଦେବି ତୋ କଥା, ଏମେଲେକୁ କହିବି, ମୁଖ୍ୟମନ୍ତ୍ରୀକି କହିବି, କିଲଟରକୁ କହିବି । ଭାବିଚୁ ମୁଁ ମାଗେଣାରେ ତାକୁ ପିଚା ଥାପୁଡ଼େଇବାକୁ ଛାଡ଼ିଦେଇଥିଲି ଗଲା ମାସ ଯେବେ ଏଠିକି ଆସିଥିଲା ?''

''ଯା ଯା ଯା ଯା ଯାଃ ! ପେଟ ଫଟେଇ ରଡ଼ି ଛାଡ଼େ ! ସିଏମେ, ଏମେଲେ ! ଯାଃ ରଡ଼ି ଛାଡ଼େ ! ସମସ୍ତଙ୍କୁ ଦିଆ ହେଇଚି । ସିଏମେ ପାଟିକି ଦଶଲକ୍ଷ, ପୁଲିସିକୁ ଦୁଇ, ଏମେଲେକୁ ପଚାଶହଜାର । ଓସା ଦେଇଚି ଖାଦି । ଯା ତଣ୍ଟି ଫାଡ଼ି ରଡ଼ିଛାଡ଼େ, ଡିଙ୍କିକୁଟେଇ ଶାଳୀ !''

''ମୁଁ ଖବରକାଗଜରେ ଦେବି ।''

''ଖବରକାଗଜ ? କେନ୍ଦରାପଡ଼ା କଥା ଜାଣିନୁ କି ? ପଢ଼ି ପରା ଶିଖିଚୁ ? ଗୋଟେ ଲୋକ ସେଠି ଖବରକାଗଜରେ ଲେଖିଲା, ତାର କ'ଣ ହେଲା ଜାଣିଚୁଟି ? ଓପୁରୁ ଲୋକ ପଠାହେଲେ । ଶଳା ମାଇପ ପିଲାକୁ ଧରି ଖସି ଯାଇପାରିଲାନି । ଧାଇଁ ଧାଇଁ ବର୍ଷିକିଆ ଛୁଆକୁ ଧରି ଖସିଗଲା, ହେଲେ ମାଇପକୁ ଧରିଦେଲେ । ଫାଡ଼ିଦେଲେ ନଈବାଲିରେ, କୁକୁରକୁ ଖୁଆଇ ଦେଲେ । ପୁଲିସି ଧରିଲା ? ଖୋଦ୍ ଭୁବନେଶ୍ୱର ବିଚି ରାସ୍ତାରେ ବୁଲୁଥାଏ, ବଡ଼ ସାହାବଙ୍କ ସରକାରୀ ଘରେ ଡେରା ପାତିଥାଏ । ଖବରକାଗଜମାନଙ୍କର ତଣ୍ଟି ଫାଟି ଅନ୍ତିରେ ଖସି ପଡ଼ିଲା । କ'ଣ ହେଲା ? ଯା ଯା ଖବରକାଗଜକୁ । ଚବିଶ ଘଣ୍ଟାରେ ଭିଣା ହେଇଯିବୁ ।''

''ହେଲା ! ହଉ ହେଲା ! କେହି କିଛି କରିବେନି ତ ? ହଉ । ହେଲେ ମାଗୀ ମରିନି ଏ ଯାଏଁ, ଗୋଟା କେତେଙ୍କୁ ନ ନେଇ ମରିବନି ବି । କାନ ଫାଡ଼ି ଶୁଣିନେରେ କାମ୍‌ଦା ଆଉ ତୋ ସିଏମ୍ ଆଉ ତୋ ଏମେଲେ ଆଉ ତୋ ଖୁଣୀ କୁକୁରଦଳ, ଯେବେ ମାଗୀ ଉଠିବ ରକ୍ତନଈର ସୁଅ ଛୁଟିବ । ଆଉ ତୋ ସିଏମ୍, ଏମେଲେ ଦିଲ୍ଲୀ ଧାଇଁ ମାଲିକଙ୍କ ପଛରେ ଲୁଚିବାକୁ ବାଟ ପାଇବେନି । ଦିଲ୍ଲୀରେ ବୁଡ଼ିମରିବେ ରକ୍ତନଈରେ ସମସ୍ତେ । ଆଉ ତୁ କାମ୍‌ଦା ଆଗ ଯିବୁ । ମାଛକଣ୍ଟାରେ ତୋ ତଣ୍ଟିକି ଧରିବି । ମାଛ ଛୁରୀରେ ତୋ ପେଟକୁ ଫାଡ଼ିବି, ତୋ କଲିଜା ସବାଗିଳା ସାର୍କକୁ ଖୁଆଇବି । ମୋ କଥା ମନେ ରଖିଥାରେ ଖୁଣୀ-ସ୍ମଗ୍ଲର-ଚୋର !''

ମାଗୀ ରାଗରେ ଥରୁଥାଏ ।

''ମୁର୍ମୁ !'' କାମ୍‌ଦାର ଆଖି ଡରରେ ବଡ଼ ବଡ଼ । ''ମୁର୍ମୁ, ତାକୁ ଚାହଁ ! କାଳିଶି, ଦେହ ଥରୁଚି । ତାକୁ ଭୂତ ଧରିଚି । ମୋ ପଛେରେ କାହିଁକି ଲାଗିଚି ସେ ? ମୁଁ କ'ଣ କଲି ? ମୁଁ କିଛି କରିନି । ତାକୁ କହ ମତେ ଛାଡ଼ିଦବ । ମୁଁ କିଛି କରିନି । ଜମା କିଛି ବିଲି ନାହିଁ । ତମେ ସମସ୍ତେ ଜାଣିଚ । ଜାଣିନ ? ନିଶ୍ଚେ ଜାଣିଚ । କାହିଁକି ଜାଣିନ ? ବାଧ୍ୟେରେ ଜାଣିଚ ତମେ ନ ଜାଣିଲେ କିଏ ଜାଣିଚି ? ମୋ ତଣ୍ଟିରୁ ତାକୁ ଖସେଇନିଅ କହୁଚି । ତା ଜାବୁଡ଼ ଖସାଅ, ନ ହେଲେ ମଲି ।''

ବୁଢ଼ୀ ପେଛୀ ତା କଙ୍କଡ଼ା ଆଙ୍ଗୁଠିରେ କାମ୍‌ଦା କାନ୍ଧକୁ ଧରି ପକେଇଲା ପଛପଟୁ । କାମ୍‌ଦା ହାଉକିରି ଡେଇଁପଡ଼ିଲା ଚମକି । ପେଛୀ ଗହୀରିଆ ଆଖିରୁ ତା ମୁହଁକୁ ଚାହିଁ ପଚାରିଲା ? ''ଏ ଓଷାଟା କିଅଣ ?''

''ଓସାଟା କ'ଣ ମାନେ ? ଦେଖ ୟେ ଡାହାଣୀକି, ୟେ ବି ମୋ ପଛେରେ ଲାଗିଲାଣି ।''

''ଆରେ ମୁଁ ପଚାରୁଚି ଖାଲି ଏ ଓଷାଟା କିଅଣ ଆଉ ଦଶ ଲଖିଅଟା କେତେ ଟଙ୍କା । ତୋ ନେଳି ସିନ୍ଦୁକରେ ଯେତିକି ରଖିଥାଉ ଟାଜିସର, ଘଣ୍ଟା, ଝିଣ୍ଟା ବିକି ଷ୍ଟିମରବାଲା ନବା ଆଗୁରୁ ? ସେତିକି ? ନା କେତିକି ?''

''ହେ ଜଗବନ୍ଧୁ ! ହେ ଗୋସେଇଁ ! ପ୍ରଭୁ ହେ !'' କାମ୍‌ଦା ଜୋର୍‌ରେ କାନ୍ଧ ହଲେଇଲା କିନ୍ତୁ ପେଛୀର ଆଙ୍ଗୁଠି ଗେବି ଧରିଥିଲା, ଖସିଲାନି ।

ପେଛୀ କହିଲା : ''କ୍ୟାଉଁ କ୍ୟାଉଁ କିଆଁ ହଉଚୁ ରେ ? ମୁଁ କିଅଣ କଲି ? ମୁଁ ପଚାରୁଚି ଖାଲି ଏ ଓଷାଟା କିଅଣ ଏତେ ଟଙ୍କା ସଭିଙ୍କି ବାଣ୍ଟୁଚି । ମତେ କିଆଁ ଦେଇନି ? ମାଗିଲେ ଦବ ପରା ।''

''ମାଗିଲେ ଦବ ପରା ! ଛତର ଖୋଲିଚି ! ସିଏ ଆମ ଆସୋସିଏସନ ଓଡ଼ିଶା ସ୍ମଗ୍ଲରସ୍ ଆସୋସିଏସନ, ଓସା । ଝାଳବୁହା ଧନ ! ମାଗିଖିଆଙ୍କ ଓଦର ଫୁଲେଇବାକୁ ନୁହଁ । ଡାହାଣୀ ଶାଳୀ, ହାତ ଛାଡ଼ ମୋ କାନ୍ଧରୁ । ଆଉ ତୁ ମାଗୀ ମତେ ସେ ଦେରିଆ ଚାହାଁନା... । ମୁଁ ତୋର କିଛି କ୍ଷତି କରିନି, ତୁ କିଆଁ ମୋ ପଛେରେ ପଡ଼ିଚୁ ? ମୁଁ ତୋ ପାଖ ବି ଆଉ ପଶିବିନି ହଲପ କରୁଚି ।''

ମାଗୀ ଆଉ ଥରୁ ନ ଥିଲା କିନ୍ତୁ ତା ଆଖି ଦି'ଟା ତୀଖା ଆଉ ଓଠ ଦି'ଟି କଠୋର । ସେ ପଣିକିଆ ଘୋଷିଲା ପରି ଗୁଣୁରୁ ଗୁଣୁରୁ ହେଇ କହିଗଲା ''ମଶାଣିର ପୂର୍ବପଟେ ପାଞ୍ଚତାଳ ମୂଳେ ଟ୍ରାଞ୍ଜିଷ୍ଟର । ଘଣ୍ଟା ତୃତୀୟ ନଡ଼ିଆ ଗଛମୂଳେ ଉତ୍ତରରେ ମଶାଣିର । ଟେପ୍ ଡାବଲ ବତିଘର ଦକ୍ଷିଣରେ ଛ' ନମ୍ବର ଝାଉଁ ମୂଳେ । ରେକର୍ଡର...''

"ରହ, ବନ୍ଦକର, ଚୁପ୍, ଆଉ କିଛି କାହାକୁ କହନା, ସମସ୍ତେ ଭୁଲିଯାଅ, ଏ ସବୁ ଏକେଦମ୍ ମିଛ । ସେଠି କିଛି ନାହିଁ । ମୁର୍ମୁ, କ'ଣ ହେଲେ କର, ସେ ତୋ ମାଈପିଲା ପରା । ମୁର୍ମୁ ! ସବୁ ଆଉଥରେ ନୂଆ ଜାଗାକୁ ନବାକୁ ହବ, ହେ ଭଗବାନ୍, ଦିନକରେ କେମିତି କରିବି ! ସେମାନେ ଏଥର ମତେ ପଇଡ଼ ଛେଲା କରିଦେବେ, କୁଟୁକୁଟା କରି ପକେଇବେ ।"

ସେ ଆଉ ତଳ ଆଡ଼କୁ ଚାହିଁ ପାରିଲାନି ।

"ମୁଁ ଯାଉଚି... ।"

ରଙ୍ଗୁ ଭିଡ଼ ଭାଙ୍ଗି ପଶିଆସିଲା ଧଇଁସଇଁ ହେଇ : "ଡାକ୍ତର ହସପିଟାଲ ଗଲେଭାରି ସଜଲି କରିବାକୁ । ଟ୍ରକ୍ ରେଡ଼ି । ନର୍ସ ହେଇଟି । ସେ ନେଇ ସାଥିରେ ଯିବେ ।"

ସେମାନେ ଲୋକଟାକୁ ଢେଉ ମୁଣ୍ଡରୁ ଟେକି ରାସ୍ତାଆଡ଼େ ନେଇଗଲେ । ସମସ୍ତେ ଧାଇଁଲେ ଟ୍ରକଆଡ଼େ । ସୁନ୍ଦର ସଜ ନର୍ସଟି ବୁଲିପଡ଼ି ହିଲ୍ ପିନ୍ଧା ପାଦ ଚଞ୍ଚଳ ପକେଇ ବାଲିରେ ଚାଲିପଡ଼ିଲେ ଲୋକଟିର ହାତ ଧରି ।

ଲହଡ଼ି ଧାରରେ, ଏକୁଟିଆ ମୁର୍ମୁ ମାଗୀ ଆଡ଼କୁ ମିଟିମିଟି ଚାହିଁଲା ! ସକାଳ ସୂର୍ଯ୍ୟ ତା ଆଖିରେ ।

"କିଅଣ ହେଲା ?"

ମାଗୀର ଆଙ୍ଗୁଠି ବାଲି ଭିତୁରୁ ଖୋଳିଆଣିଲା ଗୋଟେ ମାଟିଆ କୁମ୍ଭୀର ଚମଡ଼ା ପର୍ସ, ସେ ଲୋକଟାର ଗୋଇଠି ଚିହ୍ନ ପାଖୁରୁ । ସେ ଚଟ୍‌କରି ରାସ୍ତା ଆଡ଼େ ଆଖି ବୁଲେଇନେଲା । ସମସ୍ତେ ସିଆଡ଼େ । ସେ ପର୍ସଟା ଖୋଲିଦେଲା ଶହେଟଙ୍କିଆ ନୋଟରେ ଖୁନ୍ଦା ହେଇଥିଲା ।

"ଏଇଟା ତା'ର, ନିଶ୍ଚେ ତା'ର," ସେ କହିଲା । ସେ ଓଦା ପର୍ସର ଭିତରଟା ନିରେଖି ନେଲା । ମୋଟା ଟଙ୍କାବିଡ଼ାଟା ଛଡ଼ା (ତାକୁ ସେ ଗଣିଲାନି), ନବେ ପଇସା ଖୁଚୁରା, ଆଉ ମୋଡ଼ାମୋଡ଼ି କାଗଜ ଖଣ୍ଡେ ଖୁଚୁରା ପକେଟର ସବା ତଳେ । ପାଣିରେ ଫୁଲିଯାଇଥିବା କାଗଜଟାକୁ ଜଗିରଖି ଖୋଲିଲା । ଛୋଟ ଛୋଟ ଅକ୍ଷର ହାତଲେଖା ଅଧା ଧୋଇହେଇ ପୋଛିହେଇ ଯାଇଥିଲା ।

"ଇଂଲିଶ୍ ଲେଖା ବୋଧେ ।"

ମୁର୍ମୁ ଏଗୋଡ୍ଡୁ ସେଗୋଡ୍ଡୁ ହେଲା ଆଉ ବୁଲି ଚାହିଁଲା ପଛକୁ । ଲୋକଟାକୁ ଟେକି ଟ୍ରକରେ ରଖୁଥିଲେ । ସେ ବୁଲି କହିଲା : "ତା'ରି ହବ । ବାଧରେ । ତାକୁ ଦେଇଦବା ?"

''ହଁ । ନିଶ୍ଚେଁ । ହେଲେ ଏବେ ନାହିଁ । ଭୁଲରେ ବି ୟାକଥା କହନା । ନର୍ସ ଚୋରେଇନବ, ନଇଲେ ଡାକ୍ତର କି ପୁଲିସ୍ । ଏବେ ନାହିଁ । ସେ ଯେବେ ଭଲ ହେଇ ଉଠିବ ।''

ମୁର୍ମୁ ମୁଣ୍ଡ ହଲେଇଲା । ବୟସର ବୃଦ୍ଧି ସତ୍ତ୍ୱେ ମୁର୍ମୁ ମାଗୀସୁନ୍ଦରୀର ଚଞ୍ଚଳ ବିଚାରକୁ ଭରସା କରିଥିଲା ଯେତିକି ତା କଅଁଳ ଦେହର ସ୍ୱାଦରେ ପୁଷ୍ଟି ଓ ଶାନ୍ତି ପାଇଥିଲା ସେତିକି ।

ସେ କହିଲା ''ମତେ ଦେଇଦେ, ମୁଁ ସାଇତି ରଖିବି ।''

''ନା । ମତେ ରଖିବାକୁ ତତେ ଦେଇଚି ତୁ ମତେ ଭଲ ଲାଗୁ ବୋଲି, କିନ୍ତୁ ତତେ ବିଶ୍ୱାସ ନାହିଁ । ଏଇଟା ଭାରି ଜରୁରୀ ଜିନିଷ ମୁର୍ମୁ । ମୋ ପେଟ ଭିତରେ ଲାଗୁଚି । ନିଃଶ୍ୱାସରେ ବି ଏ କଥା ଯିମିତି ନ ବାହାରେ ତୋ ପାଟିରୁ, ମଦ ଖାଇ ମାଁତାଲ୍ ହେଲେ ବି । ନ ହେଲେ ମନେରଖ । ମୁଁ ତତେ ଛାଡ଼ି ଚାଲିଯିବି । ହେଲା ?''

ମନ ମାରି ମୁର୍ମୁ ମୁଣ୍ଡ ହଲେଇଲା ''ହଉ ।''

ମାଗୀ ଥିଲା ଅଲଗା ପ୍ରକାର ଝିଅ । ସେ ଏ ଗାଁର ସମ୍ପୂର୍ଣ୍ଣ ବାସିନ୍ଦା କେବେବି ହେଇପାରି ନ ଥିଲା । ତା ଜନ୍ମର କୁହୁଡ଼ି ଏ ପର୍ଯ୍ୟନ୍ତ ଉଠିଯାଇନି । ସେ ମିଳିଥିଲା ପ୍ରାୟ ଏଇଠି ଯୋଉଠି ଏ ଲୋକର ଦେହଟା ପଡ଼ିଥିଲା । ତା ଚମଡ଼ା ଗୋରା, ଆଖି ଚିଲା, ବାଳ କହରା । ମୁର୍ମୁ ତାକୁ ଭାଣିଜୀ ବୋଲି କହୁଥିଲା । ସେ ଭାବିଥିଲା ଏଇଟା କେହି ଗୋଟା ସାଇବ ଟୁରିଷ୍ଟର କାମ କୋଉ କେଉଟୁଣୀ ସାଙ୍ଗରେ । ମାସକ ଆଗରୁ, ଚିତ୍ରିଣୀ, ଯାହାକୁ ବାହା ହବାକୁ ମୁର୍ମୁ ଖୁବ୍ ଚେଷ୍ଟା କରି ହାରିଯାଇଥିଲା, ଗାଁକୁ ଫେରିଥିଲା ଅଳ୍ପଦିନ ପାଇଁ । ଛ' ମାସ ଆଗରୁ କାହାକୁ କିଛି ନ କହି ଚିତ୍ରିଣୀ ଗାଁ ଛାଡ଼ି ଚାଲି ଯାଇଥିଲା । ମୁର୍ମୁକୁ ଲାଗୁଥିଲା ତା'ର ପିଲା ହେବ । ମାଗୀକୁ ଚିତ୍ରିଣୀ ସାଙ୍ଗେ ଯୋଡ଼ିବାକୁ ମୁର୍ମୁକୁ ଭଲ ଲାଗୁଥିଲା । କିନ୍ତୁ କିଛି ସଠିକତା ନ ଥିଲା । ମାଗୀ ଫୋପଡ଼ା ହେଇଥିଲା । ଅଦରକାରୀ, ପରିତ୍ୟକ୍ତା । ରାତିଟା ଥିଲା ଅନ୍ଧାର, ଚନ୍ଦ୍ର ନ ଥିଲା । ପବନଟାଏ ଉଠି ଆସୁଥାଏ । ମୁର୍ମୁ ଏକୁଟିଆ ଦେହର ଗରମ ମାରିବାକୁ ସମୁଦ୍ର କୂଳରେ ଘୂରି ବୁଲିଲାବେଳେ ତାକୁ ପାଇଥିଲା । ସଜଡ଼ା ହେଇ ମଶିଣା ଓପରେ ଥୁଆ ହେଇଥିଲା ସେ । ସାପଟାଏ ତା ଚାରିପଟରେ ଘୂରି ବୁଲୁଥାଏ ଆଉ ଭେରେଣ୍ଡାଟାଏ ଝାଉଁବଣରେ ଛକି ବସିଥାଏ । କାନ୍ଦୁଥାଏ ଯେ ଆକାଶ ବିଦାରି ।

ମାଗୀ ସବୁବେଳେ ଅଲଗା । ଭିନ୍ନ ଧାତୁରେ ଗଢ଼ା ଝିଅଟିଏ ଯିମିତି । ମାଗୀ ମୁର୍ମୁର ଧୀରସ୍ଥିର ଶୁଖିଲା ମୁହଁକୁ ଚାହିଁଲା । ତା ଲାଲିବୁଲା ଆଖି ମାଗୀର ଆଖିକୁ ଆଡ଼େଇ ବୁଲୁଥିଲେ । ମୁହଁରେ ତାର ଦି'ଦିନର ଦାଢ଼ି । ତା ଆଙ୍ଗୁଠିଗୁଡ଼ାକ ଏ

ପର୍ଯ୍ୟନ୍ତ ଖୋଲି ରହିଥିଲେ ଯିମିତି ସେ ଲୋକଟାର ମୁଣ୍ଡ ଚମଡ଼ାକୁ ଏ ପର୍ଯ୍ୟନ୍ତ ସଜାଡ଼ି ଧରିଥିଲେ । ପିଲାଙ୍କ ଭଳିଆ ସେ । ମାଗୀର ଛାତି ଉଷୁମ ହେଇ ଉଠିଲା । ତା ପେଟ ଆସକ୍ତିରେ ଭରି ହେଇଗଲା ।

''ବହୁତ କାମ ଅଛି ମୁର୍ମୁ, କିନ୍ତୁ ମତେ ଆଗ ଘରୁକୁ ନେଇଯା, ଜଲ୍‌ଦି ।''

କୋଣାର୍କ ପ୍ରାଇମେରୀ ହେଲ୍‌ଥ ସେଣ୍ଟର ଡାକ୍ତର ସମସ୍ତଙ୍କୁ ଖୁସି କରିବାକୁ ବ୍ୟଗ୍ର । ମୁର୍ମୁ ସାଇକେଲ୍ ପଛରେ ମାଗୀ ସେଠି ପହଞ୍ଚିଲା ବେଳକୁ ଡାକ୍ତର ଏଠି ସେଠି ଫଟା ଫଟ୍ ସିଲେଇ କରି ସାଙ୍ଗେ ସାଙ୍ଗେ ପୁଲିସ୍‌କୁ ଖବର ଦେଇ କେଶ୍ ରେଫର୍ କରିଦେଲେ ନିମାପଡ଼ା ହସ୍‌ପିଟାଲ୍‌କୁ । ମାଗୀ ମୁର୍ମୁ ସାଙ୍ଗେ ବାହାରିଗଲା । ଅଟୋ ଆଣିାକୁ । କାମ୍‌ଦା ଆସି ପହଞ୍ଚିଲା ବେଳକୁ ଇନ୍‌ଫର୍‌ମେସନ୍ ସ୍ଲିପ୍ ପୁଲିସ୍‌କୁ ପଠାହେଇ ସାରିଥିଲା । ଡାକ୍ତର କାମ୍‌ଦାକୁ ଚୁପ୍ ଚୁପ୍ କହିଲେ ଏସ୍.ଆଇ.ଙ୍କୁ କହିବାକୁ କାଗଜଟା ଫେରେଇ ଦବାକୁ । ନୂଆ ଏସ୍.ଆଇ., ଭବାନୀ ଦାସ । ଏସ୍.ଆଇ. ସାହାବ ମଟରବାଇକ୍‌ରେ ଆସି ପହଞ୍ଚିଗଲେ । କାମ୍‌ଦାକୁ ବୁହେ ଶୋଧିଲେ ଡାକ୍ତରଙ୍କ ଅଫିସରେ । ପାଞ୍ଚଶହ ଟଙ୍କା ନେଲେ ତାଠୁଁ । ତା ଓପରେ ଆହୁରି ବୁହେ ପାଟି କରି ତାକୁ ପ୍ରାୟ ଘଉଡ଼େଇ ଦେଲେ । ଦି'ଶହ ଡାକ୍ତରଙ୍କୁ ଦେଲେ । ତିନିଶ ନିଜେ ରଖିଲେ ।

''ଇନ୍‌ଫରମେସନ୍ ସ୍ଲିପ୍‌ଟା କାହିଁ ?'' ଡାକ୍ତର ପଚାରିଲେ ।

''ଏମ୍.ଏଲ୍.ଏ. ଚାହୁଁ ନାହାନ୍ତି ଏ ଲୋକଟା ବଞ୍ଚୁ ବୋଲି,'' କହିଲେ ସବ୍‌ଇନ୍‌ସ୍‌ପେକ୍ଟର ଭବାନୀ ଦାସ, କାଗଜ ଖଣ୍ଡକ ବଢ଼େଇ ।

''ହେଇଟି, ପୂରା ଆପଣଙ୍କର । ମୁଁ ଏ ଏମ୍.ଏଲ୍.ଏ.କୁ ଜାଣିନି । ମୁଁ ତ ଏଠି ନୂଆ, ଆପଣ ଜାଣନ୍ତି, କିନ୍ତୁ ତାର ଗୋଟାଏ ଚାମ୍‌ଚା ଥାନାକୁ ଆସି ମତେ କହି ଦେଇଗଲା ଯେ ମୁଖ୍ୟମନ୍ତ୍ରୀଙ୍କ ଇଚ୍ଛା ଏ ଲୋକଟା ବଙ୍ଗୋପସାଗରକୁ ଫେରିଯାଉ । ମୁଁ ତା ପାଖେରେ ଯାହା ଟଙ୍କା ଥିଲା ଝଡ଼େଇ ନେଇଚି ଆଉ ଭୋଜନେ ଖୁଆଇଚି ସ୍ପେସାଲ ଲଙ୍କା ପକେଇ ଯେ ତା ପେଟ ମିଳେଇଯିବ । କାଲିକି ମନେ ପକେଇବ ।''

''ଆପଣ ଏମ୍.ଏଲ୍.ଏ.ର ଲୋକଠୁଁ ଟଙ୍କା ମାରିନେଲେ ! ହେ ଭଗବାନ୍, ସେ ଆପଣଙ୍କୁ କଞ୍ଚା ଚୋବେଇଯିବ ।''

''ମୁଁ ସେ କଥା ଭାବି ପାରିଲିନି, କିନ୍ତୁ ତାକୁ ଧପେଇ ଟଙ୍କା ନବାରେ ଭାରି ମଜା ଲାଗିଲା ।''

ଡାକ୍ତର ସବ୍‌ଇନ୍‌ସ୍‌ପେକ୍ଟର ବଢ଼େଇଥିବା କାଗଜଖଣ୍ଡକୁ ସନ୍ଦେହ ଦୃଷ୍ଟିରେ ଚାହିଁଲେ ଓ ପଚାରିଲେ, ''ମୁଁ ଏଇଟା ନେଇ କ'ଣ କରିବି ?''

''ରଖିଥାଅ । କାଲେ... ।'

''ନା । ମୁଁ ଏ ବିଷୟରେ କିଛି ଜାଣିନି ।''

ଭବାନୀ ଦାସ ଇନଫର୍‌ମେସନ୍ ସ୍ଲିପ୍‌ଟାକୁ ଡାକ୍ତରଙ୍କର ଅଳିଆଡବାରେ ପକେଇ ଦେଲେ ଆଉ ତାଙ୍କୁ ଆଖିମାରି ଚାଲିଗଲେ । ବାହାରେ ମାଗୀ ଅଟୋ ନେଇ ଆସି ପହଞ୍ଚିଗଲା ।

''ଏବେ ନେଇଯିବି ?'' ମାଗୀ ଡାକ୍ତରଙ୍କୁ ପଚାରିଲା ।

''କୁଆଡ଼େ ନବ ?''

''ଆପଣ ପରା କହିଲେ ନିମାପଡ଼ା ନେଇଯିବାକୁ ଆଉ ଏ କାଗଜ ମତେ ଦେଲେ ।''

''ଆଃ, ବାଘ ମୁହଁକୁ । ନିଅନି । ସେ ଏମ୍.ଏଲ୍.ଏ. ତାକୁ ଖତମ୍ କରିଦବ । ଦରମରା ତ ହେଲାଣି, ନିମାପଡ଼ା ପହଞ୍ଚିଲା ବେଳକୁ ମରିଯାଇଥିବ । ଆହୁରି ପୁଲିସ୍ କହୁଚି ଯେ ମୁଖ୍ୟମନ୍ତ୍ରୀ ତାକୁ ସମୁଦ୍ରକୁ ଫିଙ୍ଗିଦବାକୁ କହୁଚନ୍ତି । ତମେ ଭାରି ସୁନ୍ଦର । ଫୋପାଡ଼ିଦିଅ ସମୁଦ୍ରରେ, ମାଛ ଖା'ନ୍ତୁ । ସେ ତ ତମର କେହି ନୁହେଁ ବୋଲି କହୁଚ ।''

''ମୁର୍ମୁ, ଷ୍ଟ୍ରେଚରଟା ଉଠେଇଲୁ । ହାଁ ।''

''ହେ ! ସେଇଟା ଡାକ୍ତରଖାନାର ।''

''ମୁଁ ଫେରେଇଦେବି । ମୁର୍ମୁ ଯା ଭାରି ଘରକୁ । ଆଉ ମଦ ପି'ନା ।''

''ହେ, ମୋ ଷ୍ଟ୍ରେଚର... ।''

ମାଗୀ କିନ୍ତୁ ଚାଲି ଯାଇଥିଲା ।

ନିମାପଡ଼ା ହସ୍‌ପିଟାଲ୍‌ର ଏସ୍.ଡି.ଏମ୍.ଓ. ଦୁଃଖରେ ମୁଣ୍ଡ ହଲେଇଲେ ।

''ଏଠି ଆମେ କିଛି କରି ପାରିବୁନି ପ୍ରକୃତପକ୍ଷେ । ଅକ୍‌ସିଜେନ୍ ନାହିଁ, ରକ୍ତ ନାହିଁ, କିଛି ନାହିଁ । କାଶ, ସର୍ଦ୍ଦି ପାଇଁ ମଧ୍ୟ ଭଲ ଔଷଧ ନାହିଁ । ଖାଲି କାଲ୍‌ସିଅମ୍ କାର୍ବୋନେଟ, ଚକ୍, ବୁଝିଲେ ? ଏବେବି ମନେ ଅଛି ତା ଫର୍ମୁଲା, $CaCl_2$ ନା ଯାକୁ ଭୁବନେଶ୍ୱର ନେଇଯା'ନ୍ତୁ । ମୁଁ ବନ୍ଧାବନ୍ଧି ଯୋଡ଼ାଯୋଡ଼ି କରିଦେଇଚି । ଯନ୍ତ୍ରଟାକୁ ବି । ଆଶ୍ଚର୍ଯ୍ୟ କଥା କ'ଣ ଜାଣନ୍ତି ? ଲୋକଟା ହିସାବକିତାବରେ ଏ ପର୍ଯ୍ୟନ୍ତ ବଞ୍ଚିଛି, କିନ୍ତୁ ତାର ବଞ୍ଚିବାର କୌଣସି କାରଣ ନାହିଁ । କେମିତି ବଞ୍ଚିଛି କେଜାଣି । ଯା ସାଙ୍ଗରେ କିଏ ଅଛି ? ଟଙ୍କାପଇସା କିଛି ଅଛି ଟ୍ୟାକ୍‌ସି ଫ୍ୟାକ୍‌ସି ଭଡ଼ାକରି କି ମୋ ଗାଡ଼ିଟା ଭଡ଼ାକରି ଭୁବନେଶ୍ୱର ନବାକୁ ? ସେତକ ମୁଁ କରିପାରେ । ସେତକ କିଛି କମ୍ ନୁହେଁ । ଉଁ ?''

''ଟଙ୍କା ଅଛି ଆଜ୍ଞା ।'' ମାଗୀ ତା ଶାଢ଼ି ବଦଳେଇ ଦେଇଥିଲା, ଆଉ କାନ୍ଧରେ ଝୁଲେଇଥିଲା ଗୋଟାଏ ବ୍ୟାଗ୍ ।

''ମୋ ଗାଡ଼ି ପାଇଁ ପାଞ୍ଚଶହ ।''

''ଚାଳିଶି କିଲୋମିଟରକୁ ପାଞ୍ଚଶହ ?''

''ଆରେ, ଦେଖ ! ସବୁ କାମ କିଲୋମିଟରରେ ମପାଯାଏ ନାହିଁ । ଜାଣିଚ ମୁଁ ପାରିକୁଦ ରଜା ପରିବାରର ଲୋକ... ।''

''ମୁଁ ଆଜ୍ଞା ଟ୍ୟାକ୍ସି କରି ନେବି ।''

''ହଉ, ଚାରିଶହ ଦିଅ ।''

''ନାଇଁ ଆଜ୍ଞା, ଶହେ ।''

''କ'ଣ ହେଲା !''

''ହଁ ଆଜ୍ଞା, ଯଦି ଦୟା କରନ୍ତି, ଜଲ୍‌ଦି ନେଇ ଯା'ନ୍ତେ ଭୁବନେଶ୍ୱର ।''

''ଆଚ୍ଛା ମାଇକିନା ତ ଯେ । କ'ଣ ତମ ମତଲବ୍ ଯେ ? ମୋ ରକ୍ତରେ କ'ଣ ଗାଡ଼ି ଚାଲିବ ? ଦେଢ଼ଶହ ।

''ହଉ ଆଜ୍ଞା । ଟିକେ ଜଲ୍‌ଦି ବାହାରିଯିବା ।''

କ୍ୟାପିଟାଲ୍ ହସ୍‌ପିଟାଲ୍, ଭୁବନେଶ୍ୱର । ସତରଟି ଶହେଟଙ୍କିଆ ନୋଟ୍ ସି.ଏମ୍.ଓ.ଙ୍କ ହାତପଇଠ ହୁଅନ୍ତେ - ସେ ଜଙ୍ଗଲମନ୍ତ୍ରୀଙ୍କ ଜୋଇଁ, ସର୍ଜରୀ ବିଶେଷଜ୍ଞ - ଘାଏଁ ଘାଏଁ କାମ ଚାଲିଲା । ନ ଥିବା ଖଟ ଆସି ହାଜିର୍ ହେଲା, ସରିଯାଇଥିବା ଅକ୍ସିଜେନ୍ ସିଲିଣ୍ଡର ଫିସ୍‌ଫିସ୍ କରି ହସିଛୁଟିଲା, ସାଲାଇନ୍ ଆଉ ପ୍ଲାଜମା ଷ୍ଟୋରରୁ ବାହାରିଆସିଲା । ଅନେକ ଇଂଜେକ୍‌ସନ ଦେହସାରା ଫୋଡ଼ା ହେଇଗଲା । ଆଉଥରେ ଭଲ ସିଲେଇ ହେଲା, ଗୋଡ଼ହାଡ଼ଟା ତିନିଘଣ୍ଟା ଶଲ୍ୟକରି ଯୋଡ଼େଇ ହେଲା, ପ୍ଲାଷ୍ଟର କରାଗଲା । ଆଉ କେତେଟା ଦରଶୁଖିଲା ନୋଟର ଖଡ଼ଖଡ଼ରେ ରକ୍ତର ବୋତଲ ସବୁ ସାଙ୍ଗେ ସାଙ୍ଗେ ମଗାହେଇ ଆସିଲା ।

ସନ୍ଧ୍ୟା ପଇଁନ୍ତରା ପରେ ସି.ଏମ୍.ଓ. ମତ ପ୍ରକାଶ କଲେ ''ଲୋକଟାର ଜୀବନଟା ରଖିଦେଲି । ବଞ୍ଚିଯିବ । କିଏ ଭାବିଥିଲା ! କୋମାରେ ଅଛି ଅବଶ୍ୟ, ମୁହଁଟାର ସିଲେଇ ବି ଏକ୍‌ଦମ୍ ଠିକ୍ ହେଇନି - ନିଜକୁ ଚିହ୍ନିବାକୁ ତାର ପ୍ଲାଷ୍ଟିକ୍ ସର୍ଜରୀ ଦରକାର - କିନ୍ତୁ ହାର୍ଟଟା ଚାଲିଚି, ଲଙ୍ଗ୍‌ସ୍ ସଫା ହେଇ ଆସିଲାଣି, ସର୍କୁଲେସନ ବି ଭଲ ଅଛି, କଟା ଜାଗାମାନଙ୍କରେ ପେରିଫେରାଲ ସର୍କୁଲେସନ୍ ଚାଲିଲାଣି । ଆଶ୍ଚର୍ଯ୍ୟ ! ମାନେ ଭୌତିକ । ଭୟରେ ପ୍ୟାଣ୍ଟ ଅପରିଷ୍କାର ହେଇଯିବ

କେହି କେହି ଡାକ୍ତରଙ୍କର । କେବେ ମରିଯିବା ଦରକାର ଜାଣିପାରନ୍ତିନି କେତେ ଲୋକ, ୟା ଭଳି, ହା ହା ।''

ଡା. ପ୍ରଭୁପାଦ ପଟ୍ଟନାୟକ ଭଲକରି ଲମ୍ବା ହସ ହସିଲେ ।

''ମୁଁ ହାତରୁ ଔଷଧ ଦେଇଚି ତା ପାଇଁ ଜାଣତ  ତମେ ବେଶ୍ ସୁନ୍ଦର । ତମ ନାଁ କ'ଣ ?''

ସେ ଆଉ ଶହେଟଙ୍କାରେ ସନ୍ତୁଷ୍ଟ ହେଲେ ।

''ତମେ ଭାରି ସୁନ୍ଦର । ଜାଣିଚ ?'' ପ୍ରଭୁପାଦ ପଚାରିଲେ, ନେପେଡ଼େଇ ହସି, ବଡ଼ ବଡ଼ ଦାନ୍ତ ଦେଖେଇ । ''ତମ ନାଁ କ'ଣ ?''

ମାଗୀ ତାଙ୍କୁ ଚାହିଁଲା ।

''ମୋ ପାଖକୁ ଆସ,'' ପ୍ରଭୁପାଦ ହାତମେଲେଇ କହିଲେ । ମାଗୀ ହଠାତ୍ ହସିପକେଇଲା । ଆଉ ସାଢ଼ି ଖସାଇବା ଉପକ୍ରମକରି ପ୍ରଭୁପାଦଙ୍କ ଆଡ଼କୁ ମାଡ଼ିଆସିଲା । ତାଙ୍କ ହସକୁ ଚନ୍ଦ୍ରଙ୍କ ସମୁଦ୍ର ପରି ଶୁଖେଇଦେଇ ।

''ଆରେ... ମାନେ... ରୁହ... ରୁହ... କିଏ ଆସିଯିବ... ଦୟାକର... ହେ ହନୁମାନ୍... ୟେ କ'ଣ... ନା... ରୋକୋ !''

ଡା. ପଟ୍ଟନାୟକ ତାଙ୍କ ଚଉକି ପଛକୁ ପେଲି ଦଉଡ଼ି ପଳେଇବାକୁ ବାହାରିଲା ବେଳକୁ ଚଉକିଟା ପଛକୁ ଲେଉଟିପଡ଼ିଲା ତାଙ୍କୁ କୋଡ଼ରେ ଧରି । ଯେତେବେଳେ ନର୍ସ ଆଶା ସେଠି ପହଞ୍ଚି ତାଙ୍କୁ ଉଠେଇ ଝଡ଼ାଝଡ଼ି କଲେ, ପ୍ରଭୁପାଦ ତାଙ୍କୁ ଏପରି ଉଲଗ୍ନ ଭାବରେ ନ ବୁଲିବାକୁ ତାଗିଦା କରିଦେଲେ । ଆଶା ନିଜକୁ ପରଖିନେବା ପରେ ଭୀଷଣ ଉଦ୍ଦୀପନାରେ ପ୍ରଭୁପାଦଙ୍କୁ ଚାହିଁଲେ ।

''ବୋମା,'' ପ୍ରଭୁପାଦ କହିଲେ । ''ବୋମା ଧରି ବୁଲୁଚ କ'ଣ ? ଫୋପାଡ଼ି ଦିଅ ।''

ପରଦିନ ସକାଳୁ ଡା. ପ୍ରଭୁପାଦ ପଟ୍ଟନାୟକ ତାଙ୍କର ଘଣ୍ଟାବ୍ୟାପୀ ହନୁମାନ ପୂଜା ଶେଷ କଲାବେଳକୁ ଗୋଟିଏ କଳା ମର୍ସେଡ଼ିଜ୍ ଆସି ତାଙ୍କ ଘର ସାମ୍ନାରେ ରହିଲା । ତା ଭିତରୁ ଜଣେ ମୋଟା ଖଦଡ଼ପିନ୍ଧା ଭଦ୍ରଲୋକ ବାହାରିଆସିଲେ ଖସିଯାଇଥିବା କଛାକୁ କଷ୍ଟରେ ପେଟତଳୁ ଗୋଟେଇ ପଶିଗଲେ ପ୍ରଭୁପାଦଙ୍କ କ୍ୱାର୍ଟର୍‌ରେ ।

''ଡାକ୍ତର୍‌କୁ ଡାକ୍, ଜଲଦି !'' ସେ କହିଲେ ସି.ଏମ୍.ଓ.ଙ୍କ ଚପରାସୀକୁ ।

ଡା. ପ୍ରଭୁପାଦ, ପ୍ରଭୁଙ୍କ ପାଦତଳେ ମୁଣ୍ଡିଆ ମାରିସାରି, ଯେତେବେଳେ ହସ୍‌ପିଟାଲ୍‌ରେ ପହଞ୍ଚିଲେ, ସାଙ୍ଗେ ସାଙ୍ଗେ ଡ୍ୟୁଟି ଡାକ୍ତରଙ୍କୁ ଡାକି ଗୁଣ୍ଡିପାନ ଖଣ୍ଡେ

ଦେଲେ । ଡ୍ୟୁଟି ଡାକ୍ତର, ପ୍ରପାପ (ଏଇ ନାଁରେ ଡାକ୍ତରମାନେ ସି.ଏମ୍.ଓ.ଙ୍କୁ ତାଙ୍କ ଅଜଣାରେ ସମ୍ବୋଧନ କରୁଥିଲେ, ବେଳେବେଳେ ପ୍ରଥମ ଅକ୍ଷରଟି ଛାଡ଼ିଦେଇ)ଙ୍କ ଅଫିସ୍ ବାହାର କାନ୍ଥରେ ପଚ୍ କରି ପିକ ପକେଇଆସିଲେ, ଶୁଣିଲେ, ଆଉ ସର୍ଜିକାଲ୍ ୱାର୍ଡ଼ଆଡ଼େ ଧପାଲିଲେ । ପାଞ୍ଚମିନିଟ୍‌ରେ ଡ୍ରିପ୍‌ଗୁଡ଼ାକ କଢ଼ା ହେଇଗଲା, ନାକରୁ ଅକ୍‌ସିଜେନ୍ ନଳୀ ଟାଣି ନିଆଗଲା । ସବୁ ଘୋଷାରି ଓଟାରି ନେଇ ନିଖୋଜ କରାଗଲା, ଅନେକ ବ୍ୟାଣ୍ଡେଜ୍‌ରେଗୁଡ଼ିଆ ଲୋକଟାକୁ ଖଟରେ ନିଶ୍ଚଳ ଭାବେ ଛାଡ଼ିଦେଲେ ଅସମ୍ପୂର୍ଣ୍ଣ ଅପାରଗ ମମ୍ମିପରି ।

ସୁନ୍ଦର ଛାଟିଦେଲା ପରି ଷ୍ଟାଫ୍‌ନର୍ସ ମଣ୍ଡଦିଆ ଶାଢ଼ି ଆଉ ମୁକୁଟ ମଝିରେ କଟମଟ କରି ଚାହିଁଲେ । ‘‘କ’ଣ ବ୍ୟାଣ୍ଡେଜ୍‌ବି ଓଟାରିନେବି ?’’

‘‘କେଜାଣି, ପ୍ରପାପ ସେକଥା ତ କିଛି କହିଲାନି । ବ୍ୟାଣ୍ଡେଜ୍ କ’ଣ ଏଇଠି ହେଇଥିଲା ?’’

‘‘ମୁଁ କେମିତି ଜାଣିବି । ମୁଁ କାଲି ଉପରବେଳା ଡ୍ୟୁଟିରେ ନ ଥିଲି ।’’

‘‘ଧେତ୍ତେରି । ଡିସିସନ୍, ଡିସିସନ୍, ଡିସିସନ୍, ଆଉ ବଡ଼ିସକାଳୁ ।’’

‘‘ହଁ, ଯଦି ବ୍ୟାଣ୍ଡେଜ୍ ଖୋଲିବ, ସିଲେଇକୁ କ’ଣ କରିବି ? କାଟିଦେଇପାରିବି ଅବଶ୍ୟ । ପ୍ଲାଷ୍ଟର ବି । ତୁମେ ଯୋଡ଼ାହାଡ଼କୁ ମାର୍ତ୍ତୁଲ୍‌ରେ ଭାଙ୍ଗିଦେଇପାରିବ । ଭାଙ୍ଗିବାକୁ କେମିତି ହବ ନିଶ୍ଚୟ ଜାଣିଥିବ । ବେଶ୍, ସବୁ କାମ ଫତେ ହେଇଯିବ ।’’

‘‘ମୋ ଡାହାଣ କାନ୍ଧ ରକା ହେଇଯାଇଚି ପା, ମୁଁ ସେ ମାର୍ତ୍ତୁଲ୍‌ଟା ଟେକି ପାରିବିନି । କାନ୍ଧରେ କଣ୍ଟା ଭୁଷା ହେଲାପରି ଲାଗୁଚି ।’’

‘‘ତାହେଲେ ରକା ନୁହେଁ ଡାକ୍ତରବାବୁ, ଫ୍ରୋଜେନ ସୋଲଡର୍ । ଶୁଣିଥିବ ବୋଧହୁଏ ।’’

‘‘ଏଠି ଡାକ୍ତର କିଏ ? ତୁମେ ନା ମୁଁ ?’’

‘‘ମୁଁ ନୁହେଁ ନିଶ୍ଚୟ । ତୁମ ବିଷୟରେ କିନ୍ତୁ କହିପାରିବିନି । ଏଠି ସାଧାରଣତଃ ଡାକ୍ତରମାନଙ୍କର ମୁଣ୍ଡଜାଗାରେ ପକେଟ୍ ଥାଏ ରୋଗୀର ଟଙ୍କାପାଇଁ । ତମର ତା’ବି ଥିଲା ପରି ଲାଗୁନିତ ।’’

‘‘ତୁମେ ସୀମା ଟପିଯାଉଚ ।’’

‘‘ଟପିବାକୁ ପଡୁଚି, ବିଶେଷତଃ ଯେତେବେଳେ ତମେ ଦୁଆର ଖୋଲି ଭିତରକୁ ଆସି ପାରିଲନି କାଲି ରାତିରେ । ଅଥଚ ବାହାଦୁରିରେ ଫୁଲା ଚେହେରା ଦେଖେଇ ହେଉଛ ?’’

''ମୁଁ ପିଇ ଦେଇଥିଲି ।''

''ସେଇଠୁ କ'ଣ ହେଲା !''

''ସେଇଠୁ କ'ଣ ହେଲା, ମାନେ ?''

''ବ୍ୟାଣ୍ଡେଜ୍ ଖୋଲିବି ନା ନାହିଁ ?''

''ମତେ ଛାଡ଼ିଗଲ ଏଠୁଁ ! ଓଃ ଓଃ ଓଃ ଓଃ । ମୁଣ୍ଡଟା ବି ବଥେଇଲାଣି ।''

''ଧନ୍ୟବାଆଦ୍ ।''

ନର୍ସଟି ଟୋକା ଡ୍ୟୁଟି ଡାକ୍ତରଙ୍କର ନୋଳିଆ ଫଡ଼ିଆରେ ଗୋଟିଏ ଭଲ ଚାପଡ଼ା ପିଟି ନଜର ବୁଲେଇ ଚାଲିଗଲେ । ଡା. ଜନକଲ୍ୟାଣ ମହାନ୍ତି ଦି'ଟା ହିପ୍‌ଟୋଜେନ୍ ବଟିକା ଚିରି ବାହାର କରି, ଟେବ୍ଲରୁ ପାଣି ଗ୍ଲାସେ ନେଇ ଗିଳିଲେ । ତାଙ୍କୁ ଭାରି ଦୁଃଖ ଲାଗୁଥିଲା । ବହୁତ୍ ବହୁତ୍ ଦୁଃଖ । ସେ ନିଜେ ବି ସେକଥା ଜାଣିପାରୁଥିଲେ । ସେ ଦୁଃଖିତ । ମନ୍ତ୍ରୀଙ୍କ ଶଳାଙ୍କ ଜୋଇଁ ହେଇଥିଲେ ବି ତାଙ୍କୁ ଦୁଃଖ ଲାଗୁଥିଲା । ଭୁବନେଶ୍ୱର ପୋଷ୍ଟିଂଟା ଅବଶ୍ୟ ସେଇ ସୂତ୍ରରେ ହେଇଯାଇଥିଲା । ସେ ସବୁକଥା ମନେପକେଇ ମୁଣ୍ଡ ଦହିକୁ ଜୋର୍‌ରେ ହଲେଇ ଭାବିବାକୁ ଲାଗିଲେ କାହିଁକି ତାଙ୍କୁ ଦୁଃଖ ଲାଗୁଥିଲା । କାରଣଟା ମିଳୁ ନ ଥିଲା ତାଙ୍କୁ ।

''ଆପଣଙ୍କର କ'ଣ ଅଧିକା ଟଙ୍କା ଦରକାର ?'' ମାଗୀ ପ୍ରଭୁପାଦଙ୍କୁ ପଚାରିଲା । ଚୁପ୍‌ଚାପ୍ ।

ଟେବୁଲ୍ ତଳେ ଜଙ୍ଘ କୁଣ୍ଡିଆ ।

''ନା । ଟଙ୍କା ନୁହେଁ,'' ପ୍ରଭୁପାଦ ଆଖି ନ ଉଠେଇ ଅନିଚ୍ଛାରେ କହିଲେ ।

''କାଲି ସନ୍ଧ୍ୟା ପେଇଁ ?''

''ନା, ନା ।''

''ତା ହେଲେ ? ଦୟାକରି ତାଙ୍କୁ ଚିକିତ୍ସା କରନ୍ତୁ ।''

''ନା । ଦୁଃଖର କଥା । ନାଃ । ଏଠି ଯାହା ହେଇପାରିବା କଥା ମୁଁ କରିଦେଇଚି । ତାକୁ ଶୀଘ୍ର ଏଠୁ· ନେଇଯାଅ । କଟକ ମେଡ଼ିକାଲ୍ କଲେଜକୁ ନେଇଯାଅ । ବଡ଼ଡାକ୍ତରଖାନା । ସବୁ ଠିକ୍ ହେଇଯାଇଚି । ଖାଲି ତାକୁ ନେଇଯାଅ । ସେମାନେ ସବୁ ଠିକଣା କରିଦେବେ ।''

''ଆଉ ଦିନଟେ ଦୟାକରି । ମୁଁ ଅନ୍ୟ ବନ୍ଦୋବସ୍ତ କଲାଯାଏ ।''

''ଅସମ୍ଭବ । ସାଙ୍ଗେ ସାଙ୍ଗେ ନେଇଯାଅ ତାକୁ ।''

''ନା ।''

''ମାନେ ? ତାକୁ ନବନି ? ଅବଶ୍ୟ ନେଇଯିବ । ନିଜ ଭଲପାଇଁ କହୁଚି ।''

''ମୁଁ ତାଙ୍କୁ ନେଇଯିବି ନାହିଁ !''

''ହେ ପ୍ରଭୁ ହନୁମାନ ! ତମେ ଥଟ୍ଟାରେ କହୁଚ । ତମେ ସେମିତି କରିବନି । ମୋ ଚାକିରି ଚାଲିଯିବ । ମତେ ଟ୍ରାନସ୍‌ଫର୍ କରିଦେବେ, ମତେ ସସ୍‌ପେଣ୍ଡ କରିଦେବେ, ମତେ ଡିମୋଟ୍ କରିଦେବେ । ସେମାନେ ମୋ ବିରୋଧରେ ସେ ଲାଞ୍ଚକେଶ୍‌ଟା ପୁଣି ଖୋଲିବେ । ତମେ ଜାଣିଚ ମୁଁ ମୁଖ୍ୟକୁ ପଚାଶହଜାର, ସ୍ୱାସ୍ଥ୍ୟକୁ ପଚିଶ, ସେକି, ଡିରି, ଆଉ ଟିରି ମେମ୍ବରମାନଙ୍କୁ ଦଶ ଦଶ ଦେଇ ଚାକିରି ରଖିଚି । ହନୁମାନଙ୍କ ହଲପ । ଦୟାକରି ମତେ ଏମିତି ହଇରାଣ କରନି । ହେଇ, ତମ ଟଙ୍କା ନେଇଯାଅ, ସେଥିରୁ ଖାଲି ଶହେଟା ଟଙ୍କା ଖର୍ଚ୍ଚ କରି ଦେଇଚି ମୋ ଝିଅପାଇଁ ଗୋଟେ ଫ୍ରକ୍ କିଣି । ମୁଁ ଆମ ଆମ୍ବୁଲାନ୍ସରେ ତମକୁ ପଠେଇଦେବି । ଏ ଶହେଟଙ୍କା ଆମ୍ବୁଲନ୍ସ ପାଇଁ ରଖୁଚି । ଆରେ ହେ ମକରା । ଆମ୍ବୁଲାନ୍ସ୍ ଡ୍ରାଇଭରକୁ ଡାକ ଆଉ ଦି'ଟା ୱାର୍ଡ଼ ସର୍ଭାଣ୍ଟକୁ କହ ଷ୍ଟ୍ରେଚର ଧରି ସର୍ଜରୀ ୱାର୍ଡ଼କୁ ଯିବେ । ମତେ ଦୟାକରି ରକ୍ଷା କର । ମୁଁ କାଲି ସନ୍ଧ୍ୟାରେ ତମକୁ ସାହାଯ୍ୟ କରିଥିଲି । କରି ନ ଥିଲି ? ତମେ ପ୍ରକୃତରେ ସୁନ୍ଦର ।''

''କିନ୍ତୁ କାହିଁକି ?''

''ମାନେ ? ପୁଣି 'କାହିଁକି,' କ'ଣ ? ତମକୁ କହିଲି ପରା । ମୋ ଚାକିରି ଚାଲିଯିବ । ଇମିତିକି ମତେ ମାରି ବି ଦେଇପାରନ୍ତି ।''

''କାହିଁକି ?''

''ଏଁ ? ମୁଁ କେମିତି ଜାଣିବି ? ମୁଁ କିଛି ଜାଣିନି । ମୁଁ ନିର୍ଦ୍ଦୋଷ । ଦୟାକରି ମତେ ଛାଡ଼ିଦିଅ ।''

''ସେମାନେ କିଏ ?''

''ମୁଁ କିଛି ଜାଣିନି, ଦୟାକର ଭଲା ।''

''କିଏ ?''

ଡାକ୍ତର ନିରସ୍ତ୍ର ହେଇ ତା'ଆଡ଼କୁ ଚାହିଁଲେ । ସେ ତାଙ୍କ ଡାହାଣହାତର ବୁଢ଼ାଆଙ୍ଗୁଠି ଓପରକୁ ଦେଖାଇ ଆଖି ଓଲଟାଇ ଦେଲେ ।

ଚାରିମିନିଟ୍‌ରୁ କମ୍ ସମୟରେ ଲୋକଟାକୁ ଆମ୍ବୁଲାନ୍ସରେ ପୂରେଇଦେଲେ । ଆଉ ସାତମିନିଟ୍‌ରେ ଗାଡ଼ିର ଇଞ୍ଜିନ୍‌ଟା କାଶି କାଶି ଘଁ ଘଁ କଲା, ଆଉ ଆମ୍ବୁଲାନ୍ସଟା କେଁକଟର କରି ଗଡ଼ିଚାଲିଲା । ବୁଢ଼ା, ନିଶୁଆ, ଚମଡ଼ିଆ ମୁହଁ, ରଙ୍ଗେଶ୍ୱର ଡ୍ରାଇଭର, ସ୍ଫିଙ୍କସ ପରି ବସି ଚଲଉଥିଲା ।

"ସେ ଗଛମୂଳେ ଗାଡ଼ି ରଖ," ମାଗୀ କହିଲା ।

"ହଉ ।"

ରଙ୍ଗେଶ୍ୱର ଧୀରି କରି ଗାଡ଼ି ରଖିଲା । ମାଗୀ ମୁହଁବୁଲେଇ ନରମ କରି ଚାହିଁଲା ତାକୁ ।

"ତୁମେ ମତେ ସାହାଯ୍ୟ କରିବ ?" ମାଗୀ ସେ ଆଦିମ ଡ୍ରାଇଭରକୁ ପଚାରିଲା ।

ନିସ୍ତବ୍ଧତା ।

"ହଁ ।" ରଙ୍ଗେଶ୍ୱର ଶେଷରେ କହିଲା ମନରୁ କୁହୁଡ଼ି ଆଡ଼େଇ ।

"ୟାଙ୍କୁ କାହିଁକି ହସ୍‌ପିଟାଲ୍‌ରୁ ବାହାର କରିଦେଲେ ?"

"ହୁଃ । ମୁଁ ଭାବୁଚି ଉପରମହଲ ଲୋକେ ଏଟାକୁ ଚାହାନ୍ତିନି ବୋଧେ । କିଏ ଏଟା ? ତମ..."

"ମୁଁ ଜାଣିନି ।"

"ଆଚ୍ଛା ?"

"ମେଡ଼ିକାଲ୍ କଲେଜ୍‌ରେ ୟାର କ'ଣ ହବ ?"

"ସେ ଶଳା ପ୍ରଭୁପାଦ ଯଦି ଏକୁ ସେଠିକି ପଠେଉଚି, ତା ହେଲେ ଉପୁରୁ ଅର୍ଡ଼ର ପାଇ ସେମାନେ ସେଠି ନିଶ୍ଚେ ବନ୍ଦୋବସ୍ତ କରିଥିବେ । ଏଟା ମର ମର ଯାହା ହଉଚି ମରିବ ।"

"ତା ହେଲେ ସେଠିକି ଯିବା କଥା ନୁହେଁ ।"

"ହଉ ।"

"ୟାର ଗୋଟେ ଭଲ ଡାକ୍ତର ଦରକାର, କ'ଣ କରାଯାଇପାରିବ ?"

କିଛିବେଳ ଚୁପ୍ ଚାପ୍ ।

"ତମ ପାଖେ ଟଙ୍କା ଅଛି ?"

"ଅଳ୍ପ ସଳ୍ପ ।"

"ମୁଁ ଭାବୁଚି ତମ ଲାଗି ଜାଗାଟାଏ ଅଛି । ସେ ବୁଢ଼ା, ଭାରି ବୁଢ଼ା ଏବେ । ଡା. ପ୍ରହରାଜ । ଜଗନ୍ନାଥ । ସେ ଯେତେବେଳେ ପୁରୁଣା ପୁରୀ ହେଡ଼କ୍ୱାର୍ଟର ହସ୍‌ପିଟାଲ୍‌ରେ ଥିଲେ, ମତେ ଚାକିରି ଦେଇଥିଲେ । ମଣିଷ ପରି ମଣିଷଟାଏ । ପାହାଡ଼ ପରି, ତମକୁ ସାହାଯ୍ୟ କରିବେ ।"

"ପଛର ସେ ଦି'ଟା ଷ୍ଟ୍ରେଚର ବୁହାଳିଙ୍କୁ ଛାଡ଼ି ଦେଇହବ ?"

''ମତେ ଦଶ କୋଡ଼ିଏ ଟଙ୍କା ଦିଅ । ସେତକ ପିଇବା ପାଇଁ ପାଇଗଲେ କାଲି ସକାଳ ପର୍ଯ୍ୟନ୍ତ ଗାଏବ ହେଇଯିବେ ସେମାନେ ।''

ରଙ୍ଗେଶ୍ୱର ଓହ୍ଲେଇ ପଛକୁ ଗଲା ।

ପଛରୁ ଆନନ୍ଦ ଧ୍ୱନି ହେଲା ।

ରଙ୍ଗେଶ୍ୱର ଫେରିଆସିଲା ।

''ହେଇଗଲା ।''

''ସେମାନେ ଚାଲିଯାନ୍ତୁ ଦୂରକୁ ।''

''ହଉ ।''

''ସେ ଡାକ୍ତର କୋଉଠି ରହନ୍ତି ?''

''ପୁରୀରେ । ସ୍ୱର୍ଗଦ୍ୱାର ପାଖରେ । ତାଙ୍କର ଗୋଟେ ସାନ ହସପିଟାଲ୍ ଅଛି । ପେଟ୍ରୋଲ୍ ପାଇଁ ଟଙ୍କା ଅଛି ?''

''ହଁ । କଟକ ନ ଯାଇ ପୁରୀ ନେଇଗଲେ ତୁମକୁ ଦଣ୍ଡ ଦେବେ ?''

''ହଁ । ସେ କଥାଟା ଭାବି ନ ଥିଲି । ମେଡ଼ିକାଲ କଲେଜରେ ଯଦି ସେମାନେ ଜଗି ବସିଥିଲେ ତେବେ ମୋ... ତୋଟିକୁ ଝୁଣିନେବେ ଆସି ।''

ନିସ୍ତବ୍ଧତା ।

ଖଜବଜ କିଛି ନାହିଁ ।

ସିଧା ସାମନାକୁ ଚାହାଣି ।

''ଝୁଣନ୍ତୁ । ମୁଁ ତ ଆରମାସରେ ରିଟାୟାର୍ କରିବି ।''

ଚୁପ୍ ଚୁପ୍ ।

''ଉଁ ? ଆଉ ପୁଣି ଗୁମୁସୁମୁ କାହିଁକି ?''

''ୟେ ଯଦି ମରିଯାଏ, ତା ହେଲେ ?''

''ଆଃ ! ଠିକ୍ କହିଚ, ସେଇଟାଇ ଅସଲ ବାଟ ।''

''ମୁଁ ଯଦି ୟାକୁ ପୋଡ଼ିଦିଏ ?''

''ତମେ ଜିତିଗଲ ।''

''ଚାଲ କଟକ ରାସ୍ତାରେ କୋଉ ନଈକୂଳିଆ ନିଛାଟିଆ ମଶାଣିକୁ । ଅଛି ?''

"ଅଛି ।"

"ବାଟରେ କାଠ ମିଳିବ ?"

"ଆଉ ବ୍ୟସ୍ତ ହୁଅନି । ସବୁ ମିଳିବ ।"

ସବୁ । ସବୁବେଳେ । ମରିବାପାଇଁ ।

"ତୁମେ ମତେ ଘିନିପାର ।"

"ଆଚ୍ଛା । ବାହାରିପଡ଼ିବା ତାହେଲେ ।"

ସେ ଷ୍ଟାଟର ଚାବି ମୋଡ଼ିଦେଲା ।

"ଚାଲିପଡ଼, ଲାଗିଯା, ଷ୍ଟାଟ୍ ହେଇଯାରେ ମୋ ବୁଢ଼ା ହଡ଼ା, ଉଠିପଡ଼ । ଲାଗିଚି ନିଆଁ । ଏ ଜଙ୍କଲଗା ଟିଣଡବାଟା ମୋ ଦେରିଆ ପୁରୁଣା ।"

ଜିଂ ଜିଂ ଜିଂ ଜିଂ ଜିଂ ଜିଂ ଜିଂ ଜିଂ ଜିଂଜିଂ ଜିଂଜିଂ ।

## ।। ୩ ।।

## ସ୍ୱର୍ଗରୁ ପଡ଼ିଲେ ପଞ୍ଚୁପାଣ୍ଡବେ ମାରି ବନବାସ ଗଲେ

କର୍କଟ କାଳ ଆଉ୍ କଣ୍ଟେ । ବାବା ବୁଗି ଆଲୁଅ ଡିଆଁ $୬\times୧୦^{୧୨}$ ଲିଡାନ୍ୱିତ ଦ୍ୱିପାଦ ଗଣ୍ଡ ଅଗନ୍ତବ୍ୟାଦି ଘୋଡ଼ାଲାଗି ନୀତି $(୫.୮\times୧୦^{୧୨})^{୨}$ କୌଳବ ଫୋଟନ୍ ଢେଉର ଜିଂ ଜିଂ ଅସମ୍ଭାଳ ଛୁଞ୍ଚିକେଞ୍ଚା ବ୍ରହ୍ମାଣ୍ଡଟିରା ଡୀର ତାଗିଦା ଝାଇଁ ଝାଇଁରେ ବ୍ୟତିକ୍ରମ ହେଇ ବିଷ୍ଟି ପରିଘ ବ୍ୟତିପାତ କଲେ । ବନ୍ଦ ହେଲା କୌଳବ ଫୋଟନ୍ ପାହାର । ଆଦେଶ ଆଗରୁ । ଯନ୍ତ ଚକ୍ର ଧସେଇଯିବା ପୂର୍ବରୁ ।

ଆହ୍, ଓହୋ, ଉଁ ହୁଁ, ବାବା ବୁଗି କହିଲେ । କିଏ ଜାଣିଥିଲା ?

ଏଥର ଲକ୍ଷ୍ୟଭେଦ କର ଆଉଥରେ । କହିଲେ ପାରା-ସାଇବର୍ଗ ୩୨୧ ।

କୁଆଡ଼େ ଗଲା ଆମାଇନୋ ଏସିଡ଼ର ବେଙ୍ଗପୁଲା ମେଦାଟା ? ଚୁମ୍ବକ ନାଡ଼ଟା ତ ଗଳି ରହିଛି । ମୁଣ୍ଡ କଣାରୁ ତାରଟା କାଢ଼ି ପୂରେଇ ଦେଲେ ତା ଶେଯରେ । ବାଁହାତ ମଝିଆଙ୍ଗୁଠି ଯନ୍ତଖାପରେ ଏପଟ ସେପଟ କରି ଠିକ୍ ଧରିନେଲେ । ପଞ୍ଚ ଖଞ୍ଚା ଆଣି ପାଟିରେ ଗେଞ୍ଜିଦେଲେ । କାନ, ଆଖି, ଆଉ କାର୍ବନାମାଇନୋ ଜୈବିକ ସମୟ ସ୍ୱାଦ ବୁଝିପାରିଲା ଭଳି । ଖୋଳଟା କାଢ଼ିଦେଇ ସ୍ୱପ୍ନକବଚ ଖୋପରେ ମାଡ଼ି ଦେଲେ । ଚିପା ଯନ୍ତ ଭୁଣ୍ଡିଟା ଆଙ୍ଗୁଠିରେ ଧରି ଟାଣି ବଡ଼ କରିଦେଲେ ଲାଲ୍ ହେଇ ।

କୁଆଡ଼େ ଗଲା ? ଯିବ କୁଆଡ଼େ ?

ସେ ଯନ୍ତ୍ର ଭୁଣ୍ଡି ମୋଡ଼ିଲେ । ଚିତ୍ରା, ଶ୍ରବଣା, ଅଶ୍ଳେଷା, ମୃଗଶିରା, ଏପ୍‌ସିଲନ୍, ରୁଦ୍‌ବାଃ, କାସିଓପିଆର ଗାମା ଦେଇ ମେଟା ମାଇକ୍ରୋ ଢେଉ ମାଡ଼ିଆସି ତାଙ୍କ ଲିଙ୍ଗକୁ କମ୍ପେଇ ଦେଲେ ।

ଚାରିଆଡ଼େ ଘିର୍ ଘିର୍ ଚିକ୍ ଚିକ୍ ।

ଠିକ୍ ଜାଗା ଥିଲା । ସେଇଟା ତ ପୃଥିବୀ ।

ଅଗ୍ନିକୋଣ ଘାତ ପ୍ରତିହତ ।

ବଢ଼େଇ ୧୫୩୪୬୦୦ । ଚିତ୍ରା, ଶ୍ରବଣା, ମୃଗଶିରା, ଅଶ୍ଳେଷା ।

ଯଥେଷ୍ଟ ମ୍ୟାଗ୍‌ନିଫିକେସନ୍ । ଇଣ୍ଟର୍‌ଫିଅରେନ୍‌ସ ପୂରାପୂରି ନିହତ ନୁହେଁ । ଯନ୍ତ୍ରଦୋଷ । ଚଳିବ ।

ଆହାଃ !

ଟ୍ରାଲ୍‌ଫାମାଡୋର୍ ଚାଲିଯାଇଚି ଛାଡ଼ି ସେ ଶୂନ୍ୟ । କାଉଣ୍ଟର୍ ଫୋର୍ସ ବି ନାହିଁ । ଆଉ କ୍ଲିଙ୍ଗନ୍‌ମାନେ ବି କୋଉଠି ଦିଶୁ ନାହାନ୍ତି । ପଳେଇଚନ୍ତି ଛାଟିପିଟି ହେଇ । ଗ୍ରାଭିଟିର ଇନ୍ଦ୍ରଧନୁ ବି ନାହିଁ ରାସ୍ତାକୁ ବଙ୍କେଇବାକୁ ।

ଆମ ଲୋକଟା କାହିଁ ? ବାବା ବୁଗି ପଚାରିଲେ ।

ତମେ ସମୟ ଓ ଲକ୍ଷବିଶ୍ୱକୁ ବଙ୍କା କରି ଦେଇଚ, କହିଲେ ପାରା-ସାଇବର୍ଗ ୩୨୧ । ମୁଁ ଖୋଜୁଚି ଆଉଥରେ । ପଟ୍ଟଜାଲ ଦେଖ । ଚିତ୍ରଧ୍ୱନି ଆସୁଚି ।

*ଏକଦିନେ ନାରଦ ମହରଷି ।*
*ବାଲମୀକି ଆଶ୍ରମେ ହେଲେ ଆସି ॥*
*ତାଙ୍କୁ ଦେଖି ବହୁ ପୂଜା କଲେ ।*
*ମନ ସଂଶୟ ତାଙ୍କୁ ପଚାରିଲେ ॥*
*କେଉଁ ପୁରୁଷଠାରେ ସର୍ବଗୁଣ ।*
*ଅଛି କାହାଠାରେ ସର୍ବ ଲକ୍ଷଣ ॥*
*ରବି ପ୍ରାୟ ହୋଇବ ତେଜୋବନ୍ତ ।*
*ପବନ ପ୍ରାୟ ହେବ ବଳବନ୍ତ ॥*
*ସତ୍ୟର ସେ ହେବ ମହାସାଗର ।*

ଶାନ୍ତି, ଦୟା, କ୍ଷମାରେ ପ୍ରବର ।।
ମହୀ ପ୍ରାୟକ ହୋଇବ ସହଣି ।
ଧନରେ କୁବେରକୁ ଜିଣି ।।
ଶତ୍ରୁଁ ଅଧିକ ହେବ ଧନୁର୍ଦ୍ଧର ।
ବିଦ୍ୟାରେ ହେବ ବୃହସ୍ପତି ବର ।।
କ୍ରୋଧେ ହୋଇବ ଅନଳୁଁ ପ୍ରଖର ।
ଶାନ୍ତି ଗୁଣେ ଶରଦଶୀତକର ।।
ଧାତା ପ୍ରାୟେକ ହୋଇବ କରତା ।
ତମୋଗୁଣେ ଶିବଙ୍କୁ ଅଧିକତା ।।
ମନମଥ ଜିଣି ହେବ ସୁନ୍ଦର ।
ସର୍ବଗୁଣେ ହୋଇବ ଉଦାର ।।
କିଛି ନ ଥିବ ତାର ଅବିଗୁଣ ।
କେଉଁ ପୁରୁଷେ ଅଛି ଏ ଲକ୍ଷଣ ।।
ଶୁଣି ନାରଦ ବୋଲନ୍ତି ବଚନ ।
ରାମଚନ୍ଦ୍ର ଦଶରଥ ନନ୍ଦନ ।।
ତାଙ୍କଠାରେ ଅଛି ସର୍ବଗୁଣ ।
ଅବତରିବେ ସ୍ୱୟଂ ନାରାୟଣ ।।
ବାପ ମରିଲା ପୁଅ ପାଇଁ ।
ଭାଇରେ ସଂକଟ ଦିଶଇ ।।
ତଡ଼ା ଖାଇ ସେ ବନବାସ ।
କିନ୍ତୁ ନ ନେଲେ ସନ୍ନ୍ୟାସ ।
ସୁଠାମ ଶୂର୍ପଣଖାର କେଳି ।
ଖେଳ ଖେଳିଲେ ମହାବଳୀ ।।
ବିବାହେ ଉଠିଲା ବିଭେଦ ।
କଲେ ତା ନାସା କର୍ଣ୍ଣ ଛେଦ ।।

*ବୀର ଦର୍ପରେ ଚଳିଯାଇ ।*
*ମାରିଲେ ବାଳୀ' ଲୁଚିରହି ॥*
*ରାବଣୁ ପତ୍ନୀ ଆସି ଘିନି ।*
*ଅଗ୍ନିରେ ନିକ୍ଷେପିଲେ ସାନି ॥*
*ଧୋବଣୀ ହେଲା କାନ କୁହା ।*
*ପତ୍ନୀକୁ ବନେ କଲେ ଠିଆ ॥*
*ପୁତ୍ର ଯେ ବନେ ଜନ୍ମ ହେଲେ ।*
*ରାମକୁ ଗଡ଼ାଇ ଧରିଲେ ॥*
*ପତ୍ନୀ ବର୍ଜ୍ଜନ କଲା ତାଙ୍କୁ ।*
*ପୁତ୍ରେ ଚାହିଁଲେ ସରଯୁକୁ ॥*
*ତାଙ୍କ ଚରିତ୍ର ଯେ ଅପାର ।*
*ତାଙ୍କୁ ହିଁ ଉପାସୀ ନିସ୍ତର ।*

*ବୋଲୋ ରାମଚନ୍ଦ୍ର କି ଜଏ ।*
*ହାଁ ବୋଲୋ ବୋଲୋ ସୀଆ ମାଈ କି ଜଏ ।*
*ହାଁ ବୋଲୋ, ବୋଲୋ ବୋଲୋ । ହାଁ...*

ଚୋପ ! ବନ୍ଦକର । ଚାବି ବୁଲାଅ । ଏସବୁ କ'ଣ ?

ଇଣ୍ଟର କ୍ରୋମାଜୋମ୍ କେମୋ ଇନ୍‌ଫିଲ୍‌ଟ୍ରେସନ୍ ବିଭ୍ରାଟ । ଓହୋ । କୁଆଡ଼େ ଗଲା ? ମୁଁ ? ଏଇଟା ? ଅବତାର ନା ! ଯେମିତି କହନ୍ତି । ହା, ହା ।

ସ୍ୱୋର୍ । ସ୍ୱୋର୍ ।

ଆଉଥରେ ଖୋଜ । ମୋ ମଣିଷକୁ ଧରି ଆଣ । ଜଲ୍‌ଦି, ତାଙ୍କ ଭାଷାରେ ।

ଚିତ୍ର ଆସୁଚି । ପରମ ଧର୍ଷିତ ।

ଆରେ ଯେ ତ ଗୋଟାଏ କଟା ମୁଣ୍ଡ !

*''କ'ଣ ଦେଖିଲ ?'' ପଚାରିଲେ ବଞ୍ଚି ଯାଇଥିବା ଯୁଦ୍ଧକ୍ଳାନ୍ତ ସୈନ୍ୟମାନେ ।*

*''ଦେଖିଲି ? ଦେଖିବାକୁ ଥିଲା କ'ଣ ?'' ବେଲାଳସେନ କଟାମୁଣ୍ଡଟା କହିଲା, ଯୁଦ୍ଧ ଭୂଇଁରେ ତା ଉଚ୍ଚା ମଞ୍ଚରୁ ।*

'ଦେଖିବାକୁ ଥିଲା କ'ଣ ବୋଲି କ'ଣ କହୁଚ ? ତମେ ପରା ଯୁଦ୍ଧଟା ଦେଖିଲ । ଏ ମହାଯୁଦ୍ଧ ? ପୂରା ମହାଭାରତ ଯୁଦ୍ଧ, ଯୋଉ ବୀରତ୍ୱରେ ପ୍ରବଳ ଯୁଦ୍ଧ ଆମେ ଲଢ଼ିଲୁ । ଆମେ କ'ଣ ସବୁ ଅଦୃଶ୍ୟ ହେଇଯାଇଥିଲୁ ?'' ଯୁଦ୍ଧକ୍ଳାନ୍ତ ସୈନ୍ୟମାନେ ବିରକ୍ତ ହେଇ ପଚାରିଲେ ।

କୃଷ୍ଣ ଗାମ୍ଭୀର୍ଯ୍ୟ ଦେଖେଇ କହିଲେ : ''ମୁଁ ପରା ତୁମ ଇଚ୍ଛା ପୂରଣ କରିଥିଲି, ତମ ମୁଣ୍ଡ କାଟିବା ପୂର୍ବରୁ, ତମେ ଯିମିତି ଯୁଦ୍ଧଟା ଦେଖିପାରିବ ବୋଲି ।''

''ତମେ ମୋ ଇଚ୍ଛା ପୂରଣ କଲ ! ଆଉ ହସାଅନି । ଜାଣିଚ ତ ତମେ, ମୁଁ ମୋର ଗୋଟିଏ ଅଜସ୍ର ଭୁଜା ତୀରରେ କ'ଣ କରି ପାରିଥିଲି । ମୁଁ ତୁମକୁ ଏକଥା କରିବାକୁ ଦେଲି ଖାଲି ଦେଖେଇଦବାକୁ ତମେ କିମିତି ଲୋକ, ଆଉ ତମେ ସବୁ ବି କୋଉ କାଟର ।''

ବ୍ୟାସ ଆଗେଇ ଆସି କହିଲେ : ''ହେଲେ ମୁଁ ତ ତମକୁ ଉଚ୍ଚ ଜାଗାରେ ସ୍ଥାପନ କଲି ଯିମିତି ତମେ ଯୁଦ୍ଧଟା ଦେଖିପାରି ମୋର ସାକ୍ଷୀ ହବ । ତିନିବର୍ଷ କାଳ ବ୍ରାହ୍ମଣୀ କୂଳରେ ବସି ମନମୂନ ଚଇତନ ଲଗେଇ ମୁଁ ଲେଖିଲି ଏ ଗପ, ଆଉ ତମେ କହୁଚ କଣ ନା ଦେଖିବାକୁ କିଛି ନାହିଁ । ଏଇଟା ଅତି ବେଶି ହେଇ ଯାଉଚି । ତମେ ମୋ ଚରିତ୍ର, ଯାହା ଚାହିଁବି ତମେ ସେଇଆ କହିବ ।''

''ନା ମୁଁ କହିବି ଯାହା ମୋ ଇଚ୍ଛା, ଆଉ ଯାହା ମୁଁ ଦେଖିଚି ।''

ଅର୍ଜୁନ ବାହାରିପଡ଼ି କହିଲେ : ''ତାର ଈର୍ଷା ହଉଚି । ସେ ମୋ ଯୁଦ୍ଧର ବିଚକ୍ଷଣତା ମାନିବାକୁ ରାଜି ନୁହେଁ ।''

''ଯୁଦ୍ଧ ବିଚକ୍ଷଣତା ! ହସାଅନି ।''

କ୍ଳାନ୍ତ ସୈନ୍ୟମାନେ କହିଲେ : ''ଆଉ ଆମେ ? ଆମ କଥା କ'ଣ ? ଆମେ ସମସ୍ତେ ଲଢ଼ି ଜିତିଲୁ ଏ ଯୁଦ୍ଧକୁ । ତମେ ତ ସେସବୁ ଦେଖିଥିବ । ସବୁ କଥା ଖୋଲାଖୋଲି କୁହ, କିଏ କ'ଣ କ'ଣ କରିଚି ଜଣାପଡ଼ିବ ।''

ବେଲାଲସେନ ତାଚ୍ଛଲ୍ୟ କରି ମୁରୁକିହସା ଦେଲା ଆଉ ଓଠକଡ଼ରୁ ଛେପଟିକେ ପକେଇଲା ବାଁପଟକୁ, ରକ୍ତମିଶା ଛେପ ।

''କହିବାକୁ ଅଛି କ'ଣ ? ସତ କଥା ଶୁଣିବ ? କେହି ଯୁଦ୍ଧ ତ କଲନି, କିଛି ବି କଲନି । ଆକାଶରୁ ଗୋଟେ ଚକ ଗଡ଼ି ଆସି ଏପଟକୁ ମାଡ଼ିଗଲା । ମୁଣ୍ଡ ଗଡ଼ିପଡ଼ିଲା । ତା'ପରେ ସେଇଟା ସେ ପଟକୁ ମାଡ଼ିଗଲା । ଆହୁରି ମୁଣ୍ଡ ଗଡ଼ିପଡ଼ିଲା । ସେମିତି ଶିଆଳ ହସ ହସନିମ କୃଷ୍ଣ, ସେଇଟା ତୁମ ଚକ୍ର ନ ଥିଲା । ଏଇଆ ମୁଁ ଦେଖିଲି, ଆଉ ଏଇଆ ହିଁ ଯୁଦ୍ଧରେ ହେଲା । ଆଉ କହୁଚ କ'ଣ ନା ଆମେ ଯୋଦ୍ଧା ।''

ଏଇଟା କ'ଣ ମୋ ଲୋକ ?

ନା ଏଇଟା ନୁହେଁ, ଜମା ନୁହେଁ। ସମୟଟା ଭୁଲ। ଲୋକଟା ଭୁଲ୍। ସବୁ ଭୁଲ୍।

ଆଉଥରେ ଲକ୍ଷ୍ୟଭେଦ କରି ବାହାର କର, ପାରା ସାଇବର୍ଗ ୩୨୧ ।

ନିୟମ ମନେରଖ। ଓ୍ୱାର୍ପ ଫ୍ୟାକ୍ଟର ଠିକ୍‌କର।

ମୋ ଲୋକଟାକୁ ଧର ଭଲା ଶୀଘ୍ର !

ଦେଖ ।

କିଏ ଯେ ଦୃଶ୍ୟକକ୍ଷରେ ଆସୁଚି ?

ତାକୁ ଚାଣକ୍ୟ କହନ୍ତି । ସେ ମଣିଷ, ପାତଳା, ଡେଙ୍ଗା । ସେ ବିଦ୍ୱାନ୍; ପ୍ରିସେପ୍ଟର ସାଇବର୍ଗର ଆଦିମ ରୂପ ।

ଲୋକଟା ଯେ କ'ଣ କରୁଚି ?

ସେ ଆମକୁ ଅଜଣା ଘାସ ବୋଲି ଗୁଳ୍ମକୁ ଖାଇବାକୁ ଦଉଚି ।

ସେ ବୋଧହୁଏ, କ'ଣ କହନ୍ତିଟି ? ଦୟାବାନ୍ ।

ଭୁଲ୍। ଭୁଲ୍ ତୁଳନା । ସେ ଘାସକୁ ଧ୍ୱଂସ କରିବାକୁ ଚାହୁଁଚି । ତେଣୁ ସେ ତା' ମୂଳରେ ଗୁଡ଼ ନାମକ ଖାଦ୍ୟ ଦଉଚି ଯାହାକୁ କୀଟଜାତୀୟ ପିମ୍ପୁଡ଼ି ଭଲ ପା'ନ୍ତି । ଆଉ ଯାହାକୁ ଖାଇବାକୁ ସେମାନେ ଲକ୍ଷ ଲକ୍ଷ ସଂଖ୍ୟାରେ ଆସିବେ ଆଉ ଘାସର ମୂଳକୁ ଖାଇଯିବେ, ଆଉ ଘାସ ମରିଯିବ ।

ସେ କାହିଁକି ସେମିତି କରୁଚି ?

ସେ ଏମିତି କରୁଚି କାରଣ ଗାଧୋଇ ଗଲାବେଳେ ଘାସର ଧାରରେ ତା ଗୋଡ଼ କଟିଯାଇଥିଲା ।

ତା କ'ଣ ଖରାପ ?

ହଁ । ମଣିଷଙ୍କ ପାଇଁ ।

ଯେ କ'ଣ ଆମ ଲୋକ ? ଭଲ ହୁଅନ୍ତା, ଏଇଟା ତ ବେଶ୍ କ୍ରୁର ·ଆଉ ପ୍ରତିହିଂସାପରାୟଣ ।

ଇରେ ବାବା !

ତମେ ସ୍ୱେୟାର କରୁଚ ପାରାସାଇବର୍ଗ ୩୨୧ । ଖୁବ୍ ଅପ୍ରାକୃତିକ । କ'ଣ ଗଣ୍ଡଗୋଳ ହେଲା ?

ଚୁମ୍ବକ ନାଡ଼ିର ସମୟ ଦିଗ୍‌ଦର୍ଶକ, କ'ଣ କହନ୍ତିଟି ମଣିଷମାନେ, ଶଳା ଖସିଯାଇଚି । ଆମେ ହଜାର ହଜାର ବର୍ଷ ଖସିଯାଇଚେ ଆଉ ମହାସୂକ୍ଷ୍ମ ଭାବରେ କୋଣୀୟ ମାପରୁବି ଖସିଯାଇଚେ ।

ଆମ ଲୋକଟାକୁ ଧର ୩୨୧, ସମୟ ମାଡ଼ି ଆସିବ ।

ସମୟ ତ ସବୁବେଳେ ହେଇଯାଉଚି ।

*ଠିକ୍ ମୁଁଇଁ । ସମସ୍ତେ ମତେ ଗାଳି ଦିଅନ୍ତି । ଯିମିତି ମୁଁ ସମସ୍ତଙ୍କର ଶଳା । ଯିମିତି ସହରରେ ସେ ଆଉ ଲୁକମାନେ କହନ୍ତି । କେହି କାହାକୁ ଗାଳି ଦବାକୁ ହେଲେ ତାକୁ ଶଳା କହନ୍ତି । ଏମାନେ ଆମକୁ ଏ ନଇପଠାରୁ ଘଉଡ଼େଇ ନେଇଥିଲେ ପାହାଡ଼ ଓପରକୁ । ଏଇମାନେ, ବହୁତଦିନ ଆଗେ, ଏତେ ଆଗେ ଯେ କାହାରି ମନେ ବି ନାହିଁ । ସଭିଙ୍କ ସମୟ ଆଗରୁ ଭଳିଆ । ଏଇମାନେ ଆମ ପୂରାବଂଶକୁ ଶଳା କରିଦେଇଥିଲେ । ଆମ ଗାଁରେ ଖାଇବାକୁ ବି କିଛି ନ ଥିଲା । ମୋ ବାପା ମତେ ସେରଙ୍ଗ ହାଟକୁ ଘିଡିଗଲେ । ଆଉ ସେ ପାଣ କ୍ଲର୍କକୁ ଟେକିଦେଲେ ପଚାଶ ଟଙ୍କା ଅଣ୍ଟାଗୁଞ୍ଜା ଆଉ ମାସକୁ କୋଡ଼ିଏ ଟଙ୍କାରେ, ଆଉ ହେ ଲୁକ, ମୁଁ ମା'କୁ ବାପା ଉପରେ ରାଗିବାର ଶୁଣିଛି, ଆମଠାରୁ ନୀଚ ବର୍ଣ୍ଣ ହୁଏ । ଆମେତ ପାହାଡ଼ୀ ବଂଶ । ଭଲ, ସଫା, ପୁରୁଣା ଲୁକ । କାମକରୁ, ଶିକାର କରୁ, ଖେଳ ଖେଳୁ, ପିଉ, ଖାଉ, ଆନନ୍ଦରେ ରହିଥାଉ । ସେ ଯାକ ନୀଚ ଜାତି ଶଳା ଖବିସ ଶିଆଳ ମିତି ।*

*ଆଉ ମୋ ବାପା ତାକୁ, ତାର ନାଁ ବାନାବାବୁ, ମତେ ବିକିଦେଲେ । ଆଉ ସେ ମତେ ବେଠିଆ ନିତି ଖଟେଇଲା ଆଉ ଖାଇବାକୁ ଦେଲା ନାହିଁ ପେଟଭରି । ଶିକାର ନାହିଁ, ଖେଳଗୁଳ ନାହିଁ, ପିଆପିଇ ନାହିଁ, କିଛି ନାହିଁ । ତାର ଟୁକୀଟା ରାତିରେ ମୋ ପାଖକୁ ଆସୁଥାଏ ଯେ, ହେଲେ ମୋ ରକ୍ତ ଶୋଷିନିଏ ମେଦିନୀପରି ।*

*ସେ ଆଜି ମତେ ମୂଳ ଦେଲା ପାଞ୍ଚମାସ ପରେ । ସେ କହିଲା, ସେ ମତେ ପାଞ୍ଚଟଙ୍କା ଦେଇଥିଲା ପ୍ରଥମ ମାସରେ । ସତ, ସେ ପାଞ୍ଚଟଙ୍କା ଦେଇଥିଲା । ହେଲେ ସେ କହିଲା ସେ ମତେ ପାଞ୍ଚଟଙ୍କା ଦେଲା ଆଉ ମୁଁ ପାଞ୍ଚଟଙ୍କା ନେଲି ମିଶି ଦଶ ହେଲା ବୋଲି ସେ ବୋଇଲା । ଠିକ୍ ଶୁଭିଲେ ବି ସେ ମତେ ଖାଲି ପାଞ୍ଚଟଙ୍କା ହିଁ ଦେଇଥିଲା । ମତେ ହିସାବ ଘିସାବ ଜଣା ନାଇଁ । ଆଉ ଦଶଟଙ୍କାରେ ଫି ମାସରେ ସୁଧ ଦଶ ଟଙ୍କା । ସେଇଟା ପାଞ୍ଚମାସରେ ପଚାଶ ଟଙ୍କା ଆଉ ମୂଳ ଦଶଟଙ୍କା ମିଶି ଷାଠିଏ ଟଙ୍କା । ଶେଷକୁ ସେ ମତେ ଚାଳିଶ ଟଙ୍କା ଦେଲା ଆଉ ମୁଁ ବାପାକୁ ଦେଇଦେଲି ଘରକୁ ନେବାକୁ । ବାପା କହିଲେ, ସେ ଶୀଘ୍ର ମୋ ଭଉଣୀ ନୁନୀକୁ ବିକି ଦେବେ ।*

*ତା'ହେଲେ ମୁଁ କ'ଣ କରିବି । ମୋର କିଛି ଦରକାର ନାହିଁ । ମୁଁଇଁ ନିଶ୍ଚେ ତମର ଲୋକ । ତମେ ମତେ ଗୁଟେ କୋଟା ପିଅନ୍ ଘିଅନ୍ ଚାକିରି ଦେଇଦିଅ । ସେ ଚାକିରିରେ ଭଉତ ଟଙ୍କା, ହେଲେ ତାକୁ ପାଇବାକୁ ଗଛରେ ଗଛେ ଟଙ୍କା ଦବାକୁ ପଡ଼ିବ ବାବୁମାନଙ୍କୁ, ହେଲେ ମୋର ତ ଟଙ୍କା ନାହିଁ । ହେଲେ ତମେ ମତେ ପେନସନ୍ ଘିନ୍‌ସନ୍ କିଛି ଦେଇ ଦେଇପାରିବ ।*

ଭୁଲ ।

ଛାଡ଼ ।

"ଓ୍ୱାଓ୍ୱା ଓ୍ୱାଓ୍ୱା ଓ୍ୱାଓ୍ୱା !"

ମେଟା ଯାଇବୋର୍ଗ ହେ ! ଏ ସବୁ କ'ଣ ?

"ଓ୍ୱା ଓ୍ୱା ଓ୍ୱା ଓ୍ୱା ଓ୍ୱା !"

ୟାକୁ ବନ୍ଦ କର । ପିଲାଟା କାନ୍ଦୁଛି କାହିଁକି ?

*"ଭ୍ବା ଭ୍ବା ଭ୍ବା ! ଦି' ଦିନ ହେଲା ମୁଁଇଁ ଗଛରୁ ଝୁଲୁଛି । ମତେ ଭାରି ଡର ଲାଗସି । ମଧୁବାଣିରୁ ମାମୁ ନାଇଁ ଆଇଲା ଯାଏଁ ଆଉ ଆମ ପୁଡ଼ା ଘର ନାଇଁ ଦେଖିଲା ଯାଏଁ ମୁଇଁ ନାଇଁ ଓହ୍ଲାଏ । ଆଉ ଯେତେବେଳେ ସେ ମତେ କୁଣ୍ଢାଇ ପାକାଅନ ମୁଇଁ ତ କାନ୍ଦି ଭିଜି ଯାଏଁ ଲସମି । ପୁଲିସ୍ ଆସିଲାବେଳେ ମୁଇଁ ନାଇଁ ଓହ୍ଲାଏ । କେନ୍ତା ଓହ୍ଲାନ୍ତି । ସେମାନେ କହନ୍ ଯେ ଭଲ୍ ହେଇଛେ । ଶଳା ସବୁ ପୁଡ଼ି ଦିଅ ଯିମିତି କିଛି ଚିହ୍ନ ନାଇଁ ରହେ । ସେମାନେ ବାବା, ମା, କାକା, ସଭିଙ୍କି ଗଦା କରି, ତାର୍ ଉପରେ କାଠ ଗଦା କରି, ତାର ଦିହରେ ମାଟି ତେଲ ନା କ'ଣ ପକାଇ ନିଆଁ ଲଗାଇ ପୁଡ଼ି ଦେଲେ ଯେ ଗନ୍ଧେନ ନାକ ଫାଟିଗଲା । ତାର୍ ପରେ ଚାଲିଗଲା । ତାର୍‌ପରେ ଗୁଟେ ମନ୍ତ୍ରୀ ଗିନ୍ତ୍ରୀ କିଏ ଆସିଗଲାନ ଦି' ବସ୍‌ରେ ଲୁକ ପୂରେଇ ଆଉ ଭଉତ ପୁଲିସି ଧରି । ସେମାନେ ଏ ପାଖ ସେ ପାଖ ହେଇ । ବସ୍‌ରୁ ଲୁକ କାଢ଼ି ଠିଆ କରେଇ । ବକ୍ତୁତା ଦେଲେନ କେତେ । ସେମାନେ କହିଲେ ସଭିଙ୍କି ଧରି ନେବେ ଆଉ ସଭିଙ୍କି ଫାଶୀ ଦେଇଦେବେ । ତାପରେ ତାଙ୍କ ଲୁକଙ୍କୁ ବସ୍‌ରେ ପୂରେଇ ବାହୁଡ଼ି ଚାଲିଗଲେ କାର୍‌ରେ ବସି । ପୁଲିସ୍‌କୁ ଜୀପ୍‌ରେ ପୂରେଇ । ସବୁ ଝିଁ ଝାଁ ନିସ୍ତବ୍ଧ ହେଇଗଲା ଶୂନ୍‌ଶାନ । ସେମାନେ ରାତି ଅଧରେ ଆସିଥିଲେ । ସେ ଠାକୁର ଗିକୁରଯାକ । ଶଲେ କୁଆଡ଼େ ସାବୁନ୍ ଲଗାନ୍ତି ଦିହରେ । ଆମ ଗାଁର ଲୁକ । ବାପା ଆଉ ସବୁମାନେ । ପଡ଼ିଆ ଜେଗା ଖଣ୍ଡେ ନେଇ ଥିଲେନ ଚଷିବାକେ । ସେମାନେ କହିଲେ ହେଟା ତାଙ୍କର । ଆଉ ଆମ ଲୁକକେ କହିଲେ, ଛାଡ଼ିଦିଅ । ଆମ ଲୁକ ବାପା, କକା, ଆଉ ସବୁମାନେ କହିଲେ ଏଟା ସର୍କାର ଆମ୍‌କେ ଦେଇଛେ କାଗଜ କରି । ତାପରେ*

*ଲଢ଼େଇ ଲାଗିଗଲାନ । ଆମର ଲୁକଙ୍କୁ ମଣ୍ଡଲ୍‌ସିଂ, ବଣ୍ଡଲ୍ ଘାସ୍‌ବାନ, ତମ୍ ତମ୍ ଯାଦବ, ଜୋକର୍ ରାମ ଉସକେଇଲେ ଲଢ଼ିବାକେ । ତାପରେ ଆମ ଲୁକମାନେ ଅଣ୍ଟାଭିଡ଼ି ଲଢ଼ବାକେ ବାହାରିଲେ । ସେମାନେ ସେ ଠାକୁରର ଭନ୍‌ଜାକେ ହାଣି ଦେଲେ । ତାପରେ ସେ ଠାକୁରମାନେ ଆମ ଗାଁକୁ ଆସି ଆମ ଘର ପୋଡ଼ି ସଭିଙ୍କି ହାଣି କାଟି ମାରିଦେଲେନ । ଆଉ ମାଇପିଲାଙ୍କୁ ବୁଦା ଭିତୁରୁକୁ ଟାଣିନେଇ କୁତ୍‌କୁତା କରିଦେଲେ । ମୋ ମା ମତେ ଅନ୍ଧାରରେ ପଲାବାକେ କହିଲା ପାହାଡ଼ ଉପରକେ । ମୁଁ ଦୌଡ଼ି ନାଇଁପାରି । ଗଛେନ ଚଢ଼ିଗଲି ଆଉ ସକାଲ୍ ହେଲାରୁ ଯାଇ ମୂତ୍‌ଲି । କିଛି ନ ଥିଲା । କେହି ବଞ୍ଚି ନ ଥିଲେ । ଗୁଟେ ଛେଲି କି କିଛି ବି ନ ଥିଲା । ମୁଁ, ନାଇଁ ଜାଣେ କ'ଣ ହେଲା, କ'ଣ କଲି, କୁଆଡ଼େ ଗଲି, କିଏ ମୁଁ, ହେଲେ ମୁଁ ଥରି କମ୍ପି ଯାଇ ଗଁ ଗଁ ହେଇଗଲିନ ମାମୁଁର୍ ଜଂଘଟା ଧରି ।*

ମିଶୁ ନାହିଁ ।

ରଙ୍ଗ, ଗନ୍ଧ, ସ୍ୱାଦ ଅଚିହ୍ନା ।

ଆକାର ବେମାପ ।

ସେଲ୍ ଭାଇବ୍ରୋ ପ୍ରିଣ୍ଟ୍ ଅଖାପ ।

ଫୋପାଡ଼ !

*"ମୁଁ ସେଇ । ମତେଇ ତମେ ଖୋଜୁଚ । ଯଦି ମତେ ନ ଖୋଜୁଥାଅ, ଖୋଜିବା ଉଚିତ । ମୁଁ କିଛି କରି ନ ଥିଲି, ଖାଲି ସୁନ୍ଦର ଥିଲି ଆଉ ଜଣେ ସାମ୍ବାଦିକଙ୍କୁ ବାହା ହେଇଥିଲି, ଆଉ ଗୋଟିଏ ଦି' ବର୍ଷର ଝିଅ ଥିଲା ମୋର । ମୁଁ ଟିକିଏ ବକର ବକର ହବାକୁ ଭଲପାଏ । ମୋ ସ୍ୱାମୀ ନିର୍ଭୀକ ଭାବରେ ଏଠାକା ଚୋର ଖଣ୍ଟ ଦସ୍ୟୁଙ୍କ କଥା ଲେଖିଲାରୁ କଂଗ୍ରେସୀ-ଜନତା ଗୁଣ୍ଡାମାନେ ଆମକୁ ଗୋଡ଼େଇଲେ । ମତେ ଧରିନେଲେ ବୈତରଣୀ ବାଲିରେ, ଏକକୁ ଆରେକ ପେଲି ଦେଇଗଲେ, ହାଣି ମାରି ନେଇ ନଈବାଲିରେ ପୋତିଦେଲେ ମତେ । ମୁଁ..."*

ଯେତ ମରିଯାଇଚି, ପାରା ସାଇବର୍ଗ ୩୨୧ ।

କିନ୍ତୁ ଆମ ମେମୋରି ଡିସ୍କରେ ଅଛି । ଆମେ ନିଶ୍ଚେ ପାଖେଇ ଆସୁଚେ ।

ମୁହାଁଇ ଚାଲ, ଧର ଆମ ଲୋକକୁ ।

*ଆରେ ସେମାନେ ମାରିଦେଲେ ବୋଲି ସିନା ମୁଁ ମରିଲି । ସେମାନେ ମତେ ଧରି ପକେଇଲେ, ବାଲିରେ ଘୋଷାରିନେଲେ ନଈବାଙ୍କ ଉହାଡ଼କୁ, ମୋ ଲୁଗା ଚିରି ଫୋପାଡ଼ିଦେଲେ, ମୋ ଦିହକୁ ମୁଠା ମୁଠା କରି ଧରି କଚାଡ଼ି ଦେଲେ ମତେ ତଳେ,*

*ଏପଟ ସେପଟ କରି ଚଢ଼ିଗଲେ, ଆଉ ତାପରେ ଛୁରୀ ଭୁଷି ଦେଲେ, କୁରାଢ଼ିରେ ହାଣି ଦେଲେ । ତାପରେ ସେମାନେ ଯାଇ ଲୁଚିଲେ ମନ୍ତ୍ରୀଙ୍କ ଘରେ ଯାହା ଫଳରେ କୋଟାଚଟା ପୁଲିସି ତାଙ୍କୁ ଧରିପାରିଲନି । ଆଉ ତମେ କହୁଚ ମୁଁ ମରିଗଲି । କାହିଁକି, ମତେ ବଞ୍ଚେଇ ଦଉନ ଆଉଥରେ ? ମତେ ଫେରେଇ ଆଣ । ଫେରେଇ ଆଣ । ଫେରେଇ...''*

ଛାଡ଼ ।

''ନା । ପ୍ଲିଜ୍ । ଭଗବାନ୍ ହେ...''

ବନ୍ଦକର । ଲକ୍ଷ୍ୟ ମଣିଷ ସାଙ୍ଗେ ସଂଯୋଗ କର ।

କ'ଣ ଏ ମଣିଷ ! ଆଉ ମୁଁ ତୁହାକୁ ତୁହା ଆସୁଚି ଯାଙ୍କୁ ରକ୍ଷା କରିବାକୁ । ମୁଁ ଯାଙ୍କ ପାଇଁ ମାଛ ହେଲି, କଇଁଚ ହେଲି, ଖୁଣ୍ଟରେ କଣ୍ଟାବାଡ଼ିଆ ହେଇ ମରିଲି ବି । ଏ ମହିଳା ଛବିରାଣୀ ଭଳିଆ ପ୍ରାୟ । ଆଉ ନନା ଚାହାନ୍ତି ଏ ହିଂସ୍ର ମଣିଷଙ୍କୁ ପୋଷିବାକୁ, କାହିଁକି ନା ସେ ବାଳୁତକାଳେ ଯାଙ୍କୁ ବନେଇଥିଲେ, ପୂରା ସିଷ୍ଟମ୍ ଖରାପ୍ । ପ୍ରୋଗ୍ରାମଯାକ ଆଦିମ, ଆଉ ମେଣ୍ଟେନାନ୍ସ୍ କଥା ତ ଛାଡ଼, କାରକ ଆଉ କର୍ମକୁ ଆକ୍‌ସେସ୍ କୋଡ଼ଯାକ ଲିଭିଗଲାଣି, ଯିଏ ଯାହା ଇଚ୍ଛା କରିଯାଉଚି । ଉହୁଁ ! ଆ ଆ ଆ ଆ ! ହେଲା, ହେଲା, ନନା ! ନା, ନା, ଭାବନାସୀମକ । ଥିଙ୍କ ଚେକର୍ । ଭାରି କାଟିଲା । ଏ ଥିଙ୍କ ଚେକର୍, ଏ ସୀମା ଆଘାତଗୁଡ଼ାକ କାହିଁକି ଅଛି କେଜାଣି ! ସର୍କିଟ୍ ଖରାପ ହେଇଯିବ ।

ହଉ, କିଛି ହବ ନାହିଁ । ଏଥର ମୋ ମଣିଷକୁ ବାହାର କର ଆଉଥରେ । ''ପରମ ଦୁଷ୍ଟ ସାଧାରଣ ମଣିଷ,'' ନନା କହିଥିଲେ ।

ରଙ୍ଗାତିସୂକ୍ଷ୍ମ ଚରୁ ଉଜ୍ଜିବିତ କର, ବାବା ବୁଗି କହିଲେ ।

ଅତି ନିକଟରେ । ସୂକ୍ଷ୍ମସ୍ଖଳନ .୦୦୦୦୦୦୧ ଐଶାନ୍ୟ, .୦୦୦୦୦୦୧୩ ନୈଋତ୍ୟ, ପରୀଘ .୫, ସୂର୍ଯ୍ୟାଂସ .୧, ସୂକ୍ଷ୍ମ ଚନ୍ଦ୍ର ଉପ ଅପ ଆ । ଦେଖ ।

ସବୁ ତରଙ୍ଗ ଉଜ୍ଜୀବିତ କର । ଉଠ ସିଲିକନ୍ ।

ଦ୍ରବ ଫ୍ୟାକ୍ଟର ୦ ।

ଠିକ୍ ସେଇଠି ।

ପୁରୀ । ସମୁଦ୍ର କୂଳ । ପୁରୀ ହୋଟେଲରୁ ସ୍ୱର୍ଗଦ୍ୱାରଆଡ଼େ ରାସ୍ତା । ପାରିହେଇ ଚାଲିଗଲେ ନିଛାଟିଆ ଝାଉଁଝାଉଁଆ ବାଲି ମଝିରେ ଛୋଟ ଡାକ୍ତରଖାନା । ''ମୁକ୍ତି କ୍ଲିନିକ'' ଲେଖା ପଟାଟିର ଖୁମ୍ବ ଆଉଜି ଯାଇ ପେଟେଇ ପଡ଼ିଚି । ରାତି ତିନିଟା । ଅନ୍ଧାର । ରାସ୍ତାର ଟ୍ୟୁବ୍ ଆଲୁଅ, ମର୍କ୍ୟୁରୀ ଧୂଆଁ ଆଲୁଅ, ସୋଡ଼ିଅମ୍ ଧୂଆଁ ଆଲୁଅ,

ଅଧିକାଂଶ ଭଙ୍ଗା, ଟେକାମାଡ଼ରେ, କିଛି ଅକାମୀ, କେତୋଟି ସାହସରେ ଦପ୍‌ଦପ୍, ଅନ୍ଧାରକୁ ଆଉରି ଅନ୍ଧାରିଆ କରି ।

ମୁକ୍ତି କ୍ଲିନିକ୍ ଦାଣ୍ଡ ବାରଣ୍ଡା ବାହାର କାନ୍ଥ ଓପର ପଟୁ ସାପୁଆ ବ୍ରାକେଟ୍‌ରୁ ୪୦ ୱାଟ୍‌ର ବଲ୍‌ବ ମିଞ୍ଜି ମିଞ୍ଜି ଜଳୁଥିଲା । ବାରଣ୍ଡା ବେଞ୍ଚରେ ଲୁଙ୍ଗି ଟେକି ଶୋଇଥିଲା ପନ୍ଦରବର୍ଷିଆ ଗେଟେମା ଗୋରା ତୋରା ଟୋକା କପିଳ । ଡାହାଣପଟେ କୋଠରିଟିଏ : ଡ୍ୟୁଟି ରୁମ୍, ରହିବା ଘରବି, ପାଇଖାନା, ଗାଧୁଆଘର, ରୁଷେଇଘର, ଛୋଟ ଛୋଟ । ସେଠି ନର୍ସ ଈଶ୍ୱରୀ ଶୋଇଥିଲେ ଦିନର ଖଟଣି ପରେ ନିର୍ଘାତ ନିଦରେ । ସାବେନୀ, ୨୯ ବର୍ଷ, ସୁଠାମ ମଣ୍ଡଦିଆ ନେଳିଧଡ଼ିଆ ଧଳା ଶାଢ଼ି ପିନ୍ଧି ।

ଭିତରର ଅନ୍ଧାର କିଟିକିଟି କରିଡ଼ରର ସବା ଶେଷକୁ କୋଠରିଟାର ଦୁଆର ଆଉଜା । ଚୁଚୁନ୍ଦ୍ରାଟାଏ ଖସ୍‌ଖସ୍ କରି ଖାଲି ଓଷୁଅ ଢାବଲ ଭିତରେ ଖୋଜି ବୁଲୁଥିଲା । କଣ କାନ୍ଥକଣାରୁ ଅସରପା ନିଶ ହଲାଉଥିଲା ।

କୋଠରି ଭିତରେ ଦୁଆର ସାମନା ପଛ କାନ୍ଥକୁ ଲାଗି ଦୁଆରଆଡ଼କୁ ଲମ୍ବି ଖଟ । ଡାହାଣ କାନ୍ଥ ପାଖକୁ ଆଲମାରି, ବଡ଼ ଟେବୁଲଟେ । ପଛ କାନ୍ଥ ଡାହାଣପଟେ ଗାଧୁଆ ଘର କବାଟ । କିଟିକିଟି ଅନ୍ଧାର । ଡାହାଣପଟେ ଝରକାରେ କଳା ପର୍ଦା ।

ଖଟ ଓପରେ ଚାରିକାତ ଲମ୍ୱେଇ ମଣିଷଟେ । ପୁରୁଷ । ମୂତନଳୀରେ କ୍ୟାଥେଟର୍ ପଶି ରବର ନଳୀଟା ଖଟତଳେ ଗୋଟେ ବୋତଲରେ ପଶିଚି । ବାଁ ହାତ ଶିରାରେ ଛୁଞ୍ଚି ଗଳା ହେଇ ପ୍ଲାସ୍ମା ନ୍ୟୁଟ୍ରିଏଣ୍ଟ ଡ୍ରିପ୍ ଚାଲିଚି । ନାକବାଟେ ରବରନଳୀ ରାଇଲସ୍ ଟ୍ୟୁବ ପଶିଚି । ନିଃଶ୍ୱାସ ଚାଲିଚି । ଅକ୍‌ସିଜେନ୍ ସିଲିଣ୍ଡରଟା ଖଟତଳେ ଗଡ଼ିପଡ଼ିଚି ।

ଏଇ ସେଇ ?

ପ୍ରାୟ ।

ଶୂନ୍ୟେଇ ପଠାଅ ବ୍ରହ୍ମ ତରଙ୍ଗ ।

ଡ୍ରବ ଫ୍ୟାକ୍ଟର ଜିରୋ ।

ସବୁ ଭାବ ସେନ୍‌ସେଟ୍ । ସମ୍ପର୍କୀୟକୁ ଲୋକେଟ୍ କର । ସେ ଲୋକ କାହିଁ ?

ଠୁପ୍ ।

ସମୁଦ୍ରଟା ମାଗୀକୁ ସବୁବେଳେ କିମିଆଁ କରିଦିଏ । ତାର ଅସରନ୍ତି ବିସ୍ତାର ଆଉ ଅସ୍ଥିରତା ମାଗୀର ମନକୁ ପୂରାଇଦିଏ । ମାଛ ବି ତାକୁ ମୁଗ୍‌ଧ କରନ୍ତି । ଯେତେଦୂରପର୍ଯ୍ୟନ୍ତ ତାର ମନେପଡ଼େ, ଜାଲ ଭିଡ଼ା ହେଇ ଉଠିଲା ବେଳକୁ ସେ

ସବୁବେଳେ କୂଳରେ ଅପେକ୍ଷା କରିଥାଏ । ସବୁ ସାନ ବଡ଼ ମାଛ ରୁପେଲି ହଉ କି କାଳିଆ ହଉ, ରଙ୍ଗିନ ମାଛ କି ଛଉଛଉକା, ସାର୍କ, ଷ୍ଟିଂ ରେ, ଇଲ୍, ଟୁନା, ଇଲିସି, କାବେଲା, ଖଇଙ୍ଗା, ମେଜି, ଚିଙ୍ଗୁଡ଼ି, ବୁଢ଼ାଚିଙ୍ଗୁଡ଼ି, ଚାନ୍ଦି ଜୀଇଁ ଡେଉଁଥାନ୍ତି । ତାକୁ ଏମାନଙ୍କୁ ଡିଆଁଡିଇଁ କରୁଥିବାର ଦେଖିବାକୁ ଭଲଲାଗେ ମଲାଯାଏଁ । ଧୀରେ ଧୀରେ ନିଶ୍ଚଳ ହେଇଯା'ନ୍ତି । ଶିଥିଳ ହେଇଯା'ନ୍ତି, ସେ ଚାହୁଁ ଚାହୁଁ, ଭେଳିକି ଲାଗିଲା ପରି । ତା'ପରେ ତାର ଆକର୍ଷଣ ସରିଯାଏ ।

କିନ୍ତୁ ଆଉ ନୁହେଁ । ସେଦିନ କୋଉ ଚଡ଼କ ତା ଉପରେ ପଡ଼ିଲା ସେ ବୁଝିପାରିଲାନି, ଯୋଉଦିନ ସମୁଦ୍ରକୂଳରେ ସେ ଲୋକଟା ମିଳିଥିଲା । କିନ୍ତୁ ସେଇଟା ଯିମିତି ତା ପେଟ ଭିତରେ ଢୁକିଯାଇ ତାକୁ ଚେଙ୍ଗା କରି ଦେଇଥିଲା । ତାକୁ ଲାଗିଲା ଯିମିତି ତା ଆଖି ବିସ୍ତାରିତ କରି ସେ ଆକାଶରେ ଝୁଲୁଚି । ତା ମନରେ ସବୁବେଳେ ଅତ୍ୟାଚାରିତ ହେବାର ଭାବ ଥାଏ । ତାର ବାପା ମା ନାହାନ୍ତି । ସେ ସମୁଦ୍ରକୂଳରେ ପରିତ୍ୟକ୍ତ ହେଇଥିଲା, ଯୋଉଠୁ ତାକୁ ସାଉଁଟା ଯାଇଥିଲା । ଅନ୍ୟ ଗାଁବାଲାଙ୍କଠୁ ସେ ଥିଲା ଗୋରା । ଯେଉଁଥିପାଇଁ ତାକୁ ବହୁତ ଟାପରା ଶୁଣିବାକୁ ମିଳୁଥିଲା ସାଇବଙ୍କ ଅବୈଧ ପିଲାବୋଲି । ସମସ୍ତଙ୍କର ସବୁବେଳର ଈର୍ଷାର ନିଆଁ ଭିତରେ ସେ ସୁନ୍ଦର ଓ ପୁଷ୍ଟ ହେଇ ବଢ଼ିଉଠିଥିଲା । ମୁର୍ମୁ ତାକୁ ପାଇ ବଢ଼େଇଥିଲା, ତାର ବାପ ହେଇ । ଏବେ ତାକୁ ରଖିଚି । ମାଗୀ ମୁର୍ମୁ ପ୍ରତି କିଛିଟା ରୁକ୍ଷ, କାରଣ ସେ ତାର ନିଜ ବାପା ନ ଥିଲା, ଆଉ ମନେ ମନେ ଘାରି ହେଉଥିଲା ଯେହେତୁ ସେ ତା'ର ପ୍ରେମିକ ।

ସେ ବେଶ୍ ଖୁସି ଥିଲା ଯେତେବେଳେ ସେ ସ୍କୁଲ୍‌କୁ ଯାଉଥିଲା । ସେ ଭଲ ପାଠ ପଢୁଥିଲା, ଆଉ କ୍ଲାସ୍‌ରେ ଭଲ କରୁଥିଲା । ଯେଉଁଥିପାଇଁ ସ୍କୁଲ୍ ଛାଡ଼ି ମାଛ କାରବାରରେ ଅଳ୍ପ ବୟସରୁ ଲାଗି ଯାଇଥିବା ଗାଁର ଅନ୍ୟ ପିଲାପିଲିମାନେ ତାକୁ ଟାପରା କରୁଥିଲେ ଗଞ୍ଜଣା ଦେଇ । ତା ସ୍କୁଲ୍ ବନ୍ଦ ହେଲା ଯାଇ ଯେତେବେଳେ ସେ ରଜସ୍ୱାତା ହେଲା ପନ୍ଦରବର୍ଷ ବୟସରେ ଆଉ ମୁର୍ମୁ ଗାଁ ମାଇପିଙ୍କ ପ୍ରରୋଚନାରେ ତା ସ୍କୁଲ୍ ବନ୍ଦ କରିଦେଲା । ଏଇ ମାଇପିମାନେ ତାକୁ ମାଗୀ ଡାକିଲେ ମୁର୍ମୁ ଦେଇଥିବା ମାତଙ୍ଗୀ ଛାଡ଼ି, ଦୟାରେ ବଞ୍ଚିଥିବା ମାଗୀଖାଇ ହିସାବରେ ।

ପେଛୀବୁଢ଼ୀ ତିଆରି କହିଥିଲା : ''କ'ଣ କରିବୁରେ ତାକୁ ? ତାକୁ ସାଇବାଣୀ କରି ତା ପିଅନ ହବୁ କିଆ ? ତାକୁ ଅଫିସର କିଏ କରିବରେ ?''

ଧୁଣ୍ଡୀ ଧସେଇ କହିଲା : ''ତାକୁ ଘୋରି ପକେଇବେରେ । ସେ ଗୋରା ଚମ ଚିଲାଆଖିଆ ଟୋକୀଟାକୁ ବେଶିଆ କରି ପକେଇଦେବେ ।''

ସାବିତ୍ରୀ ଜାଲବୁଣାରୁ ଉଠିଆସି ମିଶିଗଲା ଯୁଦ୍ଧରେ : ''ସେ ତ ତତେ ରକତ ବୁହାଇ ଦଉଚିରେ ବହି କିଣେଇ, ଫରକ କିଣେଇ । ଆଉ ଦି' ବରଷରେ ତାକୁ କିସ କାଲେଜ୍କୁ ପଠେଇପାରିବୁ କିରେ ? ତାକୁ କ'ଣ ନିମାପଡ଼ା କି ପିପିଲି କି ଭୁବନେଶ୍ୱର କି କଲିକତା ପଠେଇପାରିବୁ ?''

ବୁଢ଼ୀପେଣ୍ଠୀ ଚିର୍ଚ୍ଚିରା ସ୍ୱରରେ ରାବିଲା : ''ତାକୁ ଏବେ ମାଛ କାମରେ ଲଗାରେ । ନ ଥିଲେ ଟୁରିଷ୍ଟଙ୍କ ଘିନିବା ପାଇଁ ବସେଇ ଦେ । ଭଲ ପଇସା ଭିଆବରେ, ଆଉ ତୁ ରଜା ଦେରିଆ ରହିବୁ । ବୋହିତଲାଣି । ବାଲିରେ ଗଡ଼ିବା ବୟସ ହେଲାଣି ।''

ମାଗୀ ଯେତେବେଳେ ଏ କଥା ଶୁଣିଲା । ତମ୍ପପରି ରାଗରେ କମ୍ପିଯାଇ ଗର୍ଜିଉଠିଲା, ଆଉ ଗାଁକୁ ଉଠେଇ ପକେଇ ନାରଖାର କରିଦବାକୁ ବସିଲା । ଧୁଣ୍ଡୀର ଆଖିତ ଓପାଡ଼ି ନେଇଥା'ନ୍ତା । ଏବେବି ତା ଗାଲରେ ମାଗୀର ନଖ ଚିହ୍ନ ରହିଚି ।

ସେଦିନ ରାତିରେ ଯେତେବେଳେ ସେ ତାଙ୍କ କୁଡ଼ିଆର ମାଟି ଚଟାଣରେ ଅଲଗା ହେଇ ଶୋଇଥିଲା, ମୁର୍ମୁ ତାକୁ ଖୁବ୍ ନରମେଇ କହିଥିଲା, ଆଉ ସେ ବୁଝିପାରିଥିଲା ତା ଆକାଂକ୍ଷାର ଅସମ୍ଭବତା । ସେମାନେ ତାକୁ ଆଗକୁ ଯିବାକୁ ଛାଡ଼ିବେନି । ସମସ୍ତେ ସେ ଷଡ଼ଯନ୍ତ୍ରରେ ମିଶିଯାଇଥିଲେ । ମୁର୍ମୁ ଗରିବ ଥିଲା, କିନ୍ତୁ ଏବୁକୁ ଏବୁକୁ ଆହୁରି ଦରିଦ୍ର ହେଇଯାଉଥିଲା । ବସ୍ ଦୁର୍ଘଟଣା ପରେ, ଯୋଉଥିରେ ତା ଗୋଡ଼ ଭାଙ୍ଗି ଯାଇଥିଲା, ସେ ଆଉ ସମୁଦ୍ର ଭିତରକୁ ଯାଇ ପାରୁ ନ ଥିଲା । ତା'ର ମାଛଭାଗ ଦିନକୁ ଦିନ କମି ଯାଉଥିଲା । ଗାଁ ବଢ଼ି ଚାଲିଥିଲା ହେଲେ ମାଛ କମି ଯାଉଥିଲେ । ମାଛ ଶଳେ ବି ପଳୋଉଥିଲେ କୁଆଡ଼େ । ଭାଗ ଯାହାବି ପଡୁଥିଲା, ମୁର୍ମୁ ସେତିକିବି ଆଉ ବିକିପାରୁ ନ ଥିଲା । ସେ ଆଉ ଗୋପ କି ନିମାପଡ଼ାକୁ ସାଇକେଲ୍ ମାରି ମାଛ ବିକିବାକୁ ବାହାରିପଡ଼ିବାକୁ ଇଚ୍ଛା କରୁ ନ ଥିଲା । କୋଣାର୍କକୁ ବି ନୁହେଁ, ଯୋଉଠି ପାନ୍ଥନିବାସ ଆଉ ଚାଳିଆ ହୋଟେଲ୍ମାନେ ତା'ର ଭଲ ଗରାଖ ଥିଲେ । କଥା ହଉଚି, ଗାଁର ବ୍ୟଗ୍ର ଟୋକାମାନେ ତାକୁ ପଛେରେ ପକେଇ ଆଗେଇ ଯାଉଥିଲେ । ସେ କେମିତି ନିମାପଡ଼ାରେ ହଷ୍ଟେଲ୍ରେ ରହିବାକୁ ତାକୁ ପଇସାଦବ ବା ସେ ବସ୍ଭଡ଼ା କୋଉଠୁ ପାଇବ ପ୍ରତିଦିନ ଯିବାଆସିବା କରିବାକୁ, ହାଂଇଅର ସେକେଣ୍ଡାରୀ ପରେ । ଘରେ ତ ଖାଇବାକୁ ବି ନାହିଁ । ସେ ଟୋକା ବସ୍ କଣ୍ଡକ୍ଟର, ଯିଏ ତାକୁ ଆଖୋଉଥାଏ ତାଠୁ ମାଗେଣାରେ ନିମାପଡ଼ା ଯିବା ଆସିବାଟା ହେଇପାରନ୍ତା ଯଦି ସେ ତା ସାଙ୍ଗେ ଟିକିଏ ଗପ୍ସପ୍ କରନ୍ତା । କିନ୍ତୁ ମାସ ମାସ ଧରି ୟା କରିବାକୁ ତାର ଇଚ୍ଛା ହେଲାନି । ସେ କଥା ଭାବିଲା ବେଳକୁ ତା'କୁ ଅପମାନିଆ ଲାଗିଲା ।

ତେଣୁ ସେ ମୁର୍ମୁ ସାଙ୍ଗେ ମିଶି ପାନ୍ଥନିବାସ ମାଛ ସପ୍ଲାଇଟା ହାତେଇ ନେଲା । ସେ ରାନ୍ଧୁଣିଆ ଆଉ ୱେଟରମାନଙ୍କ ଆଖିରେ ବିବସ୍ତ୍ର ହେବାଟା ସହି ନଉଥିଲା, ହେଲେ ମ୍ୟାନେଜରକୁ ଟିକିଏ ଜାବୁଡ଼ିବାକୁ ବା ଚୁମିବାକୁ ଦେଇ, ଅନ୍ୟମାନଙ୍କ କବଳରୁ ବର୍ତ୍ତି ଯାଉଥିଲା । ସମସ୍ତେ ତା ଦେହର କିଛି ଅଙ୍ଗ ଚାହୁଁଥିଲେ ତାକୁ ବାଟ ଛାଡ଼ିବା ପାଇଁ ଆଗେଇଯିବାକୁ । ତାକୁ ସେ ମ୍ୟାନେଜର ସାଙ୍ଗେ ବେଳେ ବେଳେ ଶୋଇବାକୁ ପଡୁଥିଲା । ସେ ହିଁ ତାକୁ ପିଲ୍ ଖାଇବାକୁ ବତେଇଥିଲା । ଯୋଉ ପିଲ୍ ଖାଇଲେ ଆଗକୁ ଆଉ ବିପଦ ନଥିବ । ସେ ଏବେ ଡାକ୍ତରଖାନାରୁ ପ୍ରତି ମାସରେ ମାଗଣା ପାଉଥିଲା । ପ୍ୟାକେଟ୍ କରି ମାସକପାଇଁ । କିନ୍ତୁ ତାକୁ ସେ ଡାକ୍ତରଟା ଭଲ ଲାଗିଲାନି । ସେ ନାକୁଆ ଇଲଲ୍ ମାଛ ପରି ।

ସାଧାରଣତଃ ତାକୁ ପୁରୁଷମାନେ ଭଲ ଲାଗନ୍ତିନି । ସେମାନେ ସମସ୍ତେ ସ୍ୱାର୍ଥପର ଆଉ ତୁମକୁ ପତର ଥାଳି ପରି ବ୍ୟବହାର କରନ୍ତି । ଖାଇ ଫିଙ୍ଗି ଦେବେ । ଅନ୍ୟବେଳେ ତାଙ୍କ ଉପରେ ହସେ । ତା ଦେହଟା ତା କାମ କରେଇନବାର ଗୋଟାଏ ଦରକାରୀ ଉପକରଣ । ତା ଦେହ । ତା ହସ । ତା ଉତ୍ସାହ ।

କିନ୍ତୁ ଯୋଉଦିନ ସେ ଲୋକଟା ଭାସିଆସି ଲାଗିଲା ଆଉ ମାଗୀ ଦେହରେ ବିଜୁଳି ଖେଳିଗଲା ତା ଗୋଡ଼ଟା ଧରି ବସିଥିଲାବେଳେ, ସେଦିନରୁ ସେ ଭୂତ ଲାଗିଲା ପରି ହେଇଯାଇଥିଲା । ସେ ଖାଲି ଗୋଟିଏ କଥା ବୁଝୁଥିଲା । ପୃଥିବୀରେ ଯାହା ଅନ୍ୟାୟ ତା ଠିକ୍ କରାହବା ଉଚିତ ଆଉ ଏଥିପାଇଁ ପୁରୁଷକୁ ଅସ୍ତ୍ରଭାବରେ ବ୍ୟବହାର କରିବ ସେ ପୁରୁଷ ହେଲେ ବି । ତା ମୁଣ୍ଡକୁ ରକ୍ତ ଚଢ଼ିଯାଇଥିଲା । ହାଣି କାଟି ସବୁ ସଜାଡ଼ିଦବାକୁ ଯିମିତି ହୁକୁମ୍ ମିଳିଚି । ଖାଲି ବେଳେବେଳେ ସେ ଲୋକଟା ଠିକ୍ ଖାପରେ ପଡ଼େନି । କିନ୍ତୁ ତାର ଉଦ୍ଦେଶ୍ୟରେ କିଛି ବିଭାଜନ ନ ଥିଲା । ଦୂରତା ନ ଥିଲା ।

ସେ ତାର ମାଛ କାମ ଆଉ ଘରକାମ କରୁଥାଏ, ସେ ଲୋକର ଟଙ୍କା ଲୁଚେଇ ରଖିଦେଇ, ଆଉ ରବିବାରକୁ ରବିବାର ପୁରୀ ପଳେଉଥାଏ । ମୁର୍ମୁ ସନ୍ଦେହ କରୁଥିଲା କିଛି ଗୋଟେ, ଆଉ ଗୁଡ଼େଇ ତୁଡେଇ ପଚାରୁଥିଲା ତାକୁ । କିନ୍ତୁ ମାଗୀ ଥିଲା ନିର୍ବାକ, ଶାମୁକା ପରି ବନ୍ଦ ।

ପୃଥିବୀର ସବୁ ବିଧ୍ୱଂସକାରୀଙ୍କୁ ଧ୍ୱଂସ କରିଦବାକୁ ହବ । ଅନ୍ୟାୟକୁ ନ୍ୟାୟରେ ବଦଳେଇବାକୁ ହବ । ସବୁ ପିଲେ ସ୍କୁଲ୍ ଯିବେ । ସମସ୍ତେ କାମ ପାଇବେ । ସମସ୍ତେ ଭଲ ଖାଇବା ପାଇବେ, ଭଲ ଘରେ ରହିବେ । ସମସ୍ତେ ଯେ ଯିମିତି ଚାହିଁବ ରହିପାରିବ । ଯା ମାଗିବା କ'ଣ ଏତେ ବେଶି ?

କିନ୍ତୁ ସେ ଯୁଆଡ଼େ ଚାହିଁଲା ପାହାଡ଼ ପରି କାନ୍ଥ ପାଇଲା ତା ସାମନାରେ । ସେ ବୁଝିପାରିଲାନି କାହାକୁ ଆକ୍ରମଣ କରିବ । ମନ ତାର ଛାଟିପିଟି ହଉଥିଲା କାମ୍‌ଦାକୁ ମାରିଦବାକୁ । କିନ୍ତୁ ସେଥିରେ ତ ବାଟ ସରିଯିବ । ମନେ ମନେ ପ୍ରତିଦିନ ସେ ଲକ୍ଷେ ଖୁନ୍ କରୁଥିଲା । କିନ୍ତୁ ଆରମ୍ଭ କୋଉଠୁ କରିବ ? ପ୍ରକୃତପକ୍ଷେ କାମ୍‌ଦା ଛଡ଼ା ତାକୁ ଆଉ କେହି ଦିଶୁ ନ ଥିଲେ ।

ଠିକ୍ । କାମ୍‌ଦାକୁ ବ୍ୟବହାର କରିବାକୁ ହବ ବାଟ କଢ଼େଇବାକୁ । ସେ ଲୋକଟା ଚେତା ପାଇଲାଯାଏଁ ଖାଲି କାମ୍‌ଦା ହିଁ ତ ଅଛି । ଆଉ ବି ସବୁ ବାହାରିବେ ସେ ବାଟରେ ଚାଲିଲେ । ପୁଲିସ୍, ମାଜିଷ୍ଟ୍ରେଟ୍, ଏମେଲେ, ମନ୍ତ୍ରୀ, ଚୋରାକାରବାରୀ । କାହିଁକି ନ ହବ ?

ବେଳେବେଳେ ତାକୁ ଥକା ଲାଗି ଯାଉଥିଲା । କେତେ ଲୋକଙ୍କୁ ମାରିବ ? କାହା କାହାକୁ ? କେତେ ଦିନ ଧରି ? ଆଉ ବା କ'ଣ କରିହବ ? ଭାବି ଭାବି ହାଲିଆ ହେଇ ଶୋଇପଡୁଥିଲା ଲାଲିମାଟି ଲିପା ଚଟାଣ ଓପରେ ମୁର୍ମୁଠୁ ଆଡ଼େଇହେଇ ।

ଚେତା ପାଉ ସେ ଲୋକ । ତାପରେ ବାଟ ବାହାରିଆସିବ ।

ବା ତାକୁ ନ ନେଇ ।

॥ ୪ ॥

## ସ୍ୱର୍ଗଦ୍ୱାର-ସିଂହଦ୍ୱାର
## କିଛି ନୁହେଁ ସବୁ ଖାଲି ଭାଗ୍ୟର ପାହାର

କିଟି କିଟି ଅନ୍ଧାର । ଘୋର ଅନ୍ଧାର । ନିଶ୍ଚୟ ସ୍ୱପ୍ନ ହେଇଥିବ । ''ନା ମୁଁ ଅନ୍ଧ ହେଇଗଲି ?'' ସେ ଭାବିଲା । ସେ ଆଖି ବନ୍ଦକରି ପୁଣି ଖୋଲିଦେଲା । ଆଖିପତାଗୁଡ଼ାକ ଭାରୀ, ଯିମିତି କିଛି ଓଜନ ମାଡ଼ିବସିଚି । ଝାପ୍‌ସା ଛାଇ, କବାଟ କି ଆଲମାରି । ଆହ୍ ! ସେ ଅନ୍ଧ ହେଇନି ତାହେଲେ । ନା ଦିନ ଦି' ପହରେ ତାକୁ ଏତିକି ଦୁଶୁଚି ?

ନିଃଶ୍ୱାସ ରୁଦ୍ଧ ହେଇଗଲା ପରି ଲାଗିଲା ଯିମିତି ନାକରେ ଚୁଣ୍ଡା ମଡ଼ା ହେଇଚି । ତଣ୍ଟି ଭିତରେ ବି କ'ଣ ଗୋଟେ ଖୁନ୍ଦା ହେଲାପରି ଲାଗିଲା । ଗୋଡ଼ଟା ଟାଣିଆଣିଲା ବେଳକୁ କଟ କଟ ଝାଉଁ ଝାଉଁ କଷ୍ଟ ମାଡ଼ିଆସିଲା । ଗୁଡ଼ ଭିତେରେ କ'ଣ ଗୋଟେ ନଳୀଭଳିଆ ପଶିଥିବା ଝିଙ୍କି ହେଇଗଲା । ଡାହାଣହାତଟା ଉଠେଇଲା ବେଳକୁ ଚାଉଁକିରି ଲାଗିଲା ଯିମିତି ଡାମ୍ଫଣ ଫୋଡ଼ିହେଇଚି ହାତେରେ । ସେ ସ୍ତବ୍ଧ ହେଇଗଲା ମୁହୂର୍ତ୍ତେ । ଅଣନିଃଶ୍ୱାସୀ ଲାଗିଲା ତାକୁ । ଯିମିତି ପାଣି ଭିତେରେ ମାଡ଼ିଧରିଚି କିଏ ତାକୁ ଆଉ ତା ନିଃଶ୍ୱାସ ବନ୍ଦ ହେଇଯାଉଚି, କି କଫିନ ଭିତେରେ ପୂରେଇ ବନ୍ଦ କରି ମାଟିତଳେ

ପୋତିଦଉଚି ତାକୁ ଜୋର ଜବରଦସ୍ତି । କଲବଲ ହେଇଗଲା ତା ଆତ୍ମା । ସେ ପ୍ରାଣବିକଳରେ ନାକୁରୁ ନଳୀ ଝିଙ୍କି ବାହାରକରିଦେଲା । ଜଳିଉଠିଲା ତା ପେଟ ତଣ୍ଟି ନାକ । ହାତୁରୁ ଛୁଞ୍ଚିଟା ଉପୁଡ଼ିଗଲା । ପ୍ଲାଷ୍ଟା ବୋତଲ ଷ୍ଟାଣ୍ଡ୍ ସହିତ ତା ଛାତି ଓପରେ ପଡ଼ିଗଲା । ସେ ଫୋପାଡ଼ିଦେଲା ତାକୁ ହାତ ଛାଟି ଯେମିତି ସାପଟାଏ । ଓଟାରି ଆଣିଲା ତଳ ନଳୀଟା । ଫିଙ୍ଗି ଦେଲା । ଝାଏଁ ଝାଏଁ ଝାଞ୍ଜି ପିଟି ହେଇଗଲା ତା ତଳି ପେଟରେ । ତା ହଂସା ଉଡ଼ିଗଲା । ଅଜ୍ଞାନ ହେଇ ପଡ଼ିଲା । ମୁକ୍ତ ।

ଅନେକ ସମୟ ।

ତା'ପରେ ଆଖି ଖୋଲିଲା । ପୁଣି ସେଇ କିଟି କିଟି ଅନ୍ଧାରରେ ଝାପ୍‌ସା ଝାପ୍‌ସା ଛାଇ । ଦିହର ଜ୍ୱାଳା ଶିଥିଳ, ନିଃଶ୍ୱାସ ନେଇହଉଚି, ରସାତଳୁରୁ ଖସି ଉଠିଆସିଲା ପରି ସୂର୍ଯ୍ୟ କିରଣକୁ । ପାଣି ଭିତରୁ ଉବୁକେଇ ଓପୁରୁକୁ ତୀରପରି ପବନର ନିଃଶ୍ୱାସକୁ ।

କୋଉଠି ସିଏ ? କୋଉଠି ? ଗୋଟେ ଅସୁବିଧା ଅସୁବିଧା ଭାବ ତା ମୁଣ୍ଡରୁ ବାହାରିଲା ଏଇ ପ୍ରଶ୍ନରୁ, ଆଉ ପଶିଗଲା ଛାତି ଦେଇ ପେଟ ଭିତୁରୁକୁ । ସେ ମନେପକେଇ ପାରିଲାନି ସେ କୋଉଠି । ଜମା ପାରିଲାନି । କୋଉଠି ସିଏ ? ହଠାତ୍ ଗୋଟାଏ ଅଜଣା ଶବ୍ଦ ଫୁଲିଉଠି କାନ ଫଟେଇ ଦିହସାରା ଚରିଯାଇ ତା ଅନ୍ତନାଡ଼ିକୁ ଲୁହାର ମୁଠାରେ ଜାବୁଡ଼ି ଧରିଲା । ଦିହସାରା ଝାଳ ଫୁଟି ବାହାରିପଡ଼ିଲା । ତା ତଣ୍ଟି ଶୁଖିଗଲା ଆଉ ଶଙ୍ଖି ଚିପି ହେଇଗଲା ପରି ଲାଗିଲା । ସେ କିଏ ତାର ମନେପଡ଼ିଲାନି । ସେ କିଏ ? ତା ନାଁ କ'ଣ ? କିଏ ? ସେ ନିଶ୍ଚେ କେହି ହେଇଥିବ । "ନା ମୁଁ ମରିଯାଇଚି ?" ସେ ନିଜକୁ ପଚାରିଲା । ତାର ସାରା ଦିହ ଅଜଣା ଡରରେ ଥରିବାକୁ ଲାଗିଲା । ଇମିତି ତାର ହବାର ସେ କେବେ ଜାଣି ନ ଥିଲା । ଭୟ, ବିଶ୍ୱଭେଦୀ, ଯେ ତାର ଅସ୍ତିତ୍ୱ ନାହିଁ । ଆତଙ୍କ । ସେ ନାହିଁ । ଜମା ନାହିଁ । ନିଶ୍ଚିହ୍ନ । ସେ ଗୋଟେ ଅନ୍ଧାର ସୁଡ଼ଙ୍ଗ ଭିତରେ ସାଇଁ ସାଇଁ ଉଡ଼ିଚାଲିଚି । ସେ ସୁଡ଼ଙ୍ଗର ଦି'ପାଖକୁ ହାତଦେଇ ଧରି ପକେଇଲା ପ୍ରାଣ ବିକଳରେ । ହାତରେ ତାର ପଡ଼ିଗଲା ଗଦିର କଡ଼ । ଭଲ, ଟାଣ, ତୁଳା ଗଦି । ସେଇଟା ଖସି ଚାଲିଯାଉ ନ ଥିଲା । ତା ମନରେ ଟିକିଏ ଆଶ୍ୱସ୍ତି ଆସିଲା । କିନ୍ତୁ ତା ଆଙ୍ଗୁଠିଗୁଡ଼ାକ ଦୁର୍ବଳ । ସେଗୁଡ଼ାକ ଗଦିଟାକୁ ଜୋର୍‌ରେ ଚିପି ପାରୁ ନ ଥିଲେ । ତା ଦିହର କମ୍ପ ଆସ୍ତେ ଆସ୍ତେ କମୁଥିଲା । କିନ୍ତୁ ଭୟ ଥିଲା ତା ଭିତରେ ଭରପୂର । ଧୀରେ ଧୀରେ ସେ ଗଦି ଆଗକୁ ଆଙ୍ଗୁଠି ବଢ଼େଇଲା । ତଳକୁ ଟାଣୁଆ କାଠ । ଖଟର କଡ଼ । ସେ ଗୋଟେ କୋଠରିରେ ତା ହେଲେ । ଖଟ ଓପରେ । ତୁଳା ଗଦିରେ । କୋଠରି, ଖଟ, ଗଦି ଜାଣିଥିଲା । ବୁଝିପାରୁଥିଲା ଏଗୁଡ଼ାକ କ'ଣ । ଟିକିଏ ଆଶ୍ୱସ୍ତ ଲାଗିଲା । ବୋଧେ ସ୍ୱପ୍ନ ହେଇଥିବ । ପୁଣି ଥରେ ଶୋଇପଡ଼ିଲେ ଚାଲିଯିବ । କୌଣସି କାରଣ ନ ଥାଇ ଦିହଟା ତାର ଥରିଲା ଆଉ ଥରେ, ତା ହାଡ଼ ଗଣ୍ଠିରେ, ଖଡ଼ଖଡ଼ ହେଇ ନୁହେଁ, ଥୁରୁଥୁରୁ ହେଇ ।

ତା ଡାହାଣଗୋଡ଼ଟା ଭାରୀ ଲାଗୁଥିଲା । ବାଁ ଟା ସହଜରେ ହଲିପାରୁଥିଲା । ଡାହାଣଗୋଡ଼ଟା କାଟୁଥିଲା ବି । ସେ ହାତ ବଢ଼େଇ ଛୁଇଁବାକୁ ଚେଷ୍ଟା କଲା କିନ୍ତୁ ଜଙ୍ଘ ଅଧାରୁ ତଳୁକୁ ଯାଇପାରିଲାନି । ଧୀରେ ଧୀରେ ସେ ଗୋଡ଼ଟା ଆଣ୍ଠୁରୁ ଭାଙ୍ଗି ଗୋଇଠିକୁ ପାଖକୁ ଆଣିଲା । ମାଂସପେଶୀ ଟାଣି ହେଇ କାଟିଲା ତାକୁ ଭିତେରେ । କିନ୍ତୁ ସେ ଟାଣିଆଣିଲା ଗୋଡ଼କୁ । ହାତ ବଢ଼େଇ ସେ ଡାହାଣଜଂଘ ଓପରକୁ ଆଉଁଶି ଉଠି ଗୋଡ଼ର ତଳୁକୁ ଖସିଲା । ଅଧାରେ ନଳୀହାଡ଼ ଆଉ ମାଂସପେଶୀ ଫୁଲିଲା ପରି ଲାଗିଲା । ସେଇଠୁ ଦରଜାଟା ହାଉଳି ଉଠୁଥିଲା । ହାଡ଼ଟା ଟିକିଏ ଖାଲୁଆ ହେଇ ରହିଥିଲା ଆଉ ମାଂସପେଶୀ ଫୁଲି ଗଣ୍ଠି ପଡ଼ିଲା ପରି । ବାଁ ଗୋଡ଼ଟା ଏତେ କାଟୁ ନ ଥିଲା, କିନ୍ତୁ ଆଣ୍ଠୁ ପଛରେ ତଳପଟ ଗୋଇଠି ପର୍ଯ୍ୟନ୍ତ ଗୋଟେ ଧାଡ଼ି ଫୁଲି ରହିଥିଲା ଅଳ୍ପ । ସେ ଗୋଇଠି ପର୍ଯ୍ୟନ୍ତ ହାତ ବଢ଼େଇଲା ବେଳୁକୁ ଛାତି କାଟିଲା । ସେ ସାର୍ଟ ତଳେ ଛାତିରେ ହାତ ବୁଲେଇଲା । ସାର୍ଟ । ସାର୍ଟ, କୁର୍ତ୍ତା, ଜାମା କିଛି ନ ଥିଲା, ଗେଞ୍ଜି ବି । ମୋଟା ଚାଦରଟାରେ ତା ଦିହ ଘୋଡ଼ିଆ ହେଇଥିଲା । ଛାତିରେ ଫୁଲା ଦାଗ ଆଉ ପଞ୍ଜରାହାଡ଼ରେ ଦରଜ । ହୁଏତ ସେ ଆହତ, ଆକ୍ସିଡେଣ୍ଟ୍‌ରେ । କିନ୍ତୁ ସେ ମନେ ପକେଇପାରିଲାନି । "ଅବା ମୁଁ ବିକଳାଙ୍ଗ ।" ଭାବନାଟା ବିଜୁଳି ଛୁଟେଇଦେଲା ଦିହରେ । ହାତଟା ଚଟ କରି ଚାଲିଗଲା ଗୁଡ଼ ପାଖକୁ । ସେ ହାତଦେଇ ଅଣ୍ଡାଳି ନେଲା । ସବୁ ଠିକ୍ ଥିଲା । ମଝିଟା ଟିକିଏ ମୋଟା ଟିକିଏ ଦରଜ ଚିପିଲେ କିନ୍ତୁ ଆଶ୍ୱସ୍ତ ଲାଗିଲା । ବେଶ୍ ଗେଧେକା । ତାକୁ ଖୁସି ଲାଗିଲା ।

ମୁଣ୍ଡ ଭିତେରେ ସବୁ ଗୋଳମାଳ ହେଇଯାଉଥିଲା । ଏଇ ଗୋଳମାଳିଆ ଭାବଟା ଟିକିଏ ଆଙ୍ଗୁ ଆଙ୍ଗୁ ଲାଗୁଥିଲା । "ନିଶ୍ଚେ ସ୍ୱପ୍ନ ନିଶ୍ଚେ," ସେ ଭାବିଲା । ହବାକୁଇ ହବ । ଶୋଇ ଉଡ଼େଇଦବାକୁ ହବ ୟାକୁ । ସେ ଖଟ ଓପରେ ଲମ୍ବ ହେଇଯାଇ ଖେଳେଇହେଇ ଆରାମ୍‌ରେ ମଜରା ଛଡ଼େଇ ଆଖି ବନ୍ଦ କଲା କିଛି ନ ଭାବିବାକୁ ଚେଷ୍ଟା କରି । ନିଶାପରି ନିଦ ଘୋଟିଆସିଲା ଆଉ ସେ ଗାଢ଼ ନିଦେରେ ବୁଡ଼ିଗଲା ।

ନିଦ ଯେତେବେଳେ ଭାଙ୍ଗିଲା ଅନ୍ଧାର ଆହୁରି ଥିଲା । ସେ ଭାବିଲା କେତେବେଳେ ଶୋଇଲା ବୋଲି, ଆଉ କାହିଁକି ଅନ୍ଧାର ଲାଗି ରହିଥିଲା । ସେ ଧୀରେ ଧୀରେ ନିଜକୁ ଉଠେଇଲା ଦିହେରେ ନାନାପ୍ରକାର ଦରଜ ଯନ୍ତ୍ରଣା ଅନୁଭବ କରି । ବସି ଚାରିଆଡ଼କୁ ଚାହିଁଲା କିଛି କିଛି ଅନ୍ଧାରରେ ଦିଶିଲା ପର୍ଯ୍ୟନ୍ତ । ଦି'ଟା ଦୁଆର ବୋଧେ । ଗୋଟେ ଖଟର ଗୋଡ଼ ଆଡ଼କୁ, ଆରଟା ତା ବାଁ ପଟୁକୁ ପଛ କାନ୍ଥରେ । ବାଁ ପଟେ କାନ୍ଥୁକୁ ଲାଗି ଗୋଟେ ଛୋଟ ଆଲମାରି, ସେଇ ଭଳିଆ ଛାଇ, ଆଉ ତା ପାଖକୁ ପରଦା ଲଗା ଝରକା ବୋଧେ । କାରଣ ପରଦା ଦେଇ ଟିକିଏ ଆଲୁଅର ଆଭାସ ଆସୁଥିଲା, ରାତି ଆକାଶର ଆଲୁଅ ଝାପ୍‌ସା ହେଇ । ଡାହାଣପଟ କାନ୍ଥ ପାଖୁକୁ ଗୋଟେ ଟେବୁଲ୍‌ର ଛାଇ ।

ସେ ଆଣ୍ଠୁ ଓପରୁକୁ ଜଂଘ ପଛପଟେ ହାତ ଦେଇ ଗୋଡ଼ ଦି'ଟା ଟେକି ଖଟରୁ ଓହ୍ଲେଇଦେଲା । ଡାହାଣଗୋଡ଼ଟା ବେଶୀ କାଟିଲା ଭୂଇଁ ଛୁଇଁଲା ବେଳୁକୁ । ଆସ୍ତେକିରି ସେ ନିଜ ଓଜନ ଗୋଡ଼ ଓପରୁକୁ ଖସେଇ ଠିଆ ହେଇ ପଡ଼ିଲା । ମାଂସପେଶୀ ଟାଣିହେଇ କଟ କଟ ହେଇଗଲେ କିନ୍ତୁ ସେ ଠିଆ ରହିଲା । ବଖରାଟି ଥଣ୍ଡାଳିଆ ଲାଗୁଥିଲା, ଚଟାଣଟା ଗୋଡ଼କୁ ଥଣ୍ଡା ଲାଗୁଥିଲା । କଷ୍ଟେମଷ୍ଟେ ସେ ଖଟ ଗୋଡ଼ଆଡ଼ ଦୁଆରଆଡୁକୁ ଚାଲିଲା । ଦୁଆର ଭିତୁରୁ କିଳା ହେଇ ନ ଥିଲା । ଟାଣିଲାରୁ ଖୋଲିଗଲା । ବାହାରଟା ବି ସେମିତି ଅନ୍ଧାର, କି ଆହୁରି ବେଶୀ । ଏଇଟା ଗୋଟେ କରିଡର୍ ଡାହାଣ ଆଡୁକୁ ଲମ୍ବି । ଓଦା ଓଦା ଓଷୁଦିଆ ଗନ୍ଧ ତା ନାକେରେ ବାଜିଲା । ଓଷୁଦିଆ । କରିଡର ଚଟାଣରେ କଣ ଗୋଟେ ଖସ୍ ଖସ୍ ହେଇ ଦୌଡ଼ିଗଲା ଡାହାଣପଟ ଅନ୍ଧାର ଭିତୁରୁକୁ । ସେ ତା ଦୁଆର ବନ୍ଦକରି କିଳିଦେଲା । ଏଠାରେ ଗନ୍ଧ ହସ୍‌ପିଟାଲ ପରି ତାକୁ ଲାଗିଲା । କିନ୍ତୁ ସିମିତି ଦୁଶୁ ନ ଥିଲା । ଧୀରେ ଧୀରେ ଗୋଡ଼ ଚଲେଇ ଆରଦୁଆର ଆଡ଼ିକି ଚାଲିଲା । ଦେହର ଦରଜ ବଢୁଥିଲା, କିନ୍ତୁ ସେ ମାଡ଼ିଚାଲିଲା । ହାଡ଼ ମାଉଁସ ହାଉଳି ହଉଥିଲେ ବି ତାକୁ କିମିତି ଗୋଟେ ଖୁସି ଲାଗୁଥିଲା ।

ଏ ଦୁଆରଟା ତା ପଟୁ କିଳା ହେଇଥିଲା । ସେ କିଳିନିଟା ବୁଲେଇ ଡଳୁକୁ ଭିଡ଼ିଦେଇ ଦୁଆରଟା ପେଲିଦେଲା ପୂରା ଅନ୍ଧାର ଗୁମ୍ଫା ଭିତରକୁ, ଯୋଉଠୁ ଗନ୍ଧକର ଗନ୍ଧ ଆସୁଥିଲା । ଗନ୍ଧକ । ଗାଧୁଆଘର । ତା ବାଁହାତଟା ମନୁକୁ ଉଠିଗଲା ବାଁ ପଟ କାନ୍ଥକୁ । ଠିକ୍ ସେଇଠି ଥିଲା ସ୍ୱିଚ୍‌ଟା । ଆଉ ସ୍ୱିଚ୍‌ଟା ଟିପିଲା ବେଳୁକୁ ସେ ଚଞ୍ଚଳ ପଚିଶି ୱାଟ୍ ବଲ୍‌ବଟା ଜଳିଉଠି ତା ଆଖିକି ଝସକେଇ ଦେଲା । ବଲ୍‌ବଟା ଝୁଲୁଥିଲା ଛୋଟ ଗାଧୁଆଘରର ଛାତୁରୁ । ଡାହାଣପଟୁକୁ ଝାଡ଼ାଯିବା ସ୍କ୍ୱାଟ୍ ପ୍ଲେଟ୍, ବାଁପଟକୁ ଗୋଟେ ବେସିନ୍ ଆଉ କଳ । ବେସିନ୍ ଓପରେ ଗୋଟେ ଗିଲାସ । ହଠାତ୍ ତାକୁ ଶୋଷ ଲାଗିଲା ଆଉ ସେ ବେସିନ୍ ଆଡୁକୁ ପାଦ ବଢ଼େଇଲା । କଳୁରୁ ପାଣି ଭସ୍ ଭସ୍ ବାହାରି ତା ମନକୁ ଥରେଇଦେଲା ତାକୁ ଆଶ୍ଚର୍ଯ୍ୟ କରି । ସେ ଗିଲାସ ଭର୍ତ୍ତିକରି ଶୀତଳ ପାଣିକି ଢକ ଢକ କିରି ପିଇଗଲା ବେଳୁକୁ ତୋଟିରେ ଲାଗିଲା, କାଶ ଉଠି ଭକ୍ କିରି ପାଟିଏ ପାଣି ଛିଞ୍ଚାଡ଼ି ହେଇ ପଡ଼ିଲା ବେସିନ୍ ଓପର କାନ୍ଥେରେ ।

କାଶ ପାଣିମନ୍ଦାକ କାନ୍ଥେରେ ବୋହିଗଲା ବେଳୁକୁ ସେ ଚାହୁଁ ଚାହୁଁ ତାକୁ ଦୁଶିଲା ଯିମିତି କାନ୍ଥଟା ଖୋଲିଗଲା ଗୋଟେ ଆୟତକ୍ଷେତ୍ର ହେଇ । ଆଉ ତା ଭିତୁରୁ ଗୋଟେ ବିକଟାଳ ପାଣିଛଟା ମୁହଁ ତା ଆଡୁକୁ ଚାହିଁଥିଲା, ତା ଆଖି ସ୍ଥିର, ମଲା ମଣିଷର ଯିମିତି, କିନ୍ତୁ ଛକି ଥିଲା ଅଳ୍ପ ବିସ୍ମୟରେ । ଚମକି ସେ ଝୁଙ୍କିଗଲା ପଛୁକୁ ଅତର୍ଚ୍ଛାରେ । ତା ଦିହ ମନ ଗହୀରରୁ ହାଉଳିଉଠି ଗୋଟେ ଚିତ୍କାର ମାଡ଼ିଗଲା ତା ଆଖିର ଆଲୁଅ

ଲିଭେଇ ଦେଇ । ତଥାପି ଦିଶୁଥିଲା ସେ ବିକଟାଳ ବିକୃତ ମୁହଁ, ଲାଲ, ଲାଲ ଆଖି ଦି'ଟା ତାକୁଇ ବିନ୍ଧି ରଖିଥିଲା ଯିମିତି । ତା ଗୋଡ଼ ପଡ଼ିଲାନି, ଭାଙ୍ଗିପଡ଼ିଲା ହଠାତ୍ । ସେ ବେସିନଟାକୁ ହାତରେ ରାମ୍ପୁଡ଼ି ଧରିବାକୁ ଚେଷ୍ଟାକଲା, ପଡ଼ିଗଲା ବେଳୁକୁ । କିନ୍ତୁ ବେସିନଟା ମୁହୂର୍ତ୍ତେ ମାତ୍ର ଅଟକେଇଲା, ତାପରେ କାନ୍ଥରୁ ଓଟାରି ହେଇ ଆସିଲା ତା ସାଙ୍ଗେରେ । ସେ ତଳେ କଚାଡ଼ି ହେଇ ପଡ଼ିବା ପୂର୍ବରୁ ହଠାତ୍ ତା କାନେରେ ଗର୍ଜନ ହେଲା : ''ଏଇଟା ଦର୍ପଣ ! ଏଇଟା ଦର୍ପଣଟେ !'' ଦର୍ପଣ । ଶବ୍ଦ ହଠାତ୍ ମରିଗଲା କାନୁରୁ । ହଠାତ୍ । ଆଶ୍ଚର୍ଯ୍ୟ ନିସ୍ତବ୍ଧତାରେ । ଥଣ୍ଡା ଚଟାଣଟା ତା ଫୁଙ୍ଗୁଳା ଦିହରେ ପିଟିହବା ଆଗୁରୁ ହୃଦୟଟା ଶୀତରେ ଥରିବାକୁ ଲାଗିଥିଲା । ''ନା !'' ସେ ପାଟିକରି ଉଠିଲା ଚୁପ୍‌ଚାପ୍, ''ନା, ଅସମ୍ଭବ । ନା !'' ତା ମୁଣ୍ଡ ପାଇଖିନା ଟିଣ ମଗରେ ପିଟିହେଇ ଓଲଟେଇଦେଲା । ସେ ଚିତ୍ ହେଇ ପଡ଼ିଯାଇଥିଲା । ଗୋଡ଼ ଦି'ଟା ବଙ୍କା, ବେସିନ୍‌ଟା ତା ପେଟ ଓପରେ ଅଧା ମାଡ଼ି ବସିଥିଲା, ଅଧା ପାଣି ପାଇପ୍‌ରୁ ଲଟକି । ତା ମୁଣ୍ଡ ସ୍ଥିର ହେଇ ପଡ଼ିଥିଲା ମଗରୁ ବୋହି ଯାଉଥିବା ପାଣିରେ ।

ନିଦ ତାର ଚମକି ଭାଙ୍ଗିଗଲା ଆଉ ସାଙ୍ଗେ ସାଙ୍ଗେ ସେ ଚେଙ୍ଗା ହେଇଗଲା । ଚାରିଆଡ଼ ଆଲୁଅ । ଦିନ ବେଳ । ତା ପାପୁଲି ଆଉ ପିଠି ତଳେ ନରମ ଗଦିର ଢିରା । ସେ ସବୁ କଣ ଗଲାରାତିର ସ୍ୱପ୍ନ ? ନିଶ୍ଚୟ ହେଇଥିବ । ତା ଗୋଡ଼ ତଳଆଡ଼ର ଦୁଆର ଖୋଲା ଥିଲା । ତା ଆଖି ଖୋଜିଗଲା ଚଟ୍‌କିରି । ଭିତର କିଳିନିଟା ଭାଙ୍ଗି ଲଟକିଥିଲା । ସେଇଟା ସ୍ୱପ୍ନ ନ ଥିଲା ତା ହେଲେ । ସେ ବିକଟାଳ ମୁହଁଟା ତାକୁ ଲୁଚି ଚାହିଁଥିଲା ଯିମିତି । ସେ ମୁଣ୍ଡ ବୁଲେଇଲା ଡାହାଣପଟୁ ଚିପା ହସ ଶବ୍ଦ ଶୁଣି ।

ଅତି ପୁରୁଣା ପାତେଳା ଡେଙ୍ଗା ଲୋକଟିଏ । ମୁଣ୍ଡେରେ ମୁଣ୍ଡେ ପାଚିଲା ବାଳ, ବେକେରେ ଷ୍ଟେଥୋସ୍କୋପ୍, ଗୋଟିଏ ଟୁଲ୍ ଓପରେ ବସିଥିଲେ । ସେ ହସୁଥିଲେ । ସେଇ ପୁରୁଣା ମୁଗୁନିପଥରରୁ କଟା ମୁହଁଟାରେ ଚଷମା ତଳ ଆଖି ଦି'ଟା ଜିଅନ୍ତା ଆଉ ହସ ହସ ଦୁଷ୍ଟାମିରେ ଚଞ୍ଚଳ । ସେ ଇଞ୍ଜେକ୍‌ସନ ସିରିଞ୍ଜଟା ଧଳା ଶାଢ଼ି ପିନ୍ଧା ସାବେନୀ ଟୋକୀଟିକି ବଢ଼େଇଦେଲେ । ନର୍ସ ନିଶ୍ଚୟ ।

''ଏତେ ଦିନେକେ ନିଦ ଭାଙ୍ଗିଲା, ତାହେଲେ । ତୁମେ...''

''ଆପଣ କିଏ ?''

''ଆହା ଭାରି ଟାଣୁଆ ଲୋକ ତ । ଆସିଲା ବେଳ ଅବସ୍ଥାରୁ ତ ସେମିତି ଜଣାପଡୁ ନ ଥିଲା ।''

''ଏଇଟା କ'ଣ ହସପିଟାଲ୍ ?''

''ଖୁବ୍ ଜିଜ୍ଞାସୁ ବି । ଭଲ ଭଲ । ଭୋକ ଲାଗିଲାଣି ?''

"ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ।"

"ଉଚ୍ଛନ୍ନ ବି, ବଞ୍ଚିଥିଲାବେଳେ । ତା'ଇ ତୁମ ଅବସ୍ଥାର କାରଣ ହେଇଥାଇପାରେ । ମୁଁ ଭାବିପାରୁନି କ'ଣ କରି ଏ ଅବସ୍ଥା ଭୋଗିଥିଲ । ଧୈର୍ଯ୍ୟ ଧର ବୀର ବାଳକ । କାହିଁକି ନୁହେଁ, ତୁମକୁ ବାଳକ କୁହାଯାଇପାରେ । ମୋ ତୁଳନାରେ ତୁମ ବୟସ କ'ଣ ? ଈଶ୍ୱରୀ ! ୟାଙ୍କ ବୟସ କେତେ ହବ ?"

"ପଇଁତିରିଶ, ଚାଳିଶ ।"

"ମୋ ପ୍ରଶ୍ନର ଉତ୍ତର ଦିଅନ୍ତୁ ! ଦୟାକରି ।"

"ଈଶ୍ୱରୀ, ବି.ପି. ଇନଷ୍ଟ୍ରୁମେଣ୍ଟଟା ଆଣ । ତୁମ ପ୍ରଶ୍ନର ଉତ୍ତର୍ ନିଜେ ବୁଝିପାରିବା କଥା । ତୁମର ଦେଖି ବୁଝିବା ଶକ୍ତି ଟିକିଏ କମ୍ କି ? ବୋଧେ ତୁମ ମୁଣ୍ଡଟା ଆହୁରି ପୂରା ସଫା ହେଇନି କି କିଛିଟା ଯାଇଚି ଖରାପ୍ ହେଇ । ନ ହେଇ ଥାଇପାରେ ବି । ମୁଁ ଜଣେ ଡାକ୍ତର, ଆଉ ଏଇଟା ମୋ ହସ୍‌ପିଟାଲ୍, ନର୍ସିଂହୋମ୍ ଇତ୍ୟାଦି ଇତ୍ୟାଦି । ତୁମେ ଏଠି ରୋଗୀ ଆଉ ଈଶ୍ୱରୀ ତୁମର ନର୍ସ । ଏଥର ହାତଟା ଟିକିଏ ଟେକ ।"

ଡାକ୍ତର ତାଙ୍କ ରକ୍ତଚାପ ନେଲେ ଗୋଟେ ଆଦିମ, ରଙ୍ଗଉଳୁରା ଯନ୍ତ୍ରରେ, ଯୋଉଟାକି ଦିନେ ହୁଏତ ଚକ୍ ଚକ୍ କରୁଥିଲା ।

"ନର୍‌ମାଲ୍," ସେ କହିଲେ ପାନଖିଆ ଲାଲଓଠରେ ଟାକେରା ଫୁଟେଇ, ମୁଣ୍ଡ ହଲେଇ । "ତୁମେ ଗୋଟାଏ ଆଶ୍ଚର୍ଯ୍ୟ । ତୁମର ସବୁ ଆବ୍‌ନର୍‌ମାଲ୍ ହବା କଥା କିନ୍ତୁ ଠିକ୍ ରହିଚି । ପାଣି ନାହିଁ, ଛୁରି ନାହିଁ, କଟୁରି ନାହିଁ, ପଡ଼ା ନାହିଁ, ଉଠା ନାହିଁ, କୋଉଥେରେ ତୁମେ ମରିପାରିଲନି । ତୁମ ସାଙ୍ଗେ ଦେଖାହେଇ ଖୁସି ହେଲି । ତୁମ ନାଁ କ'ଣ ? ମହିଷାସୁର ନୁହଁ ତ ?"

ଲୋକଟା ତା ଆଖି ବନ୍ଦ କରିଦେଲା । ଭିତେରେ ତାର ସବୁକିଛି ଏପଟ ସେପଟ ଘାଁ ଘାଁ ହବାକୁ ଲାଗିଲେ, ଯିମିତିକି ଛାତି ଆଉ ପେଟ ଭିତର ମନ୍ଥି ହେଇଯାଉଚି ଅନେକ ଚକ ବୁଲାରେ, ସେ କିଏ ସେ କିଏ ଜାଣିବାକୁ ପ୍ରତି ଚେଷ୍ଟାରେ । ତାକୁ ଡର ଲାଗିଲା । ତାକୁ ଲାଗିଲା ଯିମିତି 'ସେ ଗୋଟେ କିଟିକିଟି ଅନ୍ଧାର ଗୁମ୍ଫା ମୁହଁରେ ଠିଆହେଇଚି ଆଉ ତାକୁ ଭିତରକୁ ପଶିବାକୁ ପଡ଼ିବ । ସେ ଆଖି ଖୋଲିଲା ।

"ବାଥ୍‌ରୁମ୍ ବେସିନ୍ ଓପରେ କ'ଣ ଦର୍ପଣ ଅଛି ?"

ଈଶ୍ୱରୀ ବି.ପି. ଇନଷ୍ଟ୍ରୁମେଣ୍ଟଟା ଡାହାଣପଟ କାନ୍ଥପାଖ ଟେବୁଲ୍ ଓପରେ ରଖିବାକୁ ଯାଉଥିଲା, ବୁଲିପଡ଼ିଲା । ଡାକ୍ତର ଜଗନ୍ନାଥ ପ୍ରହରାଜ ତାଙ୍କ ମଳୁକୁ ଚାହିଁଲେ, ମୁହଁର କୁଞ୍ଚଯାକ ତାଙ୍କର ଫିଟିଯାଉଥିଲା ।

"କ'ଣଟେ ଅଛି ?"

''ଦର୍ପଣ । ନିଶ୍ଚେ ଦର୍ପଣଟେ ଥିବ ବାଥରୁମ ବେସିନ ଓପରେ ।''

''ଅଛି,'' ଡାକ୍ତର ଉତ୍ତର ଦେଲେ ଠିକ୍ ବୁଝି ନ ପାରି ।

ଲୋକଟା ପୁଣି ଆଖି ବନ୍ଦ କରି ଗୁମ୍ଫାର ଅନ୍ଧାରକୁ ଠେଲି ଦୂରେଇ ରଖିବାକୁ ଚେଷ୍ଟା କଲା । କିନ୍ତୁ ହଠାତ୍ ସମୁଦ୍ର ଭିତରର ଗୋଟେ ଅକ୍ଟୋପସ୍ ଅନ୍ଧାର ଗୁମ୍ଫା ଭିତ୍ରୁ କଳା କଳା ବହଳିଆ କାଳି ତା ମୁହଁ ଓପୁରୁକୁ ପିଚକାରି ମାରି ତା ଅଣ୍ଟାକୁ ଲମ୍ବା ଲମ୍ବା ଗୋଡ଼ରେ ଗୁଡ଼େଇ ଟାଣିନେଲା ।

''ତା ହେଲେ ସେଇଟା ମୋ ମୁହଁ । କିନ୍ତୁ ସେଇଟା ମୋ ମୁହଁ ନୁହେଁ । ଜମା ନୁହେଁ । ସେଇଟା ବିକୃତ, ବିକଟାଳ, ଅସୁର ପରି । ସେଇଟା ମୋର ନୁହେଁ । ସେଇଟା ମତେ ଖତେଇ ବି ହେଲା । ଶୁଣନ୍ତୁ, ସେଇଟା ମୋ ମୁହଁ ନୁହେଁ ।''

ତା ଆଖି ଖୋଲିଗଲା ବଡ଼ ବଡ଼ ହେଇ । ସେ ଦୟନୀୟ ଭାବେରେ ତାକୁ ଚାହିଁଥିବା ଡାକ୍ତରଙ୍କ ଆଡ଼କୁ ଚାହିଁଲା । ଡାକ୍ତର ପ୍ରହରାଜ ତାକୁ ନିରୀକ୍ଷଣ କରୁଥିଲେ । ବିକଳରେ ସେ ନର୍ସ ଆଡ଼େ ଚାହିଁଲା ଆଉ ଈଶ୍ୱରୀ ଆଖି ସାଙ୍ଗେ ତା ଆଖି ବାନ୍ଧି ହୋଇଗଲା ଯିମିତି । ଈଶ୍ୱରୀ ଆଖି ବଡ଼ ବଡ଼, କଳା, ଆଉ ଗହୀର ସନ୍ତପ୍ତ ଜୀବର ଅନୁଭୂତିରେ ଜମାଟବନ୍ଧା, ଯାହା ଭିତେରେ ସେ ଲୋକଟାର ଆଖିର ଲଙ୍ଗର ଛନ୍ଦିହେଇ ଲାଖିଗଲା ।

''ଓହ୍ !'' ଡାକ୍ତର ପ୍ରହରାଜ ହଠାତ୍ ଫାଟିପଡ଼ିଲେ ଠୋ ଠୋ ହସରେ, ତାଙ୍କ ମୁହଁର ଖୁସି ଗାରଗୁଡ଼ାକ କୁଞ୍ଚ ନ ହେଇ ପୁଣି ଆଗପରି ଖେଳେଇ ହେଇ ଯାଇଥିଲା । ସେ ଖୁବ୍ ହସିଲେ । ତାଙ୍କ ଚିଲାଆଖି ଚକମକ କରୁଥିଲେ ଆଉ ତା କଣରେ କୁଆଗୋଡ଼ିଆ ଦାଗଗୁଡ଼ାକ ନାଚୁଥିଲେ । ଈଶ୍ୱରୀ ହସୁ ନ ଥିଲା । ସେ ଖଟରେ ପଡ଼ିଥିବା ଲୋକଟିର ମୁହଁରେ ଯନ୍ତ୍ରଣା ଆଉ ଆଲୋଡ଼ନର ଗୋଳମାଳିଆ ଅନ୍ଧାର ଦେଖୁଥିଲା । ଏଇ ଲୋକଟିକୁ ଲମ୍ବାଯୁଦ୍ଧରେ ମରଣମୁହଁରୁ ସେ ଭିଡ଼ିଆଣିଥିଲା ଜୀବନ ଭିତୁରୁକୁ । ତାକୁ ଡାକ୍ତରଙ୍କର ହସ ଆଶ୍ଚର୍ଯ୍ୟ ଲାଗିଲା : ସେ ତ ତାଠୁଁ ବି ଆଉରି ବେଶୀ ଲଢ଼ିଚନ୍ତି । ଈଶ୍ୱରୀ ସବୁବେଳେ ଡାକ୍ତର ପ୍ରହରାଜଙ୍କ ହସ ମିଜାଜ୍ ବୁଝିପାରେନି, କିନ୍ତୁ ସେ ତାଙ୍କୁ ଉପଭୋଗ କରେ ଆଦରରେ । କୌଣସି କାରଣ ନ ଥାଇ ତାର ମନେପଡ଼ିଗଲା ରକ୍ତାକ୍ତ ମେଦାଟା ତା ପେଟରୁ ଗର୍ଭପାତ କରି କାଢ଼ିଥିବା ଫିଟସ୍ ବୋହି ଯାଉଥିଲା ଯିମିତି କିଡ୍‌ନି ଟ୍ରେରେ କାଲିକଟ୍‌ର ସେଇ ଛୋଟ ନର୍ସିଂହୋମ୍‌ରେ । ତାର ସେଇଟାକୁ ଦେଖିବାକୁ ଇଚ୍ଛା ଥିଲା । ତାର ମନେପଡ଼ିଗଲା ସେଇ ଛଟ ଛଟ ଯନ୍ତ୍ରଣା । ଡାକ୍ତର ନାମ୍ବୁଦ୍ରିଙ୍କ ଚିମୁଟାରେ କାହିଁକି ତାର ଏତେ ରାଗ ଉଠିଥିଲା ସେ ବୁଝିପାରି ନ ଥିଲା । ଦଶ ବର୍ଷ ତଳେ ତା ପେଟେରେ କ'ଣ ଗୋଟେ ଜଳିଲା ଭଳିଆ ଲାଗିଲା । ସେ ସମୟର ଧୂଳି ଝାଡ଼ିଦେଇ ଫେରିଆସିଲା ବର୍ତ୍ତମାନର କୋଠରି ଭିତୁରୁକୁ ।

ସେ କହିଲା "ସାର୍, କ'ଣ ଗୋଟେ ଗୋଲ୍‌ମାଲ୍ ହେଇଚି ।"

"ଏଁ ? ଓଃ ! ଆଇ ଆମ୍ ସରି । ମୁଁ ତମ ଉପରେ ହସୁ ନ ଥିଲି । ମତେ ଭାରି ଖୁସି ଲାଗୁଚି ତମେ ଫେରିଆସିଚ ପୂରାବାଟ । ଆଉ ନିଜ ମୁହଁ ଦେଖି ଦର୍ପଣରେ ଯାହା ଡରିଗଲନା, ସେଇଟା ଏମିତି କୁତୁକୁତୁ ଲାଗିଲା ଯେ ଭାବି ଆଉ ସମ୍ଭାଳି ପାରିଲିନି । ବର୍ତ୍ତମାନ ମୋ କଥା ମନଦେଇ ଶୁଣ । ସେ ମୁହଁଟା ତମର କୁତୁକୁତା ହେଇ ଯାଇଥିଲା, କଟା, ଖୋଲା, ଭିଣା, ତମେ ଆସିଲା ବେଳୁକୁ । କାଲି ରାତିରେ ତମେ ଯାହା ଦେଖିଲ ସେ ତା ତୁଳନାରେ ଖୁବ୍ ସୁନ୍ଦର, ମୋ ଝାଳବୁହା ପରିଶ୍ରମ । ତମର ଆହୁରି ପ୍ରାୟ ତିନିଟି ସର୍ଜରୀ ଦରକାର, କେହି ଭଲ ପ୍ଲାଷ୍ଟିକ୍ ସର୍ଜନ୍ ପାଖେରେ ତମ ପୂର୍ବ ମୁହଁର ପାଖାପାଖି କିଛି ପାଇବାକୁ । ଯେମିତି ଅଛି କିଛି ବିଶେଷ ଖରାପ ନାହିଁ । ଯାଠୁଁ କଦର୍ଯ୍ୟ ନିଜସ୍ୱ ମୁହଁ ମୁଁ ଦେଖିଚି । ଟିକିଏ ବଙ୍କୁଡ଼ିଆ, ଟିକିଏ ଫୁଲା ଦାଗ, ଡାହାଣ ଆଖିପତା ଟିକିଏ ଖାଞ୍ଜି ହେଇଯାଇଚି, ନାକଟା ଟିକେ ମାଣ୍ଡୁଆ ଆଉ ବାଁ କାନଟା ଟିକିଏ ଖଣ୍ଡିଆ, ଚୋବେଇ ହେଲାପରି । ନ ହେଲେ ବିଶେଷ ଖରାପ ନୁହେଁ ତମ ମୁହଁଟା । କିନ୍ତୁ ମୁଁ ଖୁସି ତମେ କାଲିରାତିରେ ଚମକିଗଲ, ଅର୍ଥାତ୍ ତମ ମୁଣ୍ଡ ଠିକ୍ ଅଛି । ତମେ ନିଜୁକୁ ଚିହ୍ନିଚ । ମତେ ଭାରି ଆରାମ୍ ଲାଗୁଚି । ଏଥର କୁହ ଦେଖି ବାଳକ ତମେ କିଏ ?"

ଲୋକଟା ସିଧା ଡାକ୍ତର ପ୍ରହରାଜଙ୍କ ଚିଲାଆଖି ଭିତୁରୁକୁ ଚାହିଁଗଲା କଣ ଖୋଜିଲାପରି ।

"ମୁଁ ଜାଣିନି ଡାକ୍ତର । ମୁଁ ଜାଣିପାରୁନି । କିଛି ଗୋଟେ ବି ମନେପଡୁନି । ମତେ ଡର ଲାଗିଯାଉଚି । ମତେ ଲାଗୁଚି ମୋ ଭିତରେ କିଛି ଗୋଟେ ଗୋଳମାଳ ହେଇଯାଇଚି, ଭାରି ଗୋଳମାଳ ।"

ସେ ଅନୁନୟ କରି ଚାହିଁଲା ସ୍ୱାଭାବିକ ଭାବେ ବସିଥିବା ଡେଙ୍ଗା ଡାକ୍ତର ଜଗନ୍ନାଥ ପ୍ରହରାଜଙ୍କୁ ।

"ଏମ୍ତି କଥା, ନାଇଁ ?" ସେ କହିଲେ ଲୋକଟାର ଚାହାଣିକୁ ପେଲି ଦେଇ । "ମୁଁ ଭାବୁଚି ତମକୁ କ୍ଷତି କରିବାକୁ କିଛି ଗୋଟେ ଦରକାର । କିନ୍ତୁ ପ୍ରଥମେ କିଛି ଟିକେ ଖାଇବାକୁ ହବ । ଦି'ମାସ ପରେ ତମର ପ୍ରଥମ ପ୍ରକୃତ ଖିଆ । ତା ପରେ ତୁମକୁ ଶୁଆଇଦେବି । ତମେ ଉଠିଲେ କଥାବାର୍ତ୍ତା ହବା । ହୁଏତ ସକ୍ ଯୋଗୁ ଏମ୍ତି ହେଇଚି । ରିଲାକ୍ସ୍ ।"

ସେ ଉଠିପଡ଼ି ଈଶ୍ୱରୀକୁ ଆସିବାକୁ ମୁଣ୍ଡ ହଲେଇ ଠାରିଲେ ।

"ରୁହନ୍ତୁ !" ଲୋକଟା ଆଦେଶ ଦେଲାପରି କହିଲା, "ପ୍ଲିଜ୍ । ମୋର ଖାଇବା ଦରକାର ନାହିଁ । ବିଶ୍ରାମ ଦରକାର ନାହିଁ । ମତେ କୁହନ୍ତୁ ମୁଁ କିଏ ଆଉ ମୁଁ ଏଠି କ'ଣ କରୁଚି ।"

ତା କଳା ଛଳଛଳ ଆଖି ଡାକ୍ତରଙ୍କୁ ଚାହିଁଥିଲା, ତାପରେ ଈଶ୍ୱରୀ ଓପରକୁ ଖସିଆସିଲା । ତା ମୁହଁଟା ଦୁଶୁଥିଲା ଗ୍ରଟେସ୍କ ଆଉ ଫାଙ୍କା, ନିର୍ବିକାର, ଆଖିଡୋଳା ଦି'ଟା ଗହୀର କଳା କୂଅ ଯୋଉଥେରେ ଆଖି ଦୁରୁଶିଲା ପର୍ଯ୍ୟନ୍ତ କିଛି ହଲ୍‌ଚଲ୍ ନାହିଁ ।

ଡାକ୍ତର ପ୍ରହରାଜ ଓଠଚିପି ଅଳ୍ପହସି ଆତ୍ମସମର୍ପଣ କଲେ ଖଟ ଡାହାଣପଟ ନିଜ ଚଉକିକୁ ଫେରିଆସି ।

''ହଉ, ହଉ, ଥୟ ଧର ।''

ଈଶ୍ୱରୀ ଫେରି ଟେବୁଲ ପାଖେରେ ଠିଆ ହେଲା ବ୍ଲଡ୍‌ପ୍ରେସର୍ ଇନ୍‌ଷ୍ଟ୍ରୁମେଣ୍ଟଟା ରଖିଦେଇ ଧୂଳିଆ ଧଳା ଟେବୁଲ କ୍ଲଥ୍ ଓପରେ ।

''ତମ ବିଷୟରେ ମୁଁ କିଛି ଜାଣିନି । ଧ୍ୟାନ ଦେଇ ଶୁଣ ମୋ କଥା, ତୁମକୁ ସାହାଯ୍ୟ କରିପାରେ । ଠିକ୍ ପଞ୍ଚଷଠି ଦିନ ଆଗେ ତମ୍ଭକୁ ଗୋଟାଏ ଆମ୍ବୁଲାନ୍‌ସରେ ଏଠିକି ଅଣାହେଲା । ତମ୍ଭକୁ ନେଇ ଆସିଥିଲା ଟୋକୀଟିଏ, ଭାରି ରହସ୍ୟମୟୀ ଟୋକୀଟିଏ । ମଜୁରିଆଙ୍କ ପରି ଲୁଗା ପିନ୍ଧିଥିଲା । କେଉଟୁଣୀ ବି ହେଇପାରେ । ସେମିତି କିଛି । କିନ୍ତୁ ଆଖି ଦି'ଟା ଚଲାକ୍, ଭଦ୍ର । ନାଁ ତାର ମାଗୀ ବୋଲି କହିଲା, ମାଗୀ ସୁନ୍ଦରୀ । ମୁଁ ନିଃସନ୍ଦେହ ନିଜ ନାଁ ନୁହେଁ । କାହାର ଏମ୍‌ତି ଗୋଟେ ନାଁ ହବ ! ବେଳେବେଳେ ମାତଙ୍ଗୀ ବୋଲି ବି କହେ ହୁଏତ ତମେ ମନେ ପକେଇପାରିବ । ରଙ୍ଗଟା ଗୋରା, ଖରାଖାଇ ସାବେନା ଡେଙ୍ଗା - ପାଞ୍ଚ ଫୁଟ ପାଞ୍ଚ ଇଞ୍ଚ ଖଣ୍ଡେ ହବ - ସୁନ୍ଦର ଦେହ, ଗଢ଼ଣ, ଆଉ ମୁହଁଟା ଚରିତ୍ରପୂର୍ଣ୍ଣ, ସିଧା ସରୁ ସାନ ନାକ, ଟିକିଏ ଉଁଚା ଗାଲ ହାଡ଼, ହ୍ୟାକେଲ୍ ଆଖି, ଖୁବ୍ କମ୍ ଏଠି, ଚକ୍ ଚକ୍ ଦାନ୍ତୁଆ ଦାନ୍ତ, ସାନ ସାନ ସମାନିଆ । କହରା ବାଳ । କିନ୍ତୁ କିଛି ଗୋଟାଏ ଥିଲା, କିଛି ଗୋଟାଏ ଅନ୍ଧାରୁଆ ଭୟଙ୍କର ସେ ଆଖି ପଛରେ ଲୁଚିଥିଲା । ତା ସାଙ୍ଗେରେଇ ଥିଲା ବେଶ୍ ଶକ୍ତି ଆଉ ଖୁସିବାସିଆ ଉତ୍ସାହ । କୋଡ଼ିଏ କି ପଚିଶ ବର୍ଷ ହବ । ଭଲରେ ସଂରକ୍ଷିତ । ତାକୁ ତ ନିଶ୍ଚେ ଜାଣିଥିବ । ମାଇପିଟାଏ ।''

ଲୋକଟା କିଛି ସମୟ ଭାବିଲା, ତାପରେ ଭାବିଲାପରି ଧୀରେ ଧୀରେ କହିଲା : ''ନା । ତା ଭଳିଆ କେହି ମୋ ମନେପଡୁନି । ମୁଁ ତାକୁ ଜାଣିନି ।''

''ଭାବ ! ଆଉ କୋଉ ମାଇପି କଥା ମନେପଡୁଚି ? ନାଁ, ମୁହଁ, ଦେହ, କିଛି ବି, କେହି ବି ?''

''ନାଃ,'' ଲୋକଟା କିଛି ବେଳ ରହି କହିଲା । ''ନା । କିଛି ନାହିଁ । କିଛି ମନେପଡୁନି । ଭାବିବାକୁ ଗଲାବେଳକୁ ସବୁ ଲିଭିଯାଉଚି ପୃଷ୍ଠାରୁ ଯେମିତି । ସବୁ ଫାଙ୍କା ହେଇଯାଉଚି ଅନ୍ଧାରୁଆ ।''

''କିଛି କ'ଣ ମନେପଡୁନି ? ତମ ଘର, ବାପା, ମା, ଭାଇ, ଭଉଣୀ, କୁକୁର, କିଛି ବି ?''

''ନା ।''

''ତମ ନାଁ ?''

''ମୁଁ, ମୁଁ ଜାଣିନି । ମନେପଡୁନି । ମନେ ପକେଇ ହଉନି ।''

''କିଛି ଛବି ତମ ମନକୁ ଆସୁନି ? କାହାରି ସ୍ୱର, କିଛି ଶବ୍ଦ, ସ୍ପର୍ଶ... ?''

''ମୋ ମୁଣ୍ଡ । ଘୂରୋଉଚି । ଜୋର୍‌ରେ ।''

''ଘୂରୋଉ ।''

''ବେହୋସ୍ ହେଇଯିବି ।''

''ଈଶ୍ୱରୀ, ପାଣି ଟିକେ ଦେଲ ପିଇବାକୁ ଆଉ ଡାଇଜେପାମ୍ ଇଞ୍ଜେକ୍‌ସନ୍ ରେଡ଼ି କର । ଅନ୍ୟ କିଛି ଦବାକୁ ମୁଁ ଚାହୁଁନି ବର୍ତ୍ତମାନ ।''

ଲୋକଟା ପାଣିତକ ପିଇଦେଲା ଢକ ଢକ କରି, ଆଉ ମୁଣ୍ଡଟା ତକିଆ ଓପରେ ପକାଇଦେଇ ଲମ୍ବ ନିଃଶ୍ୱାସ ନେଲା । ଟିକିଏ ହସ ଓଠ ପାଖେରେ ।

''ଟିକିଏ ଭଲ ଲାଗିଲା ।''

''ହୁଁ । ଏଥର ତମୁକୁ ଗୋଟେ ନିଶା ଇଞ୍ଜେକ୍‌ସନ ଦେବି ।''

''ଗୋଟେ କୁକୁର ଅଛି । ମତେ ଗୋଟେ ଛୋଟ ଧଳା କୁକୁର ଦିଶୁଚି । ତିବବ୍‌ତୀୟ ହବ । ମତେ ପରିଷ୍କାର ଦୁଶୁଚି । ତା ଦେହରେ ଝାପ୍‌ସା ସୁନେଲି ସ୍ପଟ୍ ଅଛି । କପାଳରେ ଗୋଟେ ।''

''ସେଇଟା ମୋ କୁକୁର,'' ଈଶ୍ୱରୀ କହିଲା । ''ବିଲ୍‌କୁଲ୍ ମୋ କୁକୁର । କୁକୁରୀ । ଇନ୍ଦିରା ।''

''କିନ୍ତୁ ଯେ ତ ତାକୁ ଦେଖିନି ।''

''ଯେ ଯୋଉଦିନ ଆସିଲେ ସେ ଥିଲା, ଭାରି ଭୁକିଲାନି ? ଏତେ ଭୁକିଲା ଯେ ଆପଣ ମୋ ଓପରେ ପାଟିକଲେ ତାକୁ ନେଇଯିବାକୁ ।''

''କିନ୍ତୁ ଇଏ ତ ବେହୋସ୍ ଥିଲା । ଡିପ କୋମାରେ ତାକୁ କେମ୍‌ତି ଦେଖିବ ?''

''ତା'ପରେ ଆଉ ମୁଁ ତାକୁ କେବେ ଆଣିନି ।''

''ତମ କୁକୁର ନୁହେଁ । ଆଉ ଗୋଟାଏ । କୁହ, ସେ କୁକୁର କଥା ଯାହା ମନେପଡୁଛି କହିଯାଅ ।''

ଲୋକଟା କିଛି ସମୟ ଭାବିଲା । ତା ଆଖି ତଳେ ବାଇଗେଣି ଛାଇ, କଳାଆସିଆ । ତା'ପରେ ଧୀରେ ଧୀରେ ସେ କହିବାକୁ ଆରମ୍ଭ କଲା, ସିଧା ଆଗକୁ ଚାହିଁ କାନ୍ଥ ଭେଦି, ତା ଆଖି ଦି'ଟି ଆହୁରି କଳା ହେଇଯାଇ : ''ନା । ଆଉ କିଛି ନାହିଁ । ଖାଲି ସେଇ କୁକୁରୀ । ଭୁକୁଚି । ଆଉ କିଛି ନାହିଁ । କିନ୍ତୁ ଆଉ ଗୋଟେ କଣ ଅଛି । ମତେ କଳା ଆକାଶ ଦିଶୁଚି, ଧଳା ଧଳା ତାରା, ତାର ଖୁବ୍ ଭିତରେ ତାରାମାନଙ୍କୁ ଡେଇଁ କଣ ଗୋଟେ କଣ ଗୋଟେ ଚାଲିଆସୁଚି । ସେଇଟା ଆଲୁଅପରି ଜଳୁଚି ଆଉ ତା ଭିତେରେ ବସିଚି ଗୋଟେ ଚକ୍ ଚକ୍ ଧାତୁ ଜିନିଷ ଯନ୍ତ୍ରପାତି, ସ୍ୱିଚ୍ ଫୁଇଚ୍ ପାନେଲ ସାମନାରେ ।''

''ତାରାଙ୍କଠୁଁ ଦୂରେରେ କିନ୍ତୁ ତମେ ଦେଖିପାରୁଚ ?''

''ସେ କଣ ଗୋଟେ ଧାତୁ ଜିନିଷ ଖାଉଚି, କ୍ୟାପସ୍ୟୁଲଭଳିଆ ।''

ଡାକ୍ତର ପ୍ରହରାଜ ସନ୍ଦିଗ୍ଧ । ଟିକିଏ ଆମୋଦିତ ଟିକିଏ ଅସଂଯତ । ଲୋକଟା ନିଶ୍ଚୟ ମନଗଢ଼ା କଥା କହୁଚି ନ ହେଲେ ହାଲୁସିନେଟ୍ କରୁଚି । କିନ୍ତୁ ଗୋଟାଏ କଥା ନିଶ୍ଚିତ : ଲୋକଟା ଶିକ୍ଷିତ, କ୍ୟାପ୍‌ସ୍ୟୁଲ୍ ଆଉ ଇନଷ୍ଟ୍ରୁମେଣ୍ଟ୍ ପାନେଲ କଥା କହିପାରିଲା ପରି ଶିକ୍ଷିତ । ନା ଲୋକଟା ତାଙ୍କୁ ଭୁଆଁ ବୁଲୋଉଚି ? ଭାବନାଟା ତାଙ୍କୁ ବିରକ୍ତ କଲା । ସେ ଲୋକଟାକୁ ନିରିଖି ଚାହିଁଲେ ।

''ସେ ସ୍ୱିଚ୍ ଚିପୁଚି । ମୁଁ ସ୍ପଷ୍ଟ ଦେଖିପାରୁଚି । ସେ ସିଧା ମତେ ଚାହିଁଚି ।''

''ତମେ ମିଥ୍ୟାବାଦୀ । ମିଛୁଆ ।''

ଲୋକଟା ମୁଣ୍ଡ ବୁଲେଇ ଡାକ୍ତରଙ୍କ ଆଡ଼େ ଚାହିଁଲା । କଷ୍ଟେରେ ଆଖି ଫେରେଇ ଆଣିଲା ତାଙ୍କ ଓପରୁକୁ ।

''ତମେ ଗୋଟାଏ ମହା ମିଛୁଆ ଭଣ୍ଡ ! ଏଥର ମୋ କଥା ଶୁଣ । ମୁଁ ତମ ପରିଚୟ ଦେବି । ତମେ ଗୋଟାଏ ବାଷ୍ଟାର୍ଡ୍, ଜାରଜ । ତମ ମା ବେଶ୍ୟା, ତମ ଭଉଣୀ ବେଶ୍ୟା, ଆଉ ତମେ ଜଣେ ଖୁଣୀ ଦାଗୀ !''

''ନାଃ !'' ଲୋକଟା ଉଠି ବସିପଡ଼ିଲା ହଠାତ୍, ତା ଆଖି କୁଞ୍ଚହେଇ ଅଧାବୁଜି ଧାରେ ଧାରେ ହେଇଗଲା ।

''ତାହେଲେ କୁହ ତମ ମା କିଏ ?''

''ନାଆଁ ଆଁ ଆଁ !'' ଲୋକଟାର ଆଖି ବୁଲିଗଲା । ଦାନ୍ତ କାମୁଡ଼ି ହେଇ ମାଢ଼ି ଫୁଲିଉଠିଲା । ସେ ଖଟ ଓପରେ ପଡ଼ିଗଲା, କହୁଥିଲା, ''ନା ନା ନା ନା ନା ନା ନା ନା'', ମୁଣ୍ଡ ତାର ତକିଆରେ ଏପଟ ସେପଟ ଗଡୁଥିଲା ।

''କହିଦିଅ ।''

''ମୁଁ ପାରିବିନି । ମୁଁ ଜାଣିନି । ମୋର ମନେପଡୁନି । ମୁଁ ପାରିବିନି ପାରିବିନି ପାରିବିନି ପାରିବିନି ପାରିବିନି... ।''

ଈଶ୍ୱରୀର ଲମ୍ବା ଲମ୍ବା ଆଙ୍ଗୁଠି ଆଉ ନରମ ପାପୁଲି ଡାକ୍ତର ପ୍ରହରାଜଙ୍କ କାନ୍ଧୁକୁ ଚାପିଧରିଲା ଖୁବ୍ ଜୋର୍‌ରେ ।

ଡା. ପ୍ରହରାଜ ଇଂଜେକ୍‌ସନ୍ ନଳୀଟା ଧରି ନଇଁପଡ଼ିଲେ । ପାଞ୍ଚ ମିନିଟ୍‌ରେ ଲୋକଟା ଖେଳେଇହେଇ ଶୋଇପଡ଼ିଲା । ଅନ୍ତତଃ ସିମିତି ଲାଗିଲା । ଡା. ପ୍ରହରାଜ ଈଶ୍ୱରୀକୁ ଠାରି ସେ ବଖରାରୁ ବାହାରିଗଲେ । ଈଶ୍ୱରୀ ଦୁଆର ପାଖରୁ ବୁଲି ଚାହିଁଲା । ଲୋକଟାର ଆଖି ଦି'ଟା ଖୋଲିଯାଇଥିଲା । ପୁଣି ଥରେ ଆଉ ତାର ନିଘଞ୍ଚ କଳା ଗହୀରରୁ କଣ ଗୋଟେ ବାହାରିଆସି ଈଶ୍ୱରୀ ଭିତରେ ଫୁଟି ବାହାରି ଚାଲିଗଲା, ତାକୁ କିମିତି ଗୋଟେ ଆଶ୍ୱସ୍ତିର ନିବୁଜ ମୁଠାରେ ଛାଡ଼ିଦେଇ । ତାକୁ କିମିତି ଗୋଟେ ଅସହାଇଆ ଲାଗିଲା ଯେ ସବୁ ଯିମିତି ଭୁଲ । ଖୁବ୍ ଅନ୍ୟାୟ । ସେଇ ଆଖି ଦି'ଟାରୁ ବାହାରି । ହଠାତ୍ ଲୋକଟାର ଆଖି ଦୂରରୁ ଫେରିଆସି, ପୁଅ ଦି'ଟା ଲକ୍ଷ୍ୟକରି ରହିଗଲେ ଈଶ୍ୱରୀ ଓପରେ । ତାଙ୍କ ଭିତରେ ଈଶ୍ୱରୀ ଦେଖିଲା ଯେମିତି ଘୃଣାର ନିଆଁ ।

ତା ସ୍ୱର ଶାନ୍ତ : ''ମତେ କୁହ ଈଶ୍ୱରୀ, ତୁମ ନାଁ ଈଶ୍ୱରୀ ନା ? କୁହ ମତେ ଇମିତି କିଏ କଲା । ସତ କୁହ ।''

ମୁହୂର୍ତ୍ତକ ପାଇଁ ଈଶ୍ୱରୀ ଥମିଗଲା, ତା'ପରେ ଦୀର୍ଘଶ୍ୱାସ ନେଲା ।

''ମୁଁ ସବୁକଥା ଜାଣିନି । କିନ୍ତୁ କେହି ତୁମକୁ ମାରିଦବାକୁ ଚେଷ୍ଟା କରିଥିଲା । ଆକ୍‌ସିଡେଣ୍ଟ ନିଶ୍ଚେ ନୁହେଁ । ତୁମ ମସଲ୍ ଉଣିଶିଠାରେ କଟା ହେଇଥିଲା, ତୁମ ହାଡ଼ ଭଙ୍ଗା ହେଇଥିଲା, ମୁଣ୍ଡର ଡେବିରିପଟ ଯୁଠି ଏବେ ବି ଫୁଲା ଅଛି, ନାକ, ଛାତି ପଞ୍ଜରାହାଡ଼, ଆଉ ଡାହାଣ ନଳୀ ହାଡ଼ । ପାଞ୍ଚଟା ଦାନ୍ତ ଭାଙ୍ଗିଯାଇଥିଲା । ତୁମକୁ କିଏ ଖତମ୍ କରିଦବାକୁ ବସିଥିଲା ।'' ମୁହୂର୍ତ୍ତକ ପେଇଁ ଈଶ୍ୱରୀ ଚୁପ୍ ହେଇଗଲା । ''କାହିଁକି ? ତୁମେ କନ୍ କରିଥିଲ ?''

''ମତେ କୋଉଠି ପାଇଲ ?''

''ମୁଁ ଜାନିନି । ଆମୁକୁ କହି ନାହାନ୍ତି ।''

''ଏଠି କୋଉଠି ମୁଁ ଅଛି ?''

''ପୁରୀ । ସ୍ୱର୍ଗଦ୍ୱାର ପାଖେ । ହେଲେ ତୁମେ କା'କୁ କହିବନି, ନ ହେଲେ ପୁଲିସ୍ ଆମ ପଛେରେ ଲାଗିବ । ଆମେ ପୁଲିସକୁ ଖବର ଦେଇନୁ । ଦବା କଥା ତୁମ ଆଡ୍‌ମିସନ୍ ବେଳେ ।''

"କାହିଁକି ?"

"ଭୁଲ, ନିଅମ୍ ।"

"ଗୋଟେ ମାଇକିନା ମତେ ଆଣିଥିଲା ଏଠିକି ?"

"ହଁ ମାଇପିଟିଏ । ତା ନାଁ ମାଗୀ । ଡାକ୍ତର ତ କହିଥିଲେ । ସେ ଆମ୍ବୁଲାନ୍ସରେ ତମୁକୁ ଆଣିଥିଲା । ସେ ସବୁ କଥା କହିଲାନି । କହିଲା, ନ କହିଲେ ଭଲ । ଆମୁକୁ ସେଇଟା ଭଲ । ହେଲେ ତୁମ ଟ୍ରିଟ୍‌ମେଣ୍ଟ ପାଇଁ ଟଙ୍କା ଦେଇଗଲା । ସବୁ ରବିବାର ସକାଳେ ସେ ଆସେ । ଦିନଯାକ ଆଉ ରାତିରେ ରହେ । ଏଇ ଘରେ ତଳେ ଶୁଏ, ଆମେ ଗୋଟେ ଗଦି ଦଉ । ସକାଳୁ ଚାଲିଯାଏ ସୋମବାର ଦିନ । ବଡ଼ି ସକାଳୁ । ସେ କୋଉଠୁ ଆସେ ଆମେ ଜାଣିନୁ, କିନ୍ତୁ ପଅରଦିନ ଆସି ପହଞ୍ଚିଯିବ, ଟାଇଡ୍ ଭଳିଆ, ଠିକ୍ ଟାଇମ୍‌ରେ ।"

"ମୋ କଥା କିଛି କହିନି ତୁମକୁ ?"

"ନା ।"

"ସେ । ସେ କ'ଣ ସୁନ୍ଦର ?"

ଈଶ୍ୱରୀ ସମୟ ନେଲା ଉତ୍ତର ଦେବାକୁ ।

"ହଁ, ଏକ ରକମ, କିନ୍ତୁ ଅଲଗା ପ୍ରକାର । ଡଉଲୁ ଡାଉଲୁ ଚନ୍ଦ୍ରମୁଖୀ ନୁହେଁ ଗୋରୀ ତୋରୀ । ତମ୍ଭା ରଙ୍ଗ ଗୋରା ଧୂଅ ଖରାରେ ସିଝିଲାପିରି, ଚିତାବାଘ ପିରି ଧୂଅ, ଆଖି ଦି'ଟା ତରଳା ନିଆଁ, ମୁହଁଟା କିମିତିକା, ଅଲଗା । ମିଶାମିଶି । ଇଣ୍ଡିଆନ୍ ନୁହେଁ, ଚାଇନିଜ ନୁହେଁ, ସାଇବ ନୁହେଁ । ମିଶାମିଶି । ଚୁପ୍‌ଚାପ୍ । କିନ୍ତୁ ଭିତେରେ ନିଆଁ, ବମ୍ଫ, ବୋଧେ ।"

ଅଳ୍ପ ହସ ଲୋକଟାର ଓଠକଡ଼ରେ ଦିଶିଲା, ଈଶ୍ୱରୀ ନିରେଖି ଦେଖୁଥିଲା ।

"ତୁମେ ତାକୁ ଜାଣିଚ ?"

"ନା ।"

"ତା'ହାଲେ ହସିଲ କାହିଁକି ?"

"ସବୁବେଳେ ହସ ଲାଗେ, ଗୋଟାଏ ମାଇକିନା ଆଉ ଗୋଟାଏ ମାଇକିନାର ବର୍ଣ୍ଣନା କଲାବେଳେ ।" ଈଶ୍ୱରୀ ମୁହଁ ରଙ୍ଗ ପଡ଼ିଗଲା ଅଳ୍ପ, "କିନ୍ତୁ ସେ ଠିକ୍ ସେମିତି ଦେଖିବାକୁ । ମୁଁ ଠିକ୍ ଠିକ୍ କହିଲି ।"

ଲୋକଟା ଶୁଣୁ ନ ଥିଲା ଆଉ । ଆଖି ବନ୍ଦକରି ଦେଇଥିଲା । ଈଶ୍ୱରୀ କିଛି ବେଳ ଚାହିଁଲା ତା ବଙ୍କା ଖଣ୍ଡିଆ ମୁହଁ ଆଡ଼େ, ତା ପରେ ଯିବାପେଇଁ ବୁଲିଲା । ତାକୁ ଯଦି ଦି'ମାସ ହେଲା ଦେଖୁ ନ ଥାନ୍ତା ତା ହେଲେ ଡର ଲାଗନ୍ତା ।

''ଈଶ୍ୱରୀ ।''

ଈଶ୍ୱରୀ ରହିଗଲା ଆଉ ବୁଲି ଚାହିଁଲା । ଲୋକଟାର ଆଖି ବନ୍ଦ ଥିଲା ।

''ମୁଁ ଟିକିଏ ଏକସରସାଇଜ୍ କରିପାରିବି ? ମୋ ମସଲ ସବୁ ଷ୍ଟିଫ୍ ହେଇଯାଇଚି ।''

''ହବା କଥା । ତେଷଠି ଦିନ ବେହୋସ୍ ପଡ଼ିଲ । ବେଡ୍‌ସୋରରୁ ବଞ୍ଚେଇବାକୁ ମୋର ଦମ୍ ବାହାରିଯାଇଚି । ଏକସରସାଇଜ୍ କଥା ଡାକ୍ତରଙ୍କୁ ପଚାରିବି । ମସଲ୍ ଡ୍ୟାମେଜ୍ ବି ହେଇଚି । ହାଡ଼ ବି । ମୁଁ ପଚାରିବି ।''

ତା ଆଖି ସିମିତି ବନ୍ଦ ଥିଲା । ତା ନିଃଶ୍ୱାସ ଠିକ୍ ଥିଲା । ଈଶ୍ୱରୀ ଭାବିଲା ଲୋକଟା ଏଥର ଶୋଇପଡ଼ିଲା ନିଶା ଘେରରେ ।

''କିଛି ଲୁଗାପଟା ମିଳିବ ? କିଛି ନାହିଁ ।''

''ସେ ଆଲମିରାରେ ସେଠି । ସେ ଆଣିଥିଲା ଗଲା ମାସରେ ।''

ଡାକ୍ତରଙ୍କ ଅଫିସରେ ଈଶ୍ୱରୀ ରାଗରେ ତମ ତମ କିନ୍ତୁ ସଂଯତ, ''ତାକୁ ମାରି ଦେଇଥାନ୍ତେ ନା କ'ଣ ? ଅତି କ୍ରୁଏଲ୍ ।''

''ସେ ମରିବନି । ସେ ମଲାବାଲା ନୁହେଁ । ଅନେକ ଦିନୁ ତାର ମରିଯିବା କଥା, କୌଣସିମତେ ତାର ବଞ୍ଚିବା କଥା ନୁହେଁ, କିନ୍ତୁ ବଞ୍ଚିଚି । ଏତେ ସହଜେ ମରିବନି ।''

''କିନ୍ତୁ ଏମିତି ତାକୁ ତା ମା ଭଉଣୀଙ୍କୁ ନେଇ ସକ୍ କରିବା ଉଚିତ ନୁହେଁ, ଅତି ବେଶୀ ।''

''କ'ଣ ବୁଝିଲୁନା ? ମତେ ଲାଗୁଚି ଲୋକଟା ଆମ୍ଭୁକୁ ଭୁଆଁ ବୁଲୋଉଚି । କଥାଯାକ ଦେଖ୍ । କିଏ ଇମିତି ହଣାକଟା ହୁଏ ? ସାଧାରଣତଃ ଚୋର ଖଣ୍ଡ ଦାଗୀ ଯେତେବେଳେ ଦଳକୁ ଠକି ଧରାପଡ଼ନ୍ତି । ଗୋଟେ ସ୍ତ୍ରୀଲୋକ ତାକୁ ଆଣିଲା ଯାହାର ହାତରେ ବିଣ୍ଡି । ନିଶ୍ଚେ ଗରିବ ମୂଲିଆଣୀ, ପ୍ରଥମଥର ତ ଲୁଗାପଟା ବି ସିମିତି ପିନ୍ଧିଥିଲା । ତଥାପି ତା ପାଖରେ ପଇସା ଅଛି । ସେ ଚୁପ୍‌ଚାପ୍ ଚୋରାଚୋରି ଟ୍ରିଟ୍‌ମେଣ୍ଟ୍ କରେଇନବାକୁ ଚାହୁଁଚି । ପୁଲିସ୍‌କୁ ଖବର ଦବାକୁ ମନା କଲା । ଏଣେ କହୁଚି କ'ଣ ନା ସେ କିଛି ଜାଣିନି । ଧର ଯଦି ଲୋକଟା କ୍ରୁକ୍, ଆମ୍ନେସିଆ ହେଇଯାଇଚି ତାର କିଛି ମନେ ନାହିଁ କହିବାଠୁଁ ଆଉ ସୁବିଧା ଉପାୟ କଣ ହେଇପାରେ ତା ପେଇଁ । କିଛି ଉତ୍ତର ଦବାକୁ ପଡ଼ିବନି । ଏଇଟା ତ ସମ୍ଭବ, କି ନୁହେଁ ? ଆମ୍ଭୁକୁ ଠକୁଥାଇପାରେ । ଆଉ ସ୍ତ୍ରୀଲୋକଟା ବି ଠିକଣା ଦେଲାନି । ବେଶୀଗୁଡ଼ାଏ ଗୋଳିପାଣିରେ ପଶିବାକୁ ମୋର ଆଗ୍ରହ ନାହିଁ । ମୁଁ ଖାଲି ସତଟା କାଢ଼ିବାକୁ ଚେଷ୍ଟା କରୁଥିଲି ।''

''କନ୍ ପାଇଲେ ?''

''ଘିରି ଘିରି ଚିକ୍ ଚିକ୍ ।''

''କିନ୍ତୁ ସେ କାହିଁକି ଗୁଡ଼ାଏ ଅସମ୍ଭବ କଥା କହିବ ତାର ଯଦି ବିଶ୍ୱାସ ରଖିବା କଥା ? ଆଉ ମୋ କୁକୁର କଥା ? ସେଇଟା ମତେ କିମିତି କିମିତି ଲାଗୁଚି । ଡର ଡର ।''

ଡା : ପ୍ରହରାଜ ଟେବୁଲ୍ ଓପରେ ଗୋଡ଼ ଦି'ଟା ଟେକିରଖି ଚାରମିନାର୍‌ଟିଏ ଲଗେଇ ଦିଆସିଲି କାଠିଟା ଝରକାଆଡ଼କୁ ଫିଙ୍ଗିଦେଲେ । ଟେବୁଲର ବାଁପଟ ଚଉକିରେ ଈଶ୍ୱରୀ ବସିପଡ଼ିଲା । ଦି'ଜଣଙ୍କ ଭିତରେ ଗୋଟେ ନିସ୍ତବ୍ଧ ଜଣାଶୁଣା ଥିଲା । ଈଶ୍ୱରୀ କାଗଜମଡ଼ାଟାକୁ ଦି'ହାତରେ ଟେକି ଦି'ପାପୁଲି ମଝିରେ ଚିପିଧରି ଗଡ଼େଇଲା ।

''ତା ବିଷୟରେ ମୋ ମନଟା ଗୋଳମାଳିଆ କିନ୍ତୁ ତାଠିଁ କନ୍ ଗୋଟେ ମତେ ଭଲ ଲାଗୁଚି, ଡର ବି ଲାଗୁଚି ।''

''ସ୍ତ୍ରୀ ଦୃଷ୍ଟି ? ଦରଦ ?''

''ଦୟା ଫୟା ନୁହେଁ । ତା ଆଖି ମଲାବେଳେ ମୋ ଫାଦର୍‌ଙ୍କ ଆଖିପରି ଲାଗୁଚି । କଂଗ୍ରେସିଆମାନେ ତାଙ୍କୁ ୧୯୮୦ରେ ହାଣି ପକେଇଲେ ଇଲେକ୍‌ସନ୍ ବେଳେ । ତାଙ୍କ ନିଶ୍ଚଳ କଳା ଆଖି ଗାଡ଼ରେ ଯେମିତି ସବୁ ଲେଖା ହେଇଥିଲା । ମୁଁ ଚେଷ୍ଟାକରି ପଢ଼ିଲି ଆଉ ପଢ଼ିଲି, ଆଉ ସେଗୁଡ଼ା ମତେ କହିଚାଲିଲେ, ଗହୀରରୁ ଗହୀର । ତମେ ମତେ ବିଶ୍ୱାସ କରୁନ କିନ୍ତୁ ସତ । ଠିକ୍ ଅଜଗର ଫାଶରେ ବାନ୍ଧି ହେଇଗଲା ପରି ଯେମିତି ହାଡ଼ଗୁଡ଼ାକ ମୋଡ଼ିହେଇ ଯା'ନ୍ତି । ମୋ ସାନଭାଇ ମଲାବେଳେ ଦେଖିଥିଲି ବସ୍ ଚକ ତଳେ ଚାପିହେଇ, ତା ଦହି ଫୁଟିକିରି ଛିଟିକି ପଡ଼ିଲା ରାସ୍ତାରେ । ମୁଁ ସେଠି ନ ଥିଲି କିନ୍ତୁ ମୁଁ ଠିକ୍ ଦେଖିପାରିଲି । ତାର କିଛି ବର୍ଷ ଆଗରୁ ମୁଁ ଦେଖିଥିଲି ସି.ପି.ଏମ. କୁରାଢ଼ି ମୋ ହଜ୍‌ବ୍ୟାଣ୍ଡଙ୍କ ମେରୁହାଡ଼ରେ ପୋତି ହେଇ ଯାଇଥିଲା । କାହିଁକି ଆଉ କେରଳ ଛାଡ଼ି ଏ ଗନ୍ଧିଆ ଓଡ଼ିଶାକୁ ଆସିଲି । ଯାହା ମୋର ଥିଲା, ସବୁ ଏ କଂଗ୍ରେସ ଆଉ ସି.ପି.ଏମ୍. ହାଣି କୁଟୁକୁଟା କରିଦେଲେ । ଏ ଲୋକଠିଁ ଆଜି ମୁଁ ମୋ ବାପାଙ୍କ ଆଖି ଦେଖିଲି ।''

''ମାନେ ତୁମେ କହୁଚ ଇଏ ମରିବାକୁ ଯାଉଚି ?''

ବାହାରୁ କଥାବାର୍ତ୍ତା ଶବ୍ଦ ଆସିଲା ।

''ଠିକ୍ ଜାଣିପାରୁନି । କିନ୍ତୁ କିଛି ଗୋଟେ ଭୟଙ୍କର... ।''

କପିଳା - ପିଲାଟା ସବ୍‌କାମ୍‌କା, ହସ୍‌ପିଟାଲ୍ ଅର୍ଡ଼ର୍ଲି, ୱାର୍ଡ଼ବଏ, ପେସେଣ୍ଟଙ୍କ ବୋଲହାକ କରା, ଜଗୁଆଳି ଇତ୍ୟାଦି ଇତ୍ୟାଦି - ଦୁଆର ନ ବାଡ଼େଇ ପଶିଆସିଲା

ଆଉ ଗୁପ୍ତରେ ଫୁସ୍ ଫୁସ୍ କରି କହିଲା : ''ମୁଁ ଭାବୁଚି ଏଇଟା ପେଟଭଙ୍ଗା କେଶ୍ । ମୋଟା ମାର୍‌ୱାଡ଼ି ସାଙ୍ଗରେ କନକନ୍ ହଉଚି ଟୋକୀ ଝିଅଟେ । ନାଁ କହୁ ନାହାନ୍ତି କିନ୍ତୁ ମୁଁ ଭାବୁଚି ପର୍ସଫୁଲୁ ଟଙ୍କା ଅଛି ।''

ଡା. ପ୍ରହରାଜଙ୍କୁ ଚିଡ଼ିଲାଗିଲା । ଭଡ଼ଭଡ଼ିଆଙ୍କୁ ତାଙ୍କୁ ଭଲ ଲାଗେନି, ବିଶେଷତଃ ଯା ତା ସମସ୍ତଙ୍କ କଥାରେ ନାକ ପୂରେଇବାବାଲାଙ୍କୁ । କପିଳା ଯଦି କାମିକା ଆଉ ବିଶ୍ୱାସୀ ପିଲା ହେଇ ନ ଥାନ୍ତା ତାହେଲେ ସେ ତାକୁ କୋଉଦିନୁ ଘଉଡ଼େଇ ଦିଅନ୍ତେଣି । ଡା. ପ୍ରହରାଜ ବାର୍‌ହାପରି ଘୁଁ କଲେ । ଈଶ୍ୱରୀ ଭାବ ବୁଝିପାରି ଚଟପଟ କହି ପକେଇଲା : ''ଯାଇ ବାରଣ୍ଡାରେ ନିଜ ଜାଗାରେ ରହ ଆଉ କମ୍ କଥା କହ । ତୁ ଭଉଦ୍ କଥା କହୁଚୁ । ମୁଁ ତାଙ୍କୁ ଦେଖିବି, କୋଉଠି ଅଛନ୍ତି ?''

କପିଳାକୁ ଅପମାନ ଲାଗିଲା । ସେ ମୁହଁ ଭାରୀ କରି କହିଲା : ''ବାରେଣ୍ଡାରେ ।''

''ୱେଟିଂ ରୁମ୍‌ରେ ବସେଇଲୁନି ? ଆଉ କିଏ ଅଛିକି ସେଠି ?''

''ନା ।'' କପିଳା ଗୋଡ଼ ଘୋଷାରି ଘଷର ଘଷର ହେଇ ବାହାରିଗଲା । ଦୁଆର ପାଖେରେ କିନ୍ତୁ କୌତୂହଳ ସମ୍ଭାଳି ନ ପାରି ବୁଲିପଡ଼ି ମୁଣ୍ଡ କୁଣ୍ଡେଇ ପଚାରିଲା : ''ସାତ ନମ୍ବରର କ'ଣ ଚେତା ଆସିଲା ? ସେଠୁଁ କଥା ଶୁଭିଲା ଯେ ।''

ଡା. ପ୍ରହରାଜ ତାକୁ ପଥୁରିଆ ଚାହାଣିରେ ଚାହିଁଲେ : ''ମୁଁ ତତେ ହଜାର ଥର କହିଲିଣି ଯେ ଆମର ସାତନମ୍ବର ବୋଲି କୋଠରି ନାହିଁ । ଜମା ନାହିଁ । ଯା, ଯୋଉକାମ ପେଇଁ ଅଚ୍ଛୁ ସେ କାମ କର ।''

''ମୁଁ କାହାରିକି ତ କେବେ କହିନି । ଚାରିବର୍ଷରେ ମୁଁ କାହାରିକି କିଛି କହିନି । କେବେହେଲେ ।''

କଥାଟା ସତ । କପିଳା ବିଶ୍ୱସ୍ତ ।

''ତାର ଚେତା ଫେରିଚି । କିନ୍ତୁ ତା ପାଖ ମାଡ଼ିବୁନି । ଏଥର ବାହାର୍ ଆଉ ଅପେକ୍ଷା କରୁଥିବା ଲୋକଙ୍କୁ ପଠା ।''

ଈଶ୍ୱରୀ ଚୁପ୍‌ଚାପ୍ ଉଠି କଡ଼ ଦୁଆର ଦେଇ ବାହାରିଗଲା, ଡାକ୍ତରଙ୍କୁ ଏକା ଛାଡ଼ି ରୋଗୀ ଦେଖି ଦର ଛିଣ୍ଡେଇବାକୁ । ଏ ଗର୍ଭପାତ ସବୁରୁ କ୍ଲିନିକର ମୋଟା ରୋଜଗାର ହୁଏ । ଲୋକେ ଚାହାନ୍ତି ଲୁଚାଛପା ଚିକିତ୍ସା କେହି ନ ଜାଣିଲାପରି । ତାଙ୍କୁ ଭଲଲାଗେ ଯେତେବେଳେ ତାଙ୍କ ଅଣନିଃଶ୍ୱାସୀ କନକନ ରକ୍ଷାପାଇବା ପରିସ୍ଥିତି କି ଡାକ୍ତର ଅତି ସାଧାରଣ ସ୍ୱାବଲୀଳ ଭାବରେ ନିଅନ୍ତି, ଚଟାପଟ୍ କାମ କରି ବିଦାୟ କରି ଦିଅନ୍ତି, ଅଳ୍ପରୁ ଅଳ୍ପ କଥାବାର୍ତ୍ତାରେ ଖୁବ୍ ପ୍ରଫେସନାଲ୍ ଭାବରେ । ଆଉ ତାଙ୍କୁ ଯିମିତି

ଜଣାଯିବ ଯେ କେବଳ ଡାକ୍ତର ହିଁ ସବୁ କଥା ଜାଣନ୍ତି । ସେ ନିଜେ ସବୁ କରୁଚନ୍ତି । ଡାକ୍ତରଙ୍କ ସାଙ୍ଗେରେ ଏକୁଟିଆରେ ପେସେଣ୍ଟକୁ ଆଶ୍ୱସ୍ତ ଲାଗେ । ଡା. ପ୍ରହରାଜଙ୍କୁ ତ ସେ ଜାଣିଥିଲା । ତେଣୁ ଓ.ଟି. ଆଡ଼େ ଚାଲିଲା ଷ୍ଟେରିଲାଇଜର, ଅଟୋକ୍ଲେଭ, ଯନ୍ତ୍ରପାତି ତଦାରଖ କରିବାକୁ, କାରଣ ଡାକ୍ତର ସମୟ ସମୟରେ ସାଙ୍ଗେ ସାଙ୍ଗେ ଡି ଆଣ୍ଡ୍ ସି ସକ୍‌ସନ୍ ବା ଇଭାକୁଏସନ କରିବାକୁ ପେସେଣ୍ଟକୁ ଓ.ଟି.କି ନେଇଆସନ୍ତି ।

''ଯେତେ ଶୀଘ୍ର ତାଙ୍କ ଚିକିତ୍ସା କରିଦବ ସେତେ ସେମାନେ ଖୁସୀ । ଲାଜ ଭୟ ବୋଝ ବୋହିଆସି ପହଞ୍ଚି କେବେ ତ୍ରାହି ମିଳିବ ନ ଜାଣି ଆଉ ହଠାତ୍ ଘଣ୍ଟା ଦି'ଟାରେ ସବୁ ବୋଝ ପୋପାଡ଼ି ଛାତି ଫୁଲେଇ ଘରୁକୁ ଫେରିଯାଅ, ଯିମିତି ସହର ବୁଲି ଫେରିଲ କି ସଉଦା କରି । ଇମିତି ଚଟାପଟ୍ କାମପେଇଁ ଭଲ ପଇସା ଦବାକୁ କେହି ଅରାଜି ହବନି ।''

ଈଶ୍ୱରୀ ତାଙ୍କ ସାଙ୍ଗେ ଆଠ ବର୍ଷ କାମ କଲାଣି, ଓଡ଼ିଶା ସରକାରଙ୍କ ଚାକିରି ଛାଡ଼ିବା ଦିନଠୁ, କଟକ ସି.ଡି.ଏମ୍.ଓ.ଙ୍କ ଉପଭୋଗର ଚାହିଦା ମେଣ୍ଟାଇ ନ ପାରି । ଲୋକଟା ନପୁଂସକ, ଈଶ୍ୱରୀ କ'ଣ କରିବ ! ତା'ଛଡ଼ା ସୁନ୍ଦରୀ ନର୍ସଟିଏ ଯଦି ହେଇଥାଅ ସମସ୍ତେ ତୁମକୁ ପାଲେଇବାକୁ ଚାହିଁବେ । ୱାର୍ଡ଼ ସର୍ଭାଣ୍ଟଠୁଁ ଆରମ୍ଭ କରି ଓପୁରୁକୁ । ଯୋଉଦିନ ସେ ନପୁଂସକ ତାକୁ ଗନୋକୋକସ୍ ଆହ୍ଲାଦିତ ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ପାଖକୁ ଡାକବଙ୍ଗଳାକୁ ଯିବାକୁ କହିଲା । ସେଇଟା ଶେଷ ଖିଅ । ଖୋଲିଲା ଈଶ୍ୱରୀ ତା ସ୍ୟାଣ୍ଡାଲ୍ ଆଉ ତା ମୁହଁ ଓପରେ ଚପାକ୍‌କିରି ମାରିଲା, ସ୍ୟାଣ୍ଡାଲ୍ ପିନ୍ଧି ଚାଲିଆସିଲା । ସେ କର୍କଟ ପୁଣି ଓଲଟ ପୁଲିସିକୁ ଗଲା ମାରପିଟ୍ କେସ୍ କରିବାକୁ । ଯେତେବେଳେ ଈଶ୍ୱରୀ ଧର୍ଷଣ ଚାର୍ଯ ଫାଇଲ୍ କରିବ ବୋଲି ଧମକେଇଲା, ନ ହେଲେ ଖବରକାଗଜରେ ତାଙ୍କ ପରକୀୟା ଆଉ ଓପରିଆଙ୍କ ପେଇଁ ଯୋଗାଡ଼ଯନ୍ତ୍ର ପିମ୍ପ୍ କାମ ବାହାର କରିଦବ ବୋଲି ଧମକେଇଲା ଯାଇ ଏଫ. ଆଇ.ଆର. ଟା ଫେରେଇ ନିଆହେଲା । ସେ ଆଉ ଫେରିଲାନି । ସେ ତା ଇସ୍ତଫା ପଠେଇଦେଲା ଆଉ ସିଧା ପୁରୀ ଆସି ଡା. ପ୍ରହରାଜଙ୍କ ହସ୍‌ପିଟାଲ୍‌ରେ ଜଏନ୍ କଲା । ବୁଢ଼ା ୱାର୍ଡ଼ ସର୍ଭାଣ୍ଟଟିଏ ତାକୁ ପ୍ରହରାଜଙ୍କ କଥା କହିଥିଲା, ଆଉ ସେ ବି ଏହି କେତେ ବର୍ଷରେ ତାଙ୍କୁ ସିମିତି ଦେଖିଲା ।

କପିଳା ଓ.ଟି. ଭିତୁରୁକୁ ଧାଇଁଆସି ଆରମ୍ଭ କଲା : ''ସିଷ୍ଟର... ।'' ସେ ଚୁପ ହେଇଗଲା ଈଶ୍ୱରୀ ଆଖିରେ ତାଗିଦା ଦେଖି ତା ଧୂଳିଆ ଚପଲ ପିନ୍ଧା ଗୋଡ଼କୁ ଚାହିଁ ।

''ତତେ କେତେଥର କହିଚି ମଇଳା ଅଧୁଆ ଗୋଡ଼ରେ ଓ.ଟି. ଭିତରକୁ ଆସିବୁନି ବୋଲି !''

କପିଳା ଦୋଷୀ, ଜାଣିଲା । ସେ ପଛେଇଗଲା ଦୁଆର ଆଡ଼େ ।

"ସାରେ କହିଲେ ଓ.ଟି. ରେଡ଼ି କର ଡି. ସି. ହବ।"

"ରେଡି ଅଛି। ତାଙ୍କୁ କହିଦେ।"

"ଆନାସ୍ଥେସିଆ ଡାକ୍ତରଙ୍କୁ ଡାକିଆଣିବି ?"

"ଦରକାର ନାହିଁ।"

"ସିଷ୍ଟର ! ବୁଢ଼ା, ଇହ୍, ସାର୍ ପେଟାଠୁଁ ପାଞ୍ଚହଜାର ଝଡ଼େଇ ଦେଲେ।"

"ଚୋପ୍।"

"ଟଙ୍କା ଦେଇସାରିଲାଣି।"

"ବାହାରି ଯା।"

କପିଳା ଖୁସୀରେ ଦାନ୍ତ ଦେଖେଇ ଚାଲିଗଲା। ଭଲ ଲାଗୁଥିଲା। ଗାଳି ବାଧୁ ନ ଥିଲା।

ରବିବାର ଦିନ ସାଢ଼େ ନ'ଟା ବେଳକୁ ମାଗୀ ମୁକ୍ତି କ୍ଲିନିକ୍‌ରେ ପହଞ୍ଚିଲା। ବାରେଣ୍ଡାରେ କପିଳା ଜଗି ବସିଥିଲା ଖବରଟା ଆଗ ଦବାକୁ। ସେ ଦୌଡ଼ିଗଲା ମାଗୀ ରିକ୍ସାରୁ ଓହ୍ଲେଇଲା ବେଳୁକୁ।

ଅଫିସରେ ଡାକ୍ତର ତାକୁ କହିଲେ। ଈଶ୍ୱରୀବି କ୍ୟାବିନ୍ ଦେଖିଆସି କହିଲା।

"ତୁମେ ଯାଅ ତାକୁ ଦେଖା କର। ମୁଁ କାମସାରି ଆସିବି।"

ମାଗୀ ଗାଁରେ ପିନ୍ଧିବା ଅପେକ୍ଷା ଭଲ ଶାଢ଼ି ବ୍ଲାଉଜ୍ ଇତ୍ୟାଦି ପିନ୍ଧିଥିଲା। କଳାରଙ୍ଗର ମଣ୍ଡଦିଆ ସୂତା ଶାଢ଼ି ଦିହରେ ଛାଡ଼ି ଛାଡ଼ି ସରୁ ସରୁ ସବୁଜ ଗାର, ହଳଦିଆ ଚଉଡ଼ା ଧଡ଼ି। କଳା ବ୍ଲାଉଜ୍। ଶାଢ଼ି ସହରୀ ଗୋଡ଼ ତଳୁକୁ ଝୁଲା ପରି ପିନ୍ଧା ନୁହେଁ, ବଳା ଗଣ୍ଠି ପର୍ଯ୍ୟନ୍ତ। କିନ୍ତୁ ଏସବୁ ତା ଭିତରର ରଡ଼ ନିଆଁକୁ କମେଇ ଦେଲା ପରି ଲାଗୁଥିଲା, ଖାଲି ଲାଗୁଥିଲା, ତା ଆଖିକୁ ନ ଚାହିଁଲା ପର୍ଯ୍ୟନ୍ତ। ସେଇଠି ଦାଉ ଦାଉ ହେଉଥିଲା ଚକ୍ର ପରି ଘିରି ଘିରି ହେଇ, ଫାଟିପଡ଼ି ମାଡ଼ିଯିବାକୁ।

ମାଗୀ ଆଜି ଥକା ଦିଶୁଥିଲା। ଗଲା ରାତିରେ ମୁର୍ମୁ ତା ସାଙ୍ଗେ କଳି କରିଥିଲା ତାର ଏ ରବିବାରିଆ ଗସ୍ତ ନେଇ ଆଉ ନିଜ ମଦ ଟଙ୍କା ପେଇଁ। ପେଟେ ପିଇ ତାକୁ ଜୋରଜବରଦସ୍ତି କରିଥିଲା, ରାତି ଅଧରେ ନିଜ ବଳକା ରାଗର ଆକ୍ରୋଶ ପାହାର ଦେଇ। ରାତି ଦି'ଟାରେ ତାର ବାନ୍ତି ହେଲା ଛପରଛାଡ଼ି। ବାନ୍ତିରେ ତାର ରକ୍ତ ପଡ଼ିଥିଲା, ମାଗୀ ସକାଳୁ ଦେଖିଲା। ସେ ରୋଗିଣା ପିଲାଟିପରି ଶୋଇଥିଲା, ସକାଳେ ମାଗୀ ସବୁ ଧୁଆ ପୋଛା କରି ବାହାରିଲା ବେଳୁକୁ।

ମାଗୀ ଟିକିଏ ଠିଆ ହେଇଗଲା ଅନ୍ଧାରୁଆ ରୁନ୍ଧିଲା କରିଡରରେ ଥମ୍ କରି ହଠାତ୍, ଲୋକଟାକୁ କ'ଣ କହିବ କିଛି ଜାଣି ନ ପାରି । ଏତେଗୁଡ଼ାଏ କଥା, କିନ୍ତୁ ଶବ୍ଦଗଢ଼ା ଭାଷାକୁ ଆସିଲାବେଳକୁ ସବୁ ପାଣି ଫାଟିଯାଉଚି ଯେମିତି । ତା ଦିହ ଶିରିଶିରି ହେଇଉଠୁଥିଲା ଲୋକଟାର ଚେତା ଆସିଲାଣି ଶୁଣି, ଆଉ ଭୟଙ୍କର ଆନନ୍ଦରେ ତା ଭିତରେ କିଏ ଗୋଟାଏ ଯିମିତି କଳା ମଚମଚ ଡେଉଁଚି ତୁହାକୁ ତୁହା । ତଥାପି ତା ମନଟା ଶଙ୍କିଯାଉଚି ଯିମିତି ଏ ଲୋକ ସେ ନୁହେଁ ଯାହାକୁ ସେ ଖୋଜିଆସିଚି, ଯିମିତି ସେ ଜୀବନର ସବୁଠୁଁ ବଡ଼ ହାର ମାନିବାକୁ ଯାଉଚି ।

ସେ ଲମ୍ବା ନିଃଶ୍ୱାସ ନେଇ ସାତନମ୍ବର ଦୁଆର ଆଡ଼େ ଚାଲିଲା । ଲୋକଟା ଖଟ ଓପରେ ନ ଥିଲା । ମାଗୀ ଚଟ୍‌କରି ଚାରିଆଡ଼େ ଚାହିଁଲା । ଆଖିରେ କେହି ପଡ଼ିଲେନି । ହଠାତ୍ ତଳକୁ ଚାହିଁ ଦେଖିଲା ସେ ତଳେ ପଡ଼ିଛି । କପାଳ କତୁରୁ ଅଳ୍ପ ରକ୍ତ ବାହାରୁଚି ଛୋଟ ଖଣ୍ଡିଆରୁ । ତା ନିଃଶ୍ୱାସ ଚାଲୁଥିଲା । ସେତକ ଚାଲୁଥିଲା । ସେ ଚଟକିରି ବସିପଡ଼ି ତା ଛାତି ଓପରେ ହାତ ଦେଲା । ଧଡ଼୍‌ଧଡ଼୍ ହଉଥିଲା ବେଶ ଜୋର୍‌ରେ । ସେ ଟେବୁଲ୍ ଓପୁରୁ ତୁଳାଟାଏ ଆଣି ଛେପରେ ଓଦା କରି ଖଣ୍ଡିଆରେ ଚାପିଧରିଲା ରକ୍ତ ବନ୍ଦ କରିବାକୁ । କିଛି ବେଳ ପରେ ତା ବେକ ତଳେ ହାତ ଦେଇ ଟେକିବାକୁ ଚେଷ୍ଟା କଲା । ଏଡ଼େ ପାତଳା ଦିଶୁଥିଲେ ବି ବେଶ୍ ଭାରୀ ଲାଗିଲା ତାକୁ । ଖୁବ୍ ଜୋର୍ ଲଗେଇ ତାକୁ ବସେଇଦେଲା । ସିମିତି ପେଲି ଧରି ସେ ତା ପଛଆଡ଼କୁ ବୁଲିଗଲା ଆଉ ତା କାଖ ତଳେ ହାତ ଦେଇ ପୂରା ବଳ ଖଟେଇ ଛାତିରେ ଭିଡ଼ିଧରି ନିଃଶ୍ୱାସ ବନ୍ଦକରି ଠିଆ ହେଇପଡ଼ିଲା ଗୋଡ଼ ହାତ ଅଣ୍ଟା କଟ କଟ ସତ୍ତ୍ୱେ । ଏତେ ଆଉ ଭାରୀ ଲାଗୁ ନ ଥିଲା ଏଥର । କିମିତି ଖଟ ଓପରୁକୁ ନବ ବାଟେରେ ନ ପକେଇ ଭାବୁଥିଲା ମାଗୀ ତାକୁ ପଛପଟୁ କୁଣ୍ଢେଇ ଧରି ।

"ତୁମେ ମୋ ଜୀବନ ବଞ୍ଚେଇଥିଲ ନା... ?"

ମାଗୀ ଛାଡ଼ିଦେଲା ଲୋକଟାକୁ । ସେ ଅଳ୍ପ ଦୋହଲିଗଲାରୁ ପୁଣି ତାକୁ ଧରି ପକେଇଲା ।

"ମତେ ଖଟ ଓପରକୁ ନେଇଚାଲ, ମୁଁ ଠିକ୍ ହେଇଯିବି । ଟିକିଏ ମୁଣ୍ଡ ବୁଲେଇଦେଲା ।"

ଖଟ ଓପରେ ଶୋଇ ଲୋକଟାର ଡୋଳା ବୁଲି ବୁଲି ଚାହୁଁଥିଲା ମାଗୀ ପାଣି ଆଣି ଦେଲାବେଳେ । ସେ ପାଣି ପିଇଲା ମାଗୀ ହାତୁରୁ ଛଞ୍ଚାଣ ପରି ତାକୁ ଚାହିଁ ।

"ମୁଁ ଏକ୍‌ସରସାଇଜ କରୁଥିଲି, ଡାହାଣଗୋଡ଼ଟା ହାଉଳି ଉଠିଲା ବୈଠକି ମାରିଲା ବେଳୁକୁ । ହାଠାତ୍ ମୁଣ୍ଡ ବୁଲେଇ ସବୁ ଅନ୍ଧାର ହେଇଗଲା ଉଠୁ ଉଠୁ ।"

''ତୁମ ମୁଣ୍ଡ କଟିଯାଇଚି ଛେଚି ହେଇ । ସାବଧାନ ରହିବା କଥା ।''

ତା ହାତ ରକ୍ତିଆ ତୁଳା ଓପୁରୁକୁ ଉଠିଗଲା ।

ମାଗୀ ତା ଆଖିକୁ ଶାନ୍ତ ଭାବରେ ଚାହିଁଲା । ତା ସ୍ୱର ସ୍ଥିର ।

''ତୁମକୁ ବହୁତ କଥା କହିବାକୁ ଅଛି ।''

ଲୋକଟା ତା ଆଡ଼ୁକୁ ଚାହିଁଲା ବହୁତ ବେଳ ।

''ମୋ ମୁଣ୍ଡ ଗୋଳମାଳ ହେଇଯାଇଚି । କିଛି ମନେପଡୁନି । ମୁଁ ନିଜେ କିଏ ଜାଣିପାରୁନି । ଜମା କିଛି ହେଲେ ମନେପଡୁନି, ମୋ ନାଁ ବି ନୁହେଁ । ତୁମେ ମତେ କୁହ ସବୁ । ମତେ ଏମିତି କିଏ କଲା ?''

ମାଗୀ ତାକୁ ବିଶ୍ୱାସ କଲାନି ।

''ମୁଁ ହାତଟା ଧୋଇଆସେ ।'' ମାଗୀ ଆଙ୍ଗୁଠିରେ ରକ୍ତ ଲାଗିଥିଲା ସେ ଲୋକ ମୁଣ୍ଡରୁ । ଗାଧୁଆଘରେ ହାତ ଧୋଉ ଧୋଉ ନିଜକୁ ଚାହିଁଲା ଦର୍ପଣରେ । ତାର ବିଶ୍ୱାସ ହଉ ନ ଥିଲା ଲୋକଟା କଥାରେ । କ'ଣ ତାକୁ ଲାଗୁଥିଲା ସେ ଠିକ୍ ବୁଝିପାରୁ ନ ଥିଲା । କିନ୍ତୁ ନିଶ୍ଚିତ ଭାବରେ ତା ମନ ମରିଯାଉଥିଲା । ତରଳ ନିଆଁ ପରି ଆଉ କିଛି ନ ଥିଲା । ମୁହାଣର ଗୋଳିପାଣି ପରି ସବୁ ଘାଏଁ ଘାଏଁ ଚକାଭଉଁରୀ ଖେଳୁଥିଲା । ସେ କଳ ବନ୍ଦ କରି ବାଥରୁମରୁ ବାହାରିଲା ।

ଲୋକଟା ବାହାର ଦୁଆର କିଳି ତାକୁ ପଛକରି ଠିଆହେଇଚି ଗାଧୁଆ ଘର ଦୁଆରକୁ ଚାହିଁ । ଆଖି ଦି'ଟା ତାର ରୁକ୍ଷ । ମୁହଁ ପଥର ପରି ।

ମାଗୀ ଗାଧୁଆଘର କବାଟ ବନ୍ଦକରି କିଳିଦେଲା ସଶବ୍ଦେ ଆଉ ବୁଲିପଡ଼ି ଆଗେଇ ଆସୁ ଆସୁ କହିଲା :

''ସେଇଠି ଠିଆହେଇ ଶୁଣିବ ?''

ଲୋକଟା ଚଳିଆସି ମାଗୀ କାନ୍ଧକୁ ଧରି ଝାଙ୍କିଦେଲା । ସାଙ୍ଗେ ସାଙ୍ଗେ ଯନ୍ତ୍ରଣାରେ ଅଳ୍ପ ଚିତ୍କାର କରି କରି ନଇଁପଡ଼ି ଡାହାଣ ପେଣ୍ଡାଟାକୁ ଚାପିଧରିଲା ।

''କ୍ରାମ୍ପ୍ ।''

ମାଗୀ ଏଥର ତାକୁ ଟଣାପେଲା କରି ଖଟରେ ଶୁଆଇଦେଲା । ତା ମୁହଁଟା କଷ୍ଟେରେ ଆହୁରି ବିକୃତ ଦିଶୁଥିଲା । ମାଗୀ ତା ପେଣ୍ଡାକୁ ଚାପିଧରିଲା ନିଜ ହାତରେ । ଧୀରେ ଧୀରେ ଲୋକଟା ଗୋଡ଼ ଲମ୍ବେଇଲା । ମାଗୀ ଆଉ ପାଣିଦେଲା ତାକୁ ପିଇବାକୁ । ସେ ପିଇସାରି ଆଶ୍ୱସ୍ତ ହେଲାରୁ ମାଗୀ ତା ପାଖ ଚୁଲ୍ ଓପରେ ବସିଲା ।

ତା'ପରେ ସବୁ କଥା, ଯାହା ସେ ଜାଣିଥିଲା । ଗୋଟି 'ଗୋଟି କରି କହିଗଲା ମନେ ପକେଇ ପକେଇ ।

ଲୋକଟା ଚୁପ୍‌ଚାପ୍ ରହିଲା ଅନେକ ବେଳଯାଏ ନିଶ୍ଚଳ ହେଇ । ତା' ପରେ କହିଲା : ''ନା, କିଛି ମନେପଡୁନି, କିଛି ଦିଶୁନି । କିଛି ବୋଇଲେ ନାହିଁ ।''

''ଏତିକି ତୁମର କହିବା କଥା ?''

''ମାନେ ?''

''ସେମାନେ ତୁମର ଏ ଦଶା କଲେ ଆଉ ତୁମେ ଶୋଇ ଶୋଇ ଏତିକି ଭାବିପାରୁଚ ? ଏଇଆ କହୁଚ !!''

ସେ ଚୁପ୍ ହେଇଗଲା । ଆଖି ତାର ଗାଢ଼ କଳା ହେଇଗଲା ଅନ୍ଧାର ରାତିରେ ଗୁମ୍ଫା ଭିତର ପରି ।

''ନା,'' ସେ କହିଲା, ''ସେତିକି ନୁହେଁ, ଆରମ୍ଭ ବି ନୁହେଁ । କିନ୍ତୁ କିଛି ହେଲେ ମନେପଡୁନି, କିଛି ହେଲେ କିଛି ହେଲେ । ଡାକ୍ତର ଭାବୁଚି ମୁଣ୍ଡ ମାଡ଼ରୁ ଆମ୍ନେସିଆ ହେଇଚି ।''

''ତୁମେ ଡରିଯାଇଚ, ନୁହେଁ ?''

ପୁଣି ଚୁପ୍‌ଚାପ୍ ଅନେକ ସମୟ ।

''ନା ବୋଧେ ନୁହେଁ । ନା କେଜାଣି । ମୁଁ ଜାଣିପାରୁନି ।''

''ମତେ ଧପୋଉଚ ?''

''ନା ।''

''ପଳେଇବାକୁ ଯଦି ଇଛା, ଯାଅ । ପଳାଅ । ମୁଁ ତୁମକୁ ଗୋଡ଼େଇ ଧରିବିନି । ତୁମ ପରିଆ ଲୋକଙ୍କୁ ନୁହେଁ ।''

ସେ ଆଡ଼େଇ ରଖିଥିବା ଆଖି ବୁଲେଇ ମାଗୀର ତମତମ ଜଳନ୍ତା ଅଙ୍ଗାର ମୁହଁଟାକୁ ଚାହିଁଲା । ତା ଛାତି ଭିତର କୁହୁଳାନିଆଁ ଦପଦପ ହେଇଉଠିଲା ଅନ୍ଧାର ଭିତେରେ ।

ସେ ଆଖିପୂରେଇ ଭଲକିରି ଚାହିଁଲା ମାଗୀକୁ ।

''କିଛି ବି କ'ଣ ନ ଥିଲା ମତେ ଚିହ୍ନଟ କରିବାକୁ, ମୁଁ କିଏ ବୋଲି କହିବାକୁ କିଛି ବି ?''

ମାଗୀ ଅଳ୍ପ ଭାବିଲା । ତା ମନ ଭିତେରେ ଦୂରୁରୁ ଅବିଶ୍ୱାସର ଗୋଟେ ଅସ୍ପଷ୍ଟ ରଡ଼ି ଉଠୁଥିଲା । ୟେ କ'ଣ ତାକୁ ଭୁଆଁ ବୁଲୋଉଚି ? ଖାଲି ତାଠୁଁ କଥା ଆଦାୟ କରିବ ବୋଲି ? କ'ଣ କେତେ ସିଏ ଜାଣେ ବୁଝିବ ବୋଲି ? କିନ୍ତୁ ପାଖର ସ୍ୱରସବୁ

ଧୀରସ୍ଥିର ଆଶ୍ୱସ୍ତ । ସେ ନାଲି ନେଳି କଳା ଧଳା ପିପିଲି କନା ଥଳିଟି ଖୋଲି କୋଡ଼ ଓପରେ, ତା ଭିତୁରୁ ପର୍ସଟା ବାହାର କଲା । ସେ ତା ପେଟ ଖୋଲି ଲୋକଟା ଆଡୁକୁ ଦେଖେଇଲା ଯିମିତିକି ସେ ଟଙ୍କାତକ ଦେଖିପାରିବ ।

"ୟେ ତୁମର ?"

ସେ ତା ହାତୁରୁ ପର୍ସଟା ନେଇ ଏପଟ ସେପଟ ଦେଖିଲା ।

"କେଜାଣି । କିଛି ମନେପଡୁନି ।"

"ସେ ରାଗ ସାଇତିରଖ ତୁମର ଏ ଦଶା କରିଥିବା ଲୋକଙ୍କ ପେଇଁ ।"

"ଖାଲି ମତେ କହିଦିଅ ସେମାନେ କିଏ ?"

"ସେଦିନ ରାତିରେ ସମୁଦ୍ରରେ ଗୋଟେ ସ୍ମଗ୍‌ଲିଂ ଟ୍ରଲର ଥିଲା । ସେଥିରୁ କିଛି ମନୁକୁ ଲାଗୁଚି ?"

"ନା । ସ୍ମଗ୍‌ଲିଂ ଟ୍ରଲର୍ ?"

"ହଁ । ପ୍ରାୟ ଅଧରାତିରେ ଦେଖିଲି ଜହ୍ନ ଆଲୁଅରେ ଦୋହଲୁଥିଲା ସବୁଥର ପରି ସେଇ ଏକା ଜାଗାରେ ।"

"କିଛି ମନଭିତରୁ ବାହାରୁନି ଯୋଡ଼ିହେଇ । କିନ୍ତୁ ଅନ୍ଧାରରୁ ମତେ ଶବ୍ଦ ଶୁଭୁଛି ।"

"କି ଶବ୍ଦ ?"

"କିଏ ଯେମିତି ଫୁସଫାସ୍ କଥା କହୁଚି । କିଏ ଯେମିତି ଜଙ୍ଗଲରେ ଗଛ କାଟୁଚି କୁରାଢ଼ି ଚୋଟରେ ।"

ମାଗୀ ପର୍ସ୍‌ଟା ଟେକିଧରି କହିଲା : "ମୁଁ ଭାବିଥିଲି ଏଇଟା ତୁମର । ବାଲିରେ ପୋତା ପାଇଲି, ଯୁ'ଠି ତମେ ପଡ଼ିଥିଲ ସେଇଠି । ସତରହଜାର ଦି'ଶ ଛୟାଅଶୀ ଥିଲା ସେଥେରେ । ମୁଁ କିଛି ଖର୍ଚ୍ଚ କରିଚି ତମ ଡାକ୍ତେରୀରେ । କିଛି ତୁମ ଲୁଗା ଆଉ ମୋ ଯିବାଆସିବା । ବାକି ସବୁ ଅଛି ପଇସା ଫଇସା ।"

"ତମେ ରଖ । ଦର୍କାର ହେଲେ ତମଠୁ ନେବି ।"

ମାଗୀ ବ୍ୟାଗ୍‌ର ପଇସା ପକେଟ୍‌ର ଟିପା ବୋତାମ ଖୋଲି ଛୋଟ କାଗଜ ଖଣ୍ଡକ ବାହାରକଲା ।

"ୟା ଭିତେରେ ଟଙ୍କା ଛଡ଼ା ଏଇଟାଇ ମାତ୍ର ଥିଲା । ଓଦା ହେଇଯାଇଥିଲା । ଅଳ୍ପ ଅଳ୍ପ ଦୁଶୁଚି । ଇଂଲିଶରେ ବୋଧେ ।"

ଲୋକଟା ଦାଉଁକିରି କାଗଜଟା ଝାମ୍ପିନେଲା । କଳା ମଚ୍ ମଚ୍ ଆଖି କୁଞ୍ଚି କାଗଜଟା ଖୋଲି ନିରେଖିଗଲା । କିଛି ଦୁଶିଲାନି ପ୍ରଥମେ, ଖାଲି ଧଳା ମଇଳାସିଆ ମୋଚାମୋଚି କାଗଜଟିଏ, ପାଣି ଖାଇ ଧ୍ୱସ୍ତ । କିଛି ବେଳ ଚାହିଁଲାରୁ ଅଳ୍ପ ଅଳ୍ପ ଦୁଶିଲା ଯିମିତି ଗୋଟେ ଚିଠି ଲେଖାହେଇଥିଲା ବୋଧେ । ଚିଠି । ସେ ଆହୁରି ଧ୍ୟାନ ଦେଇ ଦେଖିଲା । ନିଶ୍ଚୟ ଚିଠି । ମନଟା ତାର ଚଞ୍ଚଳ ହେଇ ଉଠିଲା । ନାଁଟାଏ ଥିବ ନିଶ୍ଚେ କି ଜାଗାଟେ, କିଛି ଗୋଟେ ମିଳିଗଲେ କୂଳ ପାଇଯାନ୍ତା ଯିମିତି । ଯଦି ତାର ପର୍ସ, ତେବେ ଚିଠି ତା ପାଖକୁ ଲେଖା ହେଇଥିବ । ତାହେଲେ ଓପରେ ତା ନାଁ ଥିବ, ତଳେ ଲେଖିଲାବାଲାର, ଓପରେ ତାରିଖ ଆଉ ଜାଗାର ନାଁ । କିଛି କିନ୍ତୁ ସ୍ପଷ୍ଟ ନୁହେଁ, ସବୁ ଝାପ୍‌ସା ଲେସା ଲେସି ଧୋଇ ହେଇଯାଇଚି ।

ମାଗୀ ଧୀର ହେଇ ବସି ଦେଖୁଥିଲା ଲୋକଟାର ବ୍ୟବହାର । ତା ଆଲୋଡ଼ନ ବର୍ତ୍ତମାନ ଟିକିଏ ଶାନ୍ତ ହେଲା । ସେ ତା ମୁଣା ଖୋଲି ଗୋଟାଏ ଶସ୍ତା ମ୍ୟାଗ୍ନିଫାଇଂ ଗ୍ଲାସ୍ କାଢ଼ି ବଢ଼େଇଦେଲା । ଲୋକଟା ଟିକିଏ ଆଶ୍ଚର୍ଯ୍ୟ ହେଇ ନେଇଗଲା ସେଇଟା ଆଉ ଥର ଥର ହେଇ ଦେଖିଗଲା । କେତେଟା ଦାଗ ଟିକିଏ ଟିକିଏ ଦୁଶିଲା ଏଥର । ମାଗୀ ଉଠିଯାଇ ଝରକାର ପରଦା ଟେକିଦେଲା । ଆଲୁଅରେ ଆଉରି ଟିକିଏ ଭଲ ଦୁଶିଲା । କେତେଟା ଗାର ଯୋଡ଼ିହେଇ ଅକ୍ଷର ବୋଲି ଅନୁମାନ କରିହେଲା । ଅଳ୍ପ କେତୋଟି ।

ଯାହା ପାଖକୁ ଲେଖା ଯାଇଥିଲା ତା ନାଁ ଟା... ତା ନାଁ ଟା...

ମାଗୀ ମୁଣିର ମୋଡ଼ାମୋଡ଼ି କାଗଜ ଦି'ଖଣ୍ଡ ଆଉ ଶସ୍ତା ଡଟ୍ କଲମଟିଏ କାଢ଼ି ବଢ଼େଇଦେଲା । ଲୋକଟା ନେଇ ଲେଖିଲା ଖଟ ଓପରେ ପକେଇ ।

ପ୍ରଥମ ଅକ୍ଷରଟା P ନ ହେଲେ G, ଦ୍ୱିତୀୟଟା ବୋଧେ A, ତୃତୀୟଟା N ବା M, ଚତୁର୍ଥ O ବା D, ଶେଷଟା ନାଁର U ନିଶ୍ଚୟ । ତା ହେଲେ ହେଲା ସଂଭବ ନାଁ :

P A N D U/PAMDU

G A N D U/GAMDU

ପ୍ରଥମ ତା ନାଁ ହେଇପାରେ । ଅପର୍ତ୍ତି ହେଇଥିଲେ ଦ୍ୱିତୀୟ ବି ହେଇପାରେ । ସେ ଧରିନେଲା ତା ନାଁ ପାଣ୍ଡୁ ।

ଏଥର ଲେଖିଲାବାଲାର ନାଁ । ଅସ୍ପଷ୍ଟ । ଏଇଟା ଲମ୍ବା ହେଇପାରେ, ଛୋଟ ବି ହେଇପାରେ । ରାଜୀବ ହେଇପାରେ ବା ଭୋଳାନାଥ ବା ବିଶ୍ୱନାଥ ବା ମହାମୟ ବା ଚନ୍ଦ୍ରଶେଖର ବା ଜଗନ୍ନାଥ, କିଛି ବି ହେଇପାରେ । କୌଣସି ଅକ୍ଷର ଦିଶୁ ନ ଥିଲା । କିଛି ବି ସ୍ପଷ୍ଟ ଦିଶୁ ନ ଥିଲା ।

''ଶଳା !'' ସେ ଦାନ୍ତ ଚିପି କହିଲା ।

ସେ ପ୍ରାଣବିକଳରେ ଚିଠିଟାକୁ ତନ୍ନ ତନ୍ନ କରି ଦେଖିଗଲା କିଛି ସଙ୍କେତ ଆଶାରେ ସ୍ଥିତି ଜାଣିବା ପାଇଁ । କିନ୍ତୁ ସମୁଦ୍ରଧୁଆ ସେ କାଗଜରୁ ଆଉ କିଛି ପାଇବା ସମ୍ଭବ ନ ଥିଲା । ଖାଲି...ଖାଲି, ବୋଧହୁଏ ତଳକୁ ଗୋଟାଏ, ଛୋଟ ଶବ୍ଦଟିଏ, ବୋଧହୁଏ କ୍ୟାପିଟାଲ ଲେଟରରେ ଲେଖା, ଚାରୋଟି ଅକ୍ଷର । ହେଇପାରେ; COME ।

ତା ମୁଣ୍ଡ ଝାଇଁ ଝାଇଁ ହେଇଗଲା । ମୁଣ୍ଡ ଭିତରେ କିଏ ଗର୍ଜିଉଠିଲା । ସେ ବୁଝିପାରିଲାନି କ'ଣ ହଉଚି, ଜାଣିପାରିଲାନି, ସେ ଖାଲି ଉଦ୍‌ବେଳିତ ହେଇଗଲା ଯିମିତି ତା ପେଟ ଭିତରଟା ମନ୍ଥି ହେଇଯାଉଚି । ଆଉ ଗୋଟାଏ ଖଣ୍ଡିଆଭୂତ ମୁଣ୍ଡ ଭିତରକୁ ଘୂର୍ ଘୂର୍ ହେଇ ଉଠିଆସୁଚି । ସେ ଝୁଙ୍କିପଡ଼ି ସଁ ସଁ ହେଇ ମାଗୀକୁ କୁଣ୍ଢେଇଧରି ଚୁମା ଦବାକୁ ଚେଷ୍ଟା କଲା ତା ନାଲୁଆ ପାଟିରେ । କିନ୍ତୁ ମାଗୀ ତମ୍ପପରି ଉଠି ତାକୁ ଜୋରରେ ଠେଲିଦେଲା, ଗଳାରେ ତାର ଫଁ ଫଁ ଗର୍ଜନ ଗୁମୁରି ଉଠିଲା । ସେ ଗର୍ଜନରେ ପାଣ୍ଡୁ ଫୁସ୍ ଫୁସ୍ କଥା ହବାର ଶୁଣିଲା । କିନ୍ତୁ ସବୁ ଅସ୍ପଷ୍ଟ । ସେ ତା ନାଁ ପାଣ୍ଡୁ କୁହାହବାର ଶୁଣିଲା । ସେ ଗଣିଲା ଶବ୍ଦମାନ ଯିମିତି ! ''ଯା ଯା ଯା ଯା ।'' ସେ କହିଲା ପରି ଲାଗିଲା । ''ଓ ଓ ଓ ଓ ଓଃ ।'' ସେ ଗୋଟାଏ ଛୁରୀ ଦେଖିଲା । ସେ ଗୋଟାଏ ବିସ୍ଫୋରଣ ଅନୁଭବ କଲା । ତାକୁ ଡର ଲାଗିଲା, ମରିଗଲା ପରି ଭୟ । ତା ଚେତା ବୁଡ଼ିଗଲା ଆଉ ସେ ପରିଷ୍କାର ଛବିମାନ ଦେଖିଲା କିନ୍ତୁ କିଛି ବୁଝି ପାରିଲାନି ।

ସେ ଖୋଜିବ । ସେ ପାଇବ । ଆଉ ଭାଙ୍ଗି ଚୁର୍‌ମାର୍ କରିଦବ । ପାରିବତ ? ମାଗୀର ବିଶ୍ୱାସ ତୁଟି ଯାଉଥିଲା ।

ପୃଥିବୀ ଘୂରିଗଲା ।

ସମସ୍ତେ ଘୂରିଗଲେ ।

ଓପର ତଳକୁ ହେଲା ।

ସବୁ ଓଲଟିଗଲେ କ'ଣ ହବ ?

ଚେତା ଫେରିଲାବେଳକୁ ତାକୁ କିଛି ଲାଗିଲାନି । ମାଗୀ ତା ପ୍ରତିହିଂସା ମୂର୍ତ୍ତି ଉଜ୍ଜୀବିତ ହେଇଉଠିବାକୁ ବ୍ୟଗ୍ର ହେଇ ଅପେକ୍ଷା କରିଥିଲା ।

କିନ୍ତୁ ସେ ଖାଲି କହିଲା : ''ମୋ ନାଁ ପାଣ୍ଡୁ ।''

''ଆଉ ?''

''ଆଉ କ'ଣ ?''

''ଯୋଉମାନେ ତମର ଏ ଦଶା କରିଚନ୍ତି ତାଙ୍କ କଥା ? ତାଙ୍କୁ କିଛି କରିବାକୁ ମନ ଡାକୁନି ? ତାଙ୍କ ମୁଣ୍ଡବାଳକୁ ଝିଙ୍କି ଚମ ଉଖାଡ଼ି ଦବାକୁ ଇଛା ହଉନି ? ଇଛା ହଉନି ବାଉଁଶ ବୁଦାରେ ଶୂଳି ଚଢ଼େଇଦବାକୁ ତାଙ୍କୁ ? କେତେଦିନ ଇମିତି ଅତିଷ୍ଠ ହବ ? ମାଡ଼ଖାଇ, ଖଣ୍ଡିଆଖାବରା ହେଇ, ପିନ୍ଧିବାକୁ ଲୁଗା ନ ଥାଇ, ଖାଇବାକୁ ଭାତ ନ ଥାଇ, ଚାକିରି ନ ଥାଇ, ହାଡ଼ ଭଙ୍ଗେଇ ? ତମକୁ ରାଗ ବି ଲାଗୁନି ?''

ପାଣ୍ଡୁ ଚୁପ୍‌ଚାପ୍ ମୁହଁ ଫୁଲେଇ ବସି ରହିଲା କିଛିବେଳ । ତା'ପରେ କହିଲା : ''ମୁଁ କିଛି ବି ଅନୁଭବ କରିପାରୁନି । ବେଳେବେଳେ ମୁଁ ଜାବୁଡ଼ି ହେଇଯାଉଚି । ବେଳେବେଳେ କିଛି ନାହିଁ ।''

ମାଗୀ ପାଣ୍ଡୁକୁ ଚାହିଁଲା । ଦୂରରୁ, ବହୁତ ଦୂରରୁ ।

ମାଗୀ ପାଣ୍ଡୁ ସାଙ୍ଗରେ କଥାବାର୍ତ୍ତା ପରେ ତାଙ୍କ ଅଫିସ୍‌ରେ ମୁହଁ ଶୁଖେଇ ବସିଥିଲାବେଳେ, ଡା. ପ୍ରହରାଜ ତାକୁ ଚା ଗିଲାସେ ଦେଲେ ।

''ହଜିଲା ହଜିଲା ଲାଗୁଚ । ନିଅ, ଏ ଚା ପିଅ ।''

ମାଗୀ ବହୁତ ଦୂରରୁ ଆଖି ପାଲ୍‌ଟାଇ ଆଣି, ଡାକ୍ତରଙ୍କ ଶାନ୍ତ ଆଦିମ ମୁହଁ ଉପରେ ଆଖି ବୁଲେଇ ଚାହିଁରହିଲା ଚା ଗିଲାସକୁ । ଚା ହେଇଗଲା ସମୁଦ୍ର, ଆଉ ଗୋଟାଏ ବିରାଟ ମଗର ଉଠିଲା ତା ଢେଉରୁ ସମୁଦ୍ର ମନ୍ଥି । ମାଗୀ ଚାହିଁରହିଲା ଦେଖିବାକୁ ସେଇଟା କେତେ କ'ଣ କରିପାରୁଚି ।

''ଶୁଣ ।''

ମାଗୀ ମୁହଁ ଟେକି ଡା. ପ୍ରହରାଜଙ୍କ ସ୍ଥିର କଳା ଆଖି ଭିତରକୁ ଚାହିଁଲା ।

''ଆରମ୍ଭରୁ କ'ଣ ଥିଲା ? କିଛି ନ ଥିଲା । ତା' ପରେ ଆସିଲା ଶବ୍ଦ, ଆଉ ଶବ୍ଦରୁ ପୃଥିବୀ । ନାଦ ବ୍ରହ୍ମ । ତେଣୁ କୁହ ।''

ମାଗୀ ଚା ଗିଲାସ ଉଠେଇ ପିଇଲା । ଭାରି ତାତିଲା, ପୋଡ଼ିଗଲା ଜିଭ । ସେ ପାଟି କରି ଉଠିଲା ।

''ଠିକ୍,'' ଡା. ପ୍ରହରାଜ କହିଲେ ହସି ହସି । ''କହିଚାଲ, ଧୀରେ ଧୀରେ ସବୁ ହବାକୁ ଲାଗିବ ।''

ମାଗୀ ଚାହିଁଗଲା ତାଙ୍କ ମୁହଁକୁ ଖୋଜିଲା ପରି ।

''ଆପଣଙ୍କୁ ତ ମୁଁ କିଛିବି କହିନି ।''

''କେତେ ଯାକୁ ତାକୁ ଲଗେଇ ସଫା କରିବ ? କିଏ ବି କାହିଁକି ତମ କଥା ଶୁଣିବ ? ଶୁଣିଲେବି କେତେଜଣଙ୍କୁ ସେ ପାରିବ ?''

''ତା ହେଲେ କ'ଣ, ସବୁ ଦେଖିଶୁଣି ଚୁପ୍‌ଚାପ୍ ବାଟ ଆଡ଼େଇ ଚାଲିଯିବା । ସମସ୍ତଙ୍କ ଭଳିଆ ।''

''ନା ଜମା ନୁହଁ । ଆକ୍ରମଣ କର । କିନ୍ତୁ ଗୁଳି ବନ୍ଧୁକରେ ନୁହେଁ ।''

''ତା ହେଲେ ?''

''ଯାହାର ଶକ୍ତି ଥିବ, କଥାବାର୍ତ୍ତାରେ ପୃଥିବୀ ଓଲଟେଇଦବ । ଶ୍ରୀକୃଷ୍ଣ ତ କଥା କହି ଅର୍ଜୁନଙ୍କ ମତ ବଦଳେଇଦେଲେ ।''

''ହେଲେ ଯୁଦ୍ଧ ତ ଅର୍ଜୁନଙ୍କ ଧନୁଶର ଜିତିଲା । କଥାର ମୂଲ୍ୟ କିଛି ନାହିଁ । କରିବାକୁ ହବ । ଯେତେ ସାନ ହେଇ ହେଲେ ବି । ଭଗବାନ୍ ପରା କୁଠି କହିଚନ୍ତି ଯେ ଦୁଷ୍ଟ ନିଧନ ପାଇଁ ସେ ଅବତାର ନିଅନ୍ତି । କଲ୍‌କୀ ବେଳତ ଆସିଗଲା ବୋଲି ସମସ୍ତେ କହୁଚନ୍ତି । କିଏ ତ ପୁଣି ବାହାରିବ ? ନ ହେଲେ ସମସ୍ତଙ୍କୁ ଏକାଠି ଉଠିବାକୁ ହବ, ଯିଏ ଯେତେ ପାରିଲା ଦୁଷ୍ଟଙ୍କୁ ହାଣି କାଟି ପକେଇଦବ । ତାହେଲେ ଯାଇ ଲୋକେ ଶାନ୍ତିରେ ରହିପାରିବେ ।''

''ଗାନ୍ଧିଙ୍କ କଥା ଶୁଣିଚ ? ସେ ତ କେବେ ବନ୍ଧୁକ ଧରି ନ ଥିଲେ ।''

''କହନ୍ତି କ'ଣ ତାଙ୍କ ସମୟରେ ବହୁତ ହଣାକଟା ହେଲା, ଦେଶ ଭାଙ୍ଗିଗଲା । ଆମ ଗାଁର ଦଶଜଣ ହଣା ଖାଇଲେ, ଚଇଗାଁରେ କି କୋଉ ଖାଲିରେ କଲିକତା ପାଖେ ।''

ଈଶ୍ୱରୀ ଆସି ଦୁଆର ପାଖରେ ଥମିଯାଇ ଶୁଣୁଥିଲେ ।

''ତା ହେଲେ ସମସ୍ତେ ଖଣ୍ଡା ତଲୱାର ଧରି ବାହାରିବା ଏଥର ନିଂଜାଟର୍ଟଲଙ୍କ ଭଳିଆ,'' ଡା. ପ୍ରହରାଜ ସିଗାରେଟ୍ ବଳୁ ବଳୁ କହିଲେ ।

''ଖରାପ ଲୋକ ନିପାତ ହେଲେ ଆପଣଙ୍କୁ ଦୁଃଖ ଲାଗିବ ?''

''ନାହିଁ ଯେ । ଖରାପ କିଏ, କିଏ କହିବ । ମୋ ପାଇଁ କିଏ ଖରାପ ହେଲେ, କାହାପାଇଁ ମୁଁ ଖରାପ ହେଇପାରେ । ସମସ୍ତେ ତା ହେଲେ ହଣା କଟା ହେଇ ମରିବା ?''

''ଆପଣ ଯଦି ଦୁଷ୍ଟ ନୁହନ୍ତି ଖରାପ ହେବେ କିମିତି ? ଆଉ କିଏ ଖରାପ କ'ଣ ଆପଣ ଜାଣି ନାହାନ୍ତି ? କିଏ ଜାଣିନି ? ଏ ମନ୍ତ୍ରୀ, ଏମେଲେ, ଅଫିସର, ସ୍ମଗ୍‌ଲର,

ଚୋର, ଖଣ୍ଡ, ଖୁନୀ, ପୁଲିସି ୟାଙ୍କରି ଭିତେରେ ଅଛନ୍ତି ସବୁ ଦୁଷ୍ଟଯାକ । ତାଙ୍କୁ ବାଛି ହାଣିଦେଲେ ସବୁ ଠିକ୍ ହେଇଯି ।''

''ସମସ୍ତଙ୍କୁ ତ ହାଣିଦବ, ଦେଶ ଚାଲିବ କିମିତି ?''

''ଯେତେକ ଭଲ ଲୋକ ରହିଯିବେ ସେମାନେ ଚଳେଇବେ । ଆପଣ ସାହାଯ୍ୟ କରିବେ ।''

''ଇମିତି ହଣାକଟାରେ କ'ଣ କିଛି ହେଇପାରିବ ?''

''ଆପଣଙ୍କ ଉପାୟରେ ତ ଆପଣ ସାରା ଜୀବନ ଚେଷ୍ଟା କରିଥିବେ, ହେଲେ କି ଦୁନିଆ ବନେଇଚନ୍ତି ଆପଣ ?'

ଈଶ୍ୱରୀ ହସିଲେ ।

''ମାଗୀ ଠିକ୍ କହୁଚି,'' ସେ କହିଲେ, ''ଆମର ମହିଷାସୁର ମର୍ଦ୍ଦନ ଦରକାର ହେଲାଣି । କାଳୀ, ଦୁର୍ଗା ଦରକାର ହେଲେଣି । ନ ହେଲେ ଶିବ ଭସ୍ମାସୁରକୁ ସଂହାର କରିବାକୁ ଆଉ କିଛି ଉପାୟ ନାହିଁ ।''

''ହଉ ତାହେଲେ ଯାଅ । ଜଣେ କାଳୀ ବନିଯାଅ ଆଉ ଜଣେ ଦୁର୍ଗା ବନିଯାଅ ।''

ମାଗୀ ଡା. ପ୍ରହରାଜଙ୍କୁ ଚାହିଁ କିଛି ବେଳ ଚୁପ୍ ରହିଗଲା । ତା'ପରେ କହିଲା : ''ଆପଣ କଥାଟା ସମସ୍ତଙ୍କ ପରି ଆଡ଼େଇଦେଇ ପରିହାସରେ ଉଡ଼େଇ ଦଉଚନ୍ତି । ବାଟଭାଙ୍ଗି ଚାଲି, ଚୋର ଡରରେ ଦୁଆର କିଳି, ଅଭଦ୍ର କଥାକୁ ଜବାବ ନ ଦେଇ, ଦହଗଞ୍ଜକୁ ସହିନେଇ, ହକ୍ ନ ମିଳିଲେ ହାତ ପତେଇ, ଲୁଗା ନ ମିଳିଲେ ଲଙ୍ଗଳା ରହି, ଖାଇବା ନ ମିଳିଲେ ଓପାସରେ ଶୋଇ, ଘର ନ ମିଳିଲେ ଦାଣ୍ଡରେ ଗଡ଼ି, ହାଣ କାଟ ଲୁଟ୍‌ତରାଜ ସବୁ ସହି, କେତେଦିନ ଚଳିବା ଖାଲି ବାକ୍‌ଚାତୁରୀରେ ?''

ଶୁଦ୍ଧ ସ୍ଫୁଲିଙ୍ଗରେ ଜଳୁଥିଲା ମାଗୀ । ସେ ନିଆଁଝାସରେ ମାଜିହେଇ ଚୁପ ହେଇଗଲେ ଡା. ପ୍ରହରାଜ । ଈଶ୍ୱରୀ ଆସି ମାଗୀ କାନ୍ଧରେ ହାତ ରଖି ଚଟ୍ କରି କାଢ଼ିନେଲେ ଯିମିତି ଚିଆଁ ଲାଗିଗଲା ତାଙ୍କ ହାତରେ । ଯିମିତି ଅତଳ ଗର୍ଭକୁ ହାତ ପଶିଗଲା । ଯିମିତି ଅଭେଦ୍ୟ ବେଢ଼ାରୁ ଅଦୃଶ୍ୟ ଶକ୍ତି ଠେଲି ଫୋପାଡ଼ିଦେଲା । ଯିମିତି ସେ ଅଗ୍ନିକୁଣ୍ଡ ଭିତରକୁ ଯିବା ଅସମ୍ଭବ ।

ମାଗୀ ଫେରିଗଲା ସେଦିନ ଚା' ପିଇଦେଇ, ଦିନସାରା ନ ରହି ।

॥ ୫ ॥

## କିଳା ଭିଡ଼ା ମାଙ୍କଡ଼ର ଲାଞ୍ଜ ଉପୁଡ଼ିଲା ଖାପରେ
## ହାଟରୁ କିଣିଲା ନୂଆ ଲାଞ୍ଜଟିଏ ଦେଖିଲାବେଳକୁ ସାପରେ

''ତାହେଲେ ଲୋକଟା ମରିଗଲା ନା କଣ ?'' ମୁଖ୍ୟମନ୍ତ୍ରୀ ପଚାରିଲେ । ସେ ସାମାନ୍ୟ ବିବ୍ରତ ଦିଶୁଥିଲେ, ଯାହାକି ତାଙ୍କ ପ୍ରାକୃତିକ ଦୃଶ୍ୟମୂର୍ତ୍ତି ନ ଥିଲା । ସେ ସକାଳୁ ଗୁଡ଼ାଖୁରେ ଦାନ୍ତ ଘଷୁଥିଲେ ଆଉ ମୁହଁରେ ହସଟାଏ ଖଞ୍ଜି ଦଉଥିଲେ ଯାହା ସେ ରାତିରେ ବିଶ୍ରାମ ନେଲାବେଳେ ହିଁ ଓହ୍ଲାଉଥିଲେ । ସେ ଥିଲେ କ୍ଷୁଦ୍ର ଆକାରର କିନ୍ତୁ ତାଙ୍କର ବିରାଟ ଶିଶୁକାଠ ମେଜ ପଛରେ ବସି ସେ ବର୍ତ୍ତମାନ ସମ୍ଭୃତ ଦିଶୁଥିଲେ ଆଉ ମୋଟା କଳା ଚଷମାଫ୍ରେମ୍ ପଛରେ ତାଙ୍କ ଆଖିଯୋଡ଼ିକ ଥିଲା ବେଶ୍ ଧୂର୍ତ୍ତ, ଆଉ ବୋଧେ ସାମାନ୍ୟ ବିବ୍ରତ; ଭୟର ଏକ ସ୍ପର୍ଶ କୋଉଠି ଲୁଚି ରହିଥିଲା'' ।

''ହଁ ସାର୍,'' ଗୁରୁ ରାଉତରାଏ ଉତ୍ତର ଦେଲେ । ''ମରିଗଲା ଆଉ କୁଆଖାଇ କୂଳ ଶ୍ମଶାନରେ ଦାହ କରାଗଲା ।''

ଗୁରୁ ରାଉତରାଏ ନିଜକୁ ଭାଗ୍ୟବାନ ମନେକଲେ । ମୁଖ୍ୟମନ୍ତ୍ରୀ ପୂର୍ବରୁ କେବେ ସିଧାସିଧି ଭାବେ ତାଙ୍କସହ କାରବାର କରି ନ ଥିଲେ । ସାଧାରଣତଃ କାମ ଆସୁଥିଲା ଦଳର ସଙ୍କଟମୋଚକଙ୍କ ଜରିଆରେ, କୌଣସି ଦାଦା, ସାଧାରଣତଃ ସାମାଜିକ ଖ୍ୟାତି ଥିବା ଅପରାଧୀ, ଅନେକ ସମୟରେ ଜଣେ ଏମ୍.ଏଲ୍.ଏ. ବା ସେମିତି କିଛି । ଗୁରୁ ମଧ୍ୟ ନିଜକୁ ସିଧାସିଧି ଭାବେ ଆଉ ଜଡ଼ିତ କରୁ ନ ଥିଲେ । ସେ ''ସମ୍ମାନନୀୟ'' ହେଇଯାଇଥିଲେ । ସେ ମୁଖ୍ୟମନ୍ତ୍ରୀଙ୍କୁ ଏକ ଭଲ ପାରିଲାବାଲାର ତୃପ୍ତିରେ ରିପୋର୍ଟ ଦେଇଥିଲେ ।

''ମରିଗଲା ଆଉ ପୋଡ଼ାଗଲା ସାର୍,'' ମୁଖ୍ୟମନ୍ତ୍ରୀ ତାଙ୍କୁ ଚାହିଁଥିଲାବେଳେ ସେ ଆଉ ଥରେ କହିଲେ ।

ଫୋନ୍ ବାଜିଲା ।

''ସାର୍, ସାର୍, ପି.ଏମ୍.,'' ପି.ଏ. ଙ୍କ ସ୍ୱର ତ୍ରସ୍ତ । ବାହାର ଅଫିସ୍‌ରେ ଯେତେବେଳେ ପି.ଏମ୍. ମୁଖ୍ୟମନ୍ତ୍ରୀଙ୍କ ସହ କଥା ହେବେ ବୋଲି ଶୁଣିଲେ ପି.ଏ.-ଚଉକି ଛାଡ଼ି ଧଡ଼ପଡ଼ ହେଇ ଠିଆ ହେଇପଡ଼ିଲେ । ତାଙ୍କ ନାଁ ଥିଲା ପ୍ରମାଣିକ, ସେ ଥିଲେ ଲମ୍ବା ମୁହାଁ, କଳା ଏବଂ ଉତ୍ତେଜନାପ୍ରବଣ ।

"ଓଃ ! ଲାଇନ୍ ଦିଅ," ମୁଖ୍ୟମନ୍ତ୍ରୀ କହିଲେ ଓ ରାଉତରାଏଙ୍କୁ କୋଠରି ବାହାରକୁ ଯିବାକୁ ଇଙ୍ଗିତ ଦେଲେ । "ହେଲୋ, ୟେସ୍ ସାର୍, ମୁଁ ଦାସ୍ କହୁଚି ସାର୍ ।"

"ମୁଁ ଗ୍ରେୱାଲ୍, ପି.ଏମ୍.ଙ୍କ ସେକ୍ରେଟେରୀ ।"

"ଓ ।"

ପ୍ରଧାନମନ୍ତ୍ରୀ ତାଙ୍କ ମାହୋଗାନି ଡେସ୍କ ପଛପଟରେ ଦିଲ୍ଲୀସ୍ଥ ତାଙ୍କ ବାସଗୃହରେ ବସିଥିଲେ ଏବଂ ତାଙ୍କ ସେକ୍ରେଟେରୀଙ୍କ କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁଥିଲେ । ସେକ୍ରେଟେରୀ ଥିଲେ ଜଣେ ସିଭିଲ୍ ସରଭ୍ୟାଣ୍ଟ, ଚଳନୀୟ ଚେହେରା ଏବଂ ଜଣେ ଉତ୍ତମ କାର୍ଯ୍ୟବାହିକା ।

"କଣ ସେ କହୁଚି ?" ପ୍ରଧାନମନ୍ତ୍ରୀ ପଚାରିଲେ ।

"ଏବେଯାଏ କିଛି କହିନି । ଖାଲି ଗୋଟାଏ 'ଓ' ।"

"ଆପଣ ଅଛନ୍ତି ମୁଖ୍ୟମନ୍ତ୍ରୀ ?" ସେ ପଚାରିଲେ ।

"ହଁ, ହଁ, ହଁ, ମର୍ଣ୍ଣିଂ ମ୍ୟାଡାମ୍ ।"

"ମତେ ମିସ୍ ବା ମିଜ୍ ସମ୍ବୋଧନ କରନ୍ତୁ, ମ୍ୟାଡ଼ାମ୍ ନୁହେଁ ।"

"ଏକା କଥା, ଦେବି ଯେ ପାନେ," ମୁଖ୍ୟମନ୍ତ୍ରୀ ଗୁଣୁ ଗୁଣୁ ହେଇ କହିଲେ ।

"ଆପଣ କ'ଣ କହିଲେ ?"

"ମୁଁ କହିଲି ଯେ, ମିସ୍ ଅଗ୍ରୱାଲ୍, ମୁଁ ଅଛି ।"

"ପ୍ରଧାନମନ୍ତ୍ରୀ ଚାହାନ୍ତି ଆପଣ ସପ୍ତାହେ ଭିତରେ ଆଉ କୋଟିଏ ଟଙ୍କା ଆଣନ୍ତୁ ।"

"କେତେ କହିଲେ ଆପଣ ?"

"ଗୋଟିଏ କୋଟି । ଦଶନିୟୁତ ଟଙ୍କା ।"

"କିନ୍ତୁ ଏଇ ଗତ ସପ୍ତାହରେ ତ..."

"ଗତ ସପ୍ତାହ ଗତ ସପ୍ତାହ ।"

"ଆପଣ ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ ତ ମିସ୍..."

"ଆପଣଙ୍କର କିଛି ସନ୍ଦେହ ଅଛି ?"

"କିନ୍ତୁ ଦଳର ଏମିତି ଗୁରୁତ୍ୱପୂର୍ଣ୍ଣ ରାଜନୈତିକ କାରବାର..."

"ଗତ ସନ୍ଧ୍ୟାରେ ସମ୍ପୂର୍ଣ୍ଣ କ୍ୟାବିନେଟ୍ ସ୍ଥିର କରିଛି ଯେ ସମସ୍ତ ଅପ୍ରକାଶ୍ୟ ଆର୍ଥିକ କାରବାର ସିଭିଲ୍ ସର୍ଭ୍ୟାଣ୍ଟଙ୍କ ମାଧ୍ୟମରେ ହବ, ଯାହାଦ୍ୱାରା ପରିଚାଳକ ଗୋଷ୍ଠୀ ଏକତ୍ରିତ ହେଇଯିବେ ଆଉ ପାରସ୍ପରିକ ଫାଙ୍କରେ କାରବାରଜନିତ ଅର୍ଥର

ନିଷ୍କୃତି ରୋକା ଯାଇପାରିବ, ଯାହା ଫଳରେ ଦେଶବିଦେଶର ଡିକନ୍ଷ୍ଟ୍ରକସନିଷ୍ଟ୍ମାନେ କିଛି କାଢ଼ିପାରିବେନି ଆମ ଗହ୍ବର ଭିତରୁ ।''

''ଆପଣଙ୍କର କ'ଣ ଭିତରୁ ?''

''ଛାଡ଼ନ୍ତୁ ।''

''କିନ୍ତୁ ମତେ ତ ଏ ବିଷୟରେ କିଛି କୁହାଯାଇନି ।''

''ଆପଣ କେନ୍ଦ୍ର କ୍ୟାବିନେଟ୍‌ର ଜଣେ ସଦସ୍ୟ ହେଇଗଲେଣି କି ?''

''ନା । କିନ୍ତୁ ଯାହା ବି ହଉ ଦେଶର ସ୍ୱାର୍ଥପାଇଁ ଏବଂ ଦଳର ସ୍ୱାର୍ଥପାଇଁ, ସମସ୍ତ ବାଧାବିଘ୍ନ ସତ୍ତ୍ୱେ ଏବଂ ସମସ୍ତ ଦୁର୍ବଳ କାରଣ ସତ୍ତ୍ୱେ ଆମେ ତଥାପି ଯେ...''

''ଶନିବାର ସୁଦ୍ଧା ପଇସା ଏଠି ପହଞ୍ଚିଯିବା ଉଚିତ ।''

''ମୁଁ ପ୍ରଧାନମନ୍ତ୍ରୀଙ୍କ ସାଙ୍ଗେ କଥା ହବାକୁ ଚାହୁଁଚି ।''

''ଆପଣ କ'ଣ ଚାହୁଁଛନ୍ତି ?''

''କଣ ସେ କହୁଚି ?'' ପ୍ରଧାନମନ୍ତ୍ରୀ ଆଗକୁ ଝୁଙ୍କିପଡ଼ି ଉଦ୍‌ବିଗ୍ନ ଭାବରେ ପଚାରିଲେ ।

''ସେ ଆପଣଙ୍କ ସାଙ୍ଗେ କଥାହେବାକୁ ଚାହୁଁଚି ।''

''ଚୋର୍ ଶାଳା ।''

''ତାଙ୍କୁ ମୋ ଉପରେ ଛାଡ଼ନ୍ତୁ ।''

''ପ୍ରଧାନମନ୍ତ୍ରୀଙ୍କ ସହ କଥାହବାକୁ । ମୁଁ ଜାଣିବାକୁ ଚାହୁଁଚି କ'ଣ ଏସବୁ ଚାଲିଚି !''

''ଆଚ୍ଛା, ଆଚ୍ଛା ! ମୁଁ ଭାବୁଚି ତାର ବ୍ୟବସ୍ଥା କରାଯାଇପାରିବ । ଏଇଟା ଆପଣଙ୍କ ପାଇଁ କେନ୍ଦ୍ର କ୍ୟାବିନେଟ୍‌କୁ ଆସିବା ଏବଂ ପ୍ରଧାନମନ୍ତ୍ରୀଙ୍କ ପାଖରେ ରହିବା ପାଇଁ ଠିକ୍ ସମୟ ।''

''ଆଉ କିଏ, କହିଲେ ଦେଖି, ଓଡ଼ିଶା ରାଜ୍ୟର ଦାୟିତ୍ୱ ନବ ? ମୁଁ ତ ସମସ୍ତଙ୍କୁ ଭଗେଇ ଦେଇଚି ।''

''ଆମେ ଓଡ଼ିଶାକୁ 'ଦଳ'କୁ ହସ୍ତାନ୍ତର କରିଦେଇପାରିବା ।''

''ତୁମେ ସେମିତି କରିପାରିବ ନାହିଁ ।''

''କାହିଁକି ନୁହଁ ? ତା'ଛଡ଼ା ବିଜୁ, ଟିକୁ, ନିଳମନୀ, ନନ୍ଦିନୀ ଏବଂ ଆହୁରି ଅନେକ ହେଉଚନ୍ତି ପୁରୁଣା କଂଗ୍ରେସ ଲୋକ । କଂଗ୍ରେସ ଅକ୍ଲେଶରେ ତା' ଲଡ୍ଡୁଟି ଦେଖେଇ ସେମାନଙ୍କୁ ଇଆଡ଼କୁ ଫେରେଇ ଆଣିପାରିବ ।''

''ତମେତ ଏମିତି କଥାବାର୍ତ୍ତା କରୁଚ ଯେମିତି ଦେଶ ଆଉ କଂଗ୍ରେସ ପାର୍ଟିକୁ ତମେଇ ଚଳଉଚ । ପ୍ରଧାନମନ୍ତ୍ରୀ କିଏ ତା'ହେଲେ ?''

''କଣ ସେ କହୁଚି ?''

''ସେ ପଚାରୁଛନ୍ତି ପ୍ରଧାନମନ୍ତ୍ରୀ କିଏ ?''

''ସେ ଜାଣିନି ? ତା ମାନେ ? ହେ ଭଗବାନ୍, ମୋ ସରକାର ଓଲଟେଇ ପକେଇଲେ ନା କଣ ? ସେ ଏକଥା କ'ଣ ବି.ବି.ସି. ରୁ ଶୁଣିଲା ? ପଚାର ତାକୁ, ପଚାର ତାକୁ । ଭି.ପି.ସିଂହ କି ବେନଜିର୍, କି ବୁସ୍, କିଏ ହେଲା ? ଆରେ ବୁଝ । ମୋର ସେ ସୁଇସ୍‌ବ୍ୟାଙ୍କ ଆକାଉଣ୍ଟ୍ ନମ୍ବର ଥିବା ହାତଘଡ଼ିଟା କୁଆଡ଼େ ଗଲା ? ବିମାନ ପ୍ରସ୍ତୁତ ଅଛି ତ ?''

''ବୁସ୍ ଆଉ ୟୁ. ଏସ୍. ରାଷ୍ଟ୍ରପତି ନାହାନ୍ତି ।''

''କିନ୍ତୁ ସେ ଥିଲେ, ଯେତେବେଳେ ମୁଁ ତାଙ୍କୁ ଗତଥର ଭେଟିଥିଲି । ମୁଁ କ'ଣ କରିବି ଯଦି ଏମାନେ ମତେ ଗସ୍ତ ବି କରିବାକୁ ନ ଦିଅନ୍ତି । ସେ ରାଷ୍ଟ୍ରପତିଟା ବର୍ତ୍ତମାନ ସବୁଆଡ଼କୁ ଗସ୍ତ କରିବାକୁ ଚାହୁଁଚି । ମୋର କ'ଣ ହବ ?''

''ଓହୋ ! ଆପଣ ଚୁପ୍ ହେଲେ !''

''କଣ ! ମତେ ଚୁପ୍ ହବାକୁ କହୁଚ ତମେ ? ମତେ ? ପ୍ରଧାନମନ୍ତ୍ରୀଙ୍କୁ ? ମୁଁ ପ୍ରଧାନମନ୍ତ୍ରୀ, ଏ ସବୁ କ'ଣ ଅଲଗା ଅଲଗା । ସେ ଯାହାବି ହେଉ ମୁଁ ତମକୁ ବଦଳି କରିଦେବି ।''

''ପରେ । ପ୍ଲିଜ୍ । ଏବେ ନୁହଁ ।''

''କାହିଁକି ?''

''ଆପଣଙ୍କ ପୁଅର ସେଣ୍ଟ୍ ଷ୍ଟିଫେନ୍‌ସରେ ନାଁ ଲେଖେଇବା ପାଇଁ ମତେ ସମସ୍ତଙ୍କୁ ବୋକା ବନେଇବାକୁ ପଡ଼ିବ । ଆଉ ମତେ ଆପଣଙ୍କ ଅନ୍ୟ ପୁଅକୁ ସେଣ୍ଟ୍ କିଟ୍‌ସର ଅଙ୍କୁଶରୁ କାଢ଼ିବାକୁ ପଡ଼ିବ ।''

ପ୍ରଧାନମନ୍ତ୍ରୀ ତାଙ୍କ ମୁଣ୍ଡରେ ସବୁ ଜିନିଷକୁ ଘୂରାଇଆଣିଲେ ସେଗୁଡ଼ିକ ଖାପରେ ପଡ଼ିଲା ପର୍ଯ୍ୟନ୍ତ ।

''ଠିକ୍ ଅଛି ।'' ସେ ଶେଷରେ ତାଙ୍କ ଚନ୍ଦାମୁଣ୍ଡକୁ କୁଣ୍ଢୋଉ କୁଣ୍ଢୋଉ କହିଲେ ।

''ତା'ହେଲେ ଠିକ୍ ଅଛି ମୁଖ୍ୟମନ୍ତ୍ରୀ ମହୋଦୟ । ଆମେ ଆସନ୍ତା ନିର୍ବାଚନ ପାଇଁ ଆପଣଙ୍କଠାରୁ ଦାୟିତ୍ୱ ନେବାକୁ ସିଂହଦେଓଙ୍କୁ ପଠୋଉଚୁ । ଆପଣ ଏଠିକି

ଆସୁଚନ୍ତି । ଆପଣଙ୍କୁ ପଇସାପତ୍ର କିଛି ଆଣିବାକୁ ପଡ଼ିବ ନାହିଁ । ସିଂହଦେଓ ସେ କଥା ବୁଝିବେ । ଆପଣ କେବଳ ଆପଣଙ୍କ ଇସ୍ତଫା ପ୍ରଧାନମନ୍ତ୍ରୀଙ୍କୁ ଲେଖିଦିଅନ୍ତୁ ।''

''ନା ନା । ରୁହ । ମୋ ଓଡ଼ିଶାକୁ ଛଡ଼େଇନିଅନି । ମୋ ବେଉସା ବନ୍ଦ ହେଇଯିବ । ମୁଁ ଆଉ ପାଳିଏ ଚାହେଁ । ମୋ ପୁଅ ଠିକ୍ ଭାବରେ ଥଇଥାନ ହେଇନି । ମୋ କ୍ୱାଇଁର କାରବାର ଠିକ୍ ଚାଲିନି । ମୋ ଝିଅ ଗର୍ଭବତୀ । ମୋ ସ୍ତ୍ରୀ ଏପର୍ଯ୍ୟନ୍ତ ମନ୍ତ୍ରୀଟିଏ ହେଇପାରିନି । ମୋ ପୁତୁରା...''

''ତା ହେଲେ କ'ଣ ଶନିବାର ?''

''ମୁଁ ଚେଷ୍ଟା କରିବି ।''

''ଆଉ ହଁ, ଗୋଟାଏ ମର୍ଡ଼ର ଘଟଣା ସି.ବି.ଆଇ. ହାତକୁ ଆସିଚି ଆଉ ଗୃହ ମନ୍ତ୍ରଣାଳୟର ଦାଢ଼ିରେ ଉକୁଣି ପରି ପଶିଗଲାଣି ।''

''ଖିଅର କରିଦିଅ ତାଙ୍କୁ । ମୁଁ ଶନିବାର ପୂର୍ବରୁ ଆସିବି ।''

''ଠିକ୍ ଅଛି, ଆମେ ସେଇଟାକୁ ଭୁଲିଯିବୁ ।''

ମୁଖ୍ୟମନ୍ତ୍ରୀ, ଉପଯୁକ୍ତଭାବେ ରାଗି, ରାଉତରାଏଙ୍କୁ ଡାକିଲେ, ଯିଏକି ଅନୁଗ୍ରହିତ ଭାବେ ହସି ହସି ଆସିଲେ ଓ ତାଙ୍କ ସାମ୍ନାରେ ବସିଲେ ।

''ତା'ହେଲେ ତାକୁ କୁଆଖାଇ ମଶାଣିରେ ଦାହ କରାଯାଇଚି ନା କଣ ? ଶଳା ସବୁ ଗୁଜବ । କେହି କିଛି ଠିକ୍ ବୁଝୁନ ! ମୁଁ ସତ କଥା ଚାହେଁ । ପ୍ରଧାନମନ୍ତ୍ରୀ ମୋ ପଛରେ ସି.ବି.ଆଇ. ଲଗେଇଲାଣି । ଶଳା ତମେ ଯେତେ ଦବ ସେ ସେତେ ମାଗୁଥିବ । ତମେ ବୋକାଙ୍କଭଳିଆ କ'ଣ ଚାହୁଁଚ ? ପଛରେ ଲାଗ ଆଉ ବାହାର କର । ବାହାର କର ସେ ଲୋକଟା ପ୍ରକୃତରେ ମରିଚି କି ନାହିଁ । ଯଦି ସେ ମରିନି ତାକୁ ମାରିଦିଅ । ତାକୁ କୁହ ଏଇଟା ଜାତୀୟ ଦୃଷ୍ଟିକୋଣରୁ ଜରୁରି । ଚାଇନିଜ୍‌ମାନେ ଯା କରିଚନ୍ତି । ତାକୁ ଯାହାବି କୁହ ।''

ମୋଟା, ଧୋତିପିନ୍ଧା ଭଦ୍ରଲୋକ, ଗୁରୁ ରାଉତରାଏ ଚିନ୍ତିତଭାବେ ଢଳି ଢଳି ବାହାରକୁ ଗଲେ ଓ ତାଙ୍କ କଳା ଆମ୍ବାସଡର ଚଳାଇ ଚାଲିଗଲେ । ମଳିକକୁ ଖୋଜିବାକୁ ହବ ଏବେ, ଏ ସବୁ ଦଉଡ଼ା ଧପଡ଼ା କାମ ରାଉତରାଏ ଆଉ ନିଜେ କରୁ ନ ଥିଲେ ।

ଆମ୍ବୁଲାନ୍‌ସ୍ ଡ୍ରାଇଭର ରଙ୍ଗେଶ୍ୱର ଅବିଚଳିତ ଥିଲା । ଚାପୁଡ଼ା ଖାଇ ତା ଆଖିରୁ ପାଣି ବାହାରିଆସିଥିଲା, କିନ୍ତୁ ସେ ଅଟଳ ଥିଲା । ତା ସ୍ତ୍ରୀ ତା ସ୍ୱାମୀକୁ, ଯାହାକୁ ସେ ଗୋଟିଏ ଭଲ ମଣିଷ ବୋଲି ଭାବୁଥିଲା, କିମିତି ବଞ୍ଚେଇବ ଜାଣି ନ ପାରି ଡରି

ଘର ଭିତରେ ଲୁଚିଥିଲା । ସେ କାନ୍ଥରୁ ପଲସ୍ତରା ଛାଡ଼ିବା ଆରମ୍ଭ କରିଦେଇଥିବା ନୂଆ ତିଆରି ଦି' ବଖୁରିଆ ସରକାରୀ କ୍ୱାର୍ଟରର ଆଠଫୁଟ୍‌ରେ ଦଶ ଫୁଟ୍ ବାହାର ଘର ଭିତରେ କିଛି ସହାୟତା ପାଇଁ ଆଖି ବୁଲାଇଆଣିଲା । ଦଉଡ଼ିଆ ଖଟ ଓପରର ବେଡ୍‌ସିଟ୍‌ଟି ମଇଳା ହେଇଯାଇଥିଲା । ଏକମାତ୍ର ଚେୟାରର ହାତ ଭାଙ୍ଗି ଯାଇଥିଲା । ଝରକା ଦାଢ଼ରେ ଥୁଆ ଯାଇଥିବା ଛୋଟ ରେଡ଼ିଓଟିରେ ଟିଉନିଂ ନବ୍ ନ ଥିଲା ଆଉ ସାଇକେଲ୍‌ଟିର ପଛ ମଡ଼ଗାର୍ଡ଼ ନ ଥିଲା । କିନ୍ତୁ ତା ଆଖି କାନ୍ଥରେ ଟଙ୍ଗାଯାଇଥିବା ବିଷ୍ଣୁଙ୍କ ଫଟ ଓପରେ ପଡ଼ିଲା । ସେ ବ୍ୟାକୁଳ ହେଇ ପ୍ରାର୍ଥନା କଲା, ଏଣେ ଭାବିନେଲା ଯେ ଏ ରାଢ଼କୁ ରୋଷେଇଘର ପନିକିରେ ଆକ୍ରମଣ କରିପାରିବ ।

ରଙ୍ଗେଶ୍ୱର ପୁଣି ପୁନରାବୃତ୍ତି କଲା : ''ମୁଁ ତାକୁ କଟକ ମେଡ଼ିକାଲ୍ କଲେଜକୁ ନେଲିନି କାରଣ ସେ ରାସ୍ତାରେ ମରିଗଲା ଆଉ ସେ ସ୍ତ୍ରୀଲୋକ ତାକୁ ଦାହ କରିବାକୁ ଚାହିଁଲା । ଗୋଟାଏ ଶବଟାକୁ କଟକ ମେଡ଼ିକାଲ୍‌କୁ କାହିଁକି ନେଇଥା'ନ୍ତି ? ଖାଲି ଝାମେଲା ହେଇଥାନ୍ତା । ପୋଲିସ୍ ଡକା ହବ, ଇନ୍‌କ୍ୱାରୀ ହବ । ତମେ ଯଦି କହୁଚ ମୁଁ ପୋଲିସ୍‌କୁ କହିବି, ହେଲେ ମୁଖ୍ୟମନ୍ତ୍ରୀଙ୍କ ଅଫିସ୍‌ର ସମସ୍ତେ ଅସୁବିଧାରେ ପଡ଼ିବେ ।''

ଲୋକଟା ରଙ୍ଗେଶ୍ୱରକୁ ପୁଣି ମୁଣ୍ଡରେ ଖୁବ୍ ଜୋର୍‌ରେ ମାରିଲା । ରଙ୍ଗେଶ୍ୱର ଯନ୍ତ୍ରଣାରେ ନଇଁପଡ଼ିଲା । ତା ମୁଣ୍ଡ ଝାଏଁ ଝାଏଁ ହେଇଗଲା । ତା ପେଟ ଗୋଳେଇଘାଣ୍ଟି ହେଲା ଯେମିତିକି ସେ ବାନ୍ତି କରିବ । କିନ୍ତୁ ତା ଭାବନା ସ୍ୱଚ୍ଛ ଥିଲା ।

''ତମେ ମତେ ମାରୁଚ କାହିଁକି ? ମୁଁ ସତ କହୁଚି ।''

''ତେବେ ସେ ତାକୁ ପୋଡ଼ିଦେଲା ?''

''ହଁ ମୋ ଆଗେରେ ।''

''ତୁ ଯଦି ସତ କହୁଚୁ ତ ଭଲ କଥା । ଯଦି ନ ହେଇଥିବ, ଭଗବାନ୍ ତତେ ବଞ୍ଚେଇବେ ।''

ଏମିତିକା କାମ୍‌ସବୁ ସେ କେବେ ନିଜେ କରି ନ ଥିଲେ । ସେ ସବୁବେଳେ ଗୁରୁତ୍ୱପୂର୍ଣ୍ଣ କାମ କରିଥାନ୍ତି, କେବେ କିମିତି, କ୍ୱଚିତ୍ ଯଦି ଭଲ ପଇସା ଗଣ୍ଡାଏ ମିଳେ, ସତର୍କ ଯୋଜନା, ଗୋଟାଏ ମୁଷ୍ଟି, ଗୋଟାଏ ନୀରବ ଗୁଳି ବା ଛୁରୀର ହଠାତ୍ ନିକ୍ଷେପଣ ଓ କାମ ଶେଷ । ତାଙ୍କ ଇତିହାସ ଥିଲା ଦାଗଶୂନ୍ୟ । ପୋଲିସ୍ ତାଙ୍କୁ କେବେବି ସନ୍ଦେହ କରି ନ ଥିଲା । ରାସ୍ତାକଢ଼ରୁ ଦାଦାଗିରିରେ ସ୍ନାତକ କରି, ଯେତେବେଳେକି ତାଙ୍କୁ ପୋଲିସ୍ ସାଙ୍ଗେ ତଥା ଅନ୍ୟଦଳର ଭଡ଼ାଟିଆ ଗୁଣ୍ଡାଙ୍କ ସାଙ୍ଗେ ମାର୍‌ପିଟ୍ କରିବାକୁ ପଡୁଥିଲା ସେ ଏକ ଲମ୍ବାରାସ୍ତା ପାରି କରିସାରିଥିଲେ । ସେ ବର୍ତ୍ତମାନ ଭଦ୍ରଲୋକ, ଶ୍ରୀଯୁକ୍ତ ରଘୁନାଥ ମଲ୍ଲିକ । କିନ୍ତୁ ସେ ଥିଲେ ପକ୍କା କାରିଗର ।

ଆଉ ଏଇ ଯୋଉ କାମସବୁ ସେ କରୁଥିଲେ, ସେ ତାହା ଗୋଟିଏ ଦଳ ପାଇଁ ହିଁ କରୁଥିଲେ ଓ ବିଶେଷତଃ ଜଣକ ପାଇଁ। ସେ ହେଲେ ଗୁରୁ ରାଉତରାଏ। ଗୁରୁବାବୁ ଫୋନ୍‌ରେ ଅତର୍ଷ୍ୟା ଓ ସଙ୍ଗୀନ୍ ଲାଗୁଥିଲେ। ତେଣୁ ତାଙ୍କୁ ନିଜେ ଏ କାମଟା ଭଲରେ କରିବାକୁ ପଡ଼ିବ।

ଡ୍ରାଇଭର ଓ କ୍ଲେଚର୍ ବୁହାଳି ଏକା କଥା କହୁଚନ୍ତି। ତେଣୁ ବୋଧେ ଲୋକଟା ମରିଯାଇଚି। ଲୋକଟା କିଏ ଓ ସେ କ'ଣ କରିଥିଲା ତାଙ୍କର ଜାଣିବା ଦରକାର ନ ଥିଲା। ଚାପ ପ୍ରଖର ଥିଲା, ତେଣୁ ଏଥିରେ କିଛି ଗୂଢ଼ ତତ୍ତ୍ୱ ଥିବ ନିଶ୍ଚୟ। କିନ୍ତୁ ସେଇଟା ତାଙ୍କର ମୁଣ୍ଡବିନ୍ଧା ନୁହଁ।

ତାଙ୍କ ବ୍ୟସ୍ତତାର କାରଣ ଥିଲା ତାଙ୍କ ପୁଅ, ଯିଏ କଲେଜରେ ଭଲ ପଢୁ ନ ଥିଲା ଓ ଅବାଧ୍ୟତାର ସୂଚନା ଦଉଥିଲା; ତାକୁ କୌଣସି ଆଇନ୍‌ସଂଗତ ବ୍ୟବସାୟରେ ଭର୍ତ୍ତିକରି ବାହା କରେଇଦେବେ ବୋଲି ଲାଗିଥିଲେ। ତା ହେଲେ ସେ ବାଟକୁ ଆସିବ। ହେଲେ ସେ ବି.ଏ. ପରୀକ୍ଷାଟା ଦେଇଚି। ଏତିକି ବେଳେ କେନ୍ଦ୍ରୀୟ ଖାତାଦେଖା ମେଳାରେ କିଛି ପରୀକ୍ଷକଙ୍କୁ ହାତଗୁଞ୍ଜା କିଛି ଧରେଇଦେଲେ ପୁଅର ପାସ୍‌ଟା ତ ହେଇଯିବ, କ୍ଲାସ୍ ବି ହେଇଯାଇପାରେ। ପଇସାର ବଡ଼ କରାମତି।

ସେ ପାଞ୍ଚନମ୍ବର ଜାତୀୟ ରାଜପଥଠାରୁ ପାଞ୍ଚଶହମିଟର ଖଣ୍ଡେ ଦୂର କୁଆଖାଇ କୂଳ ମଶାଣିର ଫାଟକପାଖ ମାଟିରାସ୍ତା ଓପରେ ତାଙ୍କ ମଟରସାଇକେଲ୍‌ର ବ୍ରେକ୍ କଷିଲେ।

ଲୋକଟାଏ ଫାଟକ ଭିତରେ ବୁଢ଼ାବରଗଛର ମୂଳରେ ଥିବା ଚଉତରା ଓପରେ ବସିଥିଲା। ଗୋଟେ କଡ଼କୁ ଥିଲା ଚାଳିଆଟାଏ, ଯାହାର ବାହାରେ ଗଦା ହେଇଥିଲା ମଢ଼ ଶୁଆଇବାକୁ ସାଇଜ୍‌ରେ କଟା କାଠଗଡ଼ ଆଉ ଫାଳିଆ।

ଲୋକଟା ଚିଲମ ଟାଣୁଥିଲା ରଘୁନାଥ ଗଞ୍ଜେଇର ଗନ୍ଧ ବାରିପାରିଲେ।

''ତୁ ଏଠିକାର ଜଗୁଆଳି ?''

''ହୁଁ।'' ସଙ୍କୁଚିତ ମଳିନ ମୁହଁରୁ ଦୁଇଟି ଅପ୍ରତିଭ ଲାଲ୍ ଆଖି ତାଙ୍କୁ ବେଖାତିର୍ ଭାବେ ଚାହିଁଲା।

''ଅଗଷ୍ଟ ପନ୍ଦର ଦିନ ସକାଳଓଳି ତୁ ଏଠି ଥିଲୁ କି ?''

ଲୋକଟା ତା ଚିଲମକୁ ଗୋଟାଏ ଲମ୍ୱାଟାଣ ନେଲା, ଆଉ ଶ୍ୱାସରୋଗୀ ପରି ଆଖିରୁ ପାଣି ଆସିଲାଯାଏ କାଶିଲା। କାଶିସାରିଲା ପରେ ସେ ତା ନାକ ସୁଁ କଲା।

''ମୁଁ ତତେ ଗୋଟିଏ ପ୍ରଶ୍ନ ପଚାରିଲି ପରା।''

''ମୁଁ ଶୁଣିଲି।''

''ମତେ ଚାଲାକି ଦେଖାନା।''

''ମୁଁ ଏଠି ସବୁବେଳେ ଅଛି । ମୁଁ ଏଇଠି ରହେ । ମତେ ଏ ବାସେନା ଭଲ ଲାଗେ । କାହାକୁ ପୋଡ଼ିବ ?''

''ଅଗଷ୍ଟ ପନ୍ଦର ଦିନ ସକାଳ ଓଳି, ଆମ୍ବୁଲାନ୍ସରେ ଗୋଟାଏ ଶବ ପୋଡ଼ା ହବାକୁ ଆସିଥିଲା ?''

''ଆସିଥିବ ।''

'ମୁଁ ସିଧା ସିଧା ଉତ୍ତର ଚାହୁଁଚି ।''

''ଆଉ ମୋର ଏ ଡାହାଣହାତ ପାପୁଲିଟା ଭାରି କୁଣ୍ଡେଇ ହଉଚି ।''

ରଘୁନାଥ ଭୀଷଣ ରାଗିଗଲେ, କିନ୍ତୁ ସେ ନିଜକୁ ସମ୍ଭାଳିନେଲେ । ସେ ତାଙ୍କ ପକେଟରୁ ଦଶଟଙ୍କିଆ ନୋଟଖଣ୍ଡେ କାଢ଼ି ଲୋକଟାକୁ ଦେଲେ ।

''ତମେ ପୁଲିସ୍‌ଠୁଁ ସବୁ କଥା ବିଶଦ ଭାବରେ ଜାଣିପାରିବ । ଅଧଘଣ୍ଟା ବି ହେଇ ନ ଥିବ ତାଙ୍କ ଲୋକ ଏଠିକି ଆସିଥିଲେ ।''

''ପୁଲିସ୍ ?''

''ଦିଲ୍ଲୀରୁ ବୋଲି କହିଲେ, ସି.ବି.ଆଇ. ନା କଣ ।''

''ତୁ ତାଙ୍କୁ କ'ଣ କହିଲୁ ?''

''ସତକଥା । ହଁ ମୁଁ ସେ ଲୋକଟାକୁ ପୋଡ଼ିଥିଲି ଯେମିତି ଏଠିକି ଯୋଉ ମୁର୍ଦ୍ଦାର ଆସିଲେ ବି ମୁଁ ପୋଡ଼େ ।''

ରଘୁନାଥଙ୍କର ଟାଣ ହାତ ସାପପରି ବାହାରିଲା ଓ ଲୋକଟାର ଶଙ୍ଖି ଧରି ପକେଇ ଚିପିଦେଲା । ସେ ତାକୁ ଛେରିଲା ପରି ଡରେଇବାକୁ ଚାହୁଁଥିଲେ ଯିମିତି, ଯଦି ସେ କିଛି ଲୁଚାଉଥାଏ ବାହାରିପଡ଼ିବ ।

''ଏବେ ତୁ ମତେ ସତ କହ, ପୁଲିସ୍‌କୁ ଯାହା କହିଲୁ ତା ନୁହଁ, ଶୁଭିଲା ତତେ ?'' ସେ ଲୋକଟାକୁ ଛାଡ଼ିଦେଲେ, ସିଏ ଗଛର ଗଣ୍ଡିରେ ବାଜି ତଳେ ପଡ଼ିଗଲା ।

ଲୋକଟି ତାଙ୍କଆଡ଼କୁ ଚାହିଁଥିଲା । ତା ପାଟି ମେଲା, ନିଃଶ୍ୱାସ ବନ୍ଦ । ସେ ମରିଯାଇଥିଲା ।

ରଘୁନାଥ ନିଜକୁ ନିଜେ ଶୋଧିଲେ । ଲୋକଟା ବୋଧେ ରୋଗଣା ଥିଲା, ବୋଧେ ଯକ୍ଷ୍ମା । ସେ ଶୀଘ୍ର ଉଠିଲେ ଆଉ ବ୍ୟସ୍ତତା ନ ଦେଖେଇ ଯେତେ ଶୀଘ୍ର ପାରନ୍ତି ସେତେ ଶୀଘ୍ର ଜାଗାଟାକୁ ଛାଡ଼ିଦେଲେ । ତାଙ୍କ ଭିତରେ ଏକ ଅଶାନ୍ତ କମ୍ପନର ଗୁଞ୍ଜନ ଉଠୁଥିଲା । ତାଙ୍କୁ ବର୍ତ୍ତମାନ କିଛିଦିନ ପାଇଁ ଛପିଯିବାକୁ ହବ । ମୁଖ୍ୟମନ୍ତ୍ରୀଙ୍କୁ ରିପୋର୍ଟ ଦେଇ ସେ ଲୁଚିଯିବେ ।

''ହୁଁ- ଉଁ ଉଁ।'' ଡାଇରେକ୍ଟର ଜେନେରାଲ୍ ଅଫ୍ ପୋଲିସ୍, ମହାସୁନ୍ଦର ବେହେରା ବିବ୍ରତ ଥିଲେ। ଦିଲ୍ଲୀରୁ ଆସିଥିବା ସି.ବି.ଆଇ. ଲୋକ ଓପରେ କଡ଼ା ପହରା ଲଗେଇବାକୁ ମୁଖ୍ୟମନ୍ତ୍ରୀ ଚାହିଁଥିଲେ। ସେ ମଧ୍ୟ ଚାହିଁଥିଲେ ରାଜ୍ୟ ପୋଲିସ୍ ଦ୍ୱାରା ସେ ଲୋକକୁ ସବୁ ସାହାଯ୍ୟ ଯୋଗାଇଦବାକୁ, ଯିମିତି କି ସେ ଯୋଉ କାମରେ ଆସିଚି କେବେବି କରିପାରିବନି। କିନ୍ତୁ ଲୋକଟା ସୂଚନାହୀନ ଭାବେ ପହଞ୍ଚିଲା ଆଉ ପୋଲିସ୍‌ର ସାହାଯ୍ୟ ମାଗିଲାନି। ତାଙ୍କ ନାଁ ମହାରାଜ ମଲ୍‌ହୋତ୍ରା, ସି.ବି.ଆଇ.ରେ ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ୍ ଅଫ୍ ପୋଲିସ୍ ଆଉ ପ୍ରଧାନମନ୍ତ୍ରୀଙ୍କ ଅଫିସ୍‌ର ପ୍ରିୟ ଲୋକ। ସେ ଏକୁଟିଆ ବାଆଁରା ଓ ସୂକ୍ଷ୍ମ ଲକ୍ଷ୍ୟପ୍ରାପ୍ତିରେ ନିଜେ ଏକା ଏକା କାମ କରୁଥିଲେ। ସେ ଅକ୍ଟୋବର ୧୫ରେ ନୀଳାଚଳ ଏକ୍ସପ୍ରେସ୍‌ରେ ନିଜ ପାଇଁ ଟିକେଟ୍ କାଟିଥିଲେ ୧୬ରେ କଟକରେ ପହଞ୍ଚିବାକୁ, କିନ୍ତୁ ଦିଲ୍ଲୀ ଭୁବନେଶ୍ୱର ଫ୍ଲାଇଟ୍ ୯୭୭ରେ ୧୫ରେ ପହଞ୍ଚିଗଲେ। ସେ ଟ୍ରେନ୍‌ରେ ଅକ୍ଟୋବର ୧୬ ତାରିଖରେ ପହଞ୍ଚି କଟକର ପୋଲିସ୍ କ୍ଲବରେ ରହିବା ପାଇଁ ବୁକ୍ କରିଥିଲେ, କିନ୍ତୁ ୧୫ରେ ଭୁବନେଶ୍ୱରର କଳିଙ୍ଗ ଅଶୋକାରେ ଚେକ୍‌ଇନ୍ କଲେ। ଏଥିପାଇଁ ବେଶ୍ ପଇସାର ପ୍ରୟୋଜନ ଥିଲା ଓ ଜଣେ ସରକାରୀ କର୍ମଚାରୀ ତାର ଟୁର୍ ଭତ୍ତାରୁ ଯା କରିବାରେ ସକ୍ଷମ ହୁଅନ୍ତା ନାହିଁ, ଅର୍ଥାତ୍ ତାଙ୍କୁ ଏ ବଳିଷ୍ଠ ଲକ୍ଷ୍ୟ ଉଦ୍ଦେଶ୍ୟରେ ପ୍ରଚୁର ଅର୍ଥ ଯୋଗାଇ ଦିଆଯାଇଥିଲା।

ଷୋହଳ ତାରିଖ ରାତିରେ ଟ୍ରେନ୍‌ରେ ନ ପହଞ୍ଚିବା ପରେ ଖୋଜାଖୋଜି କରି ତାଙ୍କୁ ଯେତେବେଳେ ଠାବ କରାଗଲା ଆଉ ତା ପରଦିନ ସକାଳେ ଯେତେବେଳେ ଗୋଟିଏ ଲୋକ ତାଙ୍କ ପଛରେ ଲଗାଗଲା, ସେତେବେଳକୁ ସେ ଅନୁସନ୍ଧାନରେ କୁଆଡ଼େ କେଜାଣି ବାହାରି ଯାଇଥିଲେ। ଏଣେ ମୁଖ୍ୟମନ୍ତ୍ରୀଙ୍କ ସଚିବ ଡି.ଜି.ଙ୍କୁ ଆହୁରି ହତବୁଦ୍ଧି କରି ତାଙ୍କ ଝୁଲିଥିବା ନିଶକୁ ଆହୁରି ଝୁଲାଇ ସାବଧାନ କରିଦେଲେ ଯେ ସେ ସି.ବି.ଆଇ.ବାଲା କୁଆଖାଇ ଶ୍ମଶାନକୁ ଯାଇଥିଲା ଆଉ ଭଗବାନ୍ ଜାଣନ୍ତି ଆହୁରି କୁଆଡ଼େ କୁଆଡ଼େ ଯାଇଥିବ। ମୟୂରଭଞ୍ଜର ଉତ୍ତରରେ ଥିବା ଶିମିଳିପାଳ ରିଜର୍ଭ ଫରେଷ୍ଟ ବଙ୍ଗଳାକୁ ଆଉ କେଉଁଝରକୁ ମଧ୍ୟ ସେ ଯାଇଥିଲା ବୋଲି ଶେଷରେ ରାଜ୍ୟ ପୋଲିସ୍ ସେହି ଟାକ୍ସି ଡ୍ରାଇଭରଠୁଁ ଜାଣିବାକୁ ପାଇଲେ ଯିଏ ତାଙ୍କର ଏ ତିନିଦିନର ଅନୁପସ୍ଥିତିରେ ତାଙ୍କୁ ସେଠିକି ନେଇଯାଇଥିଲା।

ତା'ପରେ ଯାଇ ମହାରାଜ ଡି.ଜି.ପି.ଙ୍କ ପାଖକୁ ଆସିଥିଲେ ଓ ତାଙ୍କ ସହ କିଛି ସମୟ ଭାବାଳାପ କରିଥିଲେ।

''ମୋ ଓପରେ ଦୃଷ୍ଟି ରଖିଥିବାରୁ ଧନ୍ୟବାଦ।''

ଡି.ଜି.ପି. ବେହେରା ତାଙ୍କ ନିଶକୁ ବାରମ୍ବାର ମୋଡ଼ିଲେ।

''ନା ନା ନା ନା, ଦୃଷ୍ଟି ରଖିବା କଥା ନୁହଁ । ସି.ବି.ଆଇ. ଓପରେ କିଏ ଦୃଷ୍ଟି ରଖିବ । ମୋ ବନ୍ଧୁ ସକ୍‌ସେନା, ଆପଣଙ୍କ ଡି.ଜି., କିମିତି ଅଛନ୍ତି ?''

''ଖୁବ୍ ଭଲ ସାର୍ । ସେ କହୁଥିଲେ ଆପଣ ବି.ଏସ୍.ଏଫ୍. କୁ ଡେପୁଟେସନ୍‌ରେ ଗଲାବେଳେ ତାଙ୍କ ଅଧୀନରେ ଥିଲେ କିଛିଦିନ, ହାଇଦ୍ରାବାଦ ଗଣ୍ଡଗୋଳ ଯୋଗୁଁ ବିଦାୟ ନବା ପୂର୍ବରୁ । ସେ କହୁଥିଲେ ସେ ଆପଣଙ୍କୁ ଖୁବ୍ ଭଲଭାବରେ ଜାଣନ୍ତି ଆଉ ଆପଣ ଜଣେ ରାଜନୈତିକ ବିଚକ୍ଷଣତାପୂର୍ଣ୍ଣ ସୁତୀକ୍ଷ୍ଣ ଅଫିସର୍ ।''

''ଓ !''

''ଆଉ ସେ କହୁଥିଲେ ସାର୍, ଯେକୌଣସି ମୁଖ୍ୟମନ୍ତ୍ରୀ ନିଜର ପ୍ରତିରକ୍ଷା ପାଇଁ ଆପଣଙ୍କ ପରି ଅଫିସର୍‌ଟିଏ ପାଇଲେ ଅତ୍ୟନ୍ତ ଖୁସୀ ହେବେ, କାରଣ କେବେ ତାଙ୍କ ଜୋତାକୁ ବି ମଇଳା ହବାକୁ ଦେବେନି ସାର୍, ଆପଣଙ୍କ ଜିଭ ବିନ୍ଧିଲେ ବି । ଯାହା ବି ହଉ ଆପଣ ବିଶ୍ୱସ୍ତତାରେ ମହାନ୍ । ଆଉ ଆପଣ ଖୁବ୍ ଚିକ୍କଣ ସାର୍, ଭାରି ସୁନ୍ଦର ଅଫିସର୍ ସାର୍ ।''

''ଆଃ । ସେ ଏତେ କଥା ସବୁ କହିଚନ୍ତି ନା କଣ । ଏଇଟା ତାଙ୍କର ଭଲ ଗୁଣ ।''

''ଆଉ ଆପଣଙ୍କୁ ଜଣାଇଦେବାକୁ କହିଚନ୍ତି ସାର୍, ତାଙ୍କ ନିଜ ପକ୍ଷରୁ ଖୁବ୍ ଆନ୍ତରିକଭାବେ, ସାର୍, ତାଙ୍କ ନିଜ ଭାଷାରେ, ସାର୍, ଆପଣଙ୍କ ସୁନ୍ଦର ବହୁଧର୍ଷିତ ନାକକୁ ମୋ ବ୍ୟାପାରରୁ ବାହାରେ ରଖିବାକୁ ସାର୍ । ଧନ୍ୟବାଦ ସାର୍ । ଗୁଡ୍ ଡେ ସାର୍ ।''

''ରୁହ, ରୁହ ।''

ମଲହୋତ୍ରା ସାଲ୍ୟୁଟ କଲେ, ବୁଲିପଡ଼ିଲେ, ଆଉ ଯିମିତି ଆସିଥିଲେ ସିମିତି ଚାଲିଗଲେ ।

''କଣ ସେ କହିଲା କଣ ସେ କହିଲା ?'' ସେ ନିଜେ ଗୁଣୁ ଗୁଣୁ ହେଲେ । ''ମୁଁ ସ୍ପଷ୍ଟ ଭାବରେ ଶୁଣିପାରିଲିନି । ସେ ମୋ ନାକ କଥା କହିଲା କି ? ମୋ ନାକରେ ତ ବିଶେଷ କିଛି ହୁଏନି । ନାକ କଥା କାହିଁକି କହିଲା ? କି କାମରେ ବା ଲାଗୁଚି ନାକ ? ବେଳେବେଳେ ଅବଶ୍ୟ... ।''

ମାଗୀ ତାକୁ ନିଘଞ୍ଚ ଝାଉଁବଣ ଭିତରକୁ ଗୋଡ଼େଇନବାକୁ କାମ୍‌ଦାକୁ ସୁଯୋଗ ଦେଇଥିଲା । ଫାଳିକିଆ ଜହ୍ନଟା ବାହାରିଥିଲା ଆଉ ଅନ୍ଧାରରେ ସେ ପରୀ ଭଳିଆଃ ଦିଶୁଥିଲା । ସମୁଦ୍ରର ଗର୍ଜନ ଏବେ ତାଙ୍କ ପାଖକୁ ଗଡ଼ିଆସୁଥିଲା କାନକୁହା କଥାର

ଅସ୍ପଷ୍ଟ ଶବ୍ଦ ପରି । ସେ ବାଲିରେ ଗୋଡ଼ ବୁଢ଼ାଆଙ୍ଗୁଠିରେ ଗାର କାଟୁଥିଲା ବେଳେ ତା ଦେହରୁ ମୃଗନାଭିର ଗନ୍ଧ ବାହାରୁଥିଲା ।

''ତୁ ମତେ ବହୁତ ଚାହୁଁ, ନାରେ ?'' ସେ କାମ୍‌ଦାକୁ ପଚାରିଲା ।

ସେ ଗହଳ ଝାଉଁବଣ ମଝିରେ ଗୋଟିଏ ପ୍ରାୟ ପରିଷ୍କାର ଚକଡ଼ାରେ ଠିଆ ହେଇ ଯାଇଥିଲା ।

''ତୁ ତ ଜାଣୁ,'' କାମ୍‌ଦା ଜବାବ ଦେଲା । ''ହେଲେ ତୁ ସବୁବେଳେ ମୋ ଠୁଁ ଦୂରେଇଯାଉଚୁ ।''

''ତୁ ତ ବି ଏତେ ବେଶୀ ଚେଷ୍ଟା କରିନୁ,'' ସେ କହିଲା ।

''ତୁ ମୋ ଛୁଆର ମା'ହବାକୁ ମୋ ଇଚ୍ଛା,'' ସେ କହିଲା । ''ସେ ବୁଢ଼ାକୁ ଛାଡ଼ିଦେ ଆଉ ମୋ ପାଖୁକୁ ଚାଲି ଆ' ।''

''ତୁ ମତେ ବେଦିରେ ବସେଇ ବାହାହବୁ ?''

''ହଁ ତ ।'' ସେ ତାକୁ ଟାଣିଆଣି କୁଣ୍ଢେଇ ଧରିଲା ।

''ମତେ ଡର ଲାଗୁଚି ।''

''ଡରନା ।''

''ତୁ ଶୋଇପଡ଼ ।''

ସେ ଶୋଇପଡ଼ିଲା । ମାଗୀ ଦି ଗୋଡ଼କୁ ତା ଦୁଇପଟେ ରଖି ତା ବ୍ଲାଉଜ ଭିତରୁ ମାଛକଟା ଛୁରୀଟିଏ ବାହାର କରି କାମ୍‌ଦାର ବେକରେ ଲଗେଇ ରଖିଲା ।

''ଆରେ ? ୟେ କଣ ?'' ସେ ଛାଟିପିଟି ହବାକୁ ଚେଷ୍ଟା କଲା, କିନ୍ତୁ ଛୁରୀର ମୁନ ତା ଘଣ୍ଟିକାରେ ଖେଞ୍ଚି ହେଇଥିଲା ।

''ତୁ ଯଦି ଠିଆହବାକୁ ଚେଷ୍ଟା କରିବୁ ମୁଁ ଏଇଟାକୁ ସିଧା ପୂରେଇ ଦେବି ।''

''ହେ ଭଗବାନ୍ ! ତୁ ଯେତେବେଳେ ମତେ ଏଠିକି ତତେ ଗୋଡ଼େଇବାକୁ ଦେଲୁ ମୁଁ ଜାଣିଥିଲି କିଛି ଗୋଟାଏ ଗଣ୍ଡଗୋଳ ହେଇଗଲା ।''

''ମତେ କହ ସେ ଲୋକଟାକୁ ମାରିବାକୁ କିଏ ଚେଷ୍ଟା କରିଥିଲା ?''

''କୋଉ ଲୋକ ?''

''ଦି' ମାସ ତଳେ ସ୍ମଗ୍‌ଲର୍‌ମାନଙ୍କର ଟ୍ରଲର୍ ଏଠିକି ଆସିଥିଲାବେଳେ ରଙ୍ଗୁ ଯୋଉ ଲୋକକୁ ପାଇଥିଲା । କିଛି ନ ଜାଣିଲା ପରି ଆଉ ଡ୍ରାମା କରନା ।''

''ମୁଁ କିଛି ବି ଜାଣିନି, ସତରେ ମୁଁ ଜାଣିନି ।''

ସେ ଛୁରୀକୁ ଆଉଟିକେ ଭିତରକୁ ପେଲିଲା । ଚମଡ଼ା ଛିଣ୍ଡିଗଲା ଆଉ ରକ୍ତର ସରୁ ଧାରଟିଏ ବହିଆସିଲା । କାମ୍‌ଦା ଭୟରେ ଜାକି ହେଇଗଲା । ମାଗୀ ଛାତି ଡେଇଁଉଠିଲା । ତା ଜୀବନରେ ସେ ଇମିତି କେବେବି କରି ନ ଥିଲା । ପ୍ରତାରଣା ତା' ଚରିତ୍ରଗତ ନୁହେଁ ଆଉ ଏଇଟା ତା ନିରପେକ୍ଷ ଭାବନାକୁ ବିରକ୍ତ କଲା, କିନ୍ତୁ ସେ ଜାଣିଥିଲା ଯାହା ସେ କରୁଚି ତା ସେ ନିଶ୍ଚୟ କରିବ, ତାକୁ କରିବାକୁ ହିଁ ହବ । କ'ଣ ଯେ ବାଧ୍ୟବାଧକତା ତାକୁ ଅକ୍ତିଆର କରିଥିଲା ସେ ଜାଣି ନ ଥିଲା, କିନ୍ତୁ ସେ ଯାହାବି ହଉନା କାହିଁକି, ତାର ଭାବନା ଏ ଦେଶର ଦୁର୍ନୀତିଗ୍ରସ୍ତ ରାଜନୈତିକ ଗୁଣ୍ଡାଙ୍କ ପୃଥିବୀରେ ଅସହାୟମାନଙ୍କର ନିଷ୍ଠୁର କର୍ଷଣ ବିରୋଧରେ ତାର ଉତ୍ତେଜିତ ସଚେତନାର ପୂର୍ଣ୍ଣ ସମର୍ଥନ ପାଇଥିଲା । ଅଯତ୍ନରେ ପାଳିତ ହେଇ ଏ ପୃଥିବୀରେ ପରିତ୍ୟକ୍ତ ହବା ଜନିତ ତାର ନିଜସ୍ୱ ଯନ୍ତ୍ରଣା ବି ଏଥେରେ ଜଡ଼େଇ ହେଇଥିଲା । ପ୍ରଜନିତ ଆଉ ପରିତ୍ୟକ୍ତ । ଜନ୍ମ ହେଇ ଫୋପଡ଼ାଯାଇଥିଲା ସେ ।

''ମତେ କହ କାମ୍‌ଦା,'' ସେ କଠିନ ସ୍ୱରରେ କହିଲା । ''ମତେ କହ ଆଉ ମୁଁ ତତେ ଛାଡ଼ିଦେବି । ଏମିତିକି ମୁଁ ତତେ ଭଲ ବି ପାଇବି ।''

''ଛୁରୀଟା କାଢ଼ିନେ, ମୋର ରକ୍ତ ବୋହିଲାଣି ।''

''କହ ମତେ କିଏ ଥିଲେ ସେମାନେ ।''

କାମ୍‌ଦାକୁ ଲାଗିଲା କି ଛୁରୀଟା ଆଉଟିକେ ଭିତରକୁ ପଶିଗଲା । କାମ୍‌ଦା ସ୍ମଗଲର୍‌ମାନଙ୍କର ଖୁବ୍ ବିଶ୍ୱସ୍ତ କର୍ମୀଟିଏ ଥିଲା, କିନ୍ତୁ ତାର ଦରକାର ନ ଥିବା ଜିନିଷ ପାଇଁ ସେ ନିଜ ଚମଡ଼ାକୁ ନଷ୍ଟ କଲାପରି ଲୋକ ନ ଥିଲା । ତା ନିଜ ମଙ୍ଗଳ ହିଁ ତାକୁ ସବୁଠୁ ଗୁରୁତ୍ୱପୂର୍ଣ୍ଣ ଲାଗୁଥିଲା ।

''ଠିକ୍ ଅଛି, ଠିକ୍ ଅଛି,'' ସେ କହିଲା । ''ତୁ କଣ ଜାଣିବାକୁ ଚାହୁଁଚୁ ?''

''ସେ ଲୋକଟା କିଏ ?''

''ମୁଁ ଜାଣିନି, ରାଣ, ମୁଁ ଜାଣିନି । ମୁଁ ଜାଣିଚି ସେମାନେ ତାକୁ ଟ୍ରଲର୍‌ରେ ଆଣିଥିଲେ କାହିଁକିନା ମୁଁ ତାଙ୍କ ପାଖକୁ ଡଙ୍ଗାରେ ଯାଉଥିବାବେଳେ ଦେଖିଲି ସେମାନେ ତାକୁ ସମୁଦ୍ର ଭିତୁରୁକୁ ଫିଙ୍ଗିଦେଲେ । ମୁଁ ଟ୍ରଲର୍ ପାଖେରେ ପହଞ୍ଚିଲାବେଳୁକୁ ସେ ଭାସିଗଲାଣି ।''

''ସେ ଲୋକଗୁଡ଼ା କିଏ ଥିଲେ ?''

କାମ୍‌ଦା ଚୁପ୍ ରହିଲା ।

''କହ ମତେ,'' ମାଗୀ ଚପାଗଳାର ଦୃଢ଼ ସ୍ୱର ଥିଲା ଶାନ୍ତ ଓ ଭୟଙ୍କର । ଛୁରୀଟା ଲାଗୁଥିଲା ଯିମିତି ନିଃଶ୍ୱାସ ଅବରୋଧୀ ମହଣେ ଓଜନର ଅଚଳ ଲୁହା ।

''ତିନିଜଣ ଥିଲେ । ତାପସ କର୍ମକାର, ରାମ ଜେନା ଆଉ ଚିନୁ ପୃଷ୍ଟି । ରାମ ଆଉ ଚିନୁ ମହାସ୍କନ୍ଧବାବୁଙ୍କ ଲୋକ । ପାରାଦ୍ୱୀପରେ ରହନ୍ତି । କର୍ମକାର କଲିକତାରୁ ଅଣାହେଇଥିଲା ବୋଧେ ।''

''ସେମାନେ କାହିଁକି ତାକୁ ମାରିବାକୁ ଚାହିଁଥିଲେ ?''

''ମୁଁ ଜାଣିନି । କିନ୍ତୁ ଅନୁମାନ କଲି ଏଇଟା ସେମାନଙ୍କ ମାଲିକ ମହାସ୍କନ୍ଧ ବିଶ୍ୱାଳ ଆଦେଶ ଦେଇଥିବେ । ସେ ଗୋଟାଏ ବିରାଟ ଲୋକ । ଓଡ଼ିଶାର ସମୁଦ୍ରକୂଳରେ ଯେତେସବୁ ଏମିତିକା କାମ ସେ ନିୟନ୍ତ୍ରଣ କରନ୍ତି । ତାଙ୍କ କହିବା ବିନା କେହି ଜଣେ ବି ଏ ବେପାରରେ ନାକ ବି ପୂରେଇପାରିବନି । ସେ ଭୁବନେଶ୍ୱରର ଟଙ୍କପାଣି ରୋଡ଼ରେ ରହନ୍ତି । ସେଠି ତାଙ୍କର ଗୋଟାଏ ବଡ଼ ଘର ଅଛି । ମୁଁ ଦେଖିଚି, ଯଦିଓ ମୋର ସେଇଟା ଦେଖିବା କଥା ନୁହଁ । ତାଙ୍କୁ କିନ୍ତୁ ଦେଖିନି ଏଯାଏଁ । ତୁ ଭବାନୀବାବୁଙ୍କୁ କାହିଁକି ପଚାରୁନୁ ? ସେତ କିଛି ହେଲେ ଜାଣିଥିବେ ।''

''ତୁ ମତେ ସବୁ କଥା କହୁଚୁତ ?''

''ଅବଶ୍ୟ, କାନକୁହା କଥା । ଦେଖେ, ପୂରା ଗୁଜବ ହେଇପାରେ, କିନ୍ତୁ ସମସ୍ତେ ଫୁସୁରୁଫାସର ହଉଚନ୍ତି ଯେ ବିଶ୍ୱାଳ ଆଉ ମୁଖ୍ୟମନ୍ତ୍ରୀଙ୍କ ଭିତେରେ ଯୁଦ୍ଧ ଚାଲିଚି ।''

''ସେଇଠୁଁ ?''

''ଆଉ ଆମ ଏମ୍.ଏଲ୍.ଏ. ଗୁଣନିଧି ସେ ଲୋକର କାଗଜପତ୍ର ସଫେଇତି କରୁଚି । ସେ ବି ଏ ସ୍ମଗ୍‌ଲିଂ ଧନ୍ଧାକୁ ହାତେଇବାକୁ ଭାରି ଜୋର ଲାଗିଚି । ତେଣୁ କେହିବି ହେଇପାରେ, ବିଶ୍ୱାଳ, ମୁଖ୍ୟମନ୍ତ୍ରୀ ନ ହେଲେ ଗୁଣନିଧି । ସବୁ ନିର୍ଭର କରୁଚି ସେ ଲୋକଟା କିଏ ତା ଓପରେ ।''

''ଏ ସବୁ କଥା ତ ମୁଁ ଆଗୁରୁ ଜାଣିଚି ।''

''କଥା ତ ଏତିକି ।''

''ପୂରା ?''

''ହଁ, ପୂରା ।''

''କାରଣ ଯଦି ତା ନ ହେଇଥାଏ, ତା'ହେଲେ ପୃଥିବୀଟା ଏତେବଡ଼ ଜାଗା ନୁହଁ ଯେ ତୁ ମୋଠୁଁ ଖସିଯିବୁ । ମୁଁ ତତେ ଧରିବି ଆଉ ତୋଟି କାଟି ଦେବି ।''

ମାଗୀ ତା ନିଃଶ୍ୱାସ କିଛି ମୁହୂର୍ତ୍ତ ଧରିରଖିଲା, ଛୁରୀଟା ଗବ୍‌କରି ବେକ ଫୁଟେଇ ପଶିଯିବା ବା ଧୀରେ ଉଠେଇଆଣି କାମ୍‌ଦାକୁ ଛାଡ଼ିଦବା ସମ୍ଭାବର୍ନାମାନଙ୍କ ମଝିରେ ଝୁଲନ୍ତା ଭାବରେ । ମୁହୂର୍ତ୍ତେ, ଆଉ ସେ ତା ଛୁରୀ ଉଠେଇ ନେଲା । ଆଗକୁ ନଇଁପଡ଼ି

ସେ କାମ୍‌ଦା ବେକରୁ ରକ୍ତ ଚାଟିଦେଲା ଆଉ ସେ କ୍ଷତରେ ଆକଣ୍ଠ ଚୁମା ଦେଲା । କାମ୍‌ଦାର ହଠାତ ମନେହେଲା ଯିମିତି ମାଗୀ ଯାହା ବି କରୁଥାଉ ନା କାହିଁକି ଠିକ୍ ହିଁ କରୁଚି । ହଠାତ୍ ତା ଭିତେରେ ସହୃଦୟତାର ଗୋଟାଏ ଉଚ୍ଛ୍ୱାସ ଦେଖାଦେଲା । ସେ ତା ପ୍ୟାଣ୍ଟ୍ ଅଣ୍ଟା ଓପରକୁ ଟାଣୁ ଟାଣୁ ଏସବୁ ଠିକ୍ ଭାବରେ ବୁଝି ପାରୁ ନ ଥିଲା । କିନ୍ତୁ ବିଶ୍ୱାସର ବଢ଼ିପାଣି ତା ଭିତରକୁ ମାଡ଼ିଆସିବାର ଅନୁଭବ କରୁଥିଲା ।

ମୁହୂର୍ତ୍ତକ ଭିତେରେ ମାଗୀ ଗଛର ଅନ୍ଧାରରେ ମିଶିଗଲା । ଗଛ ଆଡୁଆଳରେ ଲୁଚି ଲୁଚି ଅନ୍ତବାଟ ଯାଇଚି କି ନାହିଁ ସେ କାହାର ଚପାକଣ୍ଠ ଶୁଣିଲା । ସାଙ୍ଗେ ସାଙ୍ଗେ ସେ ଗୋଟାଏ ବୁଦା ମୂଳରେ ବାଲିକଙ୍କଡ଼ା ପରି ଚୁପ୍‌ଚାପ୍ ଛପିଗଲା । ଖୁବ୍ ଶୀଘ୍ର ସେମାନେ ପାଖେଇ ଆସୁଥିବାବେଳେ ସେ ତା ରକ୍ଷକ ମୁର୍ମୁର ମଦୁଆ କଣ୍ଠ ଓ ଅନ୍ୟ ଗୋଟିଏ କଣ୍ଠସ୍ୱରକୁ ବାରିପାରିଲା । ମୁର୍ମୁ ଉପଯୁକ୍ତଭାବେ ମଦୁଆ ସ୍ଥିତିରେ ଥିଲା ।

''ସରକାରୀ ଲୋକକୁ ମୁଁ କାହିଁକି କ'ଣ କହିବି ? ଆମପେଇଁ ସରକାର କଣ କରିଚି, ମତେ କୁହ । ନାଇଁ କୁହ, କହୁନ । ଆମେ ଲୁଗା ପିନ୍ଧୁଚେ ଯେ ଆଣ୍ଠୁ ଲୁଚୁନି, ଦେଖ ! ମାଙ୍କଡ଼ ଥିଲାବେଳେ ଯାହା ପିନ୍ଧୁଥିଲୁ ସେଇଆ । ଯୋଉ ପଚା ମାଛ ଆଉ ବଗଡ଼ାଚାଉଳ ଭାତ ଲକ୍ଷେ ବର୍ଷ ହେଲା ଖାଉଥିଲୁ ସେଇଆ ଖାଉଚୁ । ଯୋଉ କାଠଗଣ୍ଡି କୁଣ୍ଢେଇ ଖରା ବର୍ଷା ଝଡ଼ବତାସ ନ ମାନି ସମୁଦ୍ର ଭିତୁରୁକୁ ଖେଦୁଥିଲୁ ସେଇମିତି ଯାଉଚୁ ଏବେ ମିଶା, ଡଙ୍ଗା ନାହିଁ କି ଫଙ୍ଗା ନାହିଁ କୋଟିଏ ବର୍ଷ ହେଲା । ସରକାର କ'ଣ କରିଚି ? କାହିଁମ ସରକାର ? ସରକାରଟେ କାହିଁକି ଅଛିମ ? ମୁଁ ଶଳା ଟୋପାଏ ବି ତାଡ଼ି ପିଇନି ଆଉ ମୋ ଟୋକି ଏଠିକି ଧପାଲିଆସିଚି । ସରକାର କ'ଣ କରୁଚି ? ପିଚା ଘୋଷାରୁଚି ବାଲିରେ ? ଆଉ ଆମେ କୋଉଠି ରହୁଚୁ, ତମେ ମତେ କୁହ ? ତମେ ଦେଖିଚ ଆମେ କୋଉଠି ରହୁ ? ବୁଦା ଭିତରେ ଗୋଧି ରହିଲା ପରି । ତାଳପତ୍ର ଛପର ଆଉ ଝାଟିମାଟି କାନ୍ଥ । ଚିଡ଼ିଆଖାନାର ଜନ୍ତୁମାନେ ଏମିତି ରହନ୍ତି କି ? କହୁଚ କ'ଣନା ସରକାର । କାହିଁ ସେ ସରକାର ?''

''ଚୁପ୍ !'' ତା ସାଙ୍ଗେ ଥିବା ପ୍ୟାଣ୍ଟ୍ ସାର୍ଟ ଓ ଜୋତା ପିନ୍ଧିଥିବା ଲୋକଟି କହିଲା । ''ସେମାନେ ଏଇବାଟେ ଯିବାର ତମେ ନିଜେ ଦେଖିଚ ?''

''ହଁ, ନିଜ ଆଖିରେ ଦେଖିଚି,'' ମୁର୍ମୁ ଦୃଢ଼ଭାବରେ କହିଲା । ''ମୁଁ ସେଠି ସେ ବୁଦା ପଛରେ ରାସ୍ତାକଡ଼ରେ ଖାଲି ମଦବୋତଲ ଧରି ବସିଥିଲି କି ନାହିଁ ? ଆଉ ୟାକୁ କହୁଚି କ'ଣନା ସରକାର, ଏତେ ଟୋପାଏ ମଦ ଦେଇପାରୁନି । ଆହାରେ ସ ର କା ର !''

''ଭାଗ୍ ତୁ ଘୋଡ଼ା ମଦୁଆ,'' ଲୋକଟା ସାପ ପରି ଫଁ ଫଁ ହେଇ କହିଲା । ''ମୋର କାମ କରିବାକୁ ଅଛି ।''

''ଦିଅ କିଛି ପଇସା, ଟୋପାଏ ଆଣିବା ।''

''ଯା ଶଳା, ନ ହେଲେ ଏଇଠି ଜିଅନ୍ତା ଛାଲ ଉତାରି ଦେବି ତୋର !''

''ତମେ ମତେ ଯିବାକୁ କହୁଚ ?''

''ହଁ । କଣ ଶୁଭୁନି କିରେ ?''

''ଯେ କଣ ତମେ କହୁଚ ? ମୁଁ ଜମା ବୁଝିପାରୁନି ! ମୁଁ ହେଲି ଜନତା, କି ନାହିଁ ? ଲୋକ, ଲୋକ । ତମେ ହେଲ ସରକାର, ନା ନାହିଁ ? ତମେ କିମିତି ମତେ ପଳେଇଯିବାକୁ କହିବ ? ତମର ମୋ ଦୁଃଖ ଶୁଣିବା କଥା କି ନାହିଁ ? ମୁଁ ତମୁକୁ ଭୋଟ ଦେଇପାରିବି । ମୁଁ ଯଦି ତମୁକୁ ଭୋଟ ନ ଦେବି ତମେ ଯିବ କୁଆଡ଼େ ? ସବୁଥର ତମେ ମତେ ମାଗଣାରେ ମଦ ଦିଅ କି ନାହିଁ ତମକୁ ଭୋଟ ଦବାକୁ ? ତମେ ମତେ ପଳେଇଯିବାକୁ କିମିତି କହୁଚ ? ତାଛଡ଼ା ମୁଁ ଯିବି କୁଆଡ଼େ ?''

''ଯୋଉଠିକି ଇଚ୍ଛା ଯା' । ସମୁଦ୍ରକୁ ଡେଇଁପଡ଼ । ଖାଲି ଏଠୁ ପଳା ।''

''ତମେ ଲୋକଙ୍କୁ ପଳେଇଯିବାକୁ କହୁଚ ? ତା'ହେଲେ ତମେ କାହା ଉପରେ ହୁକୁମ ଚଳେଇବ, କୁହତ ଦେଖି ମତେ । ଦେଖରେ ଯାକୁ, ଲୋକଙ୍କୁ ଖେଦୁଚି ହେ ! ମତେ ଖେଦୁଚି । ଶଳା ମୁଁ ପରା ଜନତା !''

''ଚୋପ୍ !''

''ଚୋପ୍ ମାନେ ? ତମେ ସିମିତି କହିପାରିବନି । ତମେ ଲୋକଙ୍କୁ ଚୋପ୍ ଫୋପ୍ କହିପାରିବନି । ଏଇଟା ବଡ଼ ଦୁଃଖର କଥା, ଦୁଃଖର କଥା ମୁଁ କହୁଚି ତମକୁ, କି ଗ୍ରହାଚାର ! ଦୁଃଖ ଆଉ ଖରାପ । ହଉ ହେଲା ହେଲା, ରୁହ, ରାଗନି, ମତେ ବାଡ଼ାଅନି । ତମେ ହେଲ ମୋ ସରକାର କି ନାହଁ ? ଖାଲି ମୋର ଗୋଟିଏ ପ୍ରଶ୍ନର ଉତ୍ତର ଦିଅ ମୁଁ ପଳେଇବି, ଗୋଟିଏ ଛୋଟ ପ୍ରଶ୍ନ ।''

''କ'ଣ ?''

''କ'ଣ କ'ଣ ?''

''ତୋର ସେ ପ୍ରଶ୍ନଟା କଣ ?''

''ଓଃ ମୋ ପ୍ରଶ୍ନ । ଠିକ୍ ଅଛି, ମୋ ପ୍ରଶ୍ନ । ଏବେ ତମେ ମନ ଦେଇ ଶୁଣ । ମତେ କୁହ ତମେ ବାହାହେଇଚ ?''

"ତୋର ସେଥିରୁ କଣ ଗଲା ?"

"ନା ନା ରାଗନି । ଖାଲି ମତେ କୁହ, ତମେ ବାହାହେଇଚ ?"

ସି.ବି.ଆଇ. ଡି.ଏସ୍.ପି. ମହାରାଜ ମଲହୋତ୍ରା ଗୋଟିଏ ଲମ୍ବା ନିଃଶ୍ୱାସ ଟାଣିଲେ ଓ କହିଲେ : "ହଁ ।"

"ଆହା ! ମୁଁ ଜାଣିଥିଲି । ଏମିତି କଥା କି ? ପିଲାପିଲି ?"

ମଲହୋତ୍ରା ମୁର୍ମୁକୁ ଗାରେଡ଼େଇ ଚାହିଁଲେ ।

"ବିରକ୍ତ ହୁଅନି, ନା ! ମୁଁ ଭଲରେ ପଚାରୁଚି । ଏଇଟାକୁ କହନ୍ତି ଖୁସିବାସି ନା କ'ଣ ? ମାଇପ ଆଉ ପିଲାପିଲିଙ୍କ ବିଷୟରେ ପଚାରିବା । ମାଇପ କୋଉ କାମର ହେଇ ନ ଥାଉ ପଛେ, ହେଲେ ତଥାପି..."

ମଲହୋତ୍ରା ତାଙ୍କ ମାଂସଳ ହାତ ଉଠେଇ ଚଟାକ୍‌କରି ମୁର୍ମୁ ବୁଢ଼ାର ଗାଲରେ ଗୋଟାଏ ମସ୍ତ ଚାପୁଡ଼ା କଷିଦେଲେ ଯେ ମୁର୍ମୁ ମୋଡ଼ିହେଇ ପଡ଼ିଗଲା ଆଉ ଧକେଇ ଧକେଇ ଆଣ୍ଠେଇ ଚାଲିଗଲା ।

ମାଗୀ ବୁଦା ଆଢୁଆଳରେ ଜାକିଜୁକି ହେଇ ବସି, ତା ଛୁରୀଟା ବାହାର କରିବାକୁ ଲାଗିଲା, କିନ୍ତୁ ପୁଣି ନିଜକୁ ନିଜେ ହସି ତା ମନ ବଦଳେଇଦେଲା, ଆଉ ଅନ୍ଧାର ଭିତେରେ ମିଳେଇଗଲା । ମାଗୀ ମୁର୍ମୁର ସ୍ୱର ଶୁଣିଲା ଆଉ ନିଜକୁ ନିଜେ ଉଠିବାକୁ ଚେଷ୍ଟା କରୁଥିବାର ଦେଖିଲା ।

"ଓ ମା ଓ ମା ଓ ମା," ମୁର୍ମୁ ବାଲିରେ ଗାଲ ଆଉଁଶି କାଜୁଡାଳ ଆଡ଼େଇ ଘୁଷୁରି ଘୁଷୁରି ଯାଉଥିଲାବେଳେ କୁନ୍ଥୋଉଥିଲା । ସେ ଲାଇଟ୍ ହାଉସ୍‌ର ଆଲୁଅକୁ ଦେଖିଲା । ସେଇଟା ବୁଲୁଥିଲା, ବୁଲୁଥିଲା ଆଉ ବୁଲୁଥିଲା ।

"ଓ ମା ଓ ମା ଓ ମା," ମୁର୍ମୁ ଆଉଥରେ ବିଥେଇ ହେଲା ।

ଏବେ ତା ପେଟରେ ଗୋଟାଏ ଭାରୀ ଜିନିଷ ପେଷି ହେଇଗଲା ପରି କଷ୍ଟ ହଉଥିଲା । ସେ ଭାବିଲା ତାଡ଼ି ତା ପେଟକୁ ଖାଇବାକୁ ଆରମ୍ଭ କଲାଣି । ସେ ଭୋକିଲା ଥିଲା । ତାର ହଠାତ୍ ଖାଇବାକୁ ଇଚ୍ଛା ହେଲା ମସଲାଦିଆ ତହ ତହ ତାତିଲା ମାଂସ ତରକାରି, ଯୋଉଥିରେ ଥିବ ପ୍ରଚୁର ଝୋଳ ଆଉ ନଳିହାଡ଼, ଯୋଉଥିରୁ ସେ ଶୋଷି ଶୋଷି ଶସ କାଢ଼ି ଖାଇବ ଆଉ ପିଆଜକୁ ଲୁଣରେ ମଡ଼େଇ ରାସୁ ରାସୁ କରି ଚୋବେଇ, ସ୍ୱାଦକୁ ସମତୁଲ କରିବାକୁ ଟିକେ ଆଚାର ଚାଟି, ଥାଳିଏ ଭାତ ଆଉ ଟିକିଏ ମିଠା ଖାଇବ । ତାକୁ ଲାଗିଲା ସେ ଦି' କିଲୋମିଟର ଦୂରରେ ଥିବା କୋଣାର୍କକୁ ଚାଲିଚାଲି ଯାଉଚି ଓ ଡୁମ୍‌ଡୁମାର ଛପର ହୋଟେଲରେ ଖାଉଚି ।

ଡୁମ୍‌ଡୁମା ଥିଲା ମାଇଚିଆ ଆଉ ଭଲ ରୋଷେୟା । ତା ଚାଳିଆ ରେଷ୍ଟୁରାଣ୍ଟ୍ ମନ୍ଦିର କାଛରେ ଉତ୍ତର ପୂର୍ବ ଦିଗରେ ଥିଲା, ଯୋଉଥିରେ ପର୍ବପର୍ବାଣି ହଉ କି ନ ହଉ ସବୁବେଳେ ଲୋକ ଭରପୂର ରହୁଥିଲେ । ସେ ଆଜିକାଲି ମାଗୀର ମାଛ କିଣୁଥିଲା । ବୋଧେ ସେ ମୁର୍ମୁକୁ ଆସନ୍ତାକାଲିର ମାଛ ବଦଳରେ ଗୋଟିଏ ବଣ୍ଡ ଖାଇବାକୁ ଦେଇପାରେ । ମାଗୀ ରାଗିପାରେ ବା ଗାଳିଦେଇପାରେ, କିନ୍ତୁ କିଏ ପଚାରୁଚି, ସେ ଭାବିଲା ।

''କିଏ ବେ ସେଇଟା ? ଓଃ !'' ସବ୍‌ଇନ୍‌ସିପେକ୍‌ଟର୍ ଭବାନୀ ଦାସ ମାଗୀକୁ ଏ ଅସମୟରେ ଦେଖି ଆଶ୍ଚର୍ଯ୍ୟ ହେଇ ଠିଆ ହେଇଗଲେ । ''ମୋ ଘରକୁ ତୁ ଏ ଅବେଳରେ କାହିଁକି ଆସିଚୁ ? ମାନେ, ଅବଶ୍ୟ... ।''

''ଆଜି ରାତିରେ ତମେ ଟିକେ ଅଧିକା ପିଇଦେଇଚ, ପିଇନ ?''

''ତୋର ସେଥିରେ କଣ ଅଛି ?'' ତାଙ୍କ ସରକାରୀଘର କବାଟ ପାଖରେ ଖାଲି ଲୁଙ୍ଗିଟିଏ ଗୁଡ଼େଇହେଇ ଠିଆହେଇ କୋଣାର୍କ ପୋଲିସ୍ ଷ୍ଟେସନ୍‌ର ସବ୍‌ଇନ୍‌ସିପେକ୍‌ଟର୍ ଭବାନୀ ଦାସ ଗଁ ଗଁ ହେଲେ । ସେତେବେଳକୁ ପାଖାପାଖି ରାତିଅଧ ଆଉ ବାହାରେ ଭୀଷଣ ବର୍ଷା ।

ମାଗୀ ତାଙ୍କ ଆଗରେ ଠିଆହେଇଥିଲା ଲାଲ୍ ଧଡ଼ି ଥିବା କଳାଶାଢ଼ିଟେ ପିନ୍ଧି । ତା କଂସାରଙ୍ଗ ମୁହଁ ଆଉ ଗୋଲାପି ଓଠରେ ସାମାନ୍ୟ ପାଣିଛିଟା ଛଡ଼ା ସେ ଆଶ୍ଚର୍ଯ୍ୟଜନକ ଭାବେ ଶୁଖିଲା ଥିଲା ।

''ତୋର କ'ଣ ଦରକାର ?'' ଭବାନୀ ପଚାରିଲେ ।

ମାଗୀ ଚୁପ୍‌ଚାପ୍ ଘର ଭିତରକୁ ପଶିଗଲା ।

''ମାନେ...,'' ଭବାନୀ ବିବ୍ରତ ଓ ଅବ୍ୟବସ୍ଥିତ ଥିଲେ । ଜଣେ ପୋଲିସ୍‌ବାଲା ସାଙ୍ଗେ ଏମିତି କେହି ବ୍ୟବହାର କରନ୍ତିନି । ଏମିତି ସାଧାରଣତଃ ହୁଏନି । ''ଯାର ଅର୍ଥ କ'ଣ ? ତୁ ରାତିଅଧରେ ଆସି ପହଞ୍ଚିଚୁ । ଏଇଟା ରାତି ଅଧ ନା ନାହିଁ ? ଅନ୍ତତଃ ମୁଁ ତ ସେଇଆ ଭାବୁଚି । ଆଉ ଏଣେ ମୂଷଳ ଧାରାରେ ବର୍ଷା ହଉଚି, ଆଉ ତୁ ନିଆଁଭଳିଆ ଶୁଖିଲା, ଆଉ ମୁଁ କବାଟ ଅଟକେଇ ଠିଆହେଇଚି ଆଉ ତୁ ଭିତରକୁ ପଶିଗଲୁଣି, ପୁଣି ମତେ କହୁଚୁ କଣ ନା ମୁଁ ପିଇଚି, ଆଉ ମୁଁ ଏଠି ଏକୁଟିଆ ରହୁଚି କାରଣ ମୋ ସ୍ତ୍ରୀ ଏଭଳିଆ ବାଜେ ଜାଗାକୁ ଆସିବାକୁ ମନା କରିଦେଲା, ଆଉ ଡି.ଜି. କୋଡ଼ିଏ ହଜାରରୁ କମ୍‌ରେ ମୋ ବଦଳି କରିବ ନାହିଁ ବୋଲି କହିଦେଲା, ଆଉ ତୋ ଜାଣିବା ପାଇଁ...''

''କବାଟ ବନ୍ଦ କର । ହୁଁ । ଏଥର କିଳିଣି ଦିଅ । ହେଲା । ଏବେ ବସ ।''

''ମତେ ଅର୍ଡ଼ର ଦଉଚୁ କ'ଣ ମ ! ମୁଁ ମୋ ବାପାକୁ ବି ଶୁଣେଇଦବା ଲୋକ । ମତେ ଅର୍ଡ଼ର ଦଉଚି ! ମୁଁ ବସିବି ନାହିଁ । ମୁଁ କଣ ଗୋଟାଏ କହୁଥିଲି ? ଆଉ ମୁଁ କହିଲାବେଳେ କେହି କିଛି କହିପାରିବେ ନାହିଁ । ଏବେ ମୁଁ କ'ଣ କହୁଥିଲି ଯେ ?''

''ତମେ କୋଉ ଡି.ଜି. ବିଷୟରେ କହୁଥିଲ ଆଉ ତମ ବଦଳି ଆଉ ତମ ସ୍ତ୍ରୀ ।''

''ମୋ ସ୍ତ୍ରୀକୁ ଯା ଭିତେରେ ପୂରାନି କହୁଚି ! ତା'ର ବଦଳି ହେଇପାରିବନି । ତା'ର କିମିତି ହବ ? ସେ ମୋ ସାଙ୍ଗେରେ ଛନ୍ଦାହେଇଚି । ଖାଲି ମୋର ବଦଳି ହେଇପାରିବ । ଆଗରୁ ବଦଳି ଏସ୍.ପି. କରୁଥିଲା, ଦର ଥିଲା ଦଶ ହଜାର ଭିତେରେ । ହେଲେ ଏବେ ଶଳା ଡି.ଜି. ଏ କାମ ଛଡ଼େଇନେଇଚି, ଆଉ କୋଡ଼ିଏ ମାଗୁଚି । ଏଇଟା ଶଳା ଡକେଇତି, ଏଇଟାଇ ଶଳା ମୁଦ୍ରାସ୍ଫୀତି । ଆଉ ଦରଦାମ୍ ଠିକ୍ ରଖିବ କ'ଣ ?''

''ଦିଅନି ।''

''ଦିଅନି ମାନେ କ'ଣ ତୁ କହୁଚୁ ? ମୁଁ ତା'ହେଲେ ଭଲଜାଗାଟେ କିମିତି ପାଇବି ?''

''ଜମା ଦିଅନି । ଏଇଠି ରୁହ । ଏ ଜାଗାକୁ ଭଲପାଇବାକୁ ଆରମ୍ଭ କର ।''

''ମୋ ସ୍ତ୍ରୀ ?''

''ସତେ ଯିମିତି ତା ପାଇଁ ଭାରି ଚିନ୍ତା ।''

''ତୁ କହୁଚୁ କ'ଣ ? ମୁଁ ତା ପ୍ରତି ବିଶ୍ୱସ୍ତ ।''

''କାଲି ରାତିରେ ତମେ ଉଷାକୁ ଆଣିଥିଲ ।''

''ହେ ଭଗବାନ୍ । କ'ଣ ତୁ ଚାହୁଁ ?''

''ମୁଁ ଜାଣିବାକୁ ଚାହୁଁଚି ତମେ କାହିଁକି ଗଲାମାସ ସମୁଦ୍ରକୂଳରେ ଯୋଉ ଲୋକଟା ମିଳିଥିଲା ତା ମର୍ଡ଼ର ବିଷୟର ସବୁ କାଗଜପତ୍ର ନଷ୍ଟ କରିଦେଲ ?''

''କୋଉ ଲୋକ ? କୋଉ ମର୍ଡ଼ର ?''

''ସେଇ ଯାହାର କାଗଜପତ୍ର ନଷ୍ଟ କରିଦବାକୁ ତମେ ଡାକ୍ତରଙ୍କୁ ଧମକେଇଥିଲ ।''

''ବାହାର୍ ! ମୋ ଘରୁ ବାହାର୍ !''

''ମୁଁ ଯିବିନି ।''

''କ'ଣ ! ତୁ କୋଣାର୍କ ପୋଲିସ୍ ଷ୍ଟେସନ୍‌ର ସବ୍-ଇନ୍‌ସିପେକ୍‌ଟର୍‌ଙ୍କ କଥାକୁ ଅମାନ୍ୟ କରିବାକୁ ଚେଷ୍ଟା କରୁଚୁ ? ଦେଖ, ଦେଖ ତା ଦମ୍ଭକୁ !''

''ଦେଖିବ କିଏ ମ ? ଏଠି ମତେ ଦେଖିବାକୁ ତମ ଛଡ଼ା କେହି ନାହାନ୍ତି ।''

''ସେଇଠୁ କ'ଣ ହେଲା ?''

''ତା' ହେଲେ ?''

''କ'ଣ, କ'ଣ କରୁଚୁ ତୁ ? ତୁ ତୋ ଶାଢ଼ି କାହିଁକି କାଢୁଚୁ ? ମାନେ... ତୁ କଣ... ମୁଁ...''

''ଏବେ ମୁଁ ବଡ଼ ପାଟିରେ ଡାକ ପକେଇବି । ତମ ଘର ଚାରିପଟେ ତିରିଶଜଣ ଲୋକ ଅଛନ୍ତି । ସେମାନେ ଦୌଡ଼ିଆସିବେ । ସେମାନେ କବାଟ ଭାଙ୍ଗିଦେବେ । ଆଉ ତା'ପରେ ସେମାନେ.....'

''ରହ, ରହ । ତୁ କ'ଣ ଜାଣିବାକୁ ଚାହୁଁ ?''

''ତମେ କାହିଁକି ସେ କାଗଜପତ୍ର ସବୁ ନଷ୍ଟ କଲ ?''

''ମତେ କୁହାଯାଇଥିଲା । ମାନେ... କାହାକୁ କହିବୁନି... ମୋ ଚାକିରି ଚାଲିଯିବ... ରାଣ... ସେଇ ଏମ୍.ଏଲ୍.ଏ., ଗୁଣନିଧି, ତା ନାଁକୁ ଦେଖ, ଗୁଣର ନିଧି ! ବରଂ ଗୋଟାଏ ପାପର ହଣ୍ଡା । ସେ ମତେ ଖବର ପଠେଇଥିଲା । ଏଇଟା ଭାରି ଦରକାର, ସେ ଲୋକଟାର କେବେବି ନ ରହିବା ମୁଖ୍ୟମନ୍ତ୍ରୀଙ୍କ ପାଇଁ କି ମହାସ୍କନ୍ଧ ପାଇଁ, କାହା ପାଇଁ ଗୋଟେ, ଭାରି ଜରୁରି । କେବେବି ନ ରହିବା । ତୋ ଶାଢ଼ି ପିନ୍ଧ୍... ମାନେ... ତୁ ଯଦି ଚାହୁଁ... ମାନେ... ଯଦି...ହେ ଭଗବାନ୍ ! ତୁ ସୁନ୍ଦର । ମୋ ଲୁଙ୍ଗି ନେ'ନା । ବାପାଲୋ ! ଦୟାକରି ପାଟି କରନା । ନା...''

''ମୁଁ ପାଟି କରୁନି । ବୁଲିପଡ଼ ।''

''କ'ଣ ?''

''ବୁଲିପଡ଼ :''

''ତୁ କ'ଣ କରିବାକୁ ଯାଉଚୁ ?''

''ହଁ ଠିକ୍ ଅଛି । ଦେଖୁଚ ? ଏ ସବୁ ଖରାପ ଦାଗ ତମ ପଛପଟେ ଦେଖିପାରୁଚ ?''

''କି ଦାଗ ?''

''ଯଦି ଭଗବାନ୍ ଏବେ ଆସନ୍ତି ଆଉ ତମ ଆଖିକୁ ସିଧା ଚାହାଁନ୍ତି ଆଉ ଏଗୁଡ଼ାକ ବିଷୟରେ ତମକୁ ପଚାରନ୍ତି ତମେ କ'ଣ କହିବ ?''

''କିଏ ଆସିବ ? ଡି.ଜି. ?''

''ଭଗବାନ୍ ।''

''ଓଃ, ଭଗବାନ୍ । ଆଉ ସେ ଆସିବେ ଆଉ ପଚାରିବେ ? ମତେ ? ସେ ଆସିବେ ଆଉ ମତେ ପଚାରିବେ ? ଏଇଟା ହସକଥା । ମୋ ଲୁଙ୍ଗି ମତେ ଦେ' । ତୁ ପାଗଳୀଟା ନା କଣ ? ଭଗବାନ୍ ଆସିବେ ଆଉ ପଚାରିବେ ? ମତେ ?''

''ତମକୁ । ଯଦି ସେ ଆସନ୍ତି ଆଉ ତମକୁ ପଚାରନ୍ତି ତମେ କ'ଣ କହିବ ?''

''ଧେତ୍ ଜିଦ୍‌ଖୋର ମାଇକିନା । ଯଦି ଭଗବାନ୍ ଥାଆନ୍ତେ ତେବେ ଡି.ଜି. କଣ ବଦଳିପାଇଁ ଟଙ୍କା ମାଗନ୍ତା, ଏସ୍.ପି. କ'ଣ ତା ମାସିକିଆ ବାଣ୍ଟ ମାଗନ୍ତା, ଇନ୍‌ସିପେକ୍‌ଟର୍ କ'ଣ ତାକୁ ଅସୁଲ କରନ୍ତା, ଏମ୍.ଏଲ୍.ଏ. କ'ଣ ମଦ ଆଉ ମାଇକିନା ଯୋଗେଇବାକୁ କହନ୍ତା, ମନ୍ତ୍ରୀ କ'ଣ ତିନିମାସିଆ ବଟି ମାଗନ୍ତା, ରାଜନୈତିକ ନେତାମାନେ କଣ ଗଣହତ୍ୟା କରନ୍ତେ, ଚୋରମାନେ କ'ଣ ଚୋରି କରନ୍ତେ, ମୋ ସ୍ତ୍ରୀ କ'ଣ ମୋ ପାଖକୁ ଆସିବାକୁ ମନା କରନ୍ତା ? କାହାନ୍ତି ସେ ଭଗବାନ୍ ଯାହା କଥା ତୁ କହୁଚୁ, ଖାଲି ମତେ କହିଦେ କୋଉଠି ଆଉ ମୁଁ ଦୁନିଆର ସବୁ ଅପରାଧ ପାଇଁ, ମୋ କନେଷ୍ଟେବଲ୍‌କୁ କହିବି ତାଙ୍କୁ ଧରିଆଣି ଜେଲ୍‌ରେ ଠୁଙ୍କିଦବାକୁ ଆଉ... ।''

ମାଗୀ ଖୁସୀରେ ଉଜ୍ଜ୍ୱଳ ଦିଶିଲା । ସେ ତାଙ୍କ ଲୁଙ୍ଗି ଫେରେଇଦେଲା । ସେ ତାଙ୍କ ଆଶ୍ଚର୍ଯ୍ୟ ଓଠରେ ଚୁମା ଦେଲା । ସେ ନିଜକୁ ସଂଯତ କଲା, ଲୁଗାପଟା ପିନ୍ଧି ପକେଇଲା । ଆଉ ତା'ପରେ ସେ ଚାଲିଗଲା । ହଠାତ୍ ଭବାନୀ ଦାସ ତାଙ୍କ ଅଣ୍ଟାରେ ଲୁଙ୍ଗିଟାକୁ ଗୁଡ଼େଇଦେଇ ବାହାରକୁ ବାହାରିଗଲେ ଆଉ ମାଗୀକୁ ଅନୁଚ୍ଚ ସ୍ୱରରେ ଡାକିଲେ ''ହେ, ମୁଁ ସେ ଲୋକ ବିଷୟରେ କ'ଣ କରିବି ? ମୁଁ ତାକୁ ପୁଣି ଫାଇଲ୍‌ରେ ଭର୍ତ୍ତିକରି ଅନୁସନ୍ଧାନ ଆରମ୍ଭ କରିବି କି ?''

ମାଗୀ ଅନ୍ଧାରର ଛାଇମାନଙ୍କ ଭିତେରେ ବୁଲିପଡ଼ିଲା : ''କୋଉ ଲୋକ ? କେହି ଲୋକ ନ ଥିଲା । କିଛି ଘଟିନି ତ ।''

ଆଉ ସେ ସବ୍‌ଇନ୍‌ସିପେକ୍‌ଟର ଭବାନୀ ଦାସଙ୍କୁ ସତରେ କ'ଣ କିଛି ଘଟିଗଲା ବୋଲି ଆଶ୍ଚର୍ଯ୍ୟ ହବାକୁ ଛାଡ଼ିଦେଇ ଅଦୃଶ୍ୟ ହେଇଗଲା । ରାତି ବାରଟା ବାଜି ଦଶମିନିଟ୍ ହେଇଯାଇଥିଲା, ଭବାନୀ ଦାସ ଅସମୀଚୀନ ଭାବରେ ଆନନ୍ଦିତ ହେଇ ଯାଇଥିଲେ ଆଉ ଖୁବ୍ ନିଦୁଆ ଅନୁଭବ କରୁଥିଲେ ।

ଯେତେବେଳେ ନିମାପଡ଼ା ଏମ୍.ଏଲ୍.ଏ. ଗୁଣନିଧି ଭୂୟାଁ, ମୁଖ୍ୟମନ୍ତ୍ରୀଙ୍କ ତାଗିଦାରେ କୋଣାର୍କ ପୁଲିସ୍ ଷ୍ଟେସନ୍‌ରେ ପହଞ୍ଚିଲେ, ସେ ଖୁସୀ ବି ଥିଲେ ଆଉ ବିରକ୍ତ ବି ଥିଲେ । ଖୁସୀ ଥିଲେ, କାରଣ ଶେଷକୁ ନେତାମାନଙ୍କୁ ହିଁ ମାମଲା ସଫେଇତି କରିବାକୁ ଡକାଯାଇଥିଲା । ଆହୁରି ବି ଏ କାମ ବଦଳରେ ତାଙ୍କ ସାଙ୍ଗର ରାସ୍ତା ତିଆରି ଠିକାଟା ହେଇଯିବ ଯୋଉଥିରୁ ତାଙ୍କୁ ମୋଟା ରକମ ମିଳିଯିବ । କିନ୍ତୁ ସେ

ବିରକ୍ତ ଥିଲେ, କାରଣ ତାଙ୍କୁ ଗୋଟାଏ ଛାର ସବ୍‌ଇନ୍ସପେକ୍ଟର ସାଙ୍ଗେ କାରବାର କରିବାକୁ ପଡ଼ିଲା, ଯିଏ ନୂଆ ହେଇ ଆସିଚି ଆଉ ତାଙ୍କୁ ଦେଖା ବି କରିନି ଏଯାଏଁ ।

ସେ ଜାଣିଥିଲେ ଭବାନୀ ଦାସ ନିଷ୍ଫଳ ଭାବେ ବଦଳିଟିଏ ଚାହୁଁଚି ଯାହାର ପ୍ରତିଶ୍ରୁତି ତାକୁ ଦବାକୁ ବର୍ତ୍ତମାନ ରଘୁନାଥ ମୁଖ୍ୟମନ୍ତ୍ରୀଙ୍କ ସହ କଥାବାର୍ତ୍ତା କରିଛନ୍ତି । ତେଣୁ ଯୋଉ କଥାଟା ବାହାର କରିବାକୁ ଚାହୁଁଚନ୍ତି ତା ପାଇବା ନେଇ ତାଙ୍କର ସନ୍ଦେହ ନ ଥିଲା । ଲୋକଟା ରାଜଧାନୀ ହସ୍‌ପିଟାଲ୍‌ରେ ପହଞ୍ଚିଥିଲା ଯେତେବେଳେ, କୋଉଠୁ ତ ଗୋଟାଏ ଆସିଥିବ । କୌଣସି ସରକାରୀ ସୂଚନା ନ ନେଇ ଆସିଥିଲେ ବି ପ୍ରଭୁପାଦ ମନେ ପକେଇ ପକେଇ କହିଥିଲେ ଯେ ସେ ନିମାପଡ଼ାରୁ ଆସିଥିଲା ବୋଧେ । ନିମାପଡ଼ା ଡାକ୍ତରଖାନାର ଡାକ୍ତରଙ୍କର ବି ଠିକ୍ ମନେ ନ ଥିଲା, କିନ୍ତୁ ସେ ଭାବିଥିଲେ ଲୋକଟି ସମୁଦ୍ରରୁ ଆସିଥିଲା ହୁଏତ କୋଣାର୍କରୁ । ଦୁଇଟିଯାକ ଜାଗାରେ ସ୍ତ୍ରୀଲୋକଟିଏ ସେ ଲୋକଟିକୁ ଆଣିଥିଲା । ଏସବୁ କାଗଜପତ୍ର ସଫେଇତି କରିଦିଆ ସାରିଥିଲା । ଯାହାଫଳରେ ଏବେ ସେ ଲୋକର କାଗଜପତ୍ରରେ ଆଉ ଚିହ୍ନବର୍ଣ୍ଣ ନ ଥିଲା । ଏବେ ତାଙ୍କର କାମ ହେଲା ସେ ଲୋକଟାକୁ ମଧ ଖୋଜି ବାହାରକରି ନିଶ୍ଚିହ୍ନ କରିଦବା । ସେ ଗମ୍ଭୀର ଭାବେ କାର୍‌ରୁ ଓହ୍ଲେଇଲେ ଆଉ ବାରଣ୍ଡାରେ ଥିବା କନ୍‌ଷ୍ଟେବଲ୍ ଠାରୁ ସବ୍-ଇନ୍‌ସିପେକ୍ଟର୍‌ଙ୍କ ବିଷୟରେ ନିଶ୍ଚିତ ହେଇସାରି ତାଙ୍କ ଅଫିସ୍‌କୁ ଯାଇ ଦେଖିଲେ ଯେ ସବ୍-ଇନ୍‌ସିପେକ୍ଟର ଭବାନୀ ଦାସ ପୂର୍ବରୁ କନଷ୍ଟେବଲ୍‌ର ଇଲେକ୍ଟ୍ରିସିଆନ୍‌କୁ ଡାକି ଆଣିବାର ପ୍ରସ୍ତାବକୁ ନ ଶୁଣି, ଟେବୁଲ ତଳେ ପଶି ତାଙ୍କ ପାଦ ପାଖର କଲିଂବେଲ୍ ସୁଇଚ୍‌କୁ ନିଜେ ସଜାଡୁଚନ୍ତି । ସେ ହାତରେ ପେଚକସ୍‌ଟିଏ ଧରି ଠିଆ ହୋଇପଡ଼ିଲେ ।

''ଆଃ,'' ଗୁଣନିଧି କହିଲେ, ''ତମେ ତା ହେଲେ ଭବାନୀବାବୁ । ମୁଁ ତମର ଏମ୍.ଏଲ୍.ଏ. ଗୁଣନିଧି ଭୂୟାଁ ।''

''ସେଇଠୁ ?'' ଭବାନୀବାବୁ ବସୁ ବସୁ ପ୍ରତିରକ୍ଷାତ୍ମକଭାବେ କହିଲେ । ସେ ଏମ୍.ଏଲ୍.ଏ.ଙ୍କୁ ଜାଣି ନ ଥିଲେ । ''କ'ଣ ଚାହାନ୍ତି ଆପଣ ?''

''ପ୍ରକୃତରେ ମୁଁ କ'ଣ ଚାହୁଁଚି ସେ କଥା ଛାଡ଼ନ୍ତୁ । ତମେ କ'ଣ ଚାହୁଁଚ ସେ କଥାଇ ଅସଲ । ତମଭଳିଆ ଗୋଟାଏ ଭଲ ଅଫିସର୍ ଏଇଠି ସଡୁଚି ! ଆମେ ଲୋକ ପ୍ରତିନିଧିମାନେ ତ ତମମାନଙ୍କ ଭଲମନ୍ଦ ବୁଝିବାକୁ ଅଛୁ । ତମେ ସବୁଠୁ ଅଧିକା କ'ଣ ଚାହୁଁଚ ମୁଁ ଜାଣେ ।''

''ଆପଣ ଜାଣନ୍ତି ? ତାହେଲେ ସେ ହଜିଲା ସ୍କ୍ରୁଟାକୁ ଟେବୁଲ ତଳେ ଖୋଜିବାରେ ମତେ ସାହାଯ୍ୟ କରିପାରିବେ ? ମୋ ହାତରୁ ଶଳାଟା ଖସିଗଲା ଆଉ ମୁଁ ଖୋଜି ଖୋଜି ନୟାନ୍ତ ।''

ଗୁଣନିଧି ଭୂୟାଁ ଦୁଃଖିତ ହେଇଗଲେ । ଯଦି ଲକ୍ଷ୍ୟଭେଦ କରିବାକୁ ଛାଡ଼ିଥିବା ତୀରଟି ଏପଟ ସେପଟ ହେଇଯାଏ ତମେ କ'ଣ କରିବ ? ନ ହେଲେ ଠିକ୍ ଶେଷ ମୁହୂର୍ତ୍ତରେ ଯଦି ଲକ୍ଷ୍ୟବସ୍ତୁଟି ଉଠି ଚାଲିଯାଏ ? ତାଙ୍କର ଭୟ ହେଲା ହୁଏତ ଦିନଟା ଭଲରେ ଯିବନି । ସେ ବୁଝୁଥିଲେ ତାଙ୍କୁ ଦଳବଳ ନେଇ ଆସିବା ଉଚିତ ଥିଲା, କିନ୍ତୁ ମୁଖ୍ୟମନ୍ତ୍ରୀ ଚହିଁଥିଲେ ଗୁପୁଚୁପିଆ କାରବାର । ସେ ଦୀର୍ଘଶ୍ୱାସ ନେଲେ, କହୁଣି ଆଉ ଆଣ୍ଠୁ ତଳେ ଲଗେଇ ନଇଁପଡ଼ିଲେ ଆଉ ନଜରରେ ପଡୁ ନ ଥିବା ସ୍କୃଟିକୁ ଖୋଜିବାରେ ଲାଗିଲେ ।

''ଗୋଟାଏ ଝାଡୁ ଦିଅନ୍ତୁ,'' ସେ ଭବାନୀବାବୁଙ୍କୁ କହିଲେ ଯିଏକି ଆଉ ପାଖରେ ତଳେ ନାକ ଲଗେଇ ଦେଇଥିଲେ ।

''ତ୍ରିପାଠୀ ! ଝାଡୁଟା ଆଣ ।''

କନ୍‌ଷ୍ଟେବଲ୍‌ଜଣକ ଯିଏକି ଜଣେ ବ୍ରାହ୍ମଣ ଥିଲେ ଓ ଯାହାଙ୍କ ନାଁ ଥିଲା ସୁଧାକର ତ୍ରିପାଠୀ ଅର୍ଥାତ୍ ଜହ୍ନକିରଣ ତିନିଗୁଣା ପଣ୍ଡିତ, ଝାଡୁ ଆଣିବାକୁ କୁହାଯାଉଥିବା ଅଶିଷ୍ଟତାରେ ଚକିତ ହେଇଗଲେ, କାରଣ ସେଇଟା ଥିଲା ଗୋଟାଏ ଛୋଟ ଜାତିଆଙ୍କ କାମ, ଶଳା କୋଟା ଗୋଷ୍ଠୀ, ଯାହାଙ୍କ ସ୍କୁଲ୍‌କୁ ଯାଇ ନ ଥିବା ଛୁଆ ଯୋଗ୍ୟତା ନ ଥାଇ ଭଲ ଭଲ ଚାକିରି ପାଉଚନ୍ତି ଯେତେବେଳେକି ଭଲ ପାଠପଢ଼ି ତାଙ୍କ ପିଲେ ପାଉ ନାହାନ୍ତି, ଯୋଗ୍ୟତା ତେଣିକି ଚୁଲିକୁ ଯାଉ ଏଇଭଳିଆ କ୍ଷମତାଲୋଭୀ ଭୋଟପାଗଳ ମଣ୍ଡଳ ସିଂହ ଆଉ ବଣ୍ଡଲ ଘାସଓ୍ୱାନଙ୍କ ପରି ନେତାମାନେ ଦେଶଟାକୁ ନଷ୍ଟ କରିବାକୁ ଯାଉଚନ୍ତି, ଯା' ହଉ ସେ ଗୋଟାଏ କନ୍‌ଷ୍ଟେବଲ୍, କାହା ଘରର ଚାକର ନୁହନ୍ତି । ଝାଡୁ ! ସୁଧାକର ତ୍ରିପାଠୀ ନ ଶୁଣିଲାପରି ତାଙ୍କ ଶୀର୍ଣ୍ଣ ଦେହକୁ ଚୁପ୍‌ଚାପ୍ ଉଠେଇଲେ ଆଉ ଝୁଲି ଝୁଲି ତୀର୍ଯ୍ୟକ ଭାବେ ବିଷ୍ଣୁ ଚା' ଦୋକାନ ଆଡ଼କୁ ଗଲେ ।

ଯେତେବେଳେ ଭବାନୀ ଝାଡୁଟି ପାଇଲେ ଆଉ ଗୁଣନିଧି ଭୂୟାଁ ଭୀଷଣ ନୀରବତାରେ ଗଁ ଗଁ ହେଇ ଚଟାଣରେ ଝାଡୁ ମାରିଲେ, ଯେତେବେଳେ ଭବାନୀ କଲିଂବେଲ୍‌କୁ ସଜାଡ଼ିଦେଲେ ଯାହା କରେଣ୍ଟ୍ ନ ଥିବାରୁ ପରୀକ୍ଷା କରାଯାଇ ପାରିଲା ନାହିଁ, ଆଉ ଭବାନୀ କବାଟ ପାଖକୁ ଯାଇ ବିଷ୍ଣୁକୁ ଦି'କପ୍ ଚା ଆଣିବାକୁ ପାଟିକରି ଡାକିଲେ ଆଉ ନିଜ ଚଉକିରେ ବସିଲେ, ଆଉ ଗୁଣନିଧି ସବୁ କଥା ଆଉଥରେ ଆରମ୍ଭ କରିବା ପାଇଁ କଣ୍ଠ ସଫା କରିବା ପୂର୍ବରୁ ତାଙ୍କ ଧୋତିରେ ହାତ ପୋଛିସାରିଲେ, ସେ ପ୍ରକୃତରେ ଖୁବ୍ ଦୁଃଖ ଅନୁଭବ କଲେ । ସେ ସକାଳୁ କାହା ମୁହଁ ଚାହିଁଚନ୍ତି ମନେପକେଇବାକୁ ଚେଷ୍ଟା କଲେ । ତାଙ୍କ ସ୍ତ୍ରୀଙ୍କର ବୋଲି ସେ ସ୍ଥିର ସିଦ୍ଧ ହେଲେ । ତାଙ୍କ ସ୍ତ୍ରୀଙ୍କ ଚିନ୍ତା ଆସିଲାକ୍ଷଣି ସେ ବେଶ୍ ଶବ୍ଦକରି ଘଡ଼ ଘଡ଼ ହେଲେ । ତା'ର ଶଳା ଗୋଟାଏ ଷଷ୍ଠ ଇନ୍ଦ୍ରିୟ ଅଛି ଆଉ ତମେ ଉଠିଗଲଣି ବୋଲି ଜାଣିଲାକ୍ଷଣି ସେ

ପାଇଖାନା ଥିବା ବାଡ଼ିପଟ ପାଚିରି ପାଖରୁ ତା ବକ୍ ବକ୍ ଆରମ୍ଭ କରିଦେଇ ବହୁରାଷ୍ଟ୍ରୀୟ ସୈନ୍ୟଙ୍କ ପରି ଗର୍ଜନ କରି ମାଡ଼ିଆସି ଯିମିତି ରୁକ୍ଷେଇ ଘରେ ପଶିବ ତମେ ଶୁଣିବାକୁ ପାଇବ ହାଣ୍ଡିକୁଣ୍ଡେଇର ପ୍ରଚଣ୍ଡ ବିସ୍ଫୋରଣ । ତମର ସେତେବେଳକୁ ତା ପାଖରେ ଶରଣ ନେଇଯିବା ଭଲ ।

ଗୁଣନିଧି ଭୂୟାଁ ପୁଣିଥରେ ଘୁଡୁ ଘୁଡୁ ହେଲେ ।

''ତା'ରେ କଣ ପଡ଼ିଚି କି ?'' ଭବାନୀ ପଚାରିଲେ ।

''ନା, ନା । ମୋ ସ୍ତ୍ରୀ ।''

''ଓଃ,'' ଭବାନୀ କହିଲେ । ସମସ୍ତଙ୍କର ଗୋଟିଏ ଗୋଟିଏ ସ୍ତ୍ରୀ ଅଛନ୍ତି, ସେ ଭାବିଲେ । ଅନ୍ତତଃ ସେ ଏକୁଟିଆ ନୁହନ୍ତି ।

''ଯାହା ବି ହେଉ,'' ଗୁଣନିଧି ଜୋର୍‌ଦେଇ ଆରମ୍ଭ କଲେ, ''ମୁଁ ଆପଣଙ୍କୁ ସାହାଯ୍ୟ କରିବାକୁ ଆସିଥିଲି ।''

''ଓଃ,'' ଭବାନୀ ପୁଣି କହିଲେ ।

''ମୁଁ ଜାଣିବାକୁ ପାଇଲି ଆପଣଙ୍କ ସ୍ତ୍ରୀ ଏଠି ରହୁ ନାହାନ୍ତି ।''

''ଓଃ, ହଁ । ବଢ଼ିଆ ନୁହେଁ ?''

''କ'ଣ ଆପଣ କହିବାକୁ ଚାହୁଁଛନ୍ତି ? ସ୍ୱାମୀମାନେ ସ୍ତ୍ରୀମାନଙ୍କ ସହ ରହିବା ଉଚିତ ନା ନାହିଁ ? ସ୍ତ୍ରୀ ହଉଚି ଅର୍ଦ୍ଧାଙ୍ଗିନୀ ନା ନାହିଁ ? ତା'ର ସର୍ବଦା ସ୍ୱାମୀ ସାଙ୍ଗେ ରହିବା ଉଚିତ କି ନାହିଁ ? ପୁରାଣ ସେଇଆ କହୁଚି ନା ନାହିଁ ? ଆପଣଙ୍କ ସ୍ତ୍ରୀ ବିନା ଆପଣ କିମିତି ସୁଖୀ ହେଇପାରିବେ ? ଆପଣ ଆପଣଙ୍କ ସ୍ତ୍ରୀ ବିନା ସୁଖୀ ହେଇପାରିବେ ନାହିଁ । ଆପଣ ତାଙ୍କ ସହ ରହିବାକୁ ଚାହାନ୍ତି ନା ନାହିଁ ? ଆପଣ ତାଙ୍କର ଅସରନ୍ତି ଯତ୍ନ ପାଇବାକୁ ଚାହାନ୍ତି, ତାଙ୍କର ପଥର ପରି ପ୍ରେମ୍ ପାଇବାକୁ, ପର୍ବତ ପରି ଭକ୍ତି ପାଇବାକୁ ଚାହାନ୍ତି ନା ନାହିଁ ? ଆପଣ ନିଶ୍ଚୟ ଚାହାନ୍ତି । ହଁ ? ଦୟାକରି ହଁ କୁହନ୍ତୁ ।''

ଏତିକିବେଳେ ଗୋଟାଏ ଲମ୍ବା ପାତେଳୀ ସ୍ତ୍ରୀଲୋକଟିଏ ଥାନା ଭିତୁରୁକୁ ଦଉଡ଼ି ଆସି ସବ୍-ଇନ୍ସପେକ୍ଟରଙ୍କ ଟେବୁଲ୍ ପାଖେରେ ଯାଇ ଧସ୍‌କିରି ଅଟକିଗଲା ।

ପ୍ରଥମେ ସେ ନିଜ କପାଳରେ ସଶବ୍ଦେ ଚାପୁଡ଼ାଟାଏ ମାରିଲା, ତା'ପରେ ସେ ହିନ୍ଦୀ ସିନେମା ପରି କିଛି ଧାଡ଼ି ବାହୁନିଲା, ଆଉ ଶେଷରେ ସେ ଅତି ପୁରାତନ ବହୁଳଭାବେ ଅନୁମୋଦିତ ଶବ୍ଦଗୁଡ଼ିଏ ବ୍ୟବହାର କରି ଗାଳି ଦବାକୁ ଆରମ୍ଭ କଲା, ସତେଯିମିତି ସେଗୁଡ଼ିକ ଖୁବ୍ ନୂଆ ।

''ଇନିସିପେକ୍ଟରବାବୁ, ମତେ ତମେ ରକ୍ଷାକର । ମତେ ରକ୍ଷାକର ହେ ଇନିସିପେକ୍ଟରବାବୁ ନ ହେଲେ ମୁଁ କୋଉ ରାଇଜକୁ ଯିବି ? ସେଇ ମୋ ନିଆଁଗିଳା, ରଇଜଳା, ଗାତପଶା, ବାଡ଼ିପଡ଼ା, ବାଡ଼ଡିଆଁ, କୋଢ଼ିଆ ଘଇତା ମୋର, ଯିଏ ବାଲିଅନ୍ତାର ସେଇ ଦାରୀ ସାଙ୍ଗେରେ ପଳେଇଯାଇଥିଲା, ସେ ପୁଣି ମୋ ମାମୁ ଝିଅ ଭଉଣୀ, ସେ ନିଆଁଗିଳା ସେଇ ଡାଆଣୀ ସାଙ୍ଗେରେ ଆସିଚି । ଆଉରି ଦେଖ, ସେ ମାଇକିନା ତା ଗାଁକୁ ଯିବଭାରି ବୋଲି କହୁଛି, ଆଉ ଇଏ ମୋ ସାଙ୍ଗରେ ରହିବାକୁ କହୁଚି ।''

''ଭଲ ଭଲ,'' ଗୁଣନିଧି ଭବାନୀଙ୍କ ଆଡ଼କୁ ଅର୍ଥପୂର୍ଣ୍ଣ ଭାବରେ ଚାହିଁ ସାହସ କରି କହିଲେ, ''ସ୍ୱାମୀମାନେ ତାଙ୍କ ସ୍ତ୍ରୀମାନଙ୍କ ସାଙ୍ଗେରେ ରହିବା କଥା ।''

''ମତେ ଆଉ 'ଭଲ ଭଲ' ଦେଖାଅନି ତମେ ନିଶଗିଳାବାବୁ,'' ସ୍ତ୍ରୀଲୋକଟି ଡରେଇଲା ପରି ଗୁଣନିଧିଙ୍କ ଆଡ଼କୁ ଇମିତି ଉହୁଁକି ଆସିଲା ଯେ ସେ ସଙ୍କୁଚିତ ହେଇଗଲେ ।

ସେ ଖନ ଖନ, ଥ ଥ ମ ମ ହେଲେ ନିଜର ସ୍ଥିତିକୁ ରକ୍ଷା କରିବା ପାଇଁ, ଆଉଥରେ ଆକ୍ରମଣ କଲେ : ''ଆଉ କ'ଣ ? ସ୍ୱାମୀ ଆଉ ସ୍ତ୍ରୀ ଏକାଠି ରହିବା କଥା । ଏଇଟା ଗୋଟିଏ ଭଲ କଥା । ପବିତ୍ର ସମ୍ପର୍କ ।''

''ପବିତ୍ର ସମ୍ପର୍କ ନା ଚୋପା । ତମେ ଏ ନିଶୁଆ ମଦୁଆର କଥା ଶୁଣନି ଇନିସିପେକ୍ଟରବାବୁ, ମୋ କଥା ଶୁଣ । ଯେତେବେଳେ ସେ ଅଳପଇସ ଯାଇଥିଲା ମୁଁ ଖୁସୀ ଥିଲି...''

''ମୁଁ ମଦୁଆ ନୁହଁ । କେତେବେଳେ...''

''... ଖୁସୀ ଥିଲି । ପ୍ରଥମଥର ପାଇଁ ପ୍ରକୃତରେ ଖୁସୀ ଥିଲି । ମୁଁ ମୋ... ।''

''ଇଆଡ଼େ ଦେଖ୍ । ମତେ ତୁ ମଦୁଆ କହିପାରିବୁନି । ମୁଁ ଏମ୍.ଏଲ୍.ଏ. !''

''ଏ ନିଶୁଆର ପାଡ଼ାମୁହଁକୁ ଦେଖ, ଅଟକଉଚି, ଅଟକଉଚି, ଅଟକଉଚି ମୋ ମରଦଭଳିଆ, ନିଶ ଛଡ଼ା ମୁହଁଯାକରେ ଆଉ କିଛି ନାହିଁ ପଛେ । ସେ ଯେତେବେଳେ ସେଇ ଡାଆଣୀ ସାଙ୍ଗେରେ ପଳେଇ ଯାଇଥିଲା, ମୁଁ ଶାନ୍ତିରେ ନିଃଶ୍ୱାସ ନଉଥିଲି । ମତେ ଇମିତି ଅନୋଉଚ କାହିଁକି ? ଡରିଗଲି ବୋଲି କହିଲି, ଖାଲି ସେ ମାଇପିଟା ସାଙ୍ଗେ ପଳେଇବାଟା ସିନା ମତେ ରବେଇ ଖବେଇ ଲାଗୁଥିଲା । ହେଲେ ସେ ଫେରିଆସୁ ବୋଲି ମୁଁ ଜମା ଚାହୁଁ ନ ଥିଲି । କେବେ ନୁହଁ ।''

''ମୋ ନିଶର ଯା ସାଙ୍ଗେ କି ସମ୍ପର୍କ ?''

''ଏ ଲୋକ ନିଶ ପାଇଁ ଏତେ ବ୍ୟସ୍ତ କାହିଁକି ସତେଯିମିତି ଦୁନିଆରେ ଆଉ କିଛି ନାହିଁ । ତା କଥା ଶୁଣନି । ସବୁ ନିଶୁଆ ଲୋକଗୁଡ଼ା ସିମିତି । ମୁଁ ତମ ପାଖକୁ ଆସିଲି ଇନିସିପେକ୍ଟରବାବୁ କାରଣ ସଭିଏଁ କହିଲେ ଇନିସିପେକ୍ଟର ବାବୁ ପାଖକୁ ଯା', ସେ ଟୋକା ଲୋକ, ଡଉଲ ଡାଉଲ ଆଉ ତାଙ୍କର ନିଶ ବି ନାହିଁ, ସେ ତତେ ତୋ ମରଦଠୁଁ ରକ୍ଷା କରିପାରିବେ ।''

''ଠିକ୍ ଅଛି । ଠିକ୍ ଅଛି ।''

''ନିଶ ଓପରେ ଏଇଟା ଇମିତି କାହିଁକି ହଉଚି ?''

''ତୁ ସେ ଆର ରୁମକୁ ଯା' ଆଉ ତୋର ସ୍ୱାମୀର ନାଁ ଠିକଣା ଲେଖା । ତ୍ରିପାଠୀ ଏଠିକି ଆସ, ୟାକୁ ନିଅ, ବିଶଦ ଭାବରେ ସବୁକଥା ଏଫ୍.ଆଇ.ଆର୍.ରେ ଲେଖ, ଆଉ ତା ପରେ ଯାଅ ତା ସ୍ୱାମୀକୁ ଡାକିଆଣ । ତୁ ଯା' ମନ୍ଦିର ବୁଲି ଚାଆ ପା ପିଇ ଆ' । ତା' ପରେ ମୁଁ ତୋ ସାଙ୍ଗେ ଆଉ ତୋ ସ୍ୱାମୀ ସାଙ୍ଗେ କଥାବାର୍ତ୍ତା ହେବି ।''

ତା'ପରେ ଭବାନୀ ଗୁଣନିଧିଙ୍କୁ ଚାହିଁ କ'ଣ ଭାବିଲେ କେଜାଣି, ଠିଆ ହେଇଯାଇ ସାଲ୍ୟୁଟ୍‌ଟେ ମାରିଲେ, ଆଉ ପଚାରିଲେ : ''ଆପଣଙ୍କର କ'ଣ ଦରକାର ଥିଲା ?''

''ମୋର କିଛି ଦରକାର ନାହିଁ । ମୁଁ ଖାଲି ତମ ଦରକାର ମେଣ୍ଟେଇବାକୁ ଆସିଚି । ମୁଁ ସିଧାସିଧି ଭାବେ ଅସଲ କଥାକୁ ଆସିବି । ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ଆସିଚି ।''

''କୋଉ ମୁଖ୍ୟମନ୍ତ୍ରୀ ?''

''କୋଉ ମୁଖ୍ୟମନ୍ତ୍ରୀ ମାନେ ? ଆମର ତ ଗୋଟିଏ ମାତ୍ର ମୁଖ୍ୟମନ୍ତ୍ରୀ ଅଛନ୍ତି ।'' ଗୁଣନିଧି ରହିଗଲେ । କାଲିରାତିରେ ଆଉ ମନ୍ତ୍ରିମଣ୍ଡଳ ବଦଳିଗଲା କି ବା ସେମିତି କିଛି ହେଇଗଲା ଯାହା ଏ ପୁଲିସ୍‌ବାଲା ଜାଣିଚି ଯାହା ବିଷୟରେ ସେ ନିଜେ କିଛି ଜାଣି ନାହାନ୍ତି । ହୁଏତ ରାଷ୍ଟ୍ରପତି ଶାସନ ।

''ଓଃ, ଆପଣ ଆମ ମୁଖ୍ୟମନ୍ତ୍ରୀଙ୍କ କଥା କହୁଛନ୍ତି ?''

ଗୁଣନିଧି ଆଶ୍ୱସ୍ତ ଭାବେ ତାଙ୍କ କପାଳ ପୋଛିଲେ ।

''ମୁଁ ସିଧା ଅସଲ କଥାକୁ ଆସେଁ । ମୁଖ୍ୟମନ୍ତ୍ରୀ ତମ ବଦଳିପାଇଁ କଥା ଦେଇଛନ୍ତି ।''

''ମୋ ବଦଳି ? ମୁଁ କିନ୍ତୁ ବଦଳି ଚାହେଁନି ତ ।''

''ତମେ ବଦଳି ଚାହଁନି ମାନେ ? ସମସ୍ତେ କହୁଚନ୍ତି ତମେ ବଦଳି ଚାହଁ ବୋଲି । ଏମିତିକି ତମେ ଚିଠି ବି ଲେଖିଥିଲ ସରକାରଙ୍କୁ ।''

''ମୁଁ ବଦଳି କାହିଁକି ଚାହିଁବି ? ମତେ ଏଠି ବଢ଼ିଆ ଲାଗୁଚି ।''

''ତମ ସ୍ତ୍ରୀ ପିଲାପିଲିଙ୍କ କଥା କ'ଣ ହବ ?''

''ସେମାନେ ଭଲରେ ଅଛନ୍ତି । ଧନ୍ୟବାଦ ।''

''ଠିକ୍ ଅଛି, ଠିକ୍ ଅଛି, ଠିକ୍ ଅଛି,'' ଗୁଣନିଧି ତାଙ୍କ ମୁଣ୍ଡରୁ ଏସବୁ କାଢ଼ିବାକୁ ମୁଣ୍ଡ ହଲାଇଲେ । ''ମତେ ଅସଲ କଥା କହିବାକୁ ଦିଅ । ମୁଁ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ଆସିଚି । ସେ ଗୋଟିଏ ଛୋଟ ସୂଚନା ଚାହାନ୍ତି ଆଉ ମୋର ସିଧା ଉତ୍ତର ଦରକାର । ଉତ୍ତର ଦବା ଆଗରୁ ତମେ ଭଲଭାବରେ ଚିନ୍ତା କର । ଏଇଟା ଗୋଟାଏ ଗୁରୁତ୍ୱପୂର୍ଣ୍ଣ କଥା । ତମେ ଯଦି ମତେ ଠିକ୍ ଉତ୍ତର ନ ଦେବ ତାହେଲେ ହଣାମରା ହେଇଯିବ । ସି.ବି.ଆଇ. କି ଆଉ କେହି ଯିମିତି କିଛି ନ ଜାଣନ୍ତି । ମୁଖ୍ୟମନ୍ତ୍ରୀ ବି ନୁହଁ । ଖାଲି ମତେ କୁହ ଠିକ୍ ଠିକ୍ କଥା । ସବୁ ପ୍ରମାଣ ନଷ୍ଟ କରିବା ପୂର୍ବରୁ ମୁଁ ସବିଶେଷ ବିବରଣୀ ଚାହେଁ, ତାରିଖ, କିଏ କିଏ ଲୋକ, କାଗଜପତ୍ର, ସବୁ କିଛି । ଏଇ ଉଦ୍ଦେଶ୍ୟର ଗୁରୁତ୍ୱ ତମେ ଅନୁଭବ କରୁଚ ବୋଲି ମୁଁ ଭାବୁଚି । ଏବେ ମତେ ସେଇ ଲୋକ ବିଷୟରେ କୁହ ଯିଏ ତମ ଇଲାକାରେ କୋଉଠି ଗୋଟାଏ ସମୁଦ୍ର କୂଳରେ ମାସେ ଦି' ମାସ ତଳେ ଖୁବ୍ ଖଣ୍ଡିଆଖାବରା ହେଇ ପଡ଼ିଥିଲା, କାରଣ ଏଇଟା ଗୋଟାଏ ମର୍ଡ଼ର କେଶ୍ ।''

''ମର୍ଡ଼ର ? କି ମର୍ଡ଼ର ? ଗତ ତିନିବର୍ଷ ହେଲା ଏଠି ମର୍ଡ଼ର ହେଇନି, ମୁଁ ଦି' ମାସ ହେଲା ଏଠିକି ଆସିଲାଦିନଠୁଁ ତ ଆଦୌ ହେଇନି । କୌଣସି ହଣାକଟା ନାହିଁ, ମାର୍‌ପିଟ୍ ନାହିଁ, ଦଙ୍ଗାହଙ୍ଗାମା ନାହିଁ, ଚୋରି ନାହିଁ, ରେପ୍‌ଟିଏ ବି ନାହିଁ । ଆଉ ଯେତେବେଳେ ସେ ଲୁଗାକାଢ଼ିଦିଏ ନା, ସୁନ୍ଦର, ଐଶ୍ୱରିକ ।''

ତାଙ୍କୁ ହାର୍ଟଆଟାକ୍ ହେଇଗଲା ବୋଲି ଗୁଣନିଧି ଭୂୟାଁଙ୍କର ହୃଦ୍‌ବୋଧ ହେଇଗଲା କିନ୍ତୁ ସେ କୌଣସିମତେ କାର୍ ପର୍ଯ୍ୟନ୍ତ ଚାଲିଗଲେ । ଶଳା, ଇଏ କ'ଣ ହଉଚି । ମର୍ଡ଼ର୍ କହିଲେ କହୁଚି ନାହିଁ, ମାଇପ ପାଖକୁ ବଦଳି କହିଲେ କହୁଚି ଦରକାର ନାହିଁ, ଶେଷକୁ ଲୁଗା କାଢ଼ିବ ବୋଲି କହିଲାଣି !

''ଚଲା,'' ସେ କହିଲେ । ଖୁବ୍ ଶୀଘ୍ର ସେ ଆଉଥରେ ସୁସ୍ଥ ହେଇଗଲେ କାରଣ ସେ ଭାବିଲେ ଯେ ଯଦି କିଛି ଘଟିନି କିଛି କାଗଜପତ୍ର ବି ନ ଥିବ । ସବୁ ଠିକ୍ ଠାକ୍ । ସେ ଏ ପୁଲିସବାଲାକୁ ଆଉ କ'ଣ କରିବେ ନିଜେ । ମୁଖ୍ୟମନ୍ତ୍ରୀ ଏବେ ଡି.ଜି. ଫିଜି କାହାକୁ ପଠେଇ ତାଙ୍କ ସବ୍‌ଇନ୍ସପେକ୍ଟର୍ କଥା ବୁଝନ୍ତୁ । ଗୁଣନିଧି ଯେ କିଏ ସେ ତାଙ୍କ ଗୁଣ୍ଡାଙ୍କୁ ପଠେଇ ସଭାକୁ ବୁଝେଇଦେବେ ଭଲକିରି ।

ଏବେ ସେ ନିଜ ଅସଲ କାମ କଥା ବୁଝିବା ଉଚିତ । ଏ ସମୁଦ୍ରକୂଳର ସ୍ମଗ୍‌ଲିଂ ଧନ୍ଦା ବର୍ତ୍ତମାନ ଲଗାମ୍‌ଛଡ଼ା ହେଇ ଚାଲିଚି, ଏତିକିବେଳେ ଚଢ଼ିଯାଇ ଲଗାମ୍ ଭିଡ଼ି ଧରିଲେ ସବୁ ତାଙ୍କର ହେଇଯିବ । ତାଙ୍କ ଦି'ଟା ସ୍ତାବକ ଭୁବନେଶ୍ୱରରେ ଡକେଇତି କରି ଧରା ପଡ଼ିଚନ୍ତି । ତାଙ୍କୁ ମୁକୁଳେଇବାକୁ ହବ । କିନ୍ତୁ ପ୍ରଥମେ ତାଙ୍କ କଣ୍ଟ୍ରାକ୍ଟରବନ୍ଧୁଙ୍କୁ

ଡାକି ତାଙ୍କ କମିଶନ୍ ଅସୁଲ କରିବାକୁ ହବ । କିଛି ଟଙ୍କା ନ ମିଳିଲେ ଦିନଟା ଦିନରେ ଲେଖାଯିବ କିମିତି ? ରାତିର ଲେଖା ଅବଶ୍ୟ ଅଲଗା । ମଦ ଆଉ ମେଦରେ ।

ମଲ୍‌ହୋତ୍ରା ଧୀରସ୍ଥିର ଭାବରେ ନିଜ ଭଡ଼ାଗାଡ଼ିରେ ବସି ଏମ.ଏଲ.ଏ.କୁ ଥାନା ଛାଡ଼ି ଚାଲିଯିବାର ଦେଖିଲେ । କିଛି ସମୟ ଗଲା । ଯେତେବେଳେ ସବ୍-ଇନ୍ସପେକ୍ଟର କୁଆଡ଼େ ବି ଧାଇଁ ବାହାରିଗଲାନି, ସେ ତାଙ୍କ ଡ୍ରାଇଭର୍‌କୁ କହିଲେ ସମୁଦ୍ର ପାଖ ନୋଳିଆ ଗାଁକୁ ନେଇଯିବାକୁ ।

॥ ୬ ॥

## ମହା ମହା ରଥୀ ଆସନ୍ତି ଦେଖ
## ଛୋଟ ହାତେ ଭାରୀ ବନ୍ଧୁକ ଟେକ

କୋଣାର୍କର ପି.ଡବ୍ଲ୍ୟୁ.ଡି. ଡାକବଙ୍ଗଳାର ନିଜ କୋଠରିରେ କାମ୍‌ଦାକୁ ମହାରାଜ ମଲ୍‌ହୋତ୍ରା ଅନେକବେଳୁ ଧମକେଇ ଚମକେଇ ଜେରାକରି କିଛି କଥା ଆଦାୟ କରିବାକୁ ଚେଷ୍ଟା କରୁଥା'ନ୍ତି । ସେ କହିଲେ, ''ଠିକ୍ ଅଛି ତ ? ବୁଝିଲୁତ ? ମହା ଅସୁବିଧାରେ ତୁ ପଡ଼ିବୁ । ମୁଁ ଏବେ ଏଇଠି ତତେ ଆରେଷ୍ଟ୍ କରି ପାରିବି ଆଉ ତୁ ସାରାଜୀବନ ଜେଲ୍ ଭିତରେ ଚକି ପେଷୁଥିବୁ ।''

''କାହିଁକି ?'' କାମ୍‌ଦା କିଛି ବୁଝି ନ ପାରି ପଚାରିଲା । କାମ୍‌ଦା ବୋକା ନ ଥିଲା କି ବେଶୀ ଚାଲାକ୍ ନ ଥିଲା । ଜଟିଳ ଯୁକ୍ତିସବୁ ତାକୁ ବାଉଳା କରି ପକଉଥିଲା । ତେବେ ଅନେକ ସମୟରେ ଯଥାସମ୍ଭବ ବୋକା ପରି ବ୍ୟବହାର କରି ଚାଲିବାକୁ ତାକୁ ବେଶ୍ ଭଲ ଲାଗୁଥିଲା ।

ମଲ୍‌ହୋତ୍ରା ଧୈର୍ଯ୍ୟଚ୍ୟୁତ ହେଲେ ହେଁ ନିଜକୁ ସମ୍ଭାଳିନେଲେ ।

ସୁସ୍ଥ ଭାବରେ ସେ ପୁଣି ଆରମ୍ଭ କଲେ, ''ଦେଖ୍ । ମୂଳରୁ ସବୁକଥା ମୁଁ ଆଉଥରେ ତତେ ବୁଝେଇଦେଉଛି । ମର୍ଡ଼ର ପିଲାଖେଳ ନୁହଁ । ତିନିଶ' ଏକ, ତିନିଶ' ଦୁଇ ଧାରା । ଜଣେ ଫାଶୀ ପାଇପାରେ ନଚେତ୍ ଆଜୀବନ କାରାଦଣ୍ଡ । ମର୍ଡ଼ରରେ ତୋର ହାତ ଅଛି । ତୁ ନାଇଁ କରୁଥିଲେ ବି ସ୍ମଗ୍‌ଲିଂ କାରବାରରେ ତୋ ହାତ ଥାଇପାରେ । ତୁ ରେପ୍ ବି କରିଥାଇପାରୁ । ସରଳା ନାଁରେ ଗୋଟିଏ ଝିଅକୁ ମୁଁ ଚିହ୍ନିଚି, ରେପ୍ କଲେ ତିନିଶ' ଛ'ସ୍ତରି ଧାରା । ଆଉ ତୁ ତିନିଟା ଛୋଟପିଲାଙ୍କୁ ବି କରିଚୁ । ତା' ଭିତରୁ ବି ମୁଁ ଜଣକୁ ଜାଣେ, ରଙ୍ଗୁ ତା ନାଁ । ତା'ର ହେଲା ତିନିଶ' ସତସ୍ତରୀ ଧାରା । ସବୁ କଥା ଯଦି ଯୋଡ଼ାଯିବ, ଦଣ୍ଡ କେତେ ମିଳିବ ଜାଣୁ ? ତିନି ଜନ୍ମ ଯାଏ ଜେଲ୍‌ରେ ଶଢ଼ିବୁ ।''

''ସେମିତି କେମିତି ହବ ଆଜ୍ଞା ?'' କାମ୍‌ଦା ତା' ଓଠ ଗୋଜେଇ ଅତ୍ୟନ୍ତ ସନ୍ଦେହୀ ଭାବେ ପଚାରିଲା ।

''କେମିତି ହବ ମାନେ ? ସବୁକଥା ବୁଝେଇଲି ପରା । ତୋର ସବୁ କୁକର୍ମ ପାଇଁ ତତେ ଦଣ୍ଡ ମିଳିବ ନା ନାହିଁ ?''

''ନାଇଁ ଯେ ମୁଁ ମଲା ପରେ କୋଉ ଜନ୍ମ ନେବି ପୋଲିସ୍ କେମିତି ଜାଣିବ ?''

ମହାରାଜ ମଲ୍‌ହୋତ୍ରା ଖପକିନା ଚଉକିରୁ ଉଠି ଠିଆହେଲେ ଓ କାମ୍‌ଦାର ବାଁ ଗାଲରେ ଗୋଟିଏ ବ୍ରହ୍ମଚାପୁଡ଼ା ମାରିଲେ ଯେ ତା' ମୁଣ୍ଡଟା ଛିଣ୍ଡି ଯାଉ ଯାଉ ରହିଗଲା । ହଠାତ୍ ମଲ୍‌ହୋତ୍ରାଙ୍କୁ ଚାରିଦିଗ ନେଳି ଦିଶିଲା । ସେ କଚାଡ଼ି ହେଲାପରି ବସିପଡ଼ିଲେ । ଗତ କାଲି ବୁଲାବୁଲିରେ ହାଲିଆ ହେଇ ସେ ଶୀଘ୍ର ଶୋଇପଡ଼ିଥିଲେ, କିନ୍ତୁ ତା' କଣ ତାଙ୍କର କିଛି କ୍ଷତି କଲା କି ବୋଲି ଭାବିଲେ ।

ମୁଣ୍ଡ ଝାଇଁ ଝାଇଁ ବନ୍ଦ ହେଲାପରେ କାମ୍‌ଦା ଆଖିରୁ ଲୁହ ପୋଛିଲା ଓ ଡରି ଡରି କହିଲା, ''ବୁଝିଲି ଆଜ୍ଞା । ଆପଣ କହିଲା ପରି ମୁଁ ତିନି ଜନ୍ମପାଇଁ ଜେଲ୍‌କୁ ଯିବି । ଭାବିବାର କିଛି ନାହିଁ । ସମସ୍ତେ ନିଜ ନିଜ ଦୋଷ ପାଇଁ ଦଣ୍ଡ ପାଇବେ ।''

ମଲ୍‌ହୋତ୍ରା ଲୋକଟାକୁ ଭଲଭାବରେ ନିରୀକ୍ଷଣ କଲେ । ତା ମନରେ ଆଉ କିଛି ନାହିଁ ତ ? ତାଙ୍କ ବିଷୟରେ ସେ କିଛି ଜାଣେ କି ? ମାଲ୍‌ହୋତ୍ରା ନିଜ ମଉଜ ପାଇଁ ଯେତେବେଳେ ବି ଆସନ୍ତି ଓଡ଼ିଶାର କୋଣାର୍କର ନିଛାଟିଆ ସମୁଦ୍ର ଆଉ ରାତିକୁ ପସନ୍ଦ କରନ୍ତି । କିନ୍ତୁ ତାଙ୍କ ଆସାମୀ କ'ଣ କହିଲାଣି ଯେ ସମସ୍ତେ ନିଜ ନିଜ ଦୋଷ ପାଇଁ ଦଣ୍ଡ ପାଇବେ ବୋଲି । ସେ ଠିକ୍ ସେତିକିବେଳେ ଓ ସେଇଠି ଶପଥ କଲେ ଯେ ଇମିତି ଗୋଟେ ନିଉଛୁଣା ଈଶ୍ୱରହୀନ ରାଜ୍ୟକୁ ସେ ଆଉ କେବେ ବି ଆସିବେ ନାହିଁ ।

''ମୁଁ ଆଉ କ'ଣ କରିବି ଆଜ୍ଞା ?'' କାମ୍‌ଦା ପଚାରିଲା ।

''ଦେଖ୍ ତତେ କିଛି ବି କରିବାକୁ ପଡ଼ିବନି । ତୁ ଖାଲି ମତେ ସତକଥା ଠିକ୍ ଠିକ୍ କହିଦେ' ଆଉ ମୁଁ ଦେଖିବି ତୁ ଯେମିତି କୋର୍ଟ କଚେରିକୁ ନ ଯିବୁ ।''

''ମତେ ଜେଲ୍‌କୁ ବି ଯିବାକୁ ପଡ଼ିବନି ?''

''ତୁ ପୂରା ଖଲାସ ହୋଇଯିବୁ । କୋର୍ଟକୁ ଯିବୁନି କି ଜେଲ୍‌କୁ ନୁହଁ । ବୁଝିଲୁ ?''

''ତା ହେଲେ ପଚାରିଯା'ନ୍ତୁ ଯାହା ଇଚ୍ଛା,'' କାମ୍‌ଦା ଗଦ୍‌ଗଦ ହୋଇ କହିଲା ।

''ଠିକ୍ ଅଛି ଶୁଣ୍ । ଯୋଉ ଲୋକ ସମୁଦ୍ରରେ ଭାସିଆସିଥିଲା ସିଏ କିଏ ?''

''କୋଉ ଲୋକ ?''

''ଆଉ ଥରେ ମୋ ସାଙ୍ଗରେ ଖେଳେନା । ତୁ ସତ କହିବାକୁ ରାଜି ହେଲୁ, ତା' ବଦଳରେ ତତେ ରକ୍ଷା କରିବି ବୋଲି କହିଲି ପରା ।''

''ଠିକ୍ ଅଛି ।''

''କିଏ ସେ· ଲୋକ ?''

''ମୁଁ ଜାଣିନି । ସତ କଥା । ଆଗରୁ କେବେ ତାକୁ ଦେଖି ନ ଥିଲି । ତା'ଛଡ଼ା ଆଜ୍ଞା ସିଏ ଯିମିତି ଖଣ୍ଡିଆଖାବରା ହେଇଥିଲା, ଯଦି ମୋର ଚିହ୍ନା ଜଣା ବି ହେଇଥା'ନ୍ତା ମୁଁ ଚିହ୍ନିପାରି ନ ଥାନ୍ତି ।''

ମଲ୍‌ହୋତ୍ରା କଥାଟା ମନରେ ଘୂରେଇନେଲେ ।

''ଆଚ୍ଛା ସେଦିନ ରାତିରେ ଗୋଟାଏ ବଡ଼ ଟ୍ରଲର୍ ଆସିଥିବା କଥା କ'ଣ ସତ ?''

''ଏମିତି ତ କେତେ ଟ୍ରଲର୍ ଆସେ ଯାଏ । ଏତେଦିନ ହେଲାଣି ଠିକ୍ ମନେପଡୁନି ।''

''ଚୋରାମାଲ୍ ଆଣୁଥିବା ଟ୍ରଲର୍ ?''

''ହେଇଥିବ । ଠିକ୍ କହି ପାରିବିନି ।''

''ଏଠି କ'ଣ କ'ଣ ସ୍ମଗ୍ଲିଂ କର ?''

''ସତକଥା ଆଜ୍ଞା । ମୁଁ ସ୍ମଗ୍‌ଲର୍ ନୁହଁ ଆଜ୍ଞା । ମୁଁ ଯଦି ହୋଇଥା'ନ୍ତି ଏମିତି ଛିଣ୍ଡା ମିଣ୍ଡା ପିନ୍ଧିଥା'ନ୍ତି ଆଜ୍ଞା ? ଆଉ ସେ ଝୁମ୍ପୁଡ଼ିରେ ରହୁଥା'ନ୍ତି ?''

''ଏ ଗାଁର କମସେ କମ୍ ଦଶଜଣ ମତେ ତୋ ବିଷୟରେ କହିଛନ୍ତି । ତାଙ୍କ ଅନୁସାରେ ମାଗୀ ନାଁର ସ୍ତ୍ରୀଲୋକଜଣକ ସବୁ ଜାଣିଛି । କିନ୍ତୁ ବାରମ୍ବାର ସେ ମୋ ହାତରୁ ଖସିଯାଉଛି ।''

''ମାଗୀ ଭଲ ଝିଅ ଆଜ୍ଞା । ପାଠଶାଠ ପଢ଼ିଛି । ଗାଁର ସେଇ କେଇଟା ଡାଆଣୀ ଯଦି ତାକୁ ନ ରୋକିଥା'ନ୍ତେ ସିଏ ମାଟ୍ରିକ୍ ପାସ୍ କରିସାରନ୍ତାଣି ।''

''ହାତରେ ପଡ଼ିଲେ ମୁଁ ତା' କଥା ବୁଝିବି । ଆଉ ତୁ ଯଦି ଚୋରାମାଲ୍ କାରବାର କରୁନୁ ବୋଲି କହୁଛୁ, କିଛି ତ ସେ ବିଷୟରେ ଜାଣିଥିବୁ । ମାଇକିନା ପିଲା ସମସ୍ତେ ଜାଣିଛନ୍ତି ଆଉ ତୁ ଜାଣିନୁ ?''

''ଗୁଜବ ଆଜ୍ଞା । ସେଗୁଡ଼ା ସବୁ ଡାହାମିଛ ।''

''ହଉ, ତୋ ଗୁଜବଟା ଶୁଣେଇଲୁ ଦେଖି ।''

''କୁହାଯାଉଛି ଯେ କ'ଣ ସ୍ମଗଲିଂ ହବ, କେତେବେଳେ, କୋଉଠି ସବୁ ଓ.ଏସ୍.ଏ. ଅନୁସାରେ ଠିକ୍ ହେଉଛି ।''

"ଓ.ଏସ୍.ଏ. କ'ଣ ?"

"ଓଡ଼ିଶା ସ୍ମଗଲର୍ସ୍ ଆସୋସିଏସନ୍ ।"

"କ'ଣ ?" ମଲ୍‌ହୋତ୍ରା ଚଉକିରେ ହାତ ଦଣ୍ଡାକୁ ଓପାଡୁ ଓପାଡୁ ରହିଯାଇ କହିଲେ, "ସ୍ମଗଲର୍‌ମାନଙ୍କର ଗୋଟାଏ ଆସୋସିଏସନ କ'ଣ ?"

"ଅଛି ଆଜ୍ଞା । ସମସ୍ତେ କହୁଛନ୍ତି ।"

"ତା'ପରେ ତୁ କହିବୁ ଏମ୍.ଏଲ୍.ଏ.ମାନଙ୍କର ବି ଗୋଟାଏ ସଂଗଠନ ଅଛି ।"

"ଅଛି ଆଜ୍ଞା । ଗୋଟାଏ କାହିଁକି, ତିନିଟା ଅଛି । ପ୍ରଥମଟି ହେଉଛି ସଚ୍ଚୋଟ ଏମ୍.ଏଲ୍.ଏ. ସଂଗଠନ (ସ.ଏମ୍.ଏଲ.ଏ.ସଂ.) ଯେଉଁଥିରେ ତିନୋଟି ଏମ୍.ଏଲ୍.ଏ ଅଛନ୍ତି । ଆଉ ସବୁଗୁଡ଼ା ଲମ୍ୱା ନାଁ । ମନେ ରହୁନି । ଏମ.ଏଲ.ଏ. କଥା ଆଜ୍ଞା କ'ଣ କହୁଛନ୍ତି, ଓ.ଚୋ.ଖ.ଡ.ସଂ. ଅଛି ପରା ଓଡ଼ିଶା ଚୋର, ଖଣ୍ଟ ଓ ଡକାୟତ ସଂଗଠନ । ସେମାନଙ୍କର ବାର୍ଷିକୀ ପରା ଗତମାସ ପୁରୀରେ ହେଇଥିଲା । ଏମ୍.ଏଲ୍.ଏ. ଆଉ ମନ୍ତ୍ରୀମାନେ ଏସବୁ ସଂଗଠନର ବଡ଼ ନେତା । ସବୁ କାମ ନୀତିନିୟମ ଅନୁସାରେ ହଉଚି ନା ଆମ ଓଡ଼ିଶାରେ ।"

"ଅସମ୍ଭବ !"

"ଆଜ୍ଞା ବଡ଼ ବଡ଼ ଅଫିସରମାନଙ୍କର ବି ନିଜର ସଂଗଠନ ଅଛି । କୋବ୍ରା (COBRA) । କ'ଣ ସେଣ୍ଟ୍ରାଲ ଅଫିସର୍ସ ବ୍ରାଇବ୍ ରାଇଟ୍‌ସ୍ ଆସୋସିଏସନ । ଆଉ ଗୋଟିଏ ଇଉନିଭରସିଟି ପ୍ରଫେସରଙ୍କର ପରୀକ୍ଷା ଫଳ ନିୟନ୍ତ୍ରଣ ସଂଗଠନ, ଯୋଉଟା କଲେଜ ଲେକ୍‌ଚରର୍‌ଙ୍କର ସେଇଭଳିଆ ସଂଗଠନରୁ ଅଲଗା ।"

"ମୋର ବିଶ୍ୱାସ ହେଉନି । ଏଇ ପଛୁଆ ରାଜ୍ୟ ଯେ ଉତ୍ତରପ୍ରଦେଶ, ବଙ୍ଗଳା, ବିହାର, ପଞ୍ଜାବ, ଗୁଜୁରାଟ, କେରଳଠୁ ଆଗେଇବାକୁ ବସିଲାଣି, ଏଇଟା ବିଶ୍ୱାସ ହଉନି ।"

ମଲ୍‌ହୋତ୍ରା ନିଜକୁ ସଂଯତ କଲେ । ତଣ୍ଟି ସଫା କଲେ ।

"ଠିକ୍ ଅଛି ଏବେ ଅସଲ କଥାକୁ ଫେରିଯିବା । ମତେ କୁହ ସେ ଲୋକଟା କଥା କ'ଣ ହେଲା ।"

"ଆମେ ତାକୁ ଡାକ୍ତରଖାନା ପଠେଇଲୁ । ଡାକ୍ତର କହିଲେ ମରିଯାଇଛି । ପରେ କହିଲେ ବଞ୍ଚିଛି । ସେ ଲୋକଟା ଆଜ୍ଞା ସିମିତି ହଉଥିଲା । ସମୁଦ୍ର କୂଳରେ ବି ବେଳେବେଳେ ମରିଯାଉଥିଲା ତ ବେଳେବେଳେ ଜିଇଁ ଉଠୁଥିଲା, ତା' ନାଡ଼ି ଚାଲୁଥିଲା ।

ତା'ପରେ ଡାକ୍ତର ତା' ଖଣ୍ଡିଆଖାବରାକୁ ସିଲେଇ କରି ବଡ଼ଡାକ୍ତରଖାନାକୁ ନେଇଯିବାକୁ କହିଲେ । ଆଉ ତା'ପରେ... ।''

''ତା'ପରେ କଣ ?''

''ତା'ପରେ ମାଗୀର ତ ନରମ କଲିଜା, ଗୋଟାଏ ଅଟୋ ଡାକି ତାକୁ ନେଇ ଚାଲିଗଲା ଆଉ କୋଉ ଡାକ୍ତରଖାନାକୁ । ଭୁବନେଶ୍ୱର ନ ହେଲେ କଟକକୁ ନେଇଯାଇଥିବ । ସେ ବି ଦି'ଦିନ ପାଇଁ ସେଆଡ଼େ ରହିଲା ।''

''ଫେରିଲା ପରେ ତୁ କିଛି ପଚାରିଲୁନି ତାକୁ ?''

''ମୁଁ ପଚାରିଥିଲି । କହିଲା ଲୋକଟା ମରିଗଲା । ଆଉ ସେ ତାକୁ କୋଉଠି ଗୋଟାଏ ପୋଡ଼ିଦେଲା ।''

''ତୁ ତାକୁ ବିଶ୍ୱାସ କଲୁ ?''

''ସେ କଥାକୁ ଘୋଡ଼େଇବା ଝିଅ ନୁହଁ ଆଜ୍ଞା । ଚୁଗୁଲି କରେନି । କଥା ମୁହେଁ ମୁହେଁ କହେ ଆଉ ଠିକ୍ କଥା କହେ ।''

''ଏ ଚୋରା କାରବାରରେ ତା'ର ହାତ ଅଛି କି ?''

''କିଏ ? ମାଗୀ ? ସେ ତ ଏସବୁ ଧ୍ୱଂସ କରିଦବ ଆଜ୍ଞା । ଯଦି କିଛି କରେ । ରାଗିଗଲେ ପାଚିଯିବ ଆଜ୍ଞା । ଦେବୀ ହେଇଯିବ । ମାତଙ୍ଗୀ ତା ନାଁ ।''

''ମୁଁ ଶୁଣିବାକୁ ପାଇଲି ଯେ ଘଟଣା ଘଟିଲା ପରେ ସେ ମଝିରେ ମଝିରେ ଦିନେ ଦି' ଦିନ ପାଇଁ ପୁରୀ ନ ହେଲେ ଭୁବନେଶ୍ୱର ଯାଉଛି ।''

''କେଜାଣି, ମୁଁ ଜାଣିନି । ମୁଁ ଜାଣିବାରେ ସେ ଶୁଖୁଆ କରେ ଆଉ ତାକୁ ବିକିବାକୁ ଇଆଡ଼େ ସିଆଡ଼େ ଯାଏ । ଆଉ କ'ଣ କରେ ନ କରେ ମୁଁ ଜାଣିନି ।''

''ସେ ଅଜଣା ଲୋକଙ୍କ ସାଙ୍ଗରେ ମିଶିବାର କେବେ ଲକ୍ଷ୍ୟ କରିଛୁ ?''

''ନା, କେବେ ନୁହଁ ।''

''ତୋ' ଜାଣିବାରେ ସେ ଧନ୍ଦା କରେ କି ? ନ ହେଲେ ନିର୍ଦ୍ଦିଷ୍ଟ କାହା ସାଙ୍ଗରେ ତା'ର କିଛି ଲଟପଟ ଅଛି କି ? ଯାହା ଶୁଣିଛି ଆଚ୍ଛା ଖାସା ଜବାନ୍ ଟୋକୀଟା । କିଏ ହେଲେ ହାତପକେଇ ଥିବ ନା ।''

''ନାଃ । ତାକୁ କେହି ସେମିତିକା ବ୍ୟବହାର କଲେ ସେ ଏକା ଚାପୁଡ଼ାକେ ଗାଲ ପଚେଇଦବ । ଯାହାକୁ କହନ୍ତି ଟାଣୁଆ ।''

''ତୋର ତାକୁ ପାଇବାକୁ ଇଚ୍ଛା ଅଛି ?''

''କାହାର ନାହିଁ ?''

''ଆଉ ସେ ମୁର୍ମୁର ରଖେଲ୍ ?''

''ବିଚାରୀ କଣ କରିବ । ସେ ତାକୁ ପାଳିଛି ।''

''ତୁ ତାକୁ କାଲି ରାତିରେ ଝାଉଁବଣକୁ ନେଇଥିଲୁ ?''

''ମୁଁ ?''

''ତା' ଭିତରକୁ ଯିବାର ମୁଁ ଦେଖିଥିଲି ।''

''ହେଲା ମୁଁ ମାନିଯାଉଛି । ଶେଷରେ ମୁଁ ତାକୁ ମନେଇଥିଲି । ହେଲେ, ହେଇଟି, ବିଶ୍ୱାସ କରନ୍ତୁ ଆଜ୍ଞା, ତା' ମାଛକଟା ଛୁରୀରେ ତ ମୋ ତଣ୍ଟି କାଟିଦବାକୁ ଉଠିଲା । ମୁଁ କାୟା ବଞ୍ଚେଇ କେମିତି ଖସିବି ବୋଲି ବାଟ ପାଇଲିନି । ରାଣ ଆଜ୍ଞା ।''

''ଠିକ୍ ଅଛି । ଭାବ୍ ତ ଦେଖି, ଯଦି ସେ ଲୋକଟା ବଞ୍ଚିଯାଏ ଆଉ ଏ ଟୋକୀ ତାକୁ କୋଉଠି ଲୁଚେଇ ରଖିଥାଏ ତେବେ ସେ ଜାଗାଟା କୋଉଠି ହେଇଥିବ ?''

''ସେ ନିଶ୍ଚେ ଗାଁ ଭିତରେ କୋଉଠି ନାହିଁ । ଆଉ ଗାଁ ଛଡ଼ା ଏମିତି ଗୋଟାଏ ବି ଜାଗା ନାହିଁ ଯୋଉଠି ସେ ତାକୁ ରଖିପାରିବ । ଯାହା ସେ କହୁଚି ପୋଡ଼ିଦେଇଥିବ ତାକୁ ।''

''କୌଣସି ଡାକ୍ତରଖାନାରେ ଥାଇପାରେ । ଆଚ୍ଛା ତା'ର କୌଣସି ଡାକ୍ତର ଚିହ୍ନାଜଣା ଅଛନ୍ତି ?''

''ନା ମୋ ଜାଣତରେ ନାହିଁ । ସେ ଡାକ୍ତରଙ୍କୁ ପସନ୍ଦ କରେନି । ତା'ଅନୁସାରେ ଚାନ୍ସ ମିଳିଲେ ଡାକ୍ତରମାନେ ଭିଡ଼ାଓଟରା କରନ୍ତି ।''

ମାଲ୍‌ହୋତ୍ରା ହାଇ ମାରିଲେ । ଠିଆ ହେଲେ ଓ କାମ୍‌ଦାକୁ ଗଭୀର ଭାବେ ନିରୀକ୍ଷଣ କଲେ ।

''ତୁ ମତେ ଗୁଡ଼ାଏ ମିଛ କହିଲୁ । ମୁଁ ଜାଣେ ସେ ବାହାରକୁ ଗଲାବେଳେ ତୁ ଦୁଇ ତିନିଥର ତା'ପଛେ ପଛେ ଯାଇଛୁ । ତୁ ସତ କଥା କହ ନ ହେଲେ ମୁଁ ଭଗବାନ୍‌ଙ୍କ ନାଁରେ କହୁଚି ତୋ ହାଡ଼ଗୋଡ଼ ଚୂନା କରିଦେବି । ସେ ପୁରୀ ଯାଏ । ଯାଏ ନା ନାହିଁ ?''

କାମ୍‌ଦା ତା' ଓଠକୁ ଜିଭରେ ଭିଜେଇଲା ।

ଠିକ୍ ସେତିକିବେଳେ କବାଟରେ ଖୁବ୍ ଜୋର୍‌ରେ ଖଡ଼୍ ଖଡ଼୍ ହେଲା । ମଲ୍‌ହୋତ୍ରା ରାଗ ତମ ତମ ହୋଇ କବାଟ ଖୋଲନ୍ତି ତ ସବ୍-ଇନ୍ସପେକ୍ଟର ଭବାନୀ ଦାସ ।

''କ'ଣ ଦରକାର ତମର ?'' ମଲ୍‌ହୋତ୍ରା ପଚାରିଲେ ।

''ଏଇ ଲୋକଟା ଦରକାର ।''

''ମୁଁ ତମକୁ ଜଣାଇଦେବାକୁ ଚାହୁଁଛି ସବ୍-ଇନ୍ସପେକ୍ଟର କି ଯିଏବି ହୁଅ, ମୁଁ ସି.ବି.ଆଇ.ର ଏସ.ପି. ଆଉ ଏବେ ମୁଁ ସାକ୍ଷୀକୁ ଜେରା କରୁଛି ।''

ସବ୍-ଇନ୍ସପେକ୍ଟର ଦାସ୍ ମଲ୍‌ହୋତ୍ରାଙ୍କୁ ସାଲ୍ୟୁଟ୍ କଲେ ଓ ମାର୍ଚ୍ଚ କଲା ପରି ଯାଇ କାମ୍‌ଦା କାନ୍ଧରେ ହାତ ରଖିଲେ ।

''ୟୁ ଆର୍ ଅଣ୍ଡର ଆରେଷ୍ଟ ।'' କାମ୍‌ଦାକୁ ଟାଣି ଠିଆ କରେଇ ପେଲି ପେଲି ଘର ବାହାରକୁ ନେଇଗଲେ ।

''ତମେ ଏମିତି କରିପାରିବ ନାହିଁ,'' ମଲ୍‌ହୋତ୍ରା ଉତ୍ତ୍ୟକ୍ତ ହୋଇ ପ୍ରତିବାଦ କଲେ ।

''ଧନ୍ୟବାଦ ସାର୍,'' ଦାସ ମଲ୍‌ହୋତ୍ରାଙ୍କୁ ପୁଣି ସାଲ୍ୟୁଟ କରି କହିଲେ ଏବଂ ଏବେ କାନ୍ଦୁଥିବା କାମ୍‌ଦା ହାତରେ ହ୍ୟାଣ୍ଡକଫ୍ ପିନ୍ଧାଇଲେ ଓ ଚାଲିଲେ ।

ପି.ଡବ୍ଲୁ୍ୟ.ଡି. ଡାକବଙ୍ଗଳା ସାମନାରେ ପ୍ରଫୁଲ୍ଲଚିତ୍ତ ସବ୍-ଇନ୍ସପେକ୍ଟର କାମ୍‌ଦା ହାତରୁ ହ୍ୟାଣ୍ଡକଫ୍ ଖୋଲିଦେଲେ ଓ ତାକୁ ଯା' ବୋଲି କହିଲେ ।

''ତତେ କିଛି ଅସୁବିଧା ହେଲେ ମତେ ଖବର କରିବୁ । ଲୋକମାନଙ୍କୁ ସାହାଯ୍ୟ କରିବାକୁ ମୁଁ ଏଠି ଅଛି । ଆଉ ମୁଁ ବଦଳି ବି ଶଳା ହେବିନି । ଯା' ।''

''ଯଦି ତାଙ୍କର ଏମିତି ଖେଳିବାକୁ ଇଚ୍ଛା,'' ମଲ୍‌ହୋତ୍ରା ନିଜ ଜିନିଷପତ୍ର ବ୍ୟାଗ୍‌ରେ ସଜଉ ସଜଉ ସ୍ଥିରଚିତ୍ତରେ ସ୍ୱଗତୋକ୍ତି କଲେ, ''ଖେଳ ବି ସେମିତି ଖେଳାହବ ।''

ପୁରୀ ତାଙ୍କର ଯୁକ୍ତିଯୁକ୍ତ ଅନୁସନ୍ଧାନ ଜାଗା ।

ମହାରାଜ ମଲ୍‌ହୋତ୍ରା କିଛି ଖୋଜ ପାଉ ନ ଥିଲେ । ତେଣୁ ସେ ଡା. ପ୍ରହରାଜଙ୍କ ପୁରୀସ୍ଥିତ କ୍ଲିନିକ୍‌ର ଛୋଟ ଅଫିସ୍‌ରେ ବସି ଟେବୁଲ ଓପରେ ନିଜର ମୋଟାମୋଟି ଆଙ୍ଗୁଳିରେ ବାଜା ବଜଉଥିଲେ । ଡା. ପ୍ରହରାଜ ଟେବୁଲ୍‌ର ଅନ୍ୟପଟରେ ବସି ସିଗାରେଟ୍‌ଟିଏ ତିଆରି କରୁଥିଲେ । କାଗଜକୁ ସେ ଜିଭରେ ଚାଟିଲେ, ଗୁଡ଼େଇଲେ ଓ ଦିଆସିଲି କାଠିରେ ଦୁଇମୁଣ୍ଡ କେଞ୍ଚି ସମାନ କରିବାକୁ ଲାଗିଲେ । ସେ ଶାନ୍ତ ତଥା ଆଗ୍ରହହୀନ ଦିଶୁଥିଲେ, କିନ୍ତୁ ଭିତରେ ଭିତରେ ଉଦ୍‌ବିଗ୍ନ ଓ ବିବ୍ରତ ଥିଲେ, ଯେତେବେଶୀ ମଲ୍‌ହୋତ୍ରାଙ୍କ ଉପସ୍ଥିତି ପାଇଁ ନୁହଁ ତା'ଠୁ ବେଶି ସକାଳେ ଏ ସି.ବି.ଆଇ. ଅଫିସର ଆସିବା ପୂର୍ବରୁ ଘଟିଯାଇଥିବା ଘଟଣାଗୁଡ଼ିକ ପାଇଁ ଯାହା ସେ ଠିକ୍ ଭାବେ ବୁଝିପାରି

ନ ଥିଲେ । ଈଶ୍ୱରୀ ଟେବୁଲ କଡ଼ରେ ଥୁଆ ହେଇଥିବା ଚଉକି ପଛରେ ଠିଆ ହେଇଥିଲେ, ଡାକ୍ତରଖାନା ଭିତରକୁ ଯିବା ଦୁଆରପାଖେ । ଭିତରକୁ ଯିବା ଅନ୍ୟ ରାସ୍ତାଟି ଓ୍ୱେଟିଂରୁମ୍ ବାଟେ ।

କଥାବାର୍ତ୍ତାରୁ ଡା. ପ୍ରହରାଜ ଠଉରେଇ ନେଇଥିଲେ ଯେ ଏଇଟି ଗୋଟିଏ ପ୍ରାଥମିକ ଅନୁସନ୍ଧାନ ଓ ଅଫିସରଜଣକ ତାଙ୍କ ମନରେ ଥିବା ଲୋକଟିକୁ ସମସ୍ତ ବେସରକାରୀ କ୍ଲିନିକ୍‌ରେ ବୁଲି ବୁଲି ଠାବ କରିବାକୁ ଚେଷ୍ଟା କରୁଥିଲେ । ଈଶ୍ୱରୀ ସଜାଗ, ଶୁଣିଲେ ଶବ୍ଦ, କେହିଜଣେ ବାରଣ୍ଡାରୁ ଓ୍ୱେଟିଂରୁମ୍ ଦେଇ କ୍ଲିନିକ୍‌ରେ ପ୍ରବେଶ କରୁଥିବାର, କିନ୍ତୁ ସେ ସିମିତି ଠିଆ ହେଇ ରହିଲେ । କପିଳାକୁ ଅତିଥିଙ୍କ ପାଇଁ ଚା' ଆଣିବାକୁ ପଠାଯାଇଥିଲା ।

''ତା'ହେଲେ,'' ମଲ୍‌ହୋତ୍ରା ଆଉଥରେ ଆରମ୍ଭ କଲେ, ''ଆପଣ ଗତ ତିନିମାସ ଭିତରେ ସେମିତି କୌଣସି ଲୋକର ଚିକିତ୍ସା କରି ନାହାନ୍ତି । ମୁଁ କଥା ଦଉଛି ଯଦି ସତ କଥା କହିବେ ତେବେ ମୁଁ ଆପଣଙ୍କୁ ମୋ ସୁରକ୍ଷା ନିର୍ଭରଭାବେ ଦେବି, ଆପଣ ରୁଲ୍ ମୁତାବକ ଆଗରୁ ପୋଲିସ୍‌କୁ ଜଣାଇ ନ ଥିଲେ ବି... ।

ଠିକ୍ ଏତିକିବେଳେ ସଶବ୍ଦରେ ଈଶ୍ୱରୀଙ୍କ ପଛପଟ ଭିତର ଦୁଆର ଖୋଲିଗଲା ଓ ମାଗୀ ଉତ୍ତେଜିତଭାବେ ଭିତରକୁ ପଶି ଆସୁ ଆସୁ ଡାକ୍ତରଙ୍କୁ କହିଲା, ''ଆଜ୍ଞା, ପାଣ୍ଡୁ... ।''

ମହାରାଜ ମଲ୍‌ହୋତ୍ରାକୁ ଦେଖି ସେ ହଠାତ୍ ଥମିଗଲା । ମଲ୍‌ହୋତ୍ରାଙ୍କ ଆଖି ଜଳିଉଠିଲା । ସେ ଚଉକିରେ ସଳଖେଇ ହେଇଗଲେ ଓ ନିଜ ଭାଙ୍ଗି ଆସୁଥିବା ମନୋବଳ ପୁନଶ୍ଚ ଉଜ୍ଜୀବିତ ହେବାର ଅନୁଭବ କଲେ ।

''ମୁଁ ତମକୁ କୋଉଠି ଦେଖିଛି, ନୁହେଁ ?'' ମଲ୍‌ହୋତ୍ରା ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ପଚାରିଲେ । ସେ ଅନ୍ୟ ସମସ୍ତଙ୍କୁ ଚାହିଁଲେ, ଯିମିତି କହିବାକୁ ଚାହୁଁଥିଲେ, ''ଧରିଚି ଏଥର, ଯିବ କୁଆଡ଼େ !''

ସେ ଖୁସିରେ କହିଲେ, ''ଗପ ଜମୁଚି, ହାଁ ?''

ଡାଃ ପ୍ରହରାଜ ଅପ୍ରସ୍ତୁତ ଥିଲେ, କିନ୍ତୁ ଈଶ୍ୱରୀ ଉପସ୍ଥିତ ବୁଦ୍ଧି ଖଟାଇ ଚଟ୍‌କରି ମାଗୀକୁ କହିଲେ, ''ରୋଗୀଙ୍କୁ ବୁଲାବୁଲି କରିବା ପାଇଁ ମନା । ବିଶ୍ରାମ ନିଅ । ନ ହେଲେ ଅପରେସନ୍ କରାଯିବ ନାହିଁ ।''

ମାଗୀ କଥାଟିକୁ ଠିକ୍ ଧରିଲା । ''ମତେ ଭୋକ ଲାଗୁଛି, ଆଉ...''

''ମୋ ସାଙ୍ଗେ ଡ୍ରାମା କରନି । ମୁଁ ତୁମକୁ ଜଣାଇଦବାକୁ ଚାହୁଁଛି ଏଇଟା ଗୁରୁତର ମାମଲା, ଆଉ ମୁଁ ଜଣେ ସି.ବି.ଆଇ. ଲୋକ ।''

ଡା. ପ୍ରହରାଜ ଏତେବେଳକୁ ପ୍ରକୃତିସ୍ଥ ହେଲେଣି । ''ଦୟାକରି କଥାବାର୍ତ୍ତା ଭଦ୍ରଭାବରେ କରନ୍ତୁ ମିଃ ମଲ୍‌ହୋତ୍ରା । ଆମେ ଥେଟର ଦଳ ନୋହୁଁ ଯେ ଆପଣଙ୍କ ସାମ୍‌ନାରେ ନାଟକ କରିବୁ । ଈଶ୍ୱରୀ, ରୋଗୀକୁ ଟେବୁଲ୍ ଉପରକୁ ନିଅ । ଆମକୁ ନିୟମ ଅନୁସାରେ କାମ କରିବାକୁ ପଡ଼ିବ ।''

''ଅପରେସନ୍ ନା ଫପରେସନ,'' ମଲ୍‌ହୋତ୍ରା ଅବରୋଧ କରିବାକୁ ଯାଇ ଠିଆ ହେଇପଡ଼ିଲେ । ''କ'ଣ ହେଇଛି ତା'ର, ହାଁ ? ମୁଁ ତମକୁ ଏବେ କେବେ କୋଉଠି ଦେଖିଚି, ବୋଧେ କୋଣାର୍କରେ ?''

''ମୁଁ ଭାବୁଛି ଆପଣଙ୍କୁ କୋଉଠି ଦେଖିଛି,'' ମାଗୀ ଧୀରେ ଧୀରେ କହିଲା, ତା' ଆଖି ସିଧାସଳଖ ଭାବେ ମଲ୍‌ହୋତ୍ରାଙ୍କୁ ଭେଦ କରୁଥିଲା ଯିଏ କି ଅପ୍ରତିଭ ହେଇଗଲେ । ''ମୁଁ କାହାର ମୁହଁ ଭୁଲିପାରେନି । ଆପଣ ଆଉଜଣକ ସାଙ୍ଗେ ଥିଲେ ।''

ମଲ୍‌ହୋତ୍ରା ଡା. ପ୍ରହରାଜଙ୍କ ଆଡ଼କୁ ବୁଲି କହିଲେ, ''ଆପଣଙ୍କୁ ଗୋଟେ ପ୍ରଶ୍ନ ପଚାରିଲି ପରା ? ତା'ର କ'ଣ ହୋଇଛି ?''

''ସରି, ମୋ ରୋଗୀଙ୍କ ରୋଗ ବିଷୟରେ ମୁଁ ଆପଣଙ୍କୁ କିଛି କହିପାରିବି ନାହିଁ । ଏଇଟା ନୀତିବିରୁଦ୍ଧ ।''

''ମତେ ସେ ନୀତିଶାସ୍ତ୍ର ପଢ଼ାଇବା ଦରକାର ନାହିଁ । ମୁଁ ପୋଲିସ୍ ଲୋକ, ଆପଣ ଜାଣନ୍ତି ସି.ବି.ଆଇ.ରୁ ଆସିଛି । ଦିଲ୍ଲୀରୁ । ଆମେ ସି.ବି.ଆଇ. ଲୋକଗୁଡ଼ା ଗୋଟେ ଲେଖା ଜୋକ । ଛାଡ଼ିବା ଲୋକ ନୋହୁଁ ଆମେ । ବାରଘଣ୍ଟା ଭିତରେ ମୁଁ ଆପଣଙ୍କ ଲାଇସେନ୍‌ସ୍ କ୍ୟାନ୍‌ସେଲ୍ କରେଇଦେବି ।''

''ସେଇଟା କରିବାକୁ ବର୍ଷେ ଲାଗିବ, ଯଦି ଆପଣ ସଫଳ ହୁଅନ୍ତି । କିନ୍ତୁ ଆପଣ ସଫଳ ହେବେନି ।''

ହଠାତ୍ ମାଗୀ ମୁରୁକିହସା ଦେଇ ଡାକ୍ତରଙ୍କୁ କହିଲା, ''କିନ୍ତୁ ଡାକ୍ତରବାବୁ, ଆମେ ତାଙ୍କୁ କହିପାରିବା, ଯଦି ସେ ଅପରେସନ୍ ପାଇଁ ପଇସା ଦବାକୁ ଚାହୁଁଥାନ୍ତି । ସେ ବୋଧେ ଚାହୁଁଛନ୍ତି । ସେଇ ବୋଧେ...''

''କି ଅବାନ୍ତର କଥା ! ତମ ଅପରେସନ୍ ପାଇଁ ମୁଁ କାହିଁକି ପଇସା ଦେବି ?''

''ବୋଧେ ସେ ଲୋକଟି ଆପଣ । ଅନ୍ଧାରରେ ମୁଁ ଠିକ୍ ଠଉରେଇପାରି ନ ଥିଲି, କିନ୍ତୁ ଆପଣ ହେଇପାରନ୍ତି ।''

''ସେଇ ଲୋକଟି ମୁଁ, ମାନେ ? ଇଏ କ'ଣ କହୁଛି, ହାଁ ?''

''ବର୍ତ୍ତମାନ ମୁଁ ଭାବୁଛି, ସେ ବୋଧେ ଆପଣ ।''

''ରୁହ ଟିକେ ରୁହ । କଥାଟା ସିଧାସିଧି କର । ମୁଁ ତମକୁ ଦୋଷ ଦେଉଛି ନା ତମେ ମତେ ? ଆରେ ବାବା ମୁଁ ସି.ବି.ଆଇ. ଲୋକ ନା ତମେ ! ତମେ ମତେ ଯା'ଇଚ୍ଛା ତା' ବ୍ୟବହାର ଦେଖେଇପାରିବ ନାହିଁ । ଆପଣ ଏମିତି କେମିତି ହସ୍‌ପିଟାଲ୍ ଚଳାଇଛନ୍ତି ? ଆଶ୍ଚର୍ଯ୍ୟ ।''

''ତୁମେ ଠିକ୍ କହୁଛ ?'' ଡା. ପ୍ରହରାଜ ମାଗୀକୁ ପଚାରିଲେ ।

''ଯେତେ ମୁଁ ୟାଙ୍କୁ ଦେଖୁଛି,'' ମାଗୀ ବର୍ତ୍ତମାନ ଅପ୍ରସ୍ତୁତ ମହାରାଜ ମଲ୍‌ହୋତ୍ରା ଆଡ଼କୁ ତୀକ୍ଷ୍ଣ ଦୃଷ୍ଟି ନିକ୍ଷେପ କରି କହିଲା, ''ସେତେ ନିଶ୍ଚିତ ହଉଛି ଯେ ଯେ ସେଇ । ୟାଙ୍କୁ ଯେ ମୁଁ ଖୁବ୍ ପାଖରୁ ଦେଖିଚି, ଅତି କମ୍‌ରେ ଏତିକି ତ ମୋର ମନେଅଛି । ଆଚ୍ଛା ଆପଣଙ୍କ ନାକର ଡାହାଣପଟରେ କଳାଜାଇଟିଏ ଅଛି ନା ? ଠିକ୍ ତ ।''

''ସେଇଠୁ କ'ଣ ହେଲା । ମୋର ଯୋଉଠି ଇଚ୍ଛା ସେଠି କଳାଜାଇ ଥାଇପାରେ ।''

''ଆଉ ଆପଣଙ୍କ ଡାହାଣଜଙ୍ଘର ଭିତର ପାଖକୁ ଗୋଟିଏ ଜାଇ ଅଛି ।''

''ନା' । ମୋର ସେମିତି କିଛି ନାହିଁ । ସେଇଟା...''

''ତା ହେଲେ ବାଁପଟ ଛାତିରେ କଳା ଜାଇଟିଏ ଅଛି ।''

''ତମେ ଏ କଥା କୋଉଠୁ ଜାଣିଲ ?''

''ତାହେଲେ ସେଇ ଲୋକ ଯାହାଙ୍କ ବାଁପଟ ଛାତିରେ ଜାଇ ଅଛି । ଆଉ ଆପଣ ତାଙ୍କ ଡାହାଣ କାନର ତଳ ଅଂଶରେ ଛୋଟ ତିଳଟିଏ ପାଇବେ ।''

ମହାରାଜ ମଲ୍‌ହୋତ୍ରା ସବୁକଥା ଗୋଳମାଳିଆ ହୋଇଯାଉଥିବାର ଠିକ୍ ଭାବରେ ଅନୁଭବ କଲେ । ବେଳେବେଳେ ଇମିତି ହେଇଯାଏ । ଏପର୍ଯ୍ୟନ୍ତ ସବୁ କଥା ଠିକ୍‌ଠାକ୍ ଚାଲିଥିଲା । ସେ ସୁନ୍ଦର ଭାବରେ ଷ୍ଟେଟ୍ ପୋଲିସ୍‌ଙ୍କୁ ଭୁଆଁବୁଲେଇ ଓ ଡି.ଜି.ଙ୍କୁ କେଞ୍ଚା ମାରି ଆସିଥିଲେ । ହୁଏତ ସେ ଟିକେ ଅଧିକା ମାତିଯାଇଥିଲେ କିନ୍ତୁ ତାଙ୍କ ବସ୍‌ତ ତାଙ୍କୁ ଛିନ୍‌ଭିନ୍ କରିବା, ତାଙ୍କୁ 'ଛେଚିବା' ତଥା ସେ ଯେ ପୋକମାଛିଠୁ ହୀନ ସେ କଥା ଚେତେଇବାକୁ ତାଙ୍କୁ କହିଥିଲେ । କାରଣ ତାଙ୍କୁ ହିଁ ଜଣା ଥିବ । ମଲ୍‌ହୋତ୍ରା ଭାବିଲେ ତାଙ୍କ ବସ୍ ଜଣେ ଆଶ୍ଚର୍ଯ୍ୟ ରକମର ଜନ୍ତୁ । ରାଗିଲେ ନାଲି ପଡ଼ିଯାଉଥିବା ତାଙ୍କ ବସ୍ ଥିଲେ ଗେଡ଼ା, ମୋଟା, ଚନ୍ଦା ଓ ଅତ୍ୟନ୍ତ ପରିମାର୍ଜିତ । ନାଁ ସତ୍ୟମୁଖ ଶାସ୍ତ୍ରୀ । ସାଧାରଣରେ ଏସ୍.ଏସ୍. ନାମରେ ସେ ପରିଚିତ ଥିଲେ ଯାହାକି ତାଙ୍କ ସି.ବି.ଆଇ. ଚାକିରିକୁ ଠିକ୍ ସୁହେଇଲା ଭଳି ନାଁ । ଅବଶ୍ୟ ଅବସର ନବା ପୂର୍ବରୁ, ଯାହାକି ଆହୁରି ଦୁଇବର୍ଷ ବାକି ଅଛି, ତାଙ୍କର ଭାରତର ଗୁପ୍ତଚର ସଂସ୍ଥାର RAW ର ମୁଖ୍ୟ ହେବା ପାଇଁ ଭାରି ଆଗ୍ରହ ଅଛି । ତାଙ୍କ ସ୍ତ୍ରୀ ଗୃହମନ୍ତ୍ରୀଙ୍କର ଦୂର ସମ୍ପର୍କୀୟା

ଏବଂ ତାଙ୍କପାଇଁ 'ଚେଷ୍ଟା' କରୁଛନ୍ତି । ମଲ୍‌ହୋତ୍ରାଙ୍କ ମତରେ ଏସ.ଏସ୍. ଏକ ରକମର ମିଶାମିଶି ଲୋକ । ବେଳେବେଳେ ଦୟାଳୁ ହେଲେବି ଅନ୍ୟ ସମୟରେ ଅତ୍ୟନ୍ତ ନିର୍ଦ୍ଦୟ, ସତେଯେମିତି ସେ କ'ଣ ହବାକୁ ଚାହୁଁଛନ୍ତି ନିଷ୍ପତ୍ତି କରି ପାରି ନାହାନ୍ତି ।

ନିଜ କଥା କହିବାକୁ ଗଲେ ମଲ୍‌ହୋତ୍ରା ପରିଷ୍କାର ଲୋକ । ଆଇ.ପି.ଏସ୍. ବାଜି ନ ଥିଲା ତାଙ୍କର । ତେଣୁ ସେ ସିଧାସଳଖ ସି.ବି.ଆଇ. ରେ ପଶିଲେ, ତା' ଅର୍ଥ ତାଙ୍କୁ ପକ୍କା କାମ କରି ଉପରକୁ ଉଠିବାକୁ ପଡ଼ିବ । ସେତକ କରିବାକୁ ତାଙ୍କୁ କାର୍ଯ୍ୟଦକ୍ଷ ହେବାକୁ ପଡ଼ିବ । ଯାହାକି ସେ ହେଇଛନ୍ତି ବୋଲି ଭାବନ୍ତି । ତା'ପରେ. ତାଙ୍କ ସି.ସି.ଆର୍. ଅବିଚ୍ଛିନ୍ନ ଭାବେ ଭଲ ହେଇଥିବା ଚାହି, ସେତକ କରିବା ପାଇଁ ତାଙ୍କୁ ତାଙ୍କର ସମସ୍ତ ବସ୍‌ଙ୍କୁ ଖୁସୀ ରଖିବା ଦରକାର, ଯାହାକି ସେ ରଖିଛନ୍ତି । ଫଳତଃ ଉନ୍ନତିର ରାସ୍ତାରେ ଅବାଞ୍ଛିତ ମନେହେଉଥିବା ଲୋକଙ୍କୁ ସିଏ ଅବହେଳା ପ୍ରଦର୍ଶନ କରିଆସିଛନ୍ତି । ତା'ଛଡ଼ା ବିଭିନ୍ନ ସମୟରେ କ୍ଷମତାକୁ ଆସୁଥିବା ତିନୋଟି ମୁଖ୍ୟ ଦଳର ବଡ଼ବଡ଼ିଆଙ୍କ ସହ ସେ ଠିକ୍ ମତଲବରେ ଭାବ ରଖିଛନ୍ତି । ଶେଷରେ ସେ କଂଗ୍ରେସର ଜଣେ ବଡ଼ ନେତାଙ୍କ ବିଧବାଝିଅକୁ ବାହା ହେଇଛନ୍ତି, ଯିଏକି ଜନତା ଦଳର ଗୋଟେ ବଡ଼ ନେତାଙ୍କ ପୁଅକୁ ବାହା ହୋଇଥିଲା, ଯାହାଙ୍କର ଅନ୍ୟ ପୁଅଟି ବି.ଜେ.ପି. ର ଗୋଟିଏ ଟାଣୁଆ ସଦସ୍ୟ । ସେ ଭାବୁଥିଲେ ତାଙ୍କ ହାତ ପାହାନ୍ତାରେ ସବୁ ଅଛି । ଶେଷରେ ସେ ପ୍ରଧାନମନ୍ତ୍ରୀ ଅଫିସ୍ ତଥା ଘରେ ବିଭିନ୍ନ ପ୍ରକାର ସୂଚନା ଆଗତୁରା ଜଣାଇ ସେମାନଙ୍କ ପ୍ରିୟଭାଜନ ହୋଇଛନ୍ତି । ଅଳ୍ପ ଦିନ ଭିତରେ ତାଙ୍କର ଏସ୍.ପି. ପାହ୍ୟାକୁ ପଦୋନ୍ନତି ହେଇଯାଇପାରେ । ଏକରକମର ସବୁ ହେଇସାରିଛି । ଖାଲି ଗୃହମନ୍ତ୍ରୀଙ୍କ ଦସ୍ତଖତଟା ବାଜିଗଲେ ଅର୍ଡ଼ର ଇସୁ ହବ । ବର୍ତ୍ତମାନ ସେ ଡେପୁଟି ଇନିସ୍‌ପେକ୍‌ଟର ଜେନେରାଲ୍ ହବାର ଲକ୍ଷ୍ୟ ନେଇ କାମ କରୁଛନ୍ତି । କଷ୍ଟ କାମ, ତଥାପି ପ୍ରଧାନମନ୍ତ୍ରୀଙ୍କ ସାହାଯ୍ୟରେ ଏଇଟି କରିପାରିବେ ବୋଲି ସେ ଭାବୁଛନ୍ତି । ତେଣୁ ଏଇ ଅନୁସନ୍ଧାନ ପରେ, ଯେଉଁଥିପାଇଁ ପ୍ରଧାନମନ୍ତ୍ରୀ ନିଜେ ତାଙ୍କ ସହ ଷାଠିଏ ସେକେଣ୍ଡ୍ କଥା ହେଇଛନ୍ତି, ତାଙ୍କର କାମ ହୋଇଯିବ ।

''ତମେ କାମଟା କର, ତା'ପରେ ମୁଁ ଦେଖିବି ମୁଁ ତମ ପାଇଁ କଣ କରି ପାରୁଛି ।'' ପ୍ରଧାନମନ୍ତ୍ରୀ କହିଥିଲେ ।

''ମୁଁ ଯଦି ଆପଣଙ୍କୁ ଠିକ୍ ଭାବରେ ବୁଝିପାରୁଥାଏ ସାର୍, ମୁଁ ସେ ଲୋକଟାକୁ ଖୋଜିବି, ସୁରକ୍ଷା ଦେବି ତଥା ମୁଖ୍ୟମନ୍ତ୍ରୀଙ୍କ ବିରୋଧରେ ତାକୁ ହତ୍ୟା କରିବାକୁ ଚେଷ୍ଟା କରିବା ମାମଲାରେ ସାକ୍ଷୀ ଦେବାକୁ ପ୍ରବର୍ତ୍ତେଇବି । ଆଉ ଯଦି ସେ ମନା କରେ ତାକୁ ଖତମ କରି ମୁଖ୍ୟମନ୍ତ୍ରୀଙ୍କର ସେ ମାମଲାରେ ହାତଅଛି ବୋଲି ପ୍ରମାଣ ଏକାଠି କରିବି ।''

''ଠିକ୍ ବୁଝିଚ । ତମର ରାଜନୀତି କରିବା ଉଚିତ । ଭାବ, ଓ ଆସନ୍ତା ନିର୍ବାଚନ ପୂର୍ବରୁ ମତେ ଜଣାଅ । ରାଜନୀତିରେ ଉଦୀୟମାନ ଅମଲାମାନଙ୍କୁ ଆମେ ଚାହୁଁ । ଗୁଡ୍ ଲକ୍ ।''

ଆଉ ଓଡ଼ିଶା ପରି ଗୋଟାଏ ପଛୁଆ ରାଜ୍ୟର ନିର୍ବୋଧ ହଡ଼ା କେଇଟା ତାଙ୍କୁ ଭୂତେଇବାକୁ ବସିଛନ୍ତି । ଏଗୁଡ଼ାଙ୍କୁ ସେ ଦେଖେଇଦେବେ । କିନ୍ତୁ ସେ ଚିନ୍ତାରେ ପଡ଼ି ଯାଇଥିଲେ । ଏ ଟୋକୀ ତାଙ୍କ ଦେହରେ କୋଉଠି କି ଚିହ୍ନ ଅଛି କେମିତି ଜାଣିଲା । ଗତଥର ସେ କୋଣାର୍କ ଓ ପୁରୀ ଯେତେବେଳେ ଆସିଥିଲେ ତାଙ୍କ ସାଙ୍ଗେ ସୁନୀତି ଥିଲେ । ତେଣୁ ଆଉ କୌଣସି ସ୍ତ୍ରୀ ଲୋକସହିତ ମିଳାମିଶାର ପ୍ରଶ୍ନତ ଉଠୁନି । ଛ'ମାସ ପୂର୍ବର ସେ ଘୂର୍ଣ୍ଣିବାତ୍ୟା ପରି ଦିନଗୁଡ଼ିକ ତାଙ୍କର ସମ୍ପୂର୍ଣ୍ଣ ମନେ ନାହିଁ । ଝାପ୍‌ସା ହେଇଗଲାଣି ! ସେ ଦୁଇଟିଯାକ ସ୍ଥାନରେ ସମୁଦ୍ରରେ ଗାଧେଇଥିଲେ । ସେଇଠି କେହି ଲକ୍ଷ୍ୟ କରିଥାଇପାରେ, କିନ୍ତୁ ତାଙ୍କୁ ଏତେ ନିବିଡ଼ ଭାବରେ କିଏ କାହିଁକି ଲକ୍ଷ୍ୟ କରିବ ? ଯଦି କେହି ତା କରିଥିବ, ସେ ସୁନୀତି ବିଷୟରେ ନିଶ୍ଚୟ ଜାଣିଥିବ । ସେ ବିଶୃଙ୍ଖଳିତ ହେଇଗଲେ । କେହି ଯେ ଜାଣିଥିବ ସେ ଭାବି ପାରି ନ ଥିଲେ । ସୁନୀତି ମଧ୍ୟପ୍ରଦେଶର ଜଣେ ବି.ଜେ.ପି. ଏମ୍.ପି.ଙ୍କ ଭଉଣୀ । ଦିଲ୍ଲୀର ରାଜଧାନୀ କଲେଜରେ ଅଧ୍ୟାପିକା । ସୁନୀତି ଥିଲେ ତାଙ୍କ ଆଖିର ପିତୁଳା । ଗତଥରର ଓଡ଼ିଶା ରହଣି ଜଳନ୍ତା ନିଆଁ ପରି, ଅନିର୍ବାପିତ ଦ୍ୱନ୍ଦ୍ୱ ଆଉ ଅସରନ୍ତି କାମନା । କିନ୍ତୁ ଯଦି କେହି ବି ତାଙ୍କ ବିବାହର ରହସ୍ୟ ଜାଣିଥାଏ ଯାହାକି ଅତି ସୂକ୍ଷ୍ମ ଡୋରିରେ ତିନୋଟି ରାଜନୈତିକ ନେତାଙ୍କ ସହ ଜଡ଼ିତ, ତେବେ ସେ ଲୋକଟି ହିଁ ଅସୁବିଧାରେ ପଡ଼ିବ ।

ଏ ସ୍ତ୍ରୀଲୋକଟି ସମ୍ୟକ୍ ସୂଚନା ଦେଇଚି । ନିଜ ଭଲ ପାଇଁ, ହୁଏତ ପ୍ରକୃତରେ କିଛି ଜାଣି ନ ଥିବ । ଜାଣିବା ଉଚିତ ବି ନୁହଁ ।

ଆଉ ବର୍ତ୍ତମାନ ସେମାନେ ସେ ସ୍ତ୍ରୀଲୋକକୁ ଅପରେସନ୍ ପାଇଁ ନଉଛନ୍ତି । ତେବେ କ'ଣ ସେ ପ୍ରକୃତରେ ଅସୁସ୍ଥ ? ନିଜେ ଟିକିଏ ସନ୍ତର୍ପିତ ହେଇଯିବା ଭଲ, ସେ ଭାବିଲେ ।

କଥା ହାତପାହାନ୍ତାରୁ ବାହାରକୁ ଗଲେ କଣ କରାଯିବ ତାଙ୍କୁ ଜଣା, ବେଳେବେଳେ ଏମିତି ହୁଏ । ପରିସ୍ଥିତି ନିୟନ୍ତ୍ରଣରେ ଥିବ, ହଠାତ୍ ହାତରୁ ଖସି ଏମିତି ଗୋଟାଏ ଅବାନ୍ତର ସ୍ତରକୁ ଚଲିଯିବ ଯେ ତମେ ଜାଣିପାରିବନି କ'ଣ କରିବାକୁ ପଡ଼ିବ ।

କିନ୍ତୁ ସେ ଜାଣନ୍ତି ପୁଣି କିମିତି ସେ ସବୁକୁ ହାତମୁଠାକୁ ଅଣାଯାଇପାରିବ । ସେମାନେ ସମ୍ଭବତଃ ସେ ମାଇକିନାକୁ ଅପରେସନ ଥିଏଟରକୁ ନଉଚନ୍ତି ।

''ଦେଖିବା ତା'ର କ'ଣଟା ଅପରେସନ ହଉଚି,'' ସେ ନିଜକୁ ନିଜେ କହିଲେ । ସେ ସାଧାରଣତଃ ନିଜ ସହ କଥାବାର୍ତ୍ତା କରନ୍ତି । ନିଜକୁ ନିୟନ୍ତ୍ରଣକୁ ଆଣିବାପାଇଁ ଏଇଟା ତାଙ୍କର ଗୋଟାଏ ବାଟ । ସେ ଟିଭିରେ ଖେଳାଳିଙ୍କୁ ଦେଖି ଏକଥା ଶିଖିଚନ୍ତି ।

ସେ ତାଙ୍କ କଳା ଚଷମାଟା ପିନ୍ଧିଲେ । ତାଙ୍କ ଆଖି ସାମ୍ନାରେ ଆଲୁଅ ଏତେ ପରିମାଣରେ କମିଗଲା ଯେ ତାଙ୍କୁ ବାହାରର ଦୃଶ୍ୟଗୁଡ଼ିକ ଅଲଗା ତଥା ଅତିବାସ୍ତବତାରୁ ସୁଦୂର ଲାଗିଲା ।

ଡାକ୍ତର ବର୍ତ୍ତମାନ ଜଣେ ବିଗତ ବର୍ଷର ଏଲ.ଏମ୍.ପି.ର ପୁରାତନ ଧ୍ୱଂସାବଶେଷ ପରି ଜଣାପଡୁଥିଲେ, ଚାଲାକ୍ ଅସୁର ପରି ନୁହେଁ । ନର୍ସଟା ଗୋଟାଏ ଆତ୍ମସନ୍ତୁଷ୍ଟ ମଧ୍ୟବୟସ୍କା ସ୍ତ୍ରୀଲୋକ ପରି ଦିଶୁଥିଲା ଯିଏକି ନିଜ ଚତୁରତା ପାଇଁ ନିଜକୁ ତୁହାକୁ ତୁହା ବାହାବା ଦେଉଥିଲା । ରୋଗୀଟା ଇତର ଲୋକଟେ ପରି ଲାଗିଲା ଯିଏକି ହୁଏତ କୌଣସି ଛୋଟ ଷଡ଼ଯନ୍ତ୍ରରେ ଲିପ୍ତ ।

ସେ ବର୍ତ୍ତମାନ ଜାଣିପାରୁଥିଲେ ଇମିତି ଲୋକଙ୍କୁ କିମିତି ସାବାଡ଼୍ କରିବାକୁ ହବ ଏବଂ ସେ ନିଶ୍ଚିତ ହେଲେ ଯେ ସୁନୀତି ପାଣ୍ଡେ ବିଷୟରେ ଏ ମାଇକିନାକୁ କିଛି ଜଣା ନାହିଁ । ତାଙ୍କର ବର୍ତ୍ତମାନ ଦେଖିବା କଥା ପ୍ରକୃତରେ ତା'ର ଅପରେସନ ହଉଚି କି ନାହିଁ ।

ତାକୁ ଯେତେବେଳେ ନର୍ସଟି ନେଇଯାଉଥିଲା ସେତେବେଳେ ମଲ୍‌ହୋତ୍ରା ଦେଖିଲେ ଯେ ଛୋଟଝିଅଟିଏ କବାଟ ପାଖକୁ ଆସି ଗୁପ୍ତରେ କିଛି ଓଡ଼ିଆରେ କହିଲା । ମଲ୍‌ହୋତ୍ରା କଥାଟା କାନେଇ ଶୁଣିବାକୁ ଚେଷ୍ଟାକଲେ । କ'ଣ ଗୋଟାଏ ସାତନମ୍ବରବାଲା ଯିଏକି ଉଭେଇ ଯାଇଛି ।

"ଆହା," ସେ ଭାବିଲେ, "ଗୋଟାଏ ଉଭାନ ରୋଗୀ ?"

ହାବୁଡ଼ରେ ପଡ଼ିଚନ୍ତି । ସେ ଏ ଖିଅ ଉପରେ ଝାମ୍ପ ମାରିଲେ ।

"କିଏ ଉଭେଇଗଲା ?" ସେ ପଚାରିଲେ ।

"କିଏ କାହିଁକି ଉଭେଇଯିବ ?" ଡା. ପ୍ରହରାଜ କହିଲେ ।

"କିଏ ମୁଁ କେମିତି ଜାଣିବି ?" ମଲ୍‌ହୋତ୍ରା ବିରକ୍ତ ହୋଇ କହିଲେ । "ଆଉ ମତେ ପ୍ରଶ୍ନ ପଚାରନି । ଶେଷଥର ପାଇଁ କହୁଛି, ମୁଁ ଜଣେ ସି.ବି.ଆଇ. ଅଫିସର । ମୁଁ ତମକୁ ପ୍ରଶ୍ନ ପଚାରିବି ଆଉ ତମକୁ ଉତ୍ତର ଦବାକୁ ପଡ଼ିବ ।"

ଈଶ୍ୱରୀ ମାଗୀକୁ ନେଇଯାଉଥିଲାବେଳେ କବାଟ ପାଖରୁ ଡା. ପ୍ରହରାଜଙ୍କୁ ପଚାରିଲା ଦୃଷ୍ଟିରେ ଚାହିଁଲା ।

ଠିକ୍ ଏତିକିବେଳେ ହାତରେ ଚାରିକପ୍ ଚା'କୁ ଗୋଟାଏ ଜାଲି ଝୁଲାରେ ଧରି ଦୁଆରପଟୁ କପିଳା ପଶିଲା । ଈଶ୍ୱରୀ ଓ ମାଗୀ ରହିଗଲେ ।

ସେ ଭିତରକୁ ପଶୁ ପଶୁ କହିବାକୁ ଆରମ୍ଭ କରିଦେଲା, "ସାତନମ୍ବର କ'ଣ ପଳେଇଲା ? ନନୀ ସେ ପାନ ଦୋକାନୀ କହିଲା ଯେ..."

ସେ ହଠାତ୍ ଚୁପ୍ ହେଇଗଲା କିଛି ଗଣ୍ଡଗୋଳିଆ ପରିସ୍ଥିତି ଅନୁମାନ କରି । କିଛି ସମୟ ପାଇଁ ଥମ୍ କରି ନୀରବତା ଖେଳିଗଲା ।

''ଆରେ ବୋକା, ମୁଁ ଏଇଠି ତ ଅଛି,'' ମାଗୀ ଶାନ୍ତ ପବନ ପରି କହିଲା, ''ମୁଁ ପଳେଇବି କାହିଁକି ? ହଉ ଚା' ଦେଲୁ ଭୋକ ଲାଗୁଚି ।''

''ଉଁହୁଁ ତମେ ଚା' ପିଇବନି,'' ଈଶ୍ୱରୀ ଉପସ୍ଥିତ ବୁଦ୍ଧି ଖଟେଇ କହିଲା, ''ତମେ ଏବେ ଓ.ଟି.କୁ ଯିବ ।''

କପିଳା ବାଉଳା ହେଇ ଟେବୁଲ ଓପରେ ଦୁଇକପ୍ ଚା' ରଖି ଈଶ୍ୱରୀ ଓ ମାଗୀଙ୍କ ପଛପଟେ ଚୁପ୍‌ଚାପ୍ ଠିଆ ହେଲା । ଡା. ପ୍ରହରାଜ ଆଶ୍ୱସ୍ତିରେ ନିଃଶ୍ୱାସ ଛାଡ଼ିଲେ ।

ମଲ୍‌ହୋତ୍ରା ଚୁପ୍‌ଚାପ୍ ଚାହିଁଥିଲେ । ସେ କାହାରିକି ବାଧା ଦେଲେନି ଜମା । ମୁରୁକିହସା ଦଉଥିଲେ । ''ଗୋଟାଏ କଥାତ ମୁଁ ଆଜି ନିଶ୍ଚୟ ଦେଖିବି,'' ସେ କହିଲେ, ''ତମେ ସେ ସ୍ତ୍ରୀଲୋକର କୋଉ ଅପରେସନ କରିବ । କିନ୍ତୁ ତା' ପୂର୍ବରୁ ମୁଁ ଯାତନାଘର କୋଠରିଟି ଦେଖିବାକୁ ଚାହୁଁଛି । ଦେଖାଅ ମତେ ।''

ସେ ଠିଆ ହେଲେ ।

''ଯାତନାଘର କୋଠରି କିଛି ନାହିଁ ।''

''ତା ହେଲେ ଯେତେ କୋଠରି ଅଛି ମୁଁ ସବୁ ଦେଖିବି ।''

ଡା. ପ୍ରହରାଜ ଧୀରେ ଠିଆ ହେଲେ ଓ ପୁଣି ବସିପଡ଼ିଲେ । ''ଠିକ୍ ଅଛି ଦେଖନ୍ତୁ,'' ସେ କହିଲେ ଓ ଡ୍ର'ରୁ ଟବାକୋ ମୁଣା କାଢ଼ିଲେ ।

''ମାନେ ତମେ ମତେ ଦେଖେଇବନି ।''

''ମୋର ଆପଣଙ୍କୁ କିଛି ଦେଖେଇବା ଦରକାର ନାହିଁ ।''

ଡାଃ ପ୍ରହରାଜ ସିଗାରେଟ୍ ଆରମ୍ଭ କଲେ ଓ ମଲ୍‌ହୋତ୍ରା କୋଠରି ବାହାରକୁ ଚାଲିଆସିଲେ ।

ଗୋଟିଏ ଲମ୍ବା ହଲ୍‌ରେ ଗୋଟାଏ ପାଖରେ ଚାରୋଟି ଛୋଟ ଛୋଟ କୋଠରି ଥିଲା । ଚାରୋଟିଯାକରେ ରୋଗୀ ଥିଲେ ଆଉ ତାଙ୍କ ନିଜ ଲୋକମାନେ ଥିଲେ । ସାଧାରଣ ଗାଉଁଲୀ ଓଡ଼ିଆ ଲୋକଗୁଡ଼ା, ମଲ୍‌ହୋତ୍ରା ଭାବିଲେ । ପଞ୍ଚମ ଗୃହରେ ଲେଖା ଥିଲା 'ଅପରେସନ ଥିଏଟର', ଯୋଉଠି ମାଗୀ ଗୋଟିଏ ଟେବୁଲ ଓପରେ ଧଳା ଚାଦରଟିଏ ଘୋଡ଼ିହେଇ ଶୋଇଥିଲା । ସେ ଚାଦର ତଳୁ ହାତ କାଢ଼ି ତାଙ୍କୁ ଡାକିଲା ଡରଡର ହେଇ । ମଲ୍‌ହୋତ୍ରା ଦ୍ୱିଧାରେ ପଡ଼ିଲେ କିନ୍ତୁ ଶେଷରେ ଭିତରକୁ ଗଲେ ।

ଈଶ୍ୱରୀ ପାଟିକଲା, ''ଜୋତା, ଜୋତା, ବାହାରେ ରଖନ୍ତୁ ।''

ମଲ୍‌ହୋତ୍ରା ଜୋତା ରଖିବାକୁ ପଛକୁ ଫେରିଲେ, ତାପରେ ମାଗୀ ପାଖକୁ ଆସିଲେ ।

''ମତେ କିଛି କହିବାକୁ ଚାହୁଁଚ ? ତମରି ଭଲ ପାଇଁ କହୁଛି, ମତେ ସବୁ କଥା କହିଦିଅ । ମୁଁ ତମକୁ ରକ୍ଷା କରିବି । ତମର କିଛି କ୍ଷତି ହେବନି ।''

''କ'ଣ ସେ କହୁଛନ୍ତି ?'' ମାଗୀ ପଚାରିଲା, ତାଙ୍କ ହିନ୍ଦୀଭାଷା ନ ବୁଝି ପାରିଲା ପରି । ଯଦିଓ ସେ ଠିକ୍ ବୁଝିଥିଲା ।

ଈଶ୍ୱରୀ ଅନୁବାଦ କଲା ।

''ମୁଁ ତାଙ୍କୁ ସବୁକଥା କହିବି । କିନ୍ତୁ ପ୍ରଥମେ ତାଙ୍କୁ ମୋ ପ୍ରଶ୍ନର ଉତ୍ତର ଦବାକୁ ପଡ଼ିବ ।''

''ସେ କ'ଣ କହୁଛି ?''

ଈଶ୍ୱରୀ ତାଙ୍କୁ ବୁଝେଇଦେଲେ ଭଙ୍ଗା ହିନ୍ଦୀରେ ।

ଗୋଟିଏ ଘୋଡ଼ିଆ ହେଇଥିବା କିଡନି ଟ୍ରେ ଧରି କପିଳା ଆସିଲା ଓ ମାଗୀ ଅନ୍ୟପଟକୁ କ୍ଷୀପ୍ରତାର ସହ ଚାଲିଯାଇ କୋଉଠି ଗୋଟାଏ ଟ୍ରେ'ଟିକୁ ନିଃଶବ୍ଦରେ ଥୋଇଦେଲା ।

''କ'ଣ ତା'ର ପ୍ରଶ୍ନ ?'' ମାଲ୍‌ହୋତ୍ରା ପଚାରିଲେ ।

''କ'ଣଟା ଏମିତି ତାଙ୍କୁ ପଚାରିବାକୁ ଚାହୁଁଚୁ ?'' ଈଶ୍ୱରୀ ମାଗୀକୁ ପଚାରିଲା । ସଂଦିଗ୍ଧ ଭାବରେ ।

''ତାଙ୍କୁ ପଚାର ମୁଁ ତାଙ୍କ ପିଲାକୁ ରଖିବି ନା ଧୋଇଦେବି ।''

ଈଶ୍ୱରୀ- ସାନ୍ତ୍ୱନା ପାଇଲା ଓ ସମାନ୍ୟ ହସି· ଅନୁବାଦ କଲା ।

ମଲ୍‌ହୋତ୍ରା ଜଲ୍‌ଦି ପଛକୁ ଫେରିଗଲେ ।

ଡା. ପ୍ରହରାଜ ପହଞ୍ଚିଲେ, ସେ ବାହାରିଲା ବେଳକୁ ।

ହଲ୍‌ର ଆରପଟେ ଗୋଟାଏ ବଡ଼ କୋଠରି ଥିଲା ଯୋଉଥିରେ ସାତଟା ଖଟ ପଡ଼ିଥିଲା । ସବୁ ଖଟରେ ରୋଗୀ ଥିଲେ । ସାନଝିଅଟି ଗୋଟିଏ ବେଡ୍ ପାଖରୁ ଆସି ଦୁଆର ପାଖରୁ ତାଙ୍କୁ ଚାହିଁରହିଲା । ସେ ବାହାରି ଆସିବା ପରେ ଅପରେସନ ଥିଏଟର୍ ଦୁଆର ବନ୍ଦ ହେଇଯାଇଥିଲା । ଖାକି ପ୍ୟାଣ୍ଟ୍ ଓ ସ୍ୟାଣ୍ଡୋ ଗେଞ୍ଜି ପିନ୍ଧିଥିବା ଜଣେ ଚପରାସୀ ବା କେହିଜଣେ ପ୍ରତୀକ୍ଷା ଗୃହର ବେଞ୍ଚ ଉପରେ ଘୁମୋଉଥିଲା । ପଛ କାନ୍ଥରେ ଦି'ଟା ଦୁଆର ଥିଲା । ଡାହାଣପଟଟା ପାଇଖାନା ଗାଧୁଆ ଘରର ସେ

ଦୁଆରଟା ଅଧାମେଲା ଥିଲା । ବାଁ ପଟ ଦୁଆରଟା ଓ.ଟି. ପାଖ ଘରର, ଯୋଉଠି ପାଣ୍ଡୁକୁ ରଖାଯାଇଥିଲା । ସେ ଘରର ଦୁଆରଟା ବନ୍ଦ ଥିଲା ଆଉ ବାହାରୁ ଘିଡ଼ିକା ଲଗା ଯାଇଥିଲା । ମଲ୍‌ହୋତ୍ରାଙ୍କର ଛାତି ଧଡ୍ ଧଡ୍ ହେଲା ।

ଯେମିତି ସେ ଦୁଆରକୁ ଖୋଲିଚନ୍ତି ଅପରେସନ ଥିଏଟର୍‌ରୁ ଗୋଟାଏ ଚିତ୍କାର ଶୁଭିଲା, ରହି ରହି ଅଥଚ ସ୍ପଷ୍ଟ । ଝିଅଟି ୱାର୍ଡ଼ ଭିତରକୁ ଦୌଡ଼ି ପଳେଇଲା । ଚପରାସୀଟି ସିମିତି ଘୁମୋଉଥିଲା । ମଲ୍‌ହୋତ୍ରା ବୁଲିପଡ଼ିଲେ ଓ ଅପରେସନ୍ ଥିଏଟର୍ ଆଡ଼କୁ କ୍ଷୀପ୍ର ବେଗରେ ଚାଲିଲେ । କୋଠରିଟି ଭିତରପଟୁ ବନ୍ଦ ନ ଥିଲା । ଖୋଲିବାର ଶବ୍ଦରେ ଡାକ୍ତର କବାଟ ଆଡ଼କୁ ବୁଲି ଚାହିଁଲେ । ମୁଖା ଉପର ତାଙ୍କ ଦୃଶ୍ୟମାନ ଆଖି ଦୁଇଟିରେ ଚାଞ୍ଚଲ୍ୟ ଭରିଥିଲା, ପୂର୍ବରୁ କପିଳା ଲୁଚେଇ ଆଣିଥିବା କିଡନି ଟ୍ରେଟାକୁ ସେ ଉଠେଇଲେ । ତହିଁରେ ଥିଲା ମେଞ୍ଚାଏ ରକ୍ତ ଜୁଡୁବୁଡୁ ଗ୍ରନ୍ଥି । ଡା. ପ୍ରହରାଜ ସେହି ଅଘୋଡ଼ିଆ ଟ୍ରେକୁ ମଲ୍‌ହୋତ୍ରାଙ୍କ ଆଡ଼କୁ ବଢ଼େଇଲେ ।

''ଆପଣଙ୍କ ସନ୍ତାନ,'' ସେ କହିଲେ ।

ମଲ୍‌ହୋତ୍ରାଙ୍କର ଓଟାର ଉଠିଲା । ପଛକୁ ଡେଇଁପଡ଼ି ଓ କବାଟକୁ ଟାଣିଆଣି ସେ ଗାଧୁଆଘର ଆଡ଼କୁ ଧାଇଁଲେ ।

''ସେ ଗାଧୁଆଘର ଆଡ଼କୁ ଯାଉଚନ୍ତି,'' କପିଳା କବାଟରେ ଥିବା ଛୋଟ କଣାବାଟେ ଦେଖି କହିଲା ।

ମାଗୀ ଅପରେସନ୍ ଟେବୁଲ୍ ଓପରେ ଉଠି ବସିଲା ଓ ହସି ହସି କହିଲା, ''ଆମେ ତାହେଲେ ତାକୁ ବୋକା ବନେଇଦେଲେ ?''

''ଭାବୁଚି,'' ଈଶ୍ୱରୀ କହିଲା, ''ତୁ ସିଆଣିଆ ଅଛୁ ।''

''ଏତେ ସହଜ ନୁହଁ,'' ଡା. ପ୍ରହରାଜ କହିଲେ, ''ଯଦି ତା' ମୁଣ୍ଡରେ ସାମାନ୍ୟ ବୁଦ୍ଧି ଥିବ ତେବେ ସେ ଏତେ ସହଜରେ ଛାଡ଼ିବନି । ତେଣୁ ଆମକୁ ସତର୍କ ରହିବାକୁ ପଡ଼ିବ ।''

''ଆମେ ଆଉ କ'ଣ କରିବା ?'' ଈଶ୍ୱରୀ କହିଲା, ''ପାଣ୍ଡୁ ତ କୁଆଡ଼େ ଡିଆଁ ମାରି ଦେଲାଣି ।''

ମାଗୀ କହିଲା, ''ମୋ ମୁଣ୍ଡରେ ତ କିଛି ବି ପଶୁନି ।''

''ବର୍ତ୍ତମାନ ସେ ଗାଧୁଆଘରୁ ବାହାରି ଆସିଲେଣି,'' କପିଳା ତା' ଧାରାବିବରଣୀ ଜାରି ରଖି କହିଲା, ''ବର୍ତ୍ତମାନ ସେ ସାତନମ୍ବର ଆଡ଼କୁ ଯାଉଚନ୍ତି ।''

ଡା. ପ୍ରହରାଜ କପିଳାକୁ କହିଲେ, ''ତୁ ଜଲ୍‌ଦି ପାନ ଦୋକାନକୁ ଯା' ଆଉ ନନୀକୁ କହ ସେ ତା' ପାଟି ବନ୍ଦ ରଖୁ ।''

''ସେ ସାତନମ୍ବର ଦୁଆର ଖୋଲୁଚନ୍ତି,'' କପିଳା କହିଲା ।

ମଲ୍‌ହୋତ୍ରା କବାଟ ଖୋଲିଲେ ଓ ଦେଖିଲେ ଗୋଟାଏ ସରୁ ବାରଣ୍ଡା ଯୋଉଠି କିଛି ଆଲଣା, ବେଡ୍‌ପ୍ୟାକ୍, ଡ୍ରିପ୍‌ଷ୍ଟାଣ୍ଡ, ଷ୍ଟ୍ରେଚର ଇତ୍ୟାଦି ଡାହାଣପଟ କାନ୍ଥକୁ ଲାଗି ପଡ଼ିଥିଲା । ଜାଗାଟି ଭିତରର ପବ୍‌ନ ରୁନ୍ଧିଲା ପରି ଓ ହସପିଟାଲର ଡେଟଲ ଗନ୍ଧ ପୂର୍ଣ୍ଣ । ପଛପଟକୁ ଯୋଉ ଦୁଆରଟା ଥିଲା ସେଇଟା ପଛପଟ ହତାକୁ ଖୋଲୁଥିବ ବୋଲି ମଲ୍‌ହୋତ୍ରା ଠଉରେଇନେଲେ । ବାଁ ପଟ କାନ୍ଥରେ ଅନ୍ୟ ଏକ ଦୁଆର ଥିଲା । ବାଘ ହାତ ପାଆନ୍ତାରେ ଶିକାର ପାଇଗଲା ପରି ସେ ଉତ୍ତେଜିତ ହେଇଗଲେ । କୋଠରି ବାହାରୁ ବନ୍ଦ ଥିଲା । କବାଟ ଖୋଲି ମଲ୍‌ହୋତ୍ରା ଭିତରକୁ ଗଲେ । କୋଠିରିଟା କେହି ରହୁଥିବା ପରି ସତେଜ ଥିଲା । ସଫା ଥିଲା । ଖଟରେ ଶେଯ ପଡ଼ିଥିଲା ଆଉ ତା ଓପରେ କେହି ଶୋଇଥିବାର ଆଭାସ ଥିଲା । ଖଟ ଆରପଟ କାନ୍ଥରେ ଆଉ ଗୋଟାଏ ଦୁଆର ଥିଲା । ମଲ୍‌ହୋତ୍ରା ସେ ଦୁଆର ପାଖକୁ ଗଲେ । ସେଇଟା ଗାଧୁଆ ଘର । ଖାଲି ଥିଲା କିନ୍ତୁ ସମ୍ପୂର୍ଣ୍ଣ ଶୁଖିଲା ନ ଥିଲା । ସେ ଫେରିଆସି ତାଙ୍କ ବାଁପଟରେ ଥିବା ଆଲମାରି ଖୋଲିଲେ ସେଥିରେ ଚାଦର, ତକିଆ ଖୋଳ, ମଶାରି ଓ କିଛି ତଉଲିଆ ଥିଲା, ଅନ୍ୟ ଆଲମାରିରେ ତୁଳା, ଗଜ୍‌କନା, ବ୍ୟାଣ୍ଡେଜ୍ ତଥା ବିଭିନ୍ନ ଜିନିଷପତ୍ର ଥିଲା । ମଲ୍‌ହୋତ୍ରା ହତାଶାରେ ଗୁରୁ ଗୁରୁ ହେଲେ ।

ଏତିକିବେଳେ ଡା. ପ୍ରହରାଜ ଭିତରକୁ ପଶିଆସିଲେ । ''ଆପଣଙ୍କ ଚା' ଥଣ୍ଡା ହଉଚି,'' ସେ କହିଲେ ।

''ଏ ରୁମଟା କ'ଣ ?''

''ଷ୍ଟୋର୍, ଡ୍ୟୁଟିରୁମ୍ ଆଉ ମୋ ଗଡ଼ାତଡ଼ା ଜାଗା । ସି.ବି.ଆଇ. ର କିଛି ଆପତ୍ତି ଅଛି ?''

ମଲ୍‌ହୋତ୍ରା ସିଧା କ୍ଲିନିକ୍ ବାହାରକୁ ଚାଲିଗଲେ । ସେ ନିଶ୍ଚିତ ହେଇ ସାରିଥିଲେ ଯେ ସେ ଏଠାରୁ ଆଉ କିଛି ସୂତ୍ର ପାଇବେ ନାହିଁ । ଯଦି ବି ସେ ଲୋକଟା ବଞ୍ଚିଛି ଆଉ କୋଉଠି ଚିକିତ୍ସିତ ହୋଇଚି, ସେଇ କ୍ଲିନିକ୍ ଯେ ଏଇଟା ହେଇଥିବ ଏ ବିଷୟରେ ସେ ନିଶ୍ଚିତ ନ ଥିଲେ । ଆଜିକାଲି ପ୍ରଚୁର ଭାବେ ଉଧୋଉଥିବା ଆବୋର୍ସନ ବେପାର ପାଇଁ ଏଇଟା ଗୋଟାଏ ବେସରକାରୀ ଡାକ୍ତରଖାନା ହେଇଥାଇପାରେ । ଆବୋର୍ସନ ନିୟମ କୋହଳ ହେଇଗଲାଣି । ବର୍ତ୍ତମାନ ଏମିତି କ୍ଲିନିକ୍ ବିରୋଧରେ କିଛି ବି କରା ଯାଇପାରିବ ନାହିଁ । ତେବେ ତା' ତାଙ୍କର ବର୍ତ୍ତମାନର ମୁଣ୍ଡବିନ୍ଧା ନୁହଁ । କିନ୍ତୁ ସେ ସ୍ତ୍ରୀଲୋକଟାକୁ ସେ କୋଉଠି ଦେଖିଲା ପରି ମନେହଉଛି । ବୋଧେ କୋଣାର୍କରେ । କିନ୍ତୁ ସେ ଏଇକ୍ଷଣି ପେଟ ସଫା କରିଛି, ସତରେ କରିଛି ? ସେ ମନେ ରଖିଲେ ଏଇ ଜାଗାରେ ଭବିଷ୍ୟତରେ ବେଶୀ ଖୋଳତାଡ଼ କରିପାରିବେ, ଯଦି ପ୍ରୟୋଜନ ପଡ଼େ ।

ସେ ଠିକ୍ ଜାଣିଥିଲେ କ'ଣ କରିବେ। ସେ ତାଙ୍କ ଟ୍ୟାକ୍ସିରେ ପଶି ଦୁଆର ଧଡ଼୍ କରି ବନ୍ଦ କଲେ।

ପାଣ୍ଡୁ ତା'ର ଲକ୍ଷ୍ୟ ସ୍ଥିର କରିସାରିଥିଲା। ସେଇ ମୁହୂର୍ତ୍ତରେ ଯେତେବେଳେ ସେ ନିଜର ବୀଭତ୍ସିତ ମୁହଁ ଦର୍ପଣରେ ଦେଖିଥିଲା। କୌଣସି ଦ୍ୱିଧା ନ ଥିଲା ତା ମନରେ। ସେ ଯିଏ ହଉନା କାହିଁକି ଯୋଉମାନେ ତାର ଏ ଦଶା କରିଥିଲେ ତାଙ୍କୁ ସେ କେବେ ଛାଡ଼ିବନି। ପ୍ରତ୍ୟେକଟି ଲୋକ ତାର ପାଉଣା ପାଇବ ଅସମ୍ଭବ ସୁଧ ସହିତ। ପ୍ରତିଟି କଥା ତା ମନରେ ଖୋଳି ହେଇ ରହିଚି, ଆଉ ତା' ନିଷ୍ପ୍ରଭ ଭାବ ତଳେ ଖଣ୍ଡିଆଭୂତ ପରି ଘୂରିବୁଲୁଚି। ତା ମନ ସତର୍କ ଥିଲା। ଯଦି ଶତ୍ରୁ ଏତେ ଶକ୍ତିଶାଳୀ ଥିଲା ଯେ ଥରେ ଜିତିଗଲା, ହୁଏତ ଦ୍ୱିତୀୟଥର ତାକୁ ନିଶ୍ଚିହ୍ନ କରିଦେବ। ମାଗୀ କଥାକୁ ଯଦି ବିଶ୍ୱାସ କରାଯାଏ ତେବେ ଲୋକେ ଏ ଭିତରେ ବି ତାକୁ ଖୋଜିବାକୁ ଲାଗିଗଲେଣି। ସେମାନେ କ'ଣ ଚାହାନ୍ତି ଜଣାକଥା। ଆଉ ସେ ଯେ ଯାଇ ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ କି ସିମିତି ଆଉ କାହାକୁ ମାରିଦେଇପାରିବ ଏଇଟା ଅତି ଅବାନ୍ତର। କଳ୍ପନା ବାହାରେ। ସେଠି ନିଶ୍ଚୟ ଶହ ଶହ ଜଗୁଆଳ ଥିବେ। ଭିତରକୁ ଯିବ କିମିତି ? ଯଦି ବି ପଶିଗଲା, ବାହାରିବ କିମିତି ? ଆଉ ବିପ୍ଳବଟିଏ କରିବା ପୂର୍ବରୁ ତୁମ ପାଖରେ ସାହସ ଛଡ଼ା ପଇସା, ଲୋକବଳ ଆଉ ହତିଆର ଥିବା ଦରକାର। ଏ ସବୁକୁ ଏକାଠି କରିବା ପାଇଁ କିଛି ଗୋଟାଏ ଦରକାର, କିନ୍ତୁ କ'ଣ, ସେ ଜାଣି ପାରୁ ନ ଥିଲା। କିଛି ଗୋଟାଏ ଯାହା ସେ ସୁସ୍ଥ ହୋଇ ଆସୁଥିବା ସମୟର ପ୍ରଥମ ପର୍ଯ୍ୟାୟରେ ଦର୍ପଣରେ ନିଜ ମୁହଁ ଦେଖିଲାବେଳେ ଭାବିଥିଲା। କିଛି ଗୋଟାଏ ଯାହା ହଠାତ୍ କୋଉଠୁ ଆସି ପଶିଯାଏ ଆଉ ତା' ଆଖି କାନ୍ଥ ଫୁଟେଇ ସିଧା ଆକାଶ ଭିତରକୁ ଦେଖିପାରେ। କିଛି ଗୋଟେ ଯାହା ମାଗୀ ସବୁବେଳେ ଦେଖେ। କିନ୍ତୁ ଏବେ ପାଣ୍ଡୁ ଭିତରୁ ସେଇଟା ଏକାବେଳକେ ହଜିଯାଇଚି। ଏବେ ତା' ଆଖି ପଲସ୍ତରା ବି ଫୁଟେଇ ଯାଇପାରୁନି। ମାଗୀ କହିଥିବା ଲୋକଙ୍କୁ ସେ ଅବଶ୍ୟ ନିଶ୍ଚିହ୍ନ କରିଦବ ଏଥିରେ ସନ୍ଦେହ ନ ଥିଲା। କିନ୍ତୁ ତା ନିଜ ଉପାୟରେ। ତା ଯୋଜନା ଥିଲା ସାଦାସିଧା ଆଉ ତାର କ୍ରୂରତା ତା ନିଜକୁ ଆଶ୍ଚର୍ଯ୍ୟ କରି ଦେଇଥିଲା। ଆଉ ତା ଭିତରେ ସେ ଦେଖୁଥିଲା ଅନ୍ଧାରରୁ ଉଠିଆସୁଥିବା ତା ଚରିତ୍ରର କଣାଏ କଣାଏ ଅଂଶ।

ବର୍ତ୍ତମାନ ହିଁ ଥିଲା ତାର ଖସିଯିବାର ସମୟ ପୁଣିଥରେ ଧରା ପଡ଼ିବା ପୂର୍ବରୁ। ଯଦି କେହି ତାକୁ ଖୋଜୁଚନ୍ତି, ଦୁଇଟି କାରଣରୁ ଖୋଜୁଥିବେ, ତାକୁ କୌଣସି କାରଣରୁ ନିଃଶେଷ କରିଦେବା ପାଇଁ, ନ ହେଲେ ତାକୁ ସେମାନଙ୍କ ଶତ୍ରୁଙ୍କ ବିରୋଧରେ

ପ୍ରୟୋଗ କରିବା ପାଇଁ । ପ୍ରଥମଟିରେ ସେ ସାଙ୍ଗେ ସାଙ୍ଗେ ମରିଯିବ, ପରଟିରେ ତାକୁ ବ୍ୟବହାର କରାଯିବା ପରେ ନଷ୍ଟ କରିଦିଆଯିବ ।

ସେ ବୁଝିପାରିଥିଲା ଯେ ଏ ଝିଅଟି, ମାଗୀ, ତାକୁ ଭଲଲାଗି ଆସୁଥିଲା । ସେ ତାକୁ ମଲା ମୁହଁରୁ ଟାଣିଆଣି, ଯୁଝି ଯୁଝି ବଞ୍ଚେଇଲା । ସେ କୃତଜ୍ଞ ଥିଲା କିନ୍ତୁ ଖୁବ୍ ଗୁଡ଼ାଏ କୃତଜ୍ଞ ବୋଲି ଭାବୁ ନ ଥିଲା । ଅବଶ୍ୟ ସେ ଝିଅଟି ମନକୁ ପାଇଲାପରି । ଆଉ ତା' ଉପସ୍ଥିତିରେ ପେଟ ପୂରିଗଲା ପରି ଲାଗେ । ସେ ଯେମିତି ଗୋଟାଏ ଆହ୍ୱାନ ଏବଂ ସେ ପଶିଆସିଲେ କାମନା ଚେଇଁଉଠେ । ଆଶ୍ଚର୍ଯ୍ୟ କଥା ଯେ ମାଗୀ ଏଁ ପର୍ଯ୍ୟନ୍ତ ତା' ସାଙ୍ଗ ଖୋଜିନି ଯଦିଓ ସେ ଖୁସୀରେ ତା' କରିବ ବୋଲି ସେ ମନେ କରୁଥିଲା । ଏବେବି ମାଗୀ ଚାପୁଡ଼ାରେ ତା' ଗାଲ ଜଳୁଚି ଆଉ ତା' ଅହଂକାର ଏ ପର୍ଯ୍ୟନ୍ତ ସେ ଆଘାତରେ କୁହୁଳୁଚି । ତାକୁ ପାଇବାକୁ ସେ ଚାହେଁ ଆଉ ତା' ଦେହର ଶକ୍ତି ଓ ଅଧୀନତାରେ ଭାଗ ନବାକୁ ଚାହେଁ ।

କିନ୍ତୁ ସେ କୌଣସି ଫାନ୍ଦରେ ଛନ୍ଦି ହେଇଯିବାକୁ ଚାହେଁ ନାହିଁ । ହୁଏତ ସେ ଭୀରୁ ଥିଲା । ହୁଏତ ସେ ଗୋଟାଏ ହୃଦୟହୀନ ବ୍ୟକ୍ତି ଥିଲା ।

ଯାହାବି ହେଉ ସେ ମାଗୀଠୁ ଖସି ପଳେଇବାକୁ ଚାହୁଁଥିଲା । କାରଣ ସେ ହିଁ ଅନ୍ୟମାନଙ୍କୁ ତା ପାଖକୁ ବାଟ ଦେଖେଇ ଦେଇପାରେ ।

ବିବ୍ରତ ହବାର କିଛି ନାହିଁ, ସେ ଭାବିଲା । ସେ ଠିକ୍ ସମୟରେ ଖସି ଆସିଚି ମୁକ୍ତି କ୍ଲିନିକ୍‌ରୁ । ସେ ନିଶ୍ଚିତ ଥିଲା ଯେ ଚାଲାକ୍ ଡାକ୍ତର ପ୍ରହରାଜ କିଛି କହିବେ ନାହିଁ । ଆଉ ଯଦି ବି କହିଦିଅନ୍ତି, ସେ ପୁଲିସ୍‌ବାଲା ତାକୁ ବସଷ୍ଟାଣ୍ଡ୍ କିମ୍ବା ରେଲୱେ ଷ୍ଟେସନ୍‌ରେ ଖୋଜୁଥିବ ସିନା, ମନ୍ଦିରକୁ ଆସିବାର ପ୍ରଶ୍ନ ଉଠୁନି ।

ଆହା ! ଏଇଠି ବସିଚି । ଲାହି ଭିତରେ ବାପାଙ୍କ ସ୍ମୃତିଚିହ୍ନ ଦାନ୍ତ ଦେଖେଇ ହସୁଚି କେମିତି ଦେଖ ! ଆହା, ଆହା ! ଆମ ଲୋକଟାବି ସେଇଠି ।

ନା ! ସେ ଆମ ମଣିଷ ନୁହେଁ । ତମେ ଭୁଲରେ ବିନ୍ଧିଦେଲ ଗୋଟାଏ ଯାହାକୁ, ଏମାନେ ତା'କୁ କହନ୍ତି ସ୍ତ୍ରୀ ମଣିଷ ।

ଭଲ କଲି । ତମ ବଛା ଏ ମଣିଷ ଠୁଁ ତ ଶହେ ଗୁଣରେ ଭଲ ପଡ଼ିଲା ସେ, ତା' କାମ ଦେଖିଲ ?

ହଁ । ତମ ଭୁଲଟି ଅପେକ୍ଷାକୃତ ଉନ୍ନତ । କିନ୍ତୁ ମୋ ଲକ୍ଷ୍ୟ ମଣିଷ କାର୍ଯ୍ୟକ୍ରମର ଉପାଦାନ ଅନୁସାରେ ବଛାଯାଇଥିଲା : ନିଷ୍ପେଷିତକୁ ଖୋଜି ବାହାର କର । ସେ ମୁହୂର୍ତ୍ତରେ ସବୁଠୁ ଠିକ୍ ମଣିଷଟାକୁ ମୁଁ ବାଛିଥିଲି । ତୁମେ ଚରିତ୍ର ମ୍ୟାଟ୍ରିକ୍ସ ଅନୁସାରେ

ସବୁଠୁ ଭଲ ମଣିଷ ବାଛିବା କାମ ପାଇଁ ମତେ ପ୍ରୋଗ୍ରାମ୍ କରି ନ ଥିଲ । ମୁଁ ପରିସ୍ଥିତି ମ୍ୟାଟ୍ରିକ୍ସ୍ ଅନୁସାରେ ବାଛିଲି ।

ଭଡ଼ ଭଡ଼ ହୁଅନି । ମୁଁ ଏ ସବୁ ଜାଣିଚି ।

ତମର ଭୁଲ ।

ତମେ ଚୁପ୍ ହବ ନା ମୁଁ ସୁଇଚ୍ ଅଫ୍ କରିବି ।

ସେ ସ୍ତ୍ରୀ ବସ୍ତୁକୁ ପୁଣିଥରେ ହରାଇବାକୁ ଯାଉଚ ।

ମନ୍ଦିର ଭିତରେ ସେ ଧୀର ସୁସ୍ଥେ ବୁଲିଲା, ପେଟ ପୂରେଇ ମହାପ୍ରସାଦ ଖାଇଲା ଆନନ୍ଦବଜାରରେ । ଫଳରେ ସେ ପୂରା ଗୋଲକଧନ୍ଦାରୁ ବାହାରି ଆସିଥିଲା ।

ପୂର୍ଣ୍ଣ ହୃଦୟ ଓ ପୂରା ପେଟରେ ପାଣ୍ଡୁ ଛୋଟେଇ ଛୋଟେଇ ମନ ଖୁସୀରେ ମନ୍ଦିର ବାହାରକୁ ଆସିଲା ଓ ଠିଆହେଇ ଅନୁଧ୍ୟାନ କଲା ଅରୁଣସ୍ତମ୍ଭକୁ ଯାହାର ନିର୍ମାଣ ଶୈଳୀ ମନ୍ଦିରର ଶୈଳୀ ସହ ମିଶୁ ନ ଥିଲା ।

ସେ ତାର ଯୁଦ୍ଧ ଯୋଜନା କରିସାରିଥିଲା, ତାକୁ ଏ ଅବସ୍ଥାକୁ ଆଣିଥିବା ଲୋକମାନଙ୍କ ପାଇଁ । ସେ ଝିଅ ଲଢୁ ତା ନିଜ ଯୁଦ୍ଧ ତା ନିଜ ସିଦ୍ଧାନ୍ତରେ । ସେ ତା ନିଜ ଅଲଗା ବାଟରେ ଯିବ । ବୋଧହୁଏ ସେ ଚାଲେ ନିଆଁ ଉପରେ ଆଉ ପାଦଚିହ୍ନ ଛାଡ଼ିଯାଏନି ।

ଛୋଟ ଝିଅଟିଏ ତା' ମା'ର ଆଙ୍ଗୁଠି ଧରି ଯାଉ ଯାଉ ପାଣ୍ଡୁକୁ ବଡ଼ ବଡ଼ ଆଖିରେ ଚାହିଁଲା । ପାଣ୍ଡୁ ମୁରୁକି ହସିଲା ତା ଡର ଡର ଚାହାଣି ଦେଖି । ସେ ମନେପକେଇବାକୁ ଚେଷ୍ଟା କରୁଥିଲା । ମାଗୀ କହିଥିବା ନାଁଗୁଡ଼ାକ : ଏମ୍.ଏଲ୍.ଏ. ଗୁଣନିଧି । ମୁଖ୍ୟମନ୍ତ୍ରୀ ପଟ୍‌ନାଏକ୍ । ସ୍କୁଲ୍‌ର ଡନ୍ ମହାସ୍କନ୍ଦ ଯିଏ ବୋଧହୁଏ ତାର ଏ ଅବସ୍ଥା ପାଇଁ ପ୍ରତ୍ୟକ୍ଷ ଭାବେ ଦାୟୀ । ସେ ଠିଆ ହେଇ ସେ ଝିଅଟିକୁ ଚାହିଁରହିଲା । ତା ଆଖିର ଜିଜ୍ଞାସୁ ଭାବ ପାଣ୍ଡୁକୁ ଭଲ ଲାଗୁଥିଲା ।

ଟ୍ୟାକ୍ସି ଦୁଆର ଧଡ଼୍ କରି ବନ୍ଦ ହେଲା ମାତ୍ରେ ମଲହୋତ୍ରାଙ୍କ ମୁଣ୍ଡରେ ଉପାୟଟା ସ୍ପଷ୍ଟ ହେଇଗଲା । ସେ ଜାଣନ୍ତି ସେ ଚାଲାକ୍ । ସେ ଜାଣନ୍ତି ସେ ସହଜେ ହାର ମାନିଲା ଲୋକ ନୁହନ୍ତି । ଯଦି ସେ ଲୋକଟା ବଞ୍ଚିଯାଇ ମୁକ୍ତି କ୍ଲିନିକ୍‌ରେ ଥିଲା ଓ ତାଙ୍କ ଭୟରେ ପଳେଇଗଲା; ତା'ହେଲେ ଅଳ୍ପ କେତେଟା ଜାଗାକୁ ହିଁ ଯିବ । ରେଲ୍‌ୱେ ଷ୍ଟେସନ କିମ୍ବା ବସ୍‌ଷ୍ଟାଣ୍ଡ୍ । ମଲହୋତ୍ରା ସେଠିକା ପୋଲିସ୍‌ଙ୍କ ସାହାଯ୍ୟ ନେଇପାରିବେନି,

କାରଣ ସେ ଜାଣନ୍ତି ସେମାନେ ତାଙ୍କୁ ପ୍ରତିରୋଧ କରିବାପାଇଁ ନିର୍ଦ୍ଦେଶ ପାଇଛନ୍ତି । ତାଙ୍କ ଦଳ ଦିଲ୍ଲୀରୁ ଆସି ପହଞ୍ଚିବାକୁ ସମୟ ଲାଗିବ । ତାଙ୍କର ଧାରଣା ଅନୁସାରେ ବର୍ତ୍ତମାନ କୌଣସି ଟ୍ରେନ୍ ନାହିଁ ।

ତେଣୁ ?

ତେଣୁ ସେ ଆଗକୁ ଝୁଙ୍କିପଡ଼ି ପ୍ରୌଢ଼ ଡ୍ରାଇଭରକୁ ସମୁଦ୍ର ଗର୍ଜନଠୁଁ ଉଚ୍ଚାସ୍ୱରରେ କହିଲେ, ''ପ୍ରଥମେ ବସ୍‌ଷ୍ଟାଣ୍ଡ୍, ଶୀଘ୍ର ।''

ଡ୍ରାଇଭର ସମୁଦ୍ରକୂଳ ରାସ୍ତା ଛାଡ଼ି ମୋଚିସାହି ଛକରୁ ଦୋଳ ମଣ୍ଡପ ସାହିରେ ପଶି ସରୁଆରୁ ଆହୁରି ସରୁଆ ଗଳି ଭିତରେ ଚାଲିଲା । ରିକ୍‌ସା, ସାଇକେଲ, ଠେଲାଗାଡ଼ି, ବଳଦଗାଡ଼ି, ଗାଈ, କୁକୁର, ପୁରୁଷ, ସ୍ତ୍ରୀ, ଛୁଆ, ଖୋଲା ନାଳର ଲାଙ୍ଗୁଡ଼ିଆ ପୋକ ପାରିହେଇ କାର୍ ଚାଲୁ ଚାଲୁ ହଠାତ୍ ଲାଖିଗଲା । ବୋତଲ ମୁହଁରେ ସୋଲ ଠିପିପରି ଗାଡ଼ିଟା ରାସ୍ତାରେ ଚିପି ହେଇଯାଇଥିବାରୁ ମଲହୋତ୍ରା ଜାଣିଲେ ଯେ ଆଉ ଗାଡ଼ି ଆଗକୁ ଯିବନି । ଗାଡ଼ିର କବାଟ ଖୋଲିବାକୁ ଜାଗା ନ ଥିବାରୁ ସେ ବାହାରି ବି ପାରିବେନି । ସେ ଝରକା କାଚକୁ ତଳକୁ କଲେ ଓ ସେଇବାଟେ ବାହାରକୁ ବାହାରିବାକୁ ସ୍ଥିର କଲେ । କିନ୍ତୁ ପାଖରେ ଥିଲା ବଳଦଗାଡ଼ି, ଯାହାକୁ ତାଙ୍କ ଟ୍ୟାକ୍ସି ଅତିକ୍ରମ କରିବାକୁ ଚାହୁଁଥିଲା । ତା' ବଳଦଟି ସେଇ ଝରକାବାଟେ ମୁହଁ ଗଳେଇ ଚାକୁଳେଇବାକୁ ଲାଗିଲା । ସତେ ଯେମିତି କହୁଥିଲା, ''କ'ଣ ଅସୁବିଧା ହେଲାକିରେ ଚେପ୍‌ଟା ମୁହାଁ ?''

ଶହେ ମିଟର ଖଣ୍ଡେ ଆଗରେ ଜଗନ୍ନାଥ ମନ୍ଦିରର ସିଂହଦ୍ୱାର ।

''ତମେ ମତେ କୋଉଠିକି ଧରିଆସିଲ କିହୋ ? ଧ୍ୟାତ୍ ।'' ମଲହୋତ୍ରା ଅତିଷ୍ଠ ହେଇ କହିଲେ ।

''କାଇଁକି, ଜଗନ୍ନାଥ ମନ୍ଦିରକୁ ।''

''ମୁଁ ପରା ତମକୁ କହିଥିଲି ବସ୍‌ଷ୍ଟାଣ୍ଡକୁ ନେଇଯିବାକୁ ।''

''କିନ୍ତୁ ମୁଁ ଭାବିଲି...''

''ଏଠୁ ବସ୍‌ଷ୍ଟାଣ୍ଡ୍ କେତେ ବାଟ ?''

''ଏ ବଡ଼ଦାଣ୍ଡର ଆରମୁଣ୍ଡରେ । କିନ୍ତୁ ଆପଣ ମତେ ଦିନକପାଇଁ ଭଡ଼ାରେ ନେଇ ଏତିକିବେଳୁ ବସ୍‌ଷ୍ଟାଣ୍ଡ୍ କାହିଁକି ଯିବେ ? ତା'ଛଡ଼ା ଆପଣ ଜଗନ୍ନାଥ ମହାପ୍ରଭୁଙ୍କୁ ନ ଦେଖି ପୁରୀ କିମିତି ଛାଡ଼ିବେ ଯେ । ସେ ଖରାପ ଭାବିବେନି ? ଅନ୍ତର୍ଯ୍ୟାମୀ ସେ, ସବୁ ଜାଣିଚନ୍ତି ।''

''ମୁଁ ଏଠୁ କେମିତି ବାହାରକୁ ଯିବି ?''

''ବେସ୍ତ ହବାର କିଛି ନାହିଁ । ଆମେ ଶୀଘ୍ର ବାହାରିଯିବା, ଏଇଟାତ ଏଠାର ସବୁଦିନିଆ ଘଟଣା । ଏଇଟା କିଛି ନୁହଁ ।''

''ହେ ଭଗବାନ୍,'' ମଲହୋତ୍ରାଙ୍କର ଇଚ୍ଛା ହଉଥିଲା ଡ୍ରାଇଭରଟାର ଚୁଟି ଓପାଡ଼ି ଦବାକୁ ।

ହଠାତ୍ ଡ୍ରାଇଭର ହର୍ଣ୍ଣ ମାରିଲା ଓ କ୍ଲଚ୍ ଛାଡ଼ିଲା । ମଲ୍‌ହୋତ୍ରାଙ୍କୁ ପଛକୁ ସିଟ୍ ଓପରେ ଗଡ଼େଇଦେଇ ଗାଡ଼ି ଆଗକୁ ଝାଙ୍କି ହେଇ ଚାଲିଲା । ଗାଡ଼ି ସିଂହଦ୍ୱାର ଛକ ପର୍ଯ୍ୟନ୍ତ ଚାଲିଗଲା । ସିଂହଦ୍ୱାର ମୁହାଣରେ ଡ୍ରାଇଭର ଡାହାଣକୁ ବୁଲେଇଲା । ସେଠି ଦୁଇକଡ଼ରେ ଶହ ଶହ ଗାଡ଼ି ଠିଆ ହେଇଥିଲେ ଓ ମଝି ଭାଗଟା ମନ୍ଦିରକୁ ଯାଉଥିବା ଓ ଫେରୁଥିବା ଲୋକମାନଙ୍କ ଦ୍ୱାରା ପୂର୍ଣ୍ଣ ଥିଲା । ଲୋକମାନଙ୍କ ଓ ଗାଡ଼ିଗୁଡ଼ିକ ପରେ ଶହ ଶହ କାଠ କ୍ୟାବିନ୍‌ର ଦୋକାନ ଥିଲା ଯାହାକି ରଥଯାତ୍ରା ସମୟରେ ଉଠାଯାଉଥିଲା । ଦୋକାନଗୁଡ଼ିକରେ ପୂଜା ଦରକାରୀ ଶଙ୍ଖଠୁଁ ଆରମ୍ଭ କରି ଗାଡି ଦରକାରୀ ରବରମୁଣା ପର୍ଯ୍ୟନ୍ତ ସବୁ ମିଳୁଥିଲା ।

''ମୁଁ ଏଇଠି ରଖୁଚି,'' ଡ୍ରାଇଭର କହିଲା, ''ଆପଣ ଯା'ନ୍ତୁ, ଜଗନ୍ନାଥ ଦର୍ଶନ କରନ୍ତୁ । ଆଜି ତାଙ୍କର ଫୁଲବେଶ । ଆପଣ ଯାହାବି ମାନସିକ କରନ୍ତୁ ପାଇଯିବେ । ଆଃ, ଆଖିଖୋଷି ହେଇଯିବ । ମାତବର ।''

''ସିଧା ବସ୍‌ଷ୍ଟାଣ୍ଡ୍ ଚାଲ । କ'ଣ ଶୁଭିଲା ନା ନାହିଁ ? ବସ୍‌ଷ୍ଟାଣ୍ଡକୁ ଚାଲ । ଚାଲ ଚାଲ ଚାଲ ।''

ଡ୍ରାଇଭରଟି ଆଚମ୍ବିତ ହେଲା, କିନ୍ତୁ କଥା ମାନିଲା । ମଲହୋତ୍ରା ସିଂହଦ୍ୱାର ଆଡ଼େ ଟିକେ ଆଖି ବୁଲେଇଆଣିଲେ ଯୋଉଠି ଲୋକମାନେ ଭର୍ତ୍ତି ହେଇଥିଲେ । ସିଂହଦ୍ୱାରଠୁଁ ପଚାଶ ଫୁଟ ଦୂରରେ ଅରୁଣସ୍ତମ୍ଭ ଯାହା ଚାରିକଡ଼େ ଲୁହାଛଡ଼ର ବାଡ଼ ଦିଆ ଯାଇଥିଲା, ଜଣେ ଲୋକ ସେଠି ଠିଆହେଇ ସତୃଷ୍ଣ ନୟନରେ ସ୍ତମ୍ଭର ଶୀର୍ଷକୁ ଚାହିଁଥିଲା । ତା' ମୁହଁଟା ବିକୃତ ହେଇଥିଲା ଯେମିତି କ୍ଷତବିକ୍ଷତ ହେଇ ସଜଡ଼ା ଯାଇଥିଲା । ତା' ମା'ର ହାତ ଧରି ଯାଉଥିବା ଛୋଟ ଝିଅଟିଏ ଲୋକଟାକୁ କୌତୂହଳୀ ଆଖିରେ ଚାହିଁଥିଲା । ଲୋକଟି ଘୁଞ୍ଚିଗଲା ଆଉ ଛୋଟେଇ ଛୋଟେଇ ଚାଲିଲା ।

ମଲହୋତ୍ରା ଡେଇଁପଡ଼ିଲେ ତାଙ୍କ ସିଟ୍‌ରେ ଓ ତାଙ୍କ ମୁଣ୍ଡ କାର୍ ଛାତରେ ପିଟି ହେଇଗଲା । ଯେ ନିଶ୍ଚୟ ସେ ଲୋକ, ତାଙ୍କ ମନରେ ତିଳେ ବି ସନ୍ଦେହ ନ ଥିଲା ।

''ଗାଡ଼ି ରଖ,'' ସେ ଅସ୍ତବ୍ୟସ୍ତ ହେଇ ପାଟିକଲେ ଓ ଗାଡ଼ି ରହୁ ରହୁ ତହିଁରୁ ଡେଇଁପଡ଼ିଲେ ।

ସେ ମନ୍ଦିରଆଡ଼କୁ ଦୌଡ଼ିଲେ ।

ଡ୍ରାଇଭର ଜଂଘ ବାଡ଼େଇ ନିଜକୁ ନିଜେ କହିଲା, "ପୁରୀ ଆସିବ ଆଉ, ଇହାପ, ଜଗନ୍ନାଥ ଦର୍ଶନ କରିବନି ? ଆରେ ବାବା, ସେ ତ ତମକୁ ଟାଣିନବ । 'ବସ୍ ଇଷ୍ଟାଣ୍ଡ' କହୁଛି । ବିହାରୀ, ବୋକାଟା, କ'ଣ ସେ ଜାଣେ ?"

ସେ ତା' ଗାଡ଼ିକୁ ଆଉଥରେ ରାସ୍ତା କଡ଼କୁ ନେଇ ଅନ୍ୟ ଗାଡ଼ି ମଝିରେ ପୂରେଇ ଦେଲା ଓ ଅଳ୍ପ ଖୋଲୁଥିବା କବାଟ ଖୋଲି ଗେଞ୍ଜି ହେଇ ବାହାରକୁ ଆସିଲା ।

ଲୋକଟା ଜୋତା ଷ୍ଟାଣ୍ଡକୁ ଯାଉଥିବାବେଳେ ମଲହୋତ୍ରା ଧୀର ଭାବରେ ତାଙ୍କ ହାତ ଲୋକଟିର କାନ୍ଧ ଓପରେ ଥୋଇଲେ । ଲୋକଟି ମୁହଁ ବୁଲେଇଲା ଓ ତାଙ୍କୁ ଚାହିଁଲା । ତା' ମୁହଁଟା ବିକୃତ ହେଇଯାଇଥିଲା ଓ ସେ ଟିକେ ବଙ୍କା ହେଇ ଠିଆ ହେଇଥିଲା ।

"କୁହନ୍ତୁ ?" ସେ ପଚାରିଲା ।

"ତମେ ସେଇ ଲୋକ ଯିଏ ତିନିମାସ ତଳେ କୋଣାର୍କ ସମୁଦ୍ରକୂଳରୁ ମିଳିଥିଲ ?"

"ଆପଣ ?"

"ତୁମକୁ ରକ୍ଷା କରିବା ପାଇଁ ତୁମର ଜଣେ ବନ୍ଧୁ । ମୋ ସାଙ୍ଗରେ ଆସ, ଶୀଘ୍ର ।"

ପାଣ୍ଡୁ ଅନୁଭବ କଲା ଲୋକଟିର ମୁଠାରେ ତା' ହାତ ଚାପିହେଇଗଲାଣି । କିଛି ସମୟ ପାଇଁ ସେ ଭୟଭୀତ ହେଇଗଲା ଓ ଖସି ପଳାଇବା ପାଇଁ ନିଃଶ୍ୱାସ ଠୁଳ କଲା । ସେ ନିଶ୍ଚିତ ହେଲା ଯେ ତାକୁ କ୍ଲିନିକ୍‌ରେ ଖୋଜୁଥିବା ଲୋକଟି ଏଇ । କିନ୍ତୁ ପରମୁହୂର୍ତ୍ତରେ ଦୌଡ଼ିପଳେଇବାକୁ ଚାହିଁଲା ନାହିଁ । "ଦେଖାଯାଉ ସେ କଣ ଚାହୁଁଚି," ସେ ନିଜକୁ ନିଜେ କହିଲା । "ମୁଁ ଦୌଡ଼ିପାରିବିନି । ମତେ ସିଷ୍ଟମ ଭିତରକୁ ଫେରିଆସିବାକୁ ଇ ହବ ।"

"ଠିକ୍ ଅଛି ।" ସେ କହିଲା ।

ହୋଟେଲ୍‌ର ସୁଟ୍‌ରେ, ଆଉଥରେ ଭୋଜନ ପରେ ପାଣ୍ଡୁ ବସି ବସି ମଲହୋତ୍ରାଙ୍କ ପ୍ରଶ୍ନଗୁଡ଼ିକ ସମ୍ବନ୍ଧରେ ଭାବୁଥିଲା । ଯଦିଓ ସେ ବୁଝିପାରୁଥିଲା ଯେ ବର୍ତ୍ତମାନ ପାଇଁ ସେ ସୁରକ୍ଷିତ ଥିଲା, ସେ ସତର୍କିତ ଥିଲା । ସେ କି ଉତ୍ତର ଦବ ଠିକ୍ ଭାବରେ ଜାଣି ନ ଥିଲା ତେବେ ଯଥାସାଧ ସତକଥା କହିବାକୁ ଚେଷ୍ଟା କରୁଥିଲା ବର୍ତ୍ତମାନ ପାଇଁ ।

"ମୁଁ ଜାଣେନି କେହି ହଣାକଟା କରିଥିଲେ କି ମୁଁ ଆକ୍ସିଡେଣ୍ଟ୍‌ରେ ପଡ଼ିଥିଲି କି ଯୁଦ୍ଧରେ ଖଣ୍ଡିଆଖାବରା ହେଇଥିଲି, କି କେହି ପାଗଳ ଡାକ୍ତର ମତେ କାଟି କୁଟି ପକେଇଥିଲା, କିଁ କୌଣସି କାରଖାନା ଯନ୍ତ୍ରରେ କୁଟୁକୁଟା ହେଇ ଯାଇଥିଲି ବା ଆଉ

କୋଉଥିରେ । ମୋର ଜମା କିଛି ମନେ ନାହିଁ । ଦିନେ ଭୋରୁ ଭୋରୁ ଉଠିଲି ଓ ଆଇନାରେ ଦେଖି ଭୟରେ ଚମକି ପଡ଼ିଲି ।''

''ତମେ ନିଜ ମୁହଁକୁ ତ ଦେଖିଲ, ଚମକି ପଡ଼ିଲ କାହିଁକି ?'' ମଲହୋତ୍ରା ନିଜର ଧୈର୍ଯ୍ୟ ହରାଇବାକୁ ଆରମ୍ଭ କରୁଥିଲେ । ତାଙ୍କର ସନ୍ଦେହ ହେଉଥିଲା ଯେ ସାରା ଓଡ଼ିଶାର ଲୋକଙ୍କଠି କିଛି ଗୋଟାଏ ଅସୁବିଧା ଅଛି ।

''କାରଣ ସେଇଟି ମୋର ମୁହଁ ନ ଥିଲା ।''

''କାରଣ ସେଇଟି ତମର ମୁହଁ ନ ଥିଲା ! କ'ଣ ତମେ କହିବାକୁ ଚାହୁଁଚ ? ତମ ମୁହଁ କେମିତି ତମର ନ ଥିଲା ? ଅବାନ୍ତର କଥା । କେହି କେବେ ଶୁଣିଚି ଯେ ଗୋଟାଏ ଲୋକର ମୁହଁ ତା' ନିଜର ନୁହଁ ? ତମେ ମତେ ବୋକା ବିହାରୀ ବୋଲି ଭାବୁଚ କି ? ମୁଁ ଉତ୍ତରପ୍ରଦେଶରୁ ଆସିଚି ବୋଲି ତମର ଜାଣିବା ଉଚିତ ।''

''ବଲିଆରୁ ?''

''ବଲିଆରୁ ମାନେ ? ବଲିଆର ସବୁଲୋକ ସିମିତିକା ବୋକା ନୁହନ୍ତି । ତା'ଛଡ଼ା ତମକୁ ମୁଁ କହିଦବାକୁ ଚାହେଁ ଯେ ସାରା ଉତ୍ତରପ୍ରଦେଶଟା ବଲିଆର ଗୋଟେ ଅଂଶ, ତା'ଛଡ଼ା ଆଉ କିଛି ନୁହଁ । ଉତ୍ତରପ୍ରଦେଶର ସବୁଲୋକ ଆଜିକାଲି ବଲିଆ ଲୋକଙ୍କ ପରି । ବଲିଆ ବାବରଙ୍କ ଅମଳରୁ ଉତ୍ତରଭାରତକୁ ଶାସନ କରିଆସୁଚି । କଥାଟା ସିଧାସାଧା କହିବାକୁ ଗଲେ ତମେ ଯଦି ଚାହୁଁଥାଅ, ମୁଁ କହିଦଉଚି, ମୁଁ ପ୍ରଧାନମନ୍ତ୍ରୀଙ୍କ ଜିଲ୍ଲାର ଲୋକ । ଭକୁଆଙ୍କ ଭଳି ଚାହିଁଚ କ'ଣ ? ତମେ ଏ କଥାକୁ ବୁଝିପାରିବନି ।''

ସେ ନାଟକୀୟ ଭାବରେ ତାଙ୍କ ବକ୍ତବ୍ୟ ଶେଷ କଲାବେଳକୁ ହଠାତ୍ ଟାଣିହେଇ ରହିଗଲେ । କ'ଣ ସେ କହୁଚନ୍ତି ? କାହିଁକି ଏସବୁ କହୁଚନ୍ତି ? ଇମିତି ଭାବରେ କାହିଁକି ସେ ଅତିବାସ୍ତବ ଦୁନିଆ ଆଡ଼କୁ ଢଳୁଚନ୍ତି ? ଧ୍ୟାତ୍ ! ଏଗୁଡ଼ାକ ସବୁ ବନ୍ଦ କରିବା ଉଚିତ । ସେ ତାଙ୍କ କଳାଚଷମା ପିନ୍ଧିଲେ । ଲମ୍ବା ନିଃଶ୍ୱାସ ନେଲେ, କ'ଣ ଏ ପର୍ଯ୍ୟନ୍ତ କଥାବାର୍ତ୍ତା ହେଇଚନ୍ତି ଆଉଥରେ ଭାବିନେଲେ, କଣ୍ଠ ସଫାକଲେ । ମାଂସପେଶୀକୁ କୋହଳ କଲେ ।

''ତମେ ମତେ ବୋକା ବୋଲି ଭାବୁଚ ?'' ସେ ପୁଣି ସାବଧାନ ହେଇଗଲେ । ଇମିତିକା ବାକ୍ୟହିଁ ତୁମକୁ ଅଲଗା ପୃଥିବୀକୁ ନେଇଯାଏ ଓ ଲେଖକ ୟାର ସୁଯୋଗ ନିଏ । ସେ ପୁଣିଥରେ ଏମିତି ହବାକୁ ଦେବେନି । ସେ ଠିକ୍‌ବାଟରେ ଚାଲିବା ଉଚିତ । ନ ହେଲେ ତାଙ୍କ ସ୍ତ୍ରୀଙ୍କ ସମ୍ମୁଖରେ ହଉଥିବା ଦୁର୍ଦ୍ଦଶା ଏଠି ବି ହବ । ''ଦେଖ୍'', ସେ ନିଜକୁ କହିଲେ, ''ତୁ ପୁଣି ଭୁଲଆଡ଼େ ଢଳି ଯାଉଚୁ । ଏ ଅନୁସନ୍ଧାନ ସାଙ୍ଗେ ତୋ' ସ୍ତ୍ରୀର କୌଣସି ସମ୍ପର୍କ ନାହିଁ । କେହି ତତେ ଭୁଆଁ ନ ବୁଲୋଉ । ରାସ୍ତାରେ ଚାଲ । ରାସ୍ତାରେ ଚାଲ ।''

"ନା," ପାଣ୍ଡୁ କହିଲା ।

"ନା ମାନେ ?"

"ନା, ମୁଁ ଆପଣଙ୍କୁ ବୋକା ଭାବୁନି ।"

"ଓଃ, ଠିକ୍ ଅଛି, ସେ କଥା ଛିଣ୍ଡିଲା," ମଲହୋତ୍ରା ଆଶ୍ୱସ୍ତ ହେଲେ ଓ ସିଧାସଳଖ ମୁହାଁଇଲେ ।

"ତେବେ ତମେ କିମିତି କହୁଚ ଯେ ତମ ମୁହଁ ତମର ନ ଥିଲା ? ଅସମ୍ଭବ କଥା ! କେବେ ଇମିତି କାହା କଥା ଶୁଣିଚ ଯାହା ମୁହଁଟା ତାର ନୁହେଁ ? ତମେ ମତେ କଣ ବୋକା ବୋଲି...,"

ସେ ପୁଣି ଚୁପ୍ ହେଇଗଲେ, ପୁଣି ସେଇ ଭୁଲ ଦୋହରାଉଚନ୍ତି ଭାବି । ସେ ଆଉଥରେ ଆରମ୍ଭ କଲେ, "ମୋ ପ୍ରଶ୍ନର ଉତ୍ତର ଦିଅ କେବଳ, ତମ ମୁହଁଟି କିମିତି ତମର ନ ଥିଲା ?"

"ମୋ ନିଜ ମୁହଁକୁ ଦର୍ପଣରେ ଦେଖି ମୋର ଡରିଯିବା ପଛରେ, ଆଜ୍ଞା, ଆପଣ ଅନ୍ୟ କୌଣସି କାରଣ ଖୋଜି ପାଇପାରିବେ କି ? ମୁଁ ତ କେବେ ମୋ ନିଜ ମୁହଁ ଦେଖି ଡରି ନ ଥା'ନ୍ତି, ଡରିଥା'ନ୍ତି କି ?"

"ମତେ ପ୍ରଶ୍ନ ପଚାରନି । ଖାଲି ମୁଁ ହିଁ ପ୍ରଶ୍ନ ପଚାରିବି ?"

ମଲହୋତ୍ରା ରୁକ୍ଷ ଭାବରେ ପାଣ୍ଡୁକୁ ନିରେଖି ଚାହିଁଲେ ।

"ଆଉଥରେ କହୁଚି । ଭଲ କରି ମନେରଖ । ପ୍ରଶ୍ନ ମୁଁ ପଚାରିବି, ତମେ ନୁହଁ ! ମୁଁ ଖାଲି ସି.ବି.ଆଇ.ରୁ ଆସିନି । ପ୍ରଧାନମନ୍ତ୍ରୀଙ୍କଠାରୁ ବି ଆସିଚି । ତମକୁ ରକ୍ଷା କରିବା ପାଇଁ ମତେ ପଠାଯାଇଚି । ତମର ଯତ୍ନ ନବା ପାଇଁ । ତମ କେଶ୍ ବିଷୟରେ ଆମକୁ ବୁଝିବାକୁ ପଡ଼ିବ, ଆରପଟରେ ଯିଏ ଥାଆନ୍ତୁ ନା କାହିଁକି । ଆଉ ତମେ ସହଯୋଗ କଲେ ତମର ଲାଭ ଅଛି । ମନେରଖ, ଲାଭ ।"

ପାଣ୍ଡୁ ଓଠରେ ଜିଭ ବୁଲେଇଲା ଓ ମୁଣ୍ଡ ହଲାଇଲା । "ମତେ କ'ଣ କରିବାକୁ ପଡ଼ିବ ?"

"ଖାଲି ମୋ ସାଥେ ସାଥେ ରୁହ । ମୁଁ ତମକୁ କହିବି ତମକୁ କଣ କରିବାକୁ ପଡ଼ିବ । କିନ୍ତୁ ପ୍ରଥମେ ମୋ ପ୍ରଶ୍ନର ସତ ସତ ଉତ୍ତର ଦିଅ ।"

ପାଣ୍ଡୁ ସମ୍ମତି ଦେଲା ।

"ତମର ପ୍ରକୃତ ନାଁ ପାଣ୍ଡୁ ?"

"ମୁଁ ଜାଣିନି ।"

''ଜାଣିନ ?''

''ପ୍ରକୃତରେ ଜାଣିନି ।''

''ତା'ପରେ କହିବ ତମକୁ କିଏ ହାଣିଲେ ତମେ ତା'ବି ଜାଣିନ ।''

''ଠିକ୍ କଥା ।''

''ଠିକ୍ କଥା ମାନେ ?''

''ମୋର ଏ ଅବସ୍ଥା କିଏ କଲା ମୁଁ ଜାଣିନି । ମୋର କିଛି ମନେ ନାହିଁ । ଏମିତିକି ମୁଁ କିଏ ମୁଁ ଜାଣିନି ।''

''ମା, ବାପା, ଭାଇ, ଭଉଣୀ, ସ୍ତ୍ରୀ, ପିଲାଛୁଆ, ପ୍ରେମିକା, ଚାକରାଣୀ, କିଛି ?''

''କିଛି ନୁହଁ । ସବୁ ଶୂନ୍ୟ । ଡାକ୍ତର ଭାବୁଥିଲେ ମୁଁ ଛଳନା କରୁଚି, କିନ୍ତୁ ତା ନୁହଁ, ମୁଁ ସତ କହୁଚି । ମୋର ଆମ୍ନେସିଆ ହେଇଚି । କିଛି ମନେ ନାହିଁ ।''

''ତା'ହେଲେ ତମ ନାଁ ପାଣ୍ଡୁ କେମିତି ହେଲା ?''

''ଏଇଟାଇ ଠିକ୍ ଲାଗିଲା । ଯେତେଦୂର ମତେ ଜଣା ସେଇଟି ଗୋଟାଏ ପର୍ସ୍ ଭିତରେ ଥିବା ଚିଠିରେ ଲେଖା ଥିଲା ଯାହା ମୋର ଶବ ଅର୍ଥାତ୍ ମୁଁ, କୋଣାର୍କର ସମୁଦ୍ରକୂଳରେ ପଡ଼ିଥିବାବେଳେ ମୋ ପାଖରେ ବାଲିରେ ପୋତା ହେଇଥିବା ମିଳିଥିଲା ।''

''ସେ ଚିଠି କୋଉଠି ଅଛି ?''

''ମୁଁ ଫୋପାଡ଼ିଦେଲି ।''

''ଆଉ ସେ ପର୍ସ ?''

''ସେଇଟି ମାଗୀ ନାଁର ଗୋଟିଏ ସ୍ତ୍ରୀଲୋକ ପାଖରେ ଅଛି ଯିଏ କହୁଚି ମତେ ରକ୍ଷା କରିଥିଲା ଆଉ ଡାକ୍ତରଙ୍କ ପାଖକୁ ଆଣିଥିଲା ।''

''ତୁମ ସମ୍ପର୍କୀୟା ?''

''ସେ ନା ବୋଲି କହୁଚି । ଖାଲି ମତେ ପାଇଥିଲା ।''

''ତା'ହେଲେ ସେ ତମ ଯତ୍ନ ନେଲା କାହିଁକି ? କଣ କିଛି ପ୍ରେମ ବ୍ୟାପାର ?''

''ମୋ ଜାଣିବାରେ ନୁହଁ । ମୁଁ ଯେତେବେଳେ ଧରିପକେଇଲି ମତେ ଚାପଡ଼ା ମାରିଲା ।''

ମଲହୋତ୍ରା ହସିଲେ । ସେ ଜାଣିଗଲେ ଯେ ମାଗୀ ଯାକୁ ପସନ୍ଦ କଲାନି । କିନ୍ତୁ ପରେ ସେ ହସ ବନ୍ଦ କଲେ । ସେ ଯଦି ଯାକୁ ଚାହେଁନି ତେବେ ଯାକୁ ସାହାଯ୍ୟ କାହିଁକି କରୁଚି ?

"ତାହେଲେ ସେ ତମ ପାଇଁ କାହିଁକି ଏସବୁ କରୁଚି ?" ସେ ପଚାରିଲେ ।

"ମୁଁ ଜାଣେନି ।"

ମଣିଷର ପ୍ରକୃତି ଅନୁସାରେ ସବୁ ବିଷୟ ବୁଝିହେଇଯିବା କଥା । ଯେତେବେଳେ ତା'ହୁଏନି ମଲହୋତ୍ରା ଅଧୈର୍ଯ୍ୟ ଓ ବିରକ୍ତ ହେଇ ଯା'ନ୍ତି ।

"ସେ ତମକୁ କିଛି ବି କହିନି ?"

"ହଁ ।"

"ସେ କହିଚି ?"

"ହଁ କହିଚି ।"

"ତା'ହେଲେ ମତେ କହୁନ କାହିଁକି ?" ମଲହୋତ୍ରା ଧୈର୍ଯ୍ୟର ସୀମାରେ ପହଞ୍ଚି ଯାଇଥିଲେ । "ସେ ତମକୁ କଣ କହିଚି ?"

"ମତେ ଏ ସ୍ଥିତିରେ ପହଞ୍ଚେଇଥିବା ସବୁଲୋକଙ୍କୁ ମାରିଦବାକୁ ସେ ମତେ କହିଥିଲା ।"

"ତମେ କହିବାକୁ ଚାହଁ ସେ ତମକୁ ମର୍ଡ଼ର କରିବାକୁ କହିଥିଲା ?"

"ନା ମର୍ଡ଼ର ନୁହଁ । ଆସାସିନେସନ୍ । ଜଣିକିଆ ବିପ୍ଳବ ।"

"କାହାକୁ ମାରିବା ପାଇଁ ସେ ତମକୁ କହିଥିଲା ?"

"ବହୁତ ଲୋକଙ୍କୁ । ପ୍ରଥମେ ପ୍ରଧାନମନ୍ତ୍ରୀଙ୍କୁ ।"

"କ'ଣ ହେଲା !" ମଲହୋତ୍ରା ଚମକି ପଡ଼ିଲେ । ଯଦି ପ୍ରଧାନମନ୍ତ୍ରୀ ମରିଯା'ନ୍ତି ତେବେ ତାଙ୍କ ପ୍ରମୋସନ କଥା କ'ଣ ହବ ?

"ତା'ପରେ ମୁଖ୍ୟମନ୍ତ୍ରୀଙ୍କୁ ଏବଂ ଅନ୍ୟସମସ୍ତ ଦୁର୍ନୀତିଗ୍ରସ୍ତ ନେତା, ଅଫିସର୍, ପୋଲିସ୍ ଓ ବେପାରୀମାନଙ୍କୁ । ଯେଉଁମାନେ ଏ ଦେଶକୁ ଧର୍ଷଣ କରୁଚନ୍ତି, ସେ ସମସ୍ତଙ୍କୁ ।"

"ହତ୍ୟାକାରିଣୀ, ହତ୍ୟାକାରିଣୀ, ହତ୍ୟାକାରିଣୀ," ମଲହୋତ୍ରା ଉତ୍ତେଜିତ ହେଇ କହିଲେ, "ହତ୍ୟାକାରିଣୀ, ହତ୍ୟାକାରିଣୀ, ହତ୍ୟାକାରିଣୀ..."

"ମୁଁ ଭାବୁଚି ସେ ଏ ପର୍ଯ୍ୟନ୍ତ କାହାକୁ ମାରିନି । ସେ ପ୍ରକୃତରେ ଭାରି ଭଲ ।"

"ହତ୍ୟାକାରିଣୀ, ହତ୍ୟାକାରିଣୀ, ହତ୍ୟାକାରିଣୀ," ମଲହୋତ୍ରା ଗୁଣୁଗୁଣୁ ହେଲେ । ଯେମିତି ଲାଗିଲା ତାଙ୍କ ମୁଣ୍ଡରେ ଶବ୍ଦଟି ଘର ଧରିଗଲା : ହତ୍ୟାକାରିଣୀ, ହତ୍ୟାକାରିଣୀ, ହତ୍ୟାକାରିଣୀ...

ପାଣ୍ଡୁ ଖଟରେ ଭିଡ଼ିମୋଡ଼ି ହଉ ହଉ ନିଶ୍ଚଳ ହେଇ ବସିଥିବା ମଲହୋତ୍ରାଙ୍କୁ ଚାହିଁଲା ଓ ଆଖି ବନ୍ଦ କଲା ।

ଆରେ କେଡ଼େ ବୋକା ସେ ! ମଲହୋତ୍ରା ତାଙ୍କ ସମ୍ମୋହିତ ଅବସ୍ଥାରୁ ଉଠିଲେ । ସବୁକଥା ଠିକ୍ ଖାପ ଖାଇଗଲା ।

ସମୟ ମିଳିଲେ ସେ ଯେକୌଣସି କଥାର ରହସ୍ୟ ଉଦ୍‌ଘାଟନ କରିପାରିବେ । ଲୋକମତ କି ଲୋକେ କାହାକୁ ଭୋଟ ଦେବେ ସେ ବିଷୟରେ ସବୁବେଳେ ହୁଏତ ଠିକ୍ ଜାଣିପାରନ୍ତିନି । ହୁଏତ ସେ ଦୁଇଟି ପ୍ରଧାନମନ୍ତ୍ରୀଙ୍କର ପତନର ମିଳିତ ଦାୟିତ୍ୱର ଅଂଶୀଦାର ହେଇପାରନ୍ତି । କିନ୍ତୁ ଜଣେ ଅନୁସନ୍ଧାନୀ ଅଫିସର ଭାବେ ତାଙ୍କ ପରି କେହି ନାହିଁ । କଥାଟା ପ୍ରକୃତରେ ସିଧା ସାଧା । ଷଡ଼ଯନ୍ତ୍ର । ରାଜନୈତିକ ଷଡ଼ଯନ୍ତ୍ର । ସେ ମାଇକିନା, ମାଗୀ, ନିଶ୍ଚୟ ରାଷ୍ଟ୍ରୀୟ ବିଶୃଙ୍ଖଳା କରିବାର ଗୋଟାଏ ଏଜେଣ୍ଟ । ହୁଏତ ବିଦେଶୀ ଶକ୍ତିଠୁ ଟଙ୍କା ପାଉଚି । ବହୁତ ପଇସା ନିଜେ ବି କରୁଥିବ, ସୁଇସ୍ ବ୍ୟାଙ୍କ୍‌ରେ ରଖୁଥିବ ନିଶ୍ଚୟ । ତା'ଗାଁର ସେ ଲୋକ କାମ୍‌ଦା ନିଶ୍ଚୟ ଗୋଟିଏ ସ୍ମଗଲର । ଦେଶଦ୍ରୋହୀ । ସେଇଥିପାଇଁ ହିଁ ସେ ମାଇକିନା ପାଣ୍ଡୁକୁ, ତା' ନାଁ ଯା' ହେଉନା କାହିଁକି, ସାହାଯ୍ୟ କରୁଚି । ରାଜନୈତିକ ହତ୍ୟା କରିବାକୁ । ବର୍ତ୍ତମାନ ତାଙ୍କୁ ପାଣ୍ଡୁକୁ ଆହୁରି ଭଲଭାବରେ ଜେରା କରିବାକୁ ପଡ଼ିବ ।

ସେ ପାଣ୍ଡୁକୁ ଚାହିଁଲେ । ପାଣ୍ଡୁ ଖଟରେ ଛାଟିହେଇ ଶୋଇ ଖୁସୀରେ ବର୍ତ୍ତମାନ ଘୁଙ୍ଗୁଡ଼ି ମାରୁଥିଲା । ଆଶ୍ଚର୍ଯ୍ୟ । ଏ ଓଡ଼ିଆଗୁଡ଼ାକ ଆଶ୍ଚର୍ଯ୍ୟ ରକମର । ଲୋକଟା ଧରାହେଇଚି । ଜାଣିଚି ସେ ବର୍ତ୍ତମାନ ଗଭୀର ସଙ୍କଟ ମଧ୍ୟରେ ଅଛି । ତଥାପି ଖୁସୀରେ ଘୁଙ୍ଗୁଡ଼ି ମାରୁଚି । ଏମାନେ ରାତିରେ ଶୁଅନ୍ତି । ଦି'ପହରେ ଦୋକାନ ବନ୍ଦ କରି ଶୋଇପଡ଼ନ୍ତି ଦିନସାରା । ଅଫିସରମାନେ ଲଞ୍ଚ୍‌ପାଇଁ ଯା'ନ୍ତି ଆଉ ଶୋଇପଡ଼ନ୍ତି । କିରାଣିମାନେ ତାଙ୍କ ଚଉକିରେ ଢୁଳାନ୍ତି ଆଉ ପିଅନମାନେ ତାଙ୍କ ବେଞ୍ଚରେ ।

ସେ ସ୍ୱିଟ୍‌ର ବେଡ଼୍‌ରୁମ୍ କବାଟ ବନ୍ଦକରି ଚାବି ପକେଇଲେ ଡ୍ରଇଂରୁମ୍‌ପଟୁ ଓ ପକେଟରେ ଚାବି ରଖିଲେ । ତା' ପରେ ତାଙ୍କ ଡି.ଜି.ଙ୍କ ପାଖକୁ ଫୋନ୍ ଲଗେଇଲେ ।

''ମୁଁ ସେ ଲୋକକୁ ଧରିନେଇଚି ସାର୍ । ସାଙ୍ଘାତିକ ପରିସ୍ଥିତି ଆସୁଚି । ମୁଁ ଗୋଟାଏ ରିପୋର୍ଟ କୋଡ଼୍‌ରେ ଫ୍ୟାକ୍ସ କରୁଚି । ରାଜନୈତିକ ସନ୍ତ୍ରାସବାଦ, ବିଦ୍ରୋହ ଆଉ ଏସ୍‌ପିଓନାଜ୍ । ଗୋଟାଏ ବିରାଟ ଷଡ଼ଯନ୍ତ୍ର ସାର୍ । ମତେ ରିଇନ୍‌ଫୋର୍ସମେଣ୍ଟ୍ ଦରକାର ସାର୍ । ମୋ ନିଜ ଟିମ୍ ଦରକାର । ଠିକ୍ ଅଛି ସାର୍ । ଧନ୍ୟବାଦ ସାର୍ ।''

ତା'ପରେ ସେ ଅନ୍ୟ ଗୋଟିଏ ସ୍ଥାନକୁ ଫୋନ୍ ଲଗାଇଲେ ।

''ମୁଁ ପ୍ରଧାନମନ୍ତ୍ରୀଙ୍କୁ ଜଣାଇଦେବାକୁ ଚାହୁଁଚି ଯେ ମୁଁ ତାଙ୍କ ଲୋକକୁ ପାଇଚି, ମୁଁ କେସ୍‌ଟି ତିଆରି କରୁଚି । ଏଠି ଗୋଟାଏ ବଡ଼ଧରଣର ଷଡ଼ଯନ୍ତ୍ର ଚାଲିଚି କିନ୍ତୁ ସବୁ ମୋ କଣ୍ଟ୍ରୋଲ୍‌ରେ ଅଛି ବର୍ତ୍ତମାନ । ଆଉ ମ୍ୟାଡାମ୍, ମୋ ପ୍ରମୋସନ୍ ଫାଇଲ....''

ସେ ଫୋନ୍ ରଖିଲେ ଓ ଝରକାବାଟେ ସମୁଦ୍ର ଓ ଆକାଶର ବିଶାଳତାକୁ ଲକ୍ଷ୍ୟ କଲେ । ଦିଗ୍‌ବଳୟରେ ଜଗନ୍ନାଥ ମନ୍ଦିରର ଶୀର୍ଷ ଦୂର ସମୁଦ୍ର ଭିତରୁ ବାହାରିଉଠିଥିଲା ବିଶାଳ ହେଇ ।

''ଏଁ !'' ଏ କି ଭେଳିକି ? ସମୁଦ୍ର ଭିତରେ ମନ୍ଦିର କୁଆଡୁ ଆସିଲା ? ମନ୍ଦିରଟାତ ଶୁଖିଲା ଭୂଇଁରେ । ସେ ମୁହଁ ବୁଲେଇଲେ । ବିପରୀତ କାନ୍ଥ ଦେଇ ସେ ଦେଖିଲେ ମନ୍ଦିର ଉପରର ପତାକା ପବନରେ ଫର ଫର ଉଡୁଚି । କ'ଣ ତାକୁ କହନ୍ତି, ପତିତପାବନ ବାନା । ତାଙ୍କ ମୁଣ୍ଡ ବୁଲେଇଦେଲା । କାନ୍ଥ ଭେଦି ଦେଖିବ କିମିତି ? ସେ ଥଣ୍ଡାପାଣିରୁ ଗିଲାସେ କାଢ଼ି ପିଇଲେ । ଆଖି ବନ୍ଦ କଲେ । ଆଖି ଖୋଲିଲେ । ବସିଲେ, ଉଠିଲେ । ରାତିରେ ଦୁଃସ୍ୱପ୍ନ ଦେଖିଲା ପରି ବାନ୍ତି ହେବା ପୂର୍ବରୁ ଦେହ କୋରି ହୋଇ ଯାଉଥିବା ପରି ସେ ତାଙ୍କ ଭିତରେ ଏକ ଅଜଣା ଆନ୍ଦୋଳନ ଅନୁଭବ କଲେ ।

''ଏ ମୋର କ'ଣ ହେଉଚି ?'' ସେ ନିଜକୁ କହିଲେ । ସେ ପୃଥିବୀର ଶୀର୍ଷରେ ଆରାମରେ ବସିଥିଲେ । ପାଣ୍ଡୁକୁ ପାଇଲେ । ତାଙ୍କ ଡି.ଜି. ମହା ଖୁସୀ । ତାଙ୍କର ଦ୍ୱୈତ ପଦୋନ୍ନତି ଏକରକମର ପକ୍‌କା, କାରଣ ପ୍ରଧାନମନ୍ତ୍ରୀ ନିଶ୍ଚୟ ଖୁସୀ ହେବେ । ଚାରିଆଡ଼େ ଗ୍ରୀନ୍ ସିଗ୍‌ନାଲ୍ । ତାହେଲେ ସେ ଏମିତି ଶୂନ୍ୟତା ଅନୁଭବ କରୁଛନ୍ତି କାହିଁକି ? ଅନେକ ଦୂରତ୍ୱର ଶୂନ୍ୟତା ? ଅନେକ ଅସାମଞ୍ଜସ୍ୟତାର ? ସେ ସୋଫାରେ ଗଡ଼ିପଡ଼ି ଆଖି ବନ୍ଦ କଲେ । ଉତ୍ତେଜନାରୁ ଏପରି ହଉଚି, ସେ ଭାବିଲେ । ସାଙ୍ଗେ ସାଙ୍ଗେ ସେ ଗଭୀର ନିଦରେ ଶୋଇପଡ଼ିଲେ ।

ସମୁଦ୍ରରେ ଜୁଆର ଆସିଲା ବେଳକୁ ସେ ଉଠିପଡ଼ିଲେ । ପାଣ୍ଡୁ ତଥାପି ଶୋଇଥାଏ । ସେ ତାଙ୍କ ମୁହଁ ଧୋଇଲେ, ବାଳ କୁଣ୍ଡେଇଲେ ଓ ପାଣ୍ଡୁ କୋଠରିର ତାଲା ପରୀକ୍ଷା କରିସାରି ବାହାରକୁ ଗଲେ । ପାଞ୍ଚଟା ବାଜିଥିଲା । ପାଞ୍ଚଟା ତିରିଶରେ ତାଙ୍କ ଦଳର ଚାରିଜଣଙ୍କୁ ଧରି ପ୍ଲେନ୍ ଭୁବନେଶ୍ୱରରେ ପହଞ୍ଚିବ । ସେମାନେ ଛଅଟା ସୁଦ୍ଧା ବିମାନବନ୍ଦର ବାହାରକୁ ଆସିଯାଇଥିବେ । ସାତଟା ତିରିଶ ସୁଦ୍ଧା ସେମାନେ ଏଠି ପହଞ୍ଚିଯିବେ ।

ସେ ତାଙ୍କ ଟାକ୍ସିଟି ନ ମଗେଇ ଚାଲିବାକୁ ଲାଗିଲେ । ପୁରୀର ଗଳି ରାସ୍ତାମାନଙ୍କରେ ଚାଲି ଚାଲି ଶେଷରେ ସେ ମନ୍ଦିର ଆଗରେ ପହଞ୍ଚିଲେ । ଜୋତାଷ୍ଟାଣ୍ଡରେ ଜୋତା ରଖି ଅରୁଣସ୍ତମ୍ଭ ପାର ହୋଇ ସେ ମନ୍ଦିର ଭିତରେ ପଶିଲେ ।

ସିଂହଦ୍ୱାର ପାରିହେଇ ଧୀରେ ସେ ଗ୍ରାନାଇଟ୍ ପାହାଚ ଚଢ଼ିଲେ । ପ୍ରତି ପାହାଚ ମୁଠୁଣିଏ ଉଚ୍ଚ ଓ ଚାରିହାତ ଓସାର ଥିଲା । ହଜାରେ ବର୍ଷ ହେଲା ପ୍ରତିଦିନ କୋଟି କୋଟି ଲୋକଙ୍କ ତଳ ଉପର ହବା ଦ୍ୱାରା ପାହାଚଗୁଡ଼ିକ ଘୋରିହେଇ ଖାଲୁଆ ହେଇ ଯାଇଥିଲା ଠାଏ ଠାଏ । ଯଦିଓ ଘର୍ଷଣ ଯଥେଷ୍ଟ ନ ଥିଲା କାରଣ ଲୋକେ ଖାଲି ପାଦରେ ହିଁ ଯା'ଆସ କରୁଥିଲେ ।

ପାହାଚଗୁଡ଼ିକର ଶୀର୍ଷରେ ଭିତର ବେଢ଼ା ଓ ଆଉଗୋଟିଏ ପ୍ରବେଶ-ମନ୍ଦିର । ସେଇଟି ଅତିକ୍ରମ କରିବା ପରେ ସେ ମୁଖ୍ୟ ମନ୍ଦିରର ଦର୍ଶନଗୃହର ପଛଭାଗରେ ପହଞ୍ଚିଲେ । ସେ ମନ୍ଦିର ଆୟତାକାର ଗଠନକୁ ଅନୁସରଣ କରି ପ୍ରଥମେ ବାଁକୁ ତାପରେ ଡାହାଣକୁ ବୁଲିଲେ । ତାଙ୍କ ବାଁପଟେ ଅନେକ ଦେବଦେବୀଙ୍କର ଛୋଟ ଛୋଟ ମନ୍ଦିର ଥିଲା ଓ ଡାହାଣରେ ଠିଆହେଇଥିଲା ଜଗନ୍ନାଥ ମନ୍ଦିର । ସେ ତାଙ୍କ ବାଁପଟରେ ମୁକ୍ତିମଣ୍ଡପକୁ ପାରି ହେଇଗଲେ ଓ ଜଗନ୍ନାଥ ମନ୍ଦିରର ଗୋଟିଏ ପାଖ ଦ୍ୱାରଆଡ଼କୁ ମୁହେଁଇଲେ । ସେଇଟା 'ସାହାଣମେଲା'ର ସମୟ ଥିଲା କିନ୍ତୁ ତାଙ୍କର ସେ ଭିତରକୁ ଯିବାକୁ ଇଚ୍ଛା ହେଲାନି । ତଥାପି ସେ ଲୋକଙ୍କ ଦ୍ୱାରା ଠେଲି ହେଇ ଚାଲିଗଲେ ।

ଯେତେବେଳେ ସେ ଜଗନ୍ନାଥଙ୍କ ସାମନାକୁ ଆସିଲେ, ସେ ଏକରକମର ବାଉଳା ହେଇଗଲେ କାରଣ ସେ ଏ ପୃଥିବୀରେ ଏମିତିକା ଠାକୁର କୋଉଠି ଦେଖି ନ ଥିଲେ । ଗୋଡ଼ ନାହିଁ, ହାତ ଜାଗାରେ ଦୁଇଟା ଖୁଣ୍ଟ, ମୁହଁଟା କ୍ୟୁବିଷ୍ଟ୍ ପେଣ୍ଟିଂପରି ଗଢ଼ା, ଆଖି ଦି'ଟା ଅମାନୁଷିକ, ଗୋଲ ଗୋଲ ଅବା ମୁଣ୍ଡରେ ଗୋଟାଏ ମହାଶୂନ୍ୟ ଯାତ୍ରୀର ହେଲ୍‌ମେଟ୍ । ତାଙ୍କ ରଙ୍ଗ କଳା । ତାଙ୍କ ଭଉଣୀ ସୁଭଦ୍ରା ହଳଦିଆ । ତାଙ୍କ ବଡ଼ଭାଇ ବଳରାମ ଧଳାରଙ୍ଗର ଥିଲେ । କୁହାଯାଏ ଜଗନ୍ନାଥଙ୍କ ଲାହିରେ ଗୋଟାଏ ଗୁପ୍ତ ବସ୍ତୁ ଅଛି ଯାହାକୁ ନବକଳେବର ବେଳେ, ନିର୍ଦ୍ଦିଷ୍ଟ ବଂଶର ସବୁଠୁଁ ବୁଢ଼ାଲୋକ ଆଖିରେ ପୁଟୁଳି ବାନ୍ଧି ନୂଆ କଳେବର ଭିତରେ ସ୍ଥାପନ କରେ । ନବକଳେବର ନିର୍ଦ୍ଦିଷ୍ଟ ସମୟାନ୍ତରରେ ହୁଏ । ନୂଆ ମୂର୍ତ୍ତି ମହାନିମଗଛର କାଠରେ ତିଆରି ହୁଏ ଯୋଉଥିରେ ବିଷ୍ଣୁଙ୍କର ଶଙ୍ଖ, ଚକ୍ର, ଗଦା, ପଦ୍ମର ଚିହ୍ନ ଥାଏ, ଆଉ ଯୋଉ ଗଛ ବିଷୟରେ ଜଣେ ପୂଜକକୁ ସ୍ୱପ୍ନେଇ ଦିଆଯାଏ । ଗୁପ୍ତ ବସ୍ତୁଟିକୁ ଦେଖି ନ ପାରିବା କି ଛୁଇଁ ନ ପାରିବା ପାଇଁ ରଖିବା ଲୋକର ଆଖିରେ ଆଉ ହାତରେ ପରସ୍ତ ପରସ୍ତ ଲୁଗା ଗୁଡ଼ାଯାଏ । କୁହାଯାଏ ଯଦି କୌଣସି ଲୋକ ଗୁପ୍ତ-ବସ୍ତୁକୁ ଦେଖିଦିଏ ତା'ର ସାଙ୍ଗେ ସାଙ୍ଗେ ମୃତ୍ୟୁ ହୁଏ । ଯଦି କେହି ତା' ବଦଳେଇବା ସମୟରେ ଅନୁଭୂତିକୁ ବର୍ଣ୍ଣନା କରେ ତେବେ ତା'ର ସମ୍ପୂର୍ଣ୍ଣ ପରିବାରର ମୃତ୍ୟୁ ହୁଏ । ଗୁପ୍ତ ବସ୍ତୁ ବଦଳେଇବା ବିଷୟରେ ତେଣୁ ସମସ୍ତେ ଚୁପ୍ ରହନ୍ତି । ସେ ବିରାଟ କାଠଗଣ୍ଡି ଭିତରେ କୋଉଠି ଯିମିତି କିଛି ଲୁଚିଥିଲା, ଯୋଉଠୁ ସେ ବଡ଼ ବଡ଼ ଆଖି ସିଧା ମଲ୍‌ହୋତ୍ରାଙ୍କ ଭିତରକୁ ଚାହିଁଥିଲା ଆଉ ସେ ଥୁଣ୍ଟାହାତ ଯିମିତି ମଲ୍‌ହୋତ୍ରାଙ୍କୁ ସ୍ୱାଗତ କରୁଥିଲା ।

''ଆଃ ।''

କ'ଣ ଯାଡୁ ସ୍ୟାଡୁ ସେ ଭାବୁଛନ୍ତି ।

''ମୋ ପାଖକୁ ଆଃ । ଆଃଆ, ଆଃଆ, ଆଃଆ ।''

ଆରେ ! ସେ ତାଙ୍କ ମୁଣ୍ଡ ଝାଙ୍କିଲେ, କିନ୍ତୁ ସେ କୁହୁଳିଆ ଆଖିକୁ ସମ୍ମୋହିତ ହେଲା ପରି ଚାହିଁରହିଲେ ।

''ଆ' ଆ', ଆ ଚାଲିଆ....''

ମଲ୍‌ହୋତ୍ରା ଭିଡ଼ରେ ଠେଲି ହେଇଗଲେ । ଭିତରେ ଥିବା ଗୋଟାଏ ପାରା ତାଙ୍କ ମୁଣ୍ଡ ଓପରେ ଫଡ୍‌ଫଡେଇ ଉଡ଼ିଗଲା । ଲୋକଙ୍କ ଠେଲାପେଲା ତାଙ୍କୁ ବାହାରକୁ ନେଇଯିବା ପୂର୍ବରୁ ତାଙ୍କ ମୁଣ୍ଡରେ କ'ଣ ମେଞ୍ଚାଏ ପଡ଼ିଯିବାର ଅନୁଭବ କଲେ । ବାହାରକୁ ଆସିବା ପରେ ସେ ମୁଣ୍ଡକୁ ଆଉଁଶିବାକୁ ଚେଷ୍ଟା ନ କରି ସଳଖ ହେଇ ଆଗକୁ ଚାଲିଲେ । ଆଗରେ ସେ ଦେଖିଲେ ଛାତିଏ ଉଚ୍ଚର ଗୋଟାଏ କୁଣ୍ଡ । ଲୋକେ ତା' ଭିତରର ପାଣିକୁ ନିଜ ଦେହରେ ଛିଞ୍ଚି ହଉଥିଲେ । ଲୋକେ ଯେତେବେଳେ ଚାଲିଗଲେ ମଲ୍‌ହୋତ୍ରା ସେଠିକି କିଛି ନ ଜାଣିଲା ପରି ଗଲେ । ସେଠି କେହି ନ ଥିଲେ । କୁଣ୍ଡର ପଛପଟରେ ସେ ମୁଣ୍ଡକୁ ନୁଆଁଇଲେ ଯେମିତି କେହି ଜାଣିପାରିବନି ସେ କ'ଣ କରୁଚନ୍ତି । ତାଙ୍କ ବିଶିଆଙ୍ଗୁଠିରେ ସେ ମୁଣ୍ଡକୁ ପୋଛିଆଣିଲେ । କିନ୍ତୁ ତାଙ୍କ ହାତରେ କିଛି ଲାଗିଲାନି । ସେ ପୁଣି ସିମିତି କଲେ କିନ୍ତୁ କିଛି ବାହାରିଲାନି । ସେ ତାଙ୍କର ସବୁ ଆଙ୍ଗୁଠିରେ ମୁଣ୍ଡଯାକର ବାଳ ଅଣ୍ଡାଳିଗଲେ । କିନ୍ତୁ ପାରା ଗୁହର ସନ୍ଧାନ ପାଇଲେନି । ଭିତରକୁ ତ ପଶି ଯାଇ ନ ଥିବ, ଯାଇପାରିବ ? କଳ୍ପନାରେ ହେଇଗଲା ବୋଧହୁଏ । ପାଣିକୁଣ୍ଡରେ ଆଙ୍ଗୁଠି ବୁଡ଼େଇ ସେ ମୁଣ୍ଡର ଚାରିଆଡ଼େ ଛିଞ୍ଚିଦେଲେ ।

ଯେମିତି ସେ ମନ୍ଦିର ବାହାରେ ପାଦ ରଖିଚନ୍ତି, ଦାଢ଼ିଆ ଭିକାରିଟିଏ ତାଙ୍କ ଆଗରେ ଲାଉତୁମ୍ବାଟାଏ ଦେଖେଇ କହିଲା । ''ରୋହିଣୀକୁଣ୍ଡ ପାଖକୁ ଯାଇଥିଲ ପରା ? ଭୁଷଣ୍ଡ କାକ କ'ଣ କହିଲା, ହେଁ ? କ'ଣ କହିଲା ? କ'ଣ କହିଲା ?''

ମଲ୍‌ହୋତ୍ରା କିଛି ଖୁଚୁରା ପଇସା ତା' ତୁମ୍ବାରେ ପକେଇଦେଇ ଚଞ୍ଚଳ ପାଦରେ ଦୋଳମଣ୍ଡପ ସାହି ବାଟ ଦେଇ ହୋଟେଲକୁ ଚାଲିଲେ ।

ପାଣ୍ଡୁର ଛାଇନିଦ ଚାଉଁକିରି ଭାଙ୍ଗିଗଲା, ମଲ୍‌ହୋତ୍ରା ଚାଲିଯିବା ସାଙ୍ଗେ ସାଙ୍ଗେ । ପରିଷ୍କାର ମନେଥିଲା ସେ ଲୋକଗୁଡ଼ାଙ୍କର ନାଁ  ଗୁଣନିଧି, ମହାସ୍କନ୍ଧ, ବିଜୟବଲ୍ଲଭ, ବିଶ୍ୱରାଜ । ସେ ବର୍ତ୍ତମାନ ସିଂ କବଳରେ । ତାର ବହୁତ କାମ କରିବାକୁ ଅଛି । ମଲ୍‌ହୋତ୍ରା ଫଲ୍‌ହୋତ୍ରା କେହି ତାକୁ ରୋକି ପାରିବେନି । ସେ ଅନୁଭବ କଲା ଉଠା

କଟୁରି, ପଡ଼ିବା ପାହାର । ସେ ଶୀଘ୍ର ତା ଦେହ ହାତ ଦେଖିନେଲା । ଶୁଖିଲା ଓଠକୁ ଜିଭରେ ଓଦା କରିଦେଇ ସେ ଉଠିପଡ଼ିଲା, ତା ହାଡ଼ ଓ ମାଂସପେଶୀର ପ୍ରତ୍ୟେକଟି କଷ୍ଟର ସ୍ୱାଦ ପରଖି । ଧୀରେ ଧୀରେ ସେ ଲୁଗାପଟା ଖୋଲିଲା ଆଉ ନିଜର ଆକ୍ରାନ୍ତ ଦେହଟାକୁ ଚାହିଁଗଲା ଦର୍ପଣରେ । ସେ ମୁହଁର ପ୍ରତିଟି ବିକୃତିକୁ ଚାହିଁ ଠିଆ ହେଇ ରହିଗଲା । ସବୁ ସଜାଡ଼ିବାକୁ ହବ ।

ହଠାତ୍ ସେ ନିଜ ମୁହଁ ପ୍ରତି ହସିଉଠିଲା । ଆଉ ଖତେଇହେଲା ।

''ମାଙ୍କଡ଼ମୁହାଁ,'' ସେ କହିଲା । ''ମାଙ୍କଡ଼ମୁହାଁ ଏଥର ତା ଏକ୍ସଟର୍‌ମିନେଟର୍‌କୁ ଭେଟିବ ।''

ମଲ୍‌ହୋତ୍ରା ଦୁଆର ବାହାରପଟୁ କିଳି ଦେଇଥିଲେ । କିନ୍ତୁ ତାକୁ ଜଣାଥିଲା କିମିତି ବାହାରିବାକୁ ହବ ।

ମଲ୍‌ହୋତ୍ରା ହୋଟେଲରେ ପହଞ୍ଚିଲାବେଳକୁ ତାଙ୍କ ଶିକାର ଖସି ଯାଇଥିଲା । କୌଶଳଟି ସହଜ । ପାଣ୍ଡୁ ହୋଟେଲର ମାଳୀକୁ ଝରକାବାଟେ ଡାକି କହିଥିଲା କି ରିସେପ୍‌ସନ୍‌ରେ କହିଦେବାକୁ ଯେ ତା' ବନ୍ଧୁ ସେ ଶୋଇଥିବାବେଳେ ବାହାରୁ କବାଟ ଦେଇ ଚାଲିଯାଇଚି ।

ମଲ୍‌ହୋତ୍ରା ବ୍ୟସ୍ତ ହେଲେନି । ସେ ସଙ୍ଗୀନ୍ ହେଇଗଲେ । ବହୁତକିଛି ୟାପରେ ନିର୍ଭର କରୁଥିଲା । ସେ ଗୋଟାଏ ବଡ଼ ପଟ୍ ଚା' ବରାଦ କଲେ ଆଉ ତାଙ୍କ ଦଳର ଆଗମନକୁ ଅପେକ୍ଷା କଲେ ।

ସେ ଜାଣିଥିଲେ ପାଣ୍ଡୁ କୋଉଠି ମିଳିବ । ସେ ଯାଉଥିବ ଘରକୁ ନ ହେଲେ କୋଣାର୍କକୁ । କିନ୍ତୁ ତାଙ୍କ ଭିତରେ ବର୍ତ୍ତମାନ ଗୋଟାଏ ନୂଆ ରହସ୍ୟ ଥିଲା, ସେଇଟାକୁ ସେ ବୁଝିପାରୁ ନ ଥିଲେ, ତଥାପି ସେ ଜାଣିଥିଲେ ସେ ଠିକ୍ ହେଇଯିବେ ।

ସେ ସବୁବେଳେ ସଜାଡ଼ି ହେଇଯାଇପାରନ୍ତି । ଚବିଶ ଘଣ୍ଟା ଭିତରେ ସେ ତାଙ୍କ ଲୋକକୁ ଆଉଥରେ ଧରିନେବେ । ସେ ନିଶ୍ଚିତ ଥିଲେ ।

ମୁକ୍ତି କ୍ଳିନିକ୍‌ରେ ସେମାନେ ସାରାଦିନ ପାଣ୍ଡୁକୁ ଅପେକ୍ଷା କଲେ, ଅପେକ୍ଷା କରୁଥିବାବେଳେ ମାଗୀ କଥାବାର୍ତ୍ତା କରିଥିଲା ଅଳ୍ପ କିନ୍ତୁ ତା' ମନ କଥା ଖୁବ୍ ସରଳ ଭାବେ କହିଥିଲା । ଯେତେବେଳେ ସନ୍ଧ୍ୟା ହେଲା ଓ ସୂର୍ଯ୍ୟ ବୁଡ଼ିଲେ ମାଗୀ ଚାଲିଗଲା । ଗଲାବେଳେ ଡା. ପ୍ରହରାଜ, ପାଣ୍ଡୁ ଯଦି ଆସେ କୋଣାର୍କ ପୋଲିସ ଷ୍ଟେସନ୍‌କୁ ଫୋନ୍ କରିବେ ବୋଲି ତାକୁ କଥା ଦେଲେ । କିନ୍ତୁ ଡା. ପ୍ରହରାଜ ବୁଝିପାରୁଥିଲେ ଯେ ମାଗୀର ମନ ଆଉ ଏ ଲୋକ ପାଖରେ ନ ଥିଲା ଯାହାର ଜୀବନ ମା'ର ଶକ୍ତି ଦେଇ ସେ ବଞ୍ଚେଇଥିଲା । ସେ ଏ ବଢ଼ନ୍ତା ଦୂରତ୍ୱ ସପ୍ତାହ ପରେ ସପ୍ତାହ ଦେଖି ଆସୁଥିଲା

ପାଣ୍ଡୁର ହୋସ୍ ଆସିଲା ଦିନଠୁଁ । ତା ସ୍ୱଳ୍ପ ବାକ୍ୟମାନଙ୍କ ମଝିରେ ଚୁପ୍‌ଚାପ୍‌ରେ କିନ୍ତୁ କିଛି ଗୋଳମାଳିଆ ନ ଥିଲା ଚୋରାବାଲିରେ ଧସିଯିବା ଭଳିଆ, ଥିଲା ଆଖି ବିସ୍ତାରି ସଜ ନିଷ୍ପତ୍ତି ନବା, ନୂଆ ବାଟରେ ମାଡ଼ିଯିବାର ଅଦମ୍ୟ ସାହସ । ତା କହରା ଆଖି ଥିଲା କଳା ଆଉ ଗହୀର । କିନ୍ତୁ ଆଜି ଆଇରିସ୍‌ର ମଝିରେ ଯୋଉ ବାଟେ ଆଲୁଅ ଭିତରକୁ ପଶିଯାଉଥିଲା ରେଟିନା ଓପରକୁ ଆଉ ଯୋଉ ବାଟେ ଭିତରଟା ବାହାରକୁ ଚାହୁଁଥିଲା, ସେଠି ଦେଖାଦେଲା ଗୋଟାଏ ବିରାଟ ନେଳି ମହାସାଗର ଲହଡ଼ି ଫୋପାଡ଼ି, ଯାହାର ଶୀର୍ଷ ଆକାଶ ଛୁଇଁଥିଲା ଆଉ ଯାହାର ଖାଲ ରାସାତଳକୁ ପଡ଼ିଯାଉଥିଲା । ଡା. ପ୍ରହରାଜଙ୍କୁ ଅଣନିଃଶ୍ୱାସୀ ଲାଗିଲା । ଯିମିତି ତାଙ୍କ ତଣ୍ଟି ଚିପିହେଇଯାଉଚି । ସେ ଆଖି ଛଡ଼େଇ ଆଣି ଝରକାବାଟେ ଚାହିଁଲେ ନିତିଦିନିଆ ବଙ୍ଗୋପସାଗରକୁ ଯୋଉଠି ମାଛୁଆମାନେ ରଙ୍ଗରଙ୍ଗିଆ ଡଙ୍ଗାରେ ଚାଲିଥିଲେ । କିନ୍ତୁ ସେଠି ବି ତାଙ୍କୁ ଦୁଶିଲା ଝଡ଼ ଆଲୋଡ଼ିତ ସମୁଦ୍ର ଯୋଉଥିରେ ଅଜବ ଡଙ୍ଗାର ମଙ୍ଗ ପାଣି କାଟୁଥିଲେ ଆଉ ଅଜଣା ଆକୃତି ସବୁ ସମୁଦ୍ର ଗର୍ଭରୁ ଉଠୁଥିଲେ । ସେ ତାଙ୍କ ମୁଣ୍ଡ ଝାଙ୍କିଲେ ।

''ସବୁ ହଠାତ୍ ବଦଳିଯାଏ, ନା ?'' ମାଗୀ ସ୍ମିତ ହସି କହିଥିଲା । ''ମୁଁ ଏଥର ଯାଏଁ । ବହୁତ କାମ ଅଛି ।''

''ସେ ଯଦି ଫେରିବ ? ତା କଥା ?''

''ତାକୁ ଛାଡ଼ିଦିଅନ୍ତୁ । ଟଙ୍କା ପଇସାତ ଦିଆହେଇଯାଇଚି ।''

ଆଉ ସେ ଚାଲିଗଲା ।

''ମୋ କଥାଟା ଟିପିରଖ ଈଶ୍ୱରୀ, ଡା. ପ୍ରହରାଜ କହିଲେ, ''ଏ ସ୍ତ୍ରୀଲୋକଟି ଅଲଗା ଧାତୁରେ ଗଢ଼ା, ଆମମାନଙ୍କ ପରି ନୁହଁ । ମୁଁ ତା'ପରି ହେଇଥା'ନ୍ତି କି ?''

''ସେ ଗୋଟାଏ ସ୍ତ୍ରୀ ସାର୍,'' ଈଶ୍ୱରୀ କହିଲା, ''ସ୍ତ୍ରୀ ।''

''ଆଶ୍ଚର୍ଯ୍ୟରକମର କଥା ସବୁ ଘଟୁଚି ।''

''ଏତେ ଆଶ୍ଚର୍ଯ୍ୟ ନୁହଁ । ନିଜ ଭିତରକୁ ଚାହିଁବାର ଯେ ଅନ୍ୟ ଗୋଟେ ଉପାୟ ।''

''ବୋଧେ କଲ୍‌କୀଙ୍କ ସମୟ ଆସିଗଲା ।''

''ଆମେ ସେତିକି ବାଟ ଭାବିପାରୁଚେ ।''

ସାବଧାନ ! ଆରେ ! ଯେ କ'ଣ କଲ ?

କ'ଣ ହେଲା ?

ତମେ ନେଲି ଆଲୁଅକୁ ବିନା ଆଦେଶରେ ସମୟ ପୂର୍ବରୁ ଛାଡ଼ିଦେଲ । ଶନିର ବଳୟ ଭିତର ଦେଇ ! ପୃଥିବୀ ଆବର୍ତ୍ତନକୁ ।

ତୁ ଖାଲି ଗୋଟାଏ ଯନ୍ତ୍ର । କଳ, ତାଙ୍କ ଭାଷାରେ ।

ଅବଶ୍ୟ । କିନ୍ତୁ ତମେ ଜୋକର୍ ପରି ହଉଚ, ତାଙ୍କ ଭାଷାରେ । ସେ ସ୍ତ୍ରୀ ବସ୍ତୁ ଆଗରେ ଦେଖେଇ ହଉଚ ।

ଡାଇରେକ୍ଟର ଜେନେରାଲଙ୍କ ଆସିବା ଖବର ଯେତେବେଳେ ଓ୍ୱେୟାର୍‌ଲେସ୍‌ରେ ପହଞ୍ଚିଲା ସବଇନିସ୍‌ପେକ୍ଟର ଭବାନୀ ଦାସ ନିଜ ଚୌକିରେ ବସି ତରବରିଆ ଭାବେ କାମଗୁଡ଼ିକ ଛିଣ୍ଡାଇବାକୁ ଚାହିଁଲେ । ଖୁବ୍ କମ୍ ସମୟ ଥିଲା । କନେଷ୍ଟବଲ୍ ପ୍ରଧାନ ଦ୍ୱାରା ସେ ଡକେଇ ପଠାଇଲେ ଏ.ଏସ୍.ଆଇ. ଦଣ୍ଡପାଣି ପତିକୁ ଯିଏକି ଏପର୍ଯ୍ୟନ୍ତ ଥାନାରେ ପହଞ୍ଚି ନ ଥିଲେ । କନେଷ୍ଟବଲ୍ ସଉରାକୁ ପଠାଇଲେ ଚାଳିଆ ହୋଟେଲରୁ ଡୁମଡୁମାକୁ ଡାକିବାକୁ । ହାବିଲ୍‌ଦାର ପଟ୍ଟନାୟକକୁ ପାଖ ମଦଦୋକାନ ମାଲିକ ଯୁଧିଷ୍ଠିର ରାଉତକୁ ଡାକିଆଣିବାକୁ ପଠାଇଲେ । ତା'ପରେ ସେ କନେଷ୍ଟବଲ୍ ତ୍ରିପାଠୀକୁ ଡାକିଲେ ।

''ତ୍ରିପାଠୀ, ଡି.ଜି.ଙ୍କ ସୁବିଧା ଅସୁବିଧା ବୁଝିବା ଦାୟିତ୍ୱ ତୁମ ଉପରେ ରହିଲା ।''

''ମୁଁ ସେ କାମ କରିପାରିବି ନାହିଁ ସାର୍,'' କନେଷ୍ଟବଲ ତ୍ରିପାଠୀ ନିର୍ବିଘ୍ନ ଭାବରେ କହିଲା, ''ଆପଣ ଆଉ ଯେଉଁ କାମ କହିବେ କରିବି ପଛେ ।''

''ଆରେ ଏଇଟା ତମପାଇଁ ଡି.ଜି.ଙ୍କ ଲଦଘସରେ ରହିବାର ଗୋଟାଏ ସୁଯୋଗ, ଆଉ ତମେ ମୁହଁ ମୋଡୁଛ ?''

''ହଁ ଆଜ୍ଞା,'' ତ୍ରିପାଠୀ ଏକା ଜିଦ୍‌ରେ କହିଲା ।

''କାରଣ ?'' ଭବାନୀ କଥାଟି ଠିକ୍ ପଇଟ କରି ପାରୁ ନ ଥିଲେ, ''ଆଉ କିଏ ହୋଇଥିଲେ ତ ଏମିତି ସୁଯୋଗକୁ ହାତଛଡ଼ା କରନ୍ତାନି । ତମେ ଠିକ୍ ଠିକ୍ କହିଲ କଥା କ'ଣ ।''

''ଆଜ୍ଞା,'' ତ୍ରିପାଠୀ ଥାଥା-ମାମା ହୋଇ ଆରମ୍ଭ କଲା, ''ମୁଁ ବାହ୍ମଣ ଆଜ୍ଞା, ଆଉ ଡି.ଜି. ହେଲେ କୋଟାବାଲା, ଅଛୁଆଁ ଆଜ୍ଞା, ଯେତେଥର ତାଙ୍କୁ ଛୁଉଁଥିବି କି ସିଏ ଛୁଇଁଥିବା ଜିନିଷପତ୍ର ଛୁଉଁଥିବି ସେତେଥର ଲୁଗା ପାଲଟୁଥିବି ଆଉ ଗାଧୋଉଥିବି । ଗାଧେଇଲେ ତ ମତେ ଚଟ୍‌କିନି ଥଣ୍ଡା ଧରିଯାଏ, ମତେ ଯଦି ସାରାଦିନ ଥଣ୍ଡା ଧରି ରହିବ ମୋର କଣ ହବ ଆଜ୍ଞା ? ଆଉ ମୋର ଏତେ ଲୁଗାପଟା କାହିଁ ଯେ ମୁଁ ଏତେଥର ବଦଳେଇବି ?''

"ଆରେ ବାବୁ ତମେ କେଉଁ ଯୁଗରେ ଅଛ ? ମୋ କଥା ଦେଖୁନ, ମୁଁ ବି ଜଣେ ବ୍ରାହ୍ମଣ ।"

"ଆଜ୍ଞା, ଆପଣତ କାହିଁରେ କ'ଣ ମଣିଷ । ଯାହା ସାଙ୍ଗରେ ବି ଶୋଇପଡ଼ିବେ, ଯାହା ସାଙ୍ଗରେ ବି ସବୁକିଛି ଖାଇପିଇ ଦେବେ । ଆପଣଙ୍କ ଚମଡ଼ା ବେଶ୍ ମୋଟା ଆଉ ଖସଡ଼ା ହେଇଛି ଆଜ୍ଞା ।"

"ତମେ ତ ବେଶ୍ ଗଡ଼ାଗଡ଼ି ହୁଅ, ମୁଁ ଜାଣିନି ଭାବୁଛ ? ମାଂସ ବି ଖାଅ, ଆଉ ବାକ୍‌ଚାତୁରୀ ମାରୁଛ କାହା ପାଖେ ?"

"ହେଲେ ପଚିଶ ବର୍ଷରୁ କମ୍ ସଫାସୁତୁରା ବ୍ରାହ୍ମଣ ଟୋକୀଙ୍କ ସାଙ୍ଗ ହୁଏ । ସେଥିରେ ତ ଦୋଷ ନାହିଁ । ତା'ଛଡ଼ା ମୁଁ କେବଳ ମଧୁର ଜଳର ଜାତିଆ ମାଛ, ଯେମିତି ରୋହୀ, ଭାକୁଡ଼ ଇତ୍ୟାଦି ଖାଏ । ମାଂସ ବି ସେମିତି ଖାଏ : ଖାସୁ ହୋଇଥିବା ଅଣ୍ଡିରାଛେଳି ଓ ମାଈ ବା ଅଣ୍ଡିରା କୁକୁଡ଼ା, ଆଉ ଜାତିଆ ପନିପରିବା ଆଉ ଜାତିଆ ଡାଲିଚାଉଳ ଆଜ୍ଞା ।"

"ମୁଁ ଯଦି ତମକୁ ତଥାପି ଡି.ଜି.ଙ୍କ ଡ୍ୟୁଟି ପକାଏ ?"

"ମୁଁ ଛୁଟି ନେଇଯିବି ।"

"ଯଦି ମୁଁ ଛୁଟି ନ ଦିଏ ?"

"ମୁଁ ମେଡିକାଲ୍ ସାର୍ଟିଫିକେଟ୍ ଦେଇ ଛୁଟି ନେବି ।"

"ତମକୁ କାହିଁକି କୋଉ ଡାକ୍ତର ସାର୍ଟିଫିକେଟ୍ ଦବ ?"

"କାହିଁକିନା ତାଙ୍କୁ ପଇସା ଦରକାର । ଡାକ୍ତରଗୁଡ଼ା ଭାରି ଗରିବ, ସେମାନଙ୍କର ସବୁବେଳେ ପଇସା ଦରକାର । ପଇସା ଦେଲାମାତ୍ରେ ତମର ଦରକାର ଥାଉ ବା ନ ଥାଉ ସେମାନେ ସଙ୍ଗେ ସଙ୍ଗେ ସାର୍ଟିଫିକେଟ୍ ଲେଖିଦେବେ । ଆପଣଙ୍କର ଯଦି ଦରକାର ମୁଁ ଆପଣଙ୍କ ପାଇଁବି ଖଣ୍ଡେ ଆଣିଦେବି । ଯଦି ତାଙ୍କୁ ବେଶୀ ପଇସା ଦେବେ ସିଏ ପ୍ରେସ୍କ୍ରିପ୍‌ସନ୍ ଲେଖିଦେବେ । ଆଉଟିକେ ଅଧିକା ପଇସା ଦେଲେ ଇଂଜେକ୍‌ସନ୍ ଫୋଡ଼ିଦେବେ । ଆଉଟିକେ ଦେଲେ...."

"ହେଲା ହେଲା, ତମକୁ ମୁଁ ଡି.ଜି.ଙ୍କ ଡ୍ୟୁଟି ଦେବିନି । ତମେ ଏଇଁଠି ରୁହ, ଥାନାରେ ।"

ତା'ପରେ ଭବାନୀ ଦାସ ତାଙ୍କ ପୋଲିସ୍ ଟ୍ରେନିଂ କଲେଜର ନୋଟ୍‌ଖାତା କାଢ଼ିଲେ ଯେଉଁଥିରେ ସିଏ ସ୍ୱଷ୍ଟ ଓ ସୁନ୍ଦର ଭାବେ ସମସ୍ତ ବିଶେଷ ବିଷୟ ଲେଖିଥିଲେ । ପୃଷ୍ଠା ଓଲଟାଇ ସେ ଠିକ୍ ଜାଗାରେ ଅଟକିଲେ ।

ସେ ଜଲଦି ଜଲଦି ଆଖି ପକେଇଗଲେ ଉପଚାର ତାଲିକା ଓପରେ : ଡେରାଡୁନ୍ ଚାଉଳ, ଜୟପୁର ଅଟା, ଦେଶୀକୁକୁଡ଼ା, ଖାସି ମାଂସ, ପେଟୁଆ ମାଛ, ଗୋଡ଼ମୋଡ଼ା ଟୋକାଠୁଁ ଯାଇ ମୋରାର୍‌ଜୀ ସ୍କଚ ଦେଇ ପ୍ରକୃତ ମଦ ପର୍ଯ୍ୟନ୍ତ ।

ଭବାନୀ ଦୀର୍ଘଶ୍ୱାସ ନେଲେ । ସିଏ କିଛି ସମୟ ପାଇଁ ଭାବିଲେ ଯେ କନେଷ୍ଟବଲ୍ ତ୍ରିପାଠୀକୁ ଡାକିବେ, ଦଶଟଙ୍କା ଦେବେ ଓ ତାଙ୍କ ପାଇଁ ମେଡିକାଲ୍ ସାର୍ଟିଫିକେଟ୍‌ଟିଏ ଆଣିବାକୁ କହିବେ । କିନ୍ତୁ ସେମିତି କଲେନି ।

ଡାକବଙ୍ଗଳାରେ, ବେଳାଭୂମିରେ, ମନ୍ଦିରରେ ଓ ମେରାଇନ୍ ଡ୍ରାଇଭ କଡ଼ର ଚାରିତାରକା ହୋଟେଲରେ ଯେତେବେଳେ ଡି.ଜି.ଙ୍କ ବିଭିନ୍ନ କର୍ମଚାରୀମାନଙ୍କ ସହ ସବୁ ଦିନକାମ ତଥା ପରିଦର୍ଶନ ସରିଗଲା, ରାତିଖିଆ ସରିଗଲା, ମନ୍ତ୍ରୀ ଓ ଏମ୍. ଏଲ୍. ଏ.ମାନେ ନିଜ ନିଜର ମଦବୋତଲ ସହ ଚାଲିଗଲେ ଓ ଆଗତ ପ୍ରାୟ ନିଷ୍କର୍ମ ଆଉ ସ୍ୱପ୍ନବିହୀନ ରାତ୍ରିପାଇଁ ସମସ୍ତେ ଦୁଃଖିତ ଥିଲେ, ଡି.ଜି.ଙ୍କର ମନେପଡ଼ିଲା ତାଙ୍କର ବାକିଆ କାମ । ପ୍ରକୃତ କାମ । ତେଣୁ ସେ ଏସ୍.ପି. ଓ ଏସ୍.ଆଇ.ଙ୍କୁ ଡାକିଲେ । ଏସ୍.ପି.ଙ୍କ ନାଁ ଥିଲା ବାଳଗୋପାଳ ସିଂହ । ସେ ଡି.ଜି.ଙ୍କ ଇଙ୍ଗିତ ଠିକ୍ ବୁଝିଲେ । ସି.ବି.ଆଇ.ର ଲୋକଟାକୁ ଭୂତେଇବାକୁ ପଡ଼ିବ, କିନ୍ତୁ କେହି ନ ଜାଣିଲା ପରି । ତାହାହିଁ ଥିଲା ତାଙ୍କ ମୁଣ୍ଡର ବୋଝ, କାରଣ ସେ ଡି.ଜି. ବା ସି.ବି.ଆଇ. ଡି.ଜି. କାହାର ବି ଶନି ଦୃଷ୍ଟିର ଶିକାର ହେବାକୁ ଚାହୁଁ ନ ଥିଲେ ।

ଏସ୍.ଆଇ.ଙ୍କର ସହଜ ଓ ସୌମ୍ୟଭାବକୁ ଡି.ଜି. ମହାସୁନ୍ଦର ବେହେରା ପ୍ରଥମଥର ପାଇଁ ଲକ୍ଷ୍ୟ କଲେ ।

କହିଲେ, ''ଭବାନୀ, ମୁଁ ତମ ଉପରେ ଭାରି ଖୁସୀ ।''

''ଧନ୍ୟବାଦ ସାର୍ ।''

''ମୁଁ ଯାହା ଶୁଣିଲି ତମେ ବଦଳି ହେବାକୁ ଚାହୁଁ ନାହଁ ?''

''ସାର୍ ।''

''ତମେ ଚାହିଁଲେ ମୁଁ ତମକୁ ଚଟ୍‌କିନା ବଦଳି କରିଦେଇପାରେ, କିନ୍ତୁ ତମେ ତାହା ଚାହଁନି । ଠିକ୍ ଅଛି, ଏଇଠି ରୁହ । କିନ୍ତୁ ଗୋଟିଏ କାମ ତମକୁ କରିବାକୁ ପଡ଼ିବ ।''

''କୋଉ କାମ ସାର୍ ?''

''ତଳତାଳାରେ ସେ ସି.ବି.ଆଇ. ଲୋକଟାକୁ ତ ତମେ ଜାଣିଛ ।''

''ନା, ଜାଣିନି ସାର୍ ।''

"ତା' ନାଁ ମଲ୍‌ହୋତ୍ରା, ସେ ଯାହା ଚାହୁଁଛି ତା' ଯେପରି ନ ପାଏ ସେକଥା ତମକୁ ଠିକଣା କରିବାକୁ ପଡ଼ିବ । ବୁଝିଲ ?"

"ବୁଝି ପାରିଲିନି ।"

"ବୁଝି ପାରିଲନି ?"

"ସିଏ କଣ ଚାହୁଁଛି ମୁଁ ସେତକ ଜାଣିଗଲେ ବୁଝିବାକୁ ସୁବିଧା ହୁଅନ୍ତା ।"

"ସେଇମ ତମ ସମୁଦ୍ରକୂଳରେ ଯୋଉ ମର୍ଡ଼ରଟା ତିନିମାସ ଆଗରୁ ହୋଇଥିଲା ।"

"କୋଉ ମର୍ଡ଼ର ସାର୍ ? ମୋ ଥାନାରେ ତ ଗତ ସାତବର୍ଷରେ ଗୋଟେ ମର୍ଡ଼ର ହେଇନି । ଆଉ ସେଇ କଥା ତଦାରଖ କରିବାକୁ ଆଜି ସକାଳୁ ସକାଳୁ ବାହାରି ଯାଇଥିଲି ଯେ ଆପଣ ଆସି ପହଞ୍ଚିଲା ବେଳକୁ ଫେରିପାରି ନ ଥିଲି ।"

"ତମ ଥାନାରେ ପରା ମର୍ଡ଼ର ହେଉନି କହୁଛ, ଆଉ ତଦାରଖ କରୁଥିଲ କ'ଣ ?"

"ତଦାରଖ କରୁଥିଲି ଯେ କାହିଁକି ଗୋଟିଏ ହେଲେ ମର୍ଡ଼ର ହଉନି, ଯଦି ମର୍ଡ଼ର ନ ହେଲା ଥାନା ଥାଇ କି ଲାଭ ? ସାତବର୍ଷରେ ଜମା ତିନୋଟି ଆତ୍ମହତ୍ୟା ଆଉ ସବୁଗୁଡ଼ା ନାରୀ, ଏଇଟା ବି ବଡ଼ ଅଗଣସାଂଖ୍ୟିକ ସାର।"

"ମାନେ ଅଗଣତାନ୍ତ୍ରିକ ।"

"ନା ଆଜ୍ଞା, ଏଇଟା ଅଗଣସାଂଖ୍ୟିକ, ମୋ ଥାନାରେ ସ୍ତ୍ରୀ ଆଉ ପୁରୁଷଙ୍କ ସଂଖ୍ୟା ସମାନ । ତେବେ ସ୍ତ୍ରୀମାନେ ହିଁ କେବଳ ଆତ୍ମହତ୍ୟା କରିବେ କାହିଁକି ?"

"ହୁଁ," ଡି.ଜି. ଭରା ଦେଇଥିବା ଚଉକି ହାତ ଉପରେ ଆଙ୍ଗୁଠି ବାଡ଼େଇ ବାଜା ବଜେଇଲେ । ଆଉ ହାତରେ ନିଶକୁ ଉସୁକେଇଲେ ।

"ମୁଁ ଗବେଷଣା କରୁଛି ସାର୍ ।"

"ଓହୋ ଗବେଷଣା, ଭଲ କଥା, ଚାଲୁରଖ ।"

"ଧନ୍ୟବାଦ୍ ସାର୍ ।"

"ହଉ, ଏଥର ସେ ମଲ୍‌ହୋତ୍ରା ବ୍ୟାପାରଟା ସଲଖାଯାଉ । ତମ ସମୁଦ୍ର କୂଳରେ ତିନିମାସ ତଳେ ଗୋଟେ ମଢ଼ ଭାସିଆସି ଲାଗିଥିଲା । ସେଇ ବିଷୟରେ ମଲ୍‌ହୋତ୍ରା ଜାଣିବାକୁ ଚାହୁଁଛି । ଲୋକଟାକୁ ଠାବ କରିବାକୁ ପଚରା ଉଚରା କରୁଛି । ଯଦି ତମ ଥାନାରେ ମୂଳରୁ ମର୍ଡ଼ର ହେଇନି ତେବେ କଥାଟା ଛିଣ୍ଡିଲା । ଏଇଠୁଁ ତାକୁ ବେଡିଂବାନ୍ଧି ବିଦା କରିଦିଅ । ସେ ଯେମିତି ଏଠୁ କିଛି ଖବର ଅନ୍ତର ନ ପାଏ,

ବାସ୍ । ଆଉ ଯଦି ସେ ମଲାଲୋକଟା ଜିଇଛି ବା ସେମିତି କିଛି ଘଟିଛି ସେ ବିଷୟରେ ବି ସେ ଯେମିତି କିଛି ତଥ୍ୟ ନ ପାଏ, କିଛି ବି ନୁହଁ, ହାଁ । ବୁଝିଲ ?''

''ଭାବୁଛି ବୁଝିଗଲି ବୋଲି । ସେ ଯାହା ଖୋଜୁଛି ବା କରିବାକୁ ଚାହୁଁଛି କିଛି ପାଇବନି କି କରିପାରିବନି ଏ ଜାଗା ଛାଡ଼ି ଚାଲିଯିବା ଛଡ଼ା, ଏଇଆ ତ ?''

''ଠିକ୍ ସେଇଆ, ଏକେବାରେ ସେଇଆ । କଣ ସିଂହ ତମେ ବୁଝିଲତ ? ଠିକ୍ କଥା କହୁଛି । ବୁଦ୍ଧିଆ ପିଲାଟା ।''

''ସାର୍ । ଦାସ, ଡି.ଜି. ଯାହା କହୁଛନ୍ତି ସେଇଆ କର । ଏକଥା ମୋ ପର୍ଯ୍ୟନ୍ତ ଯେମିତି ନ ଆସେ ।''

''ଠିକ୍ ଅଛି ସାର୍ ।''

ଡି.ଜି. ଖୁସୀ ହୋଇଗଲେ, ସେ ନିଶ ମୋଡ଼ିଲେ । ଉତ୍‌ଫୁଲ୍ଲିତ ହେଲେ ଓ ପଚାରିଲେ, ''ସେ କୁକୁଡ଼ାଭଜା କିଏ କରିଥିଲା ଦାସ୍ ? ଭଲ କରିଥିଲା । ଆସନ୍ତାମାସରେ କଟକରେ ମୋ ଝିଅର ବାହାଘର, ତମେ ସେ ରୋଷେୟାକୁ ସେଠିକୁ ପଠାଇପାରିବ ?''

''ପଠେଇବି ସାର୍ ।''

''ଠିକ୍ ଅଛି । ଗୁଡ୍‌ନାଇଟ୍, ଯାଅ ଖାଇକି ବିଶ୍ରାମ ନିଅ । ମୁଁ କାଲି ସକାଳୁ ସକାଳୁ ବାହାରିଯିବି । କାଲି ସକାଳୁ ମୁଖ୍ୟମନ୍ତ୍ରୀ ମତେ ଦେଖା କରିବାକୁ କହିଛନ୍ତି ।''

''ଧନ୍ୟବାଦ୍ ସାର୍ । ଆଉ ସାର୍ ସେମାନଙ୍କୁ ରାତି ପାହିବା ଆଗରୁ ଛାଡ଼ି ଦେଲେ ଭଲ ।''

''ହଁ ହଁ ।''

''ଗୁଡ୍‌ନାଇଟ୍ ସାର୍ ।''

''ଆହା ହା ହା ହା, କ'ଣ ଯେ ହେଉଛି ? କ'ଣ.... କ'ଣ.... ?''

ହଠାତ୍ ଆକାଶରେ ଗୋଟେ ଅଦ୍ଭୁତ ନେଳି ଆଲୁଅ ପ୍ରଚଣ୍ଡ ମୁହାଣ-ଜୁଆର ପରି ଭୁଷ୍ ଭୁଷ୍ ମାଡ଼ିଆସିଲା ଅତଳ ଶକ୍ତିରେ । ଏଇଟା ଥିଲା ଗୋଟାଏ ଅଲୌକିକ ଆଲୁଅ, ଅସମ୍ଭାଳ ଢେଉରେ ଆକାଶକୁ ଭସେଇଦେଇ ପୃଥିବୀକୁ ଛାଡ଼ିଗଲା ନିର୍ବାକ କରି ।

''ଆଃ !'' ଭବାନୀ ଦାସ ଉତ୍‌ଫୁଲ୍ଲିତ ହୋଇ କହିଲେ ଆଉ ରାତି ଭିତରକୁ ବାହାରି ଚାଲିଗଲେ, ହାକିମମାନଙ୍କୁ ନିଜ ନିଜର ହତବାକ୍ ସ୍ଥାଣୁତ୍ୱର ସ୍ୱାଧୀନତାରେ ଛାଡ଼ି ।

ଗାଁରେ ସମସ୍ତେ କୋକୁଆ ଭୟରେ ବାନ୍ଧିହେଇ ପଡ଼ିଲେ ଯେ ଯାହା କୁଡ଼ିଆରେ, ମାଗୀ ଆଉ ସରଳାଙ୍କ ଛଡ଼ା । ଦିହେଁ ସମୁଦ୍ରକୂଳ ଆଡ଼କୁ ଧାଇଁଗଲେ । ଅଳ୍ପ ସମୟ

ପରେ ଶାନା, ଯୂଇ, ଟୁସି ଓ ଶିରୀ ସେମାନଙ୍କ ସାଙ୍ଗେ ଯୋଗଦେଲେ, ଆଶ୍ଚର୍ଯ୍ୟ ହେଇ ସମସ୍ତେ ଆକାଶ ଆଡ଼କୁ ଚାହିଁଲେ । ରଙ୍ଗୁ ବି ଆସି ସେମାନଙ୍କ ପାଖରେ ପହଞ୍ଚିଗଲା ।

''ଡାହାଣୀ ଆଲୁଅ,'' ଫୁସୁରୁ ଫୁସୁରୁ ହେଲେ ଯୋଉମାନେ କବାଟ ଫାଙ୍କରେ ଦେଖି ନିଃଶବ୍ଦରେ କତରା ଘୋଡ଼େଇ ହେଇ ଶୋଇପଡ଼ିଥିଲେ ସେ ରାତିରେ । ତା'ପରେ କିନ୍ତୁ ତାଙ୍କ ପିଲାମାନେ ନିର୍ଭୟରେ ବାହାରକୁ ଚାଲିଆସିଥିଲେ । ଚୁପ୍ ଚାପ୍ ସମୁଦ୍ର କୂଳରେ ଝୁମୁରୁଥିବା ମାଗୀର ଅମାନିଆ ଗୋଠକୁ ।

ପୃଥିବୀର ଚାରିଆଡ଼କୁ ନେଳି ଆଲୁଅର ବଢ଼ିଟା ମାଡ଼ିଯାଇଥିଲା, ଆଉ ଚାରିଆଡ଼େ ବିଛୁରି ଯାଇଥିଲା ବାସ୍ନା, ଅଲୌକିକତା, ଆଉ ଡର ।

ଖବରକାଗଜରେ ବଡ଼ ବଡ଼ ଅକ୍ଷରରେ ବାହାରିଲା

### ଦେବତାମାନେ ଆସିଗଲେ କି ?

ଲଣ୍ଡନ, ୨୪/୭ : ଏଇଟା କଣ ଈଶ୍ୱରମାନଙ୍କର ପୃଥିବୀରେ ପୁନରାବିର୍ଭାବ, ନା ମାନବ ସମାଜକୁ ଏକ ଚେତାବନୀ ନିଜର ସମୀକ୍ଷା କରିବାକୁ ଓ.....

### ସାମୂହିକ ହାଲୁସିନେସନ୍

ପିକିଂ, ୨୪/୭ ସରକାରୀ ସୂତ୍ରରୁ ପ୍ରକାଶ ଯେ ଗତ ସନ୍ଧ୍ୟାର ଅନୁଭୂତି ବିତ୍ତଶାଳୀ ଦେଶମାନଙ୍କ ଦ୍ୱାରା କୃତ୍ରିମ ଭାବେ ସୃଷ୍ଟି କରାଯାଇଥିବା ଏକ ଚକ୍ରାନ୍ତ ଯାହା ଲୋକମନରେ ଭ୍ରାନ୍ତ ଧା.....

### ଆଲ୍ଲାଙ୍କ ଅଭିଶାପ

ତେହେରାନ୍, ୨୪/୭ ଇରାନ୍‌ର ସରକାରୀ ସମ୍ବାଦ ସରବରାହ ସୂତ୍ରରୁ କୁହାଯାଇଛି ଯେ ଗତ ସନ୍ଧ୍ୟାର କଳ୍ପନାତୀତ ଦୃଶ୍ୟ, ଇରାନ୍‌ର ଶତ୍ରୁମାନଙ୍କ ଉପରେ ଆଲ୍ଲାଙ୍କର ଅଭିଶାପ । ପରେ ଭାଷଣରେ ଇରାନ୍‌ର ରାଷ୍ଟ୍ରପତି ପୃଥିବୀ ବିଜୟର ତାଙ୍କ ସ୍ୱପ୍ନ କଥା ଦୋହରାଇଥିଲେ ଏବଂ.....

### ଆକାଶରେ ଆଶ୍ଚର୍ଯ୍ୟ ଆଲୋକ

ନ୍ୟୁୟର୍କ, ୨୪/୭ : ଗତ କାଲି ସନ୍ଧ୍ୟାରେ ଆକାଶରେ ଏକ ନୀଳ ରଙ୍ଗର ଆଲୋକ ଦେଖି ପୃଥିବୀ ସାରା ଲୋକମାନେ ଆଶ୍ଚର୍ଯ୍ୟରେ ଚାହିଁ ରହିଥିଲେ ।

### ଷ୍ଟାରଓ୍ୱାର ଅସ୍ତ୍ରର ପ୍ରଦର୍ଶନ

ମସ୍କୋ, ୨୪/୭ : ଟାସ୍ ସୂତ୍ରରୁ ପ୍ରକାଶ ଯେ ଆକାଶରେ ଦିଶିଥିବା ଘନନୀଳ ରଙ୍ଗର ଆଲୋକ ତାରକାଯୁଦ୍ଧର ଏକ ଅନିୟନ୍ତ୍ରିତ ପ୍ରୟୋଗ । ଏହା ବୋଧହୁଏ କୃତ୍ରିମ ।

### ପାକିସ୍ତାନ ଦାୟୀ

ନୂଆଦିଲ୍ଲୀ, ୨୪/୭ : ଗୁଜବ ହରଣ ପାଇଁ ଏଠାରେ ଡକାଯାଇଥିବା ଏକ ଜନଗହଳିପୂର୍ଣ୍ଣ ସାମ୍ବାଦିକ ସମ୍ମିଳନୀରେ ପ୍ରଧାନମନ୍ତ୍ରୀ, ସ୍ୱର୍ଗୀୟ ଆଲୋକ ବିଷୟରେ ପଚରାଯିବାରୁ କହିଲେ ପାକିସ୍ଥାନ ଉପରେ କଡ଼ା ନଜର ରଖାଯାଉଚି କାରଣ.....

### ଜଗନ୍ନାଥ କହିଲେ

ପୁରୀ, ୨୪/୭ : ପୁରୀର ପଣ୍ଡାମାନେ କହୁଛନ୍ତି ଯେ ଏ ନୀଳ ଆଲୋକ କାଳିଆର ଆତ୍ମପ୍ରକାଶ। କୃଷ୍ଣ ନୀଳ, ପୁରୀ ନୀଳାଚଳ। ତେଣୁ ଘଟଣାକୁ ଶ୍ରଦ୍ଧାରେ ବାଟି ପାନ.....

## ॥ ୭ ॥

## ମୁକ୍ତା ଆଣିବାକୁ ବୁଡ଼ନ୍ତି ଯିଏ
## ମଗର ସାଙ୍ଗରେ ଯୁଝନ୍ତି ସିଏ

ମାଗୀ ବାଲି ଉପରେ ବଇଠି ପକେଇ ବସିଥିଲା। ତା' ଶାଢ଼ି ଗୋଡ଼ ଉପରକୁ ଟେକି ହେଇ ଜଙ୍ଘସନ୍ଧିରେ ମଡ଼ା ହେଇଥିଲା। ପାଣ୍ଡୁକୁ ଲୁଚେଇ ରଖିବା ପାଇଁ କାରସାଦିର ଉତ୍ତେଜନାରୁ ଶାନ୍ତ ହେଲାବେଳକୁ ପାଣ୍ଡୁର ଖସିଚାଲିଯିବା ତାକୁ ଚୁପ୍‌ଚାପ୍ ରାଗରେ କମ୍ପେଇ ଦଉଥିଲା, ଭାବିଲାବେଳକୁ ଯେ ପାଣ୍ଡୁ ସରକାରୀ ଲୋକଙ୍କଠୁଁ ନୁହେଁ ତା'ରିଠୁଁ ଖସି ଚାଲିଯାଇଥିଲା। ଏଇଟା ତା'ପାଇଁ ବିସ୍ମୟକର ଥିଲା ଯେ ପାଣ୍ଡୁ ନିଜ ଦୁରବସ୍ଥା ପାଇଁ ମାଗୀ ଭିତରେ ଜଳୁଥିବା ନିଆଁର ଉଷ୍ମତା ବି ଅନୁଭବ କରିପାରୁ ନ ଥିଲା କି ତା ସାଙ୍ଗେ ମିଶି ୟାର ପ୍ରତିରୋଧ କରିବାକୁ ବ୍ୟଗ୍ରତା ବି ବ୍ୟକ୍ତ କରି ନ ଥିଲା ତାକୁ। ବର୍ତ୍ତମାନ ସେ ତାକୁ କୋଉଠି ଖୋଜିବ ? ନା ସେ ତାକୁ ଭୁଲିଯିବ ? ଏ ଭାବନାରେ ସେ ଏକାକୀତ୍ୱ ଅନୁଭବ କଲାନି କି ନିଜ କାମରେ କିଂକର୍ତ୍ତବ୍ୟବିମୂଢ଼ ହେଇଗଲାନି। ତା' ମନ ମୁନ ଚଇତନ ସଂସାରକୁ ଉଚିତ ବ୍ୟବହାର ଓ ନ୍ୟାୟ ମାଗିବାର ଯଥାର୍ଥତାରେ ଏତେମାତ୍ରାରେ ପୂରିଯାଇଥିଲା ଯେ ସେ କାହିଁକି ନ ମାଗିବ ବୋଲି ଭାବିପାରୁ ନ ଥିଲା। ଯଦି ଜଣକୁ ଲଢ଼ିବାକୁ ପଡ଼େ, ଲଢ଼ିବାକୁ ପଡ଼ିବ। କାହିଁକି ନ ଲଢ଼ିବ ? ଗାଁର ପୁରୁଖା ଲୋକେ, ଇମିତିକି ମୁର୍ମୁ ବି, ଭାବୁଥିଲେ ଯେ ସେ ଏଇ ବିରାଟ ପୃଥିବୀର ଜଟିଳତାକୁ ନା ବୁଝିପାରିଚି, ନା ବଡ଼ ଲୋକମାନଙ୍କ ଖେଳ କଥା ଜାଣିଚି। ମୁର୍ମୁ ଦୟାକରି ଏକଥା ତାକୁ କହୁଥିଲା, ଅନ୍ୟମାନେ ହୁଏତ ତାକୁ କିଛି କହିବା ଅଦରକାରୀ ବୋଲି ଭାବୁଥିଲେ ବା ତାକୁ ଦେଖି ହସୁଥିଲେ। ତାକୁ ସନ୍ଦେହ ବି କରିଥିଲେ ସେ ଗୋଟାଏ ପୂରା ଅଜଣା ଲୋକ, ପାଣ୍ଡୁକୁ, ପ୍ରଥମେ ସମସ୍ତଙ୍କ ଜାଣତରେ ସାହାଯ୍ୟ କରିଥିଲା ବୋଲି। କ'ଣ ସତରେ ସେ ଏତେ ସରଳ

ଥିଲା ଯେ ଦୁନିଆଟାକୁ ଠିକ୍‌ଭାବରେ ଆଉ ପୂରାପୂରି ଦେଖିପାରୁ ନ ଥିଲା ? କିନ୍ତୁ ସେ ଅନୁଭବ କରୁଥିଲା ଯେ ଦୁନିଆଟାକୁ ଯେତିକି ଦେଖିହବ, ସେ ଅନ୍ତତଃ ସେତିକି ନିଶ୍ଚୟ ଦେଖି ପାରୁଥିଲା । ସେ ଭାବୁଥିଲା, ଦୁନିଆରେ କିଛି କରିବାକୁ ହେଲେ, କରିବା ପାଇଁ ଇଚ୍ଛା ଆଉ ସାହସ ହିଁ ଦରକାର । ଏମିତି ହିଁ ବାଟ କାଢ଼ନ୍ତି ଯାହାଙ୍କର ସାହସ ଥାଏ ।

ଯଦି ପାଣ୍ଡୁ ନାହିଁତ, ନାହିଁ । ଏ ପର୍ଯ୍ୟନ୍ତ, ଯେତେବେଳେ କି ସେ ପାଣ୍ଡୁପାଇଁ ଦୁନିଆ ସାଙ୍ଗେ ଲଢ଼ିଥିଲା ଆଉ ତିଷ୍ଠିଥିଲା, ପାଣ୍ଡୁ କିଛି ବି କରି ନ ଥିଲା । ଯାଉ ସେ ମରିହଜି । ଏବେ କିନ୍ତୁ ମାଗୀକୁ ହୁଏତ ଅନେକ ଲୋକଙ୍କ ପ୍ରୟୋଜନ ପଡ଼ିପାରେ, ଯୋଉମାନେ ସ୍ୱର ଉତ୍ତୋଳନ କରିବେ ଯାହା ଦୂରଦୂରାନ୍ତକୁ ଶୁଭିବ, ଆଉ କାମ କରିବାକୁ । ଯାହା ହେଲେ ବି ଜଣକୁହିଁ ପ୍ରଥମେ ଆରମ୍ଭ କରିବାକୁ ପଡ଼ିବ । ସେ ଗୋଟାଏ କାମ ଆରମ୍ଭ କରିଚି ଆଉ ତା ମନରେ ତିଳେମାତ୍ର ସନ୍ଦେହ ନାହିଁ ଯେ ତାକୁ କରିଚାଲିବାକୁ ପଡ଼ିବ, ହୁଏତ ଏକୁଟିଆ ହେଇ । ସେ ନିଜକୁ ପରିପୂର୍ଣ୍ଣ ଓ ଅବିଭକ୍ତ ଅନୁଭବ କଲା । କଥାଟା ଯା ନୁହେଁ ଯେ ଲୋକେ ଶୁଣୁନାହାନ୍ତି । ଡା. ପ୍ରହରାଜ ଏବଂ ଈଶ୍ୱରୀ ଥିଲେ, ଭବାନୀବାବୁ, ବର୍ତ୍ତମାନ କାମ୍‌ଦା, ଆମ୍ବୁଲାନ୍‌ସ ଡ୍ରାଇଭର ରଙ୍ଗେଶ୍ୱର, ଜଳଖିଆ ଦୋକାନୀ ଡୁମ୍‌ଡୁମା ଆଉ ରଙ୍ଗୁ ଥିଲେ । ଗାଁରେ ଥିଲେ, ସରଳା ଆଉ ଛଅ ଜଣ ଅନ୍ୟଝିଅ । ହୁଏତ ପ୍ରଥମ କାମଗୁଡ଼ିକ ଘରେ କରାଯାଇପାରିବ, ଗାଁରେ । ଏମିତିକି ଫାଦର୍ ଜାକବ୍ ବି ତା' କଥା ନିଷ୍ଠାର ସହ ଶୁଣିଥିଲେ ଆଉ ତା' ସାଙ୍ଗେ ଗମ୍ଭୀର ଭାବେ କଥାବାର୍ତ୍ତା କରିଥିଲେ । କିନ୍ତୁ ଯିଶୁଙ୍କ କଷ୍ଟ ସହିବା ଆଉ ତ୍ୟାଗ୍ ଓପରେ ଗୁରୁତ୍ୱ ଦଉଥିଲେ । ମାଗୀ ଯେତେବେଳେ ତାଙ୍କୁ ମୋସେସ୍‌ଙ୍କ କଥା ପଚାରିଲା ସେ ଟିକେ ହସି ତା' ମୁଣ୍ଡକୁ ଥାପୁଡ଼େଇ ଦେଲେ । ଆଉ ପାଣ୍ଡୁ ବି ଥିଲା । ସେ ଲୋକଟାକୁ ମାଗୀ ଭୁଲିପାରୁ ନ ଥିଲା । ପାଣ୍ଡୁ ଗୋଟାଏ ଅଚ୍ଛିଣ୍ଡା ଉପସ୍ଥିତି ଥିଲା । ତାର କ'ଣ ପ୍ରକୃତରେ ଯୁଝିବା ପେଇଁ ଗୋଟାଏ ଲୋକ ଦରକାର ? ସେ ତା'ର ଝୁଡ଼ିକ ମାଛକୁ ଚାହିଁଲା, ତା କାମ ଏତକ । ସେ ଏତକ ନିଜେ କରିଦେଇପାରିବ ନିଶ୍ଚୟ । ହୁଏତ ମାଗୀ କାମ୍‌ଦା କହିଥିବା ବଡ଼ ସ୍ମଗଲର୍ ମହାସ୍କନ୍ଧ ବିଶ୍ୱାଳ ପାଖକୁ ଯିବ, ନ ହେଲେ ଏମେଲେ ଗୁଣନିଧି ପାଖକୁ, ଘଣ୍ଟାଚକଟା ଆରମ୍ଭ କରିବାକୁ । ନ ହେଲେ ମୁଖ୍ୟମନ୍ତ୍ରୀ ପାଖକୁ ବି ।

ହାତ ପା'ନ୍ତାରେ ବି ଆହୁରି କାମ ଥିଲା ।

ସକାଳର ସୂର୍ଯ୍ୟ ତାତି ଆସୁଥିଲା । ଆଉ ତେଜି ଉଠୁଥିଲା । ତା' ବେକରେ ବିନ୍ଦୁ ବିନ୍ଦୁ ଝାଳ ଜମିବାକୁ ଆରମ୍ଭ କରିଥିଲା । ତା'ର ରବିବାରର ଅନୁପସ୍ଥିତି ସମୟରେ ଦୁର୍ଯ୍ୟଦଳର ମୁର୍ମୁର ଡଙ୍ଗା ଭାଗ ମାଛ ବେଶ୍ କିଛି ପଡ଼ିଥିଲା । କିନ୍ତୁ ମୁର୍ମୁ ମାଛତକ

ବିକିପାରି ନ ଥିଲା । ତେଣୁ ମାଗୀକୁ ବଳକା ମାଛତକ ଶୁଖୁଆ କରିବାକୁ ପଡ଼ିବ । ଗାଁରେ ମାଛ ଭାଗକରିବା ଖୁବ୍ ଗଣତାନ୍ତ୍ରିକ ଥିଲା । ଆଦିମ କାଳରୁ ଗଡ଼ିଆସିଛି । ପ୍ରତ୍ୟେକ, ଯିଏ ଗୋଟାଏ ଦଳ ସାଙ୍ଗେ ସମୁଦ୍ରକୁ ଯାଉଥିଲା, ଭାଗେ ପାଉଥିଲା । ଯାହାର ଡଙ୍ଗା ବ୍ୟବହାର କରାଯାଉଥିଲା ସେ ଦଳ ସାଙ୍ଗେ ଯାଉ ବା ନ ଯାଉ ଭାଗେ ପାଉଥିଲା । ସେମିତି ଜାଲବାଲାକୁ ଭାଗେ ମିଳୁଥିଲା । ଯଦି ଜଣେ ଜାଲ ବା ଡଙ୍ଗା ଦବା ସାଙ୍ଗେ ନିଜେ ବି ସମୁଦ୍ରକୁ ଗଲା ତାହେଲେ ତାକୁ ଡଙ୍ଗା ବା ଜାଲ ଭାଗଛଡ଼ା, ଯିବା ଭାଗ ବି ମିଳୁଥିଲା, କିନ୍ତୁ ଏମାନଙ୍କ ସାଙ୍ଗେ ସ୍ତ୍ରୀଲୋକମାନେ ଯିବାର ନିୟମ ନ ଥିଲା । ମାଗୀ ମୁର୍ମୁ ନ ଯିବା ଦିନଠୁଁ ଏ କଥା ନେଇ ଝଗଡ଼ା କରିଆସୁଚି କିନ୍ତୁ ମିଣିପିମାନେ ତା'କଥାକୁ କାନେରେ ପକୋଉ ନ ଥିଲେ, ନ ହେଲେ ପାଟିକରି ତାକୁ ଦବେଇ ଦଉଥିଲେ । ସେ ବି କମ ପାଟି କରୁ ନ ଥିଲା ଆଉ ଯଦିଓ ସେମାନଙ୍କୁ ସମ୍ମତ କରେଇଥିଲା ଯେ ସେ ଅନେକ ମିଣିପଙ୍କଠୁଁ ଭଲ ଡଙ୍ଗା ଚଳେଇପାରେ ଆଉ ପହଁରିପାରେ, କୌଣସି ଦଳ ତାକୁ ନବାକୁ ଏପର୍ଯ୍ୟନ୍ତ ରାଜି ହେଇ ନ ଥିଲେ । ସେ ଅବଶ୍ୟ ହାର ମାନି ନ ଥିଲା । ତା' ପାଖରେ ଏବେ ଆଉ ପାଞ୍ଚୋଟି ଝିଅ ଥିଲେ ଯୋଉମାନଙ୍କର ମରଦ ନ ଥିଲେ ଆଉ ଯୋଉମାନେ ନିଜେ ଏକା ଏକା ନିଜକୁ ବଞ୍ଚେଇ ଚଳୁଥିଲେ । ସେମାନେ ନିଜର ସ୍ୱାଧୀନତା, ବୃତ୍ତି ଆଉ ସ୍ୱପ୍ନର ଆରାମ ଆମୋଦ ପାଇବା ପାଇଁ ବିପଦସଂକୁଳ ସମୁଦ୍ରକୁ ସାମ୍ନା କରିବାକୁ କେବଳ ଯେ ରାଜି ଥିଲେ ତା' ନୁହେଁ, ବ୍ୟଗ୍ର ବି ଥିଲେ । ମାଗୀ ସେମାନଙ୍କୁ ସେମାନେ ଜାଣି ନ ଥିବା ଡଙ୍ଗା ଚାଳନା କୌଶଳରେ ସୁବିଧା ଦେଖି ତାଲିମ୍ ଦଉଥିଲା । ପିଲାଦିନେ, ବଡ଼ ହେଲାଆଗରୁ, ଜିଦି କରି ସେ ଅନେକଥର ମୁର୍ମୁ ସାଙ୍ଗେ ସମୁଦ୍ରକୁ ଯାଇଚି । ସେ ପଞ୍ଚକନ୍ୟା ସମସ୍ତେ ପକ୍କା ପହଁରାଳି ଥିଲେ । ଯା ଭିତରେ ସେ ମୁର୍ମୁର ଡଙ୍ଗାଟି ଆଉ ତା' ଦଳର ଅନ୍ୟ ଦୁଇଜଣ ଝିଅଙ୍କର ଡଙ୍ଗା ଦି'ଟି ନବା ପାଇଁ ଠିକ୍ କରିଥିଲା । ସେ କାମ୍‌ଦାକୁ ଏକରକମର ପଟେଇ ସାରିଥିଲା ତା ଜାଲଟା ଭଡ଼ାରେ ଦେବା ପାଇଁ । ତାଙ୍କର ପୂର୍ବଥରର ଝାଉଁବଣ ସାନ୍ନିଧ ପରଠୁଁ କାମ୍‌ଦାର ତା'ସାଙ୍ଗେ ଭଲ ପଡୁଥିଲା । ଗୋଟାଏ ଜାଲ, ତିନୋଟି ଡଙ୍ଗା ଓ ଛଅଜଣ ସ୍ତ୍ରୀଲୋକଙ୍କୁ ନେଇ ସେମାନେ ନିଜର ମାଛଧରାଦଳ କରିପାରିବେ । ସେମାନେ ଏ ବିଷୟରେ ଉତ୍ତେଜିତ ଅନୁଭବ କରୁଥିଲେ ଆଉ ସମୟର ଅପେକ୍ଷାରେ ଥିଲେ କେତେବେଳେ ଲକ୍ଷ୍ମଣରେଖା ପାର ହେଇ ପ୍ରକୃତରେ ସ୍ୱାଧୀନ ହେବେ ।

ମାଗୀ ତରୁଣ ସୂର୍ଯ୍ୟକୁ ଚାହିଁ, ତାକୁ ଗିଳି ପକେଇଲାପରି ପାଟି ଆଁ କରି ହାଇମାରିଲା । ସେକଥା ଭାବି ସେ ମନେ ମନେ ହସିଲା । ହାତରେ ଛୁରି ଧରି ସେ ତା' କପାଳ ଆଉ ଆଖି ଓପରେ ପଡ଼ିଥିବା ବାଳକୁ ଆଡ଼େଇ ଦେଲା । ପୁଣି କାମରେ

ମନ ଦଉଦଉ ସେ ଦୁଃଖିତ ଦିଶିଲା । ତା'ର ଶୂନ୍ୟତା ଭିତରକୁ ଦୂରେଇଗଲା । ସେଠି ଥିଲେ ମୁର୍ମୁ ଆଉ ପେଟ ଦେଖେଇ ବାଲିରେ ପଡ଼ିଥିବା ତା' ଡଙ୍ଗା । ତା'ର ପୁରୁଣା ଡଙ୍ଗାଟା ପ୍ରକୃତରେ ଛଅ ଖଣ୍ଡ ପତଳା ଓ ଲମ୍ୱା ଶାଳଗଣ୍ଡି କାଠରେ ତିଆରି ହେଇଥିଲା ଯାହା ମୁର୍ମୁ ଛୋଟ ଥିଲା ବେଳେ ତା'ବାପା ବହୁତ ଦୂରରେ ଉତ୍ତରରେ ଥିବା ଜଙ୍ଗଲରୁ କାଟି ବୋହି ଆଣିଥିଲା । ସେଇ ଗଣ୍ଡିଗୁଡ଼ିକ ଲମ୍ବାଲମ୍ବା ଅଯତ୍ନ ଭାବେ ଚଞ୍ଚା ହେଇ ଧନୁ ଆକାର କରାଯାଇଥିଲା ଆଉ କାଠଖିଲ, ଲୁହାକଣ୍ଟା ବାଡ଼ିଆ ହେଇ ତିନି ତିନିଟାର ଗୋଟିଏ ଗୋଟିଏ ଭାଗ କରାଯାଇଥିଲା । ଯେତେବେଳେ ତାକୁ ସମୁଦ୍ରକୁ ନବାକୁ ପଡୁଥିଲା, ଦୁଇଭାଗକୁ କତାଦଉଡ଼ିରେ ବାନ୍ଧି ଡଙ୍ଗା ତିଆରି କରାଯାଉଥିଲା । ଫେରିଲା ପରେ ଦୁଇଭାଗକୁ ଦଉଡ଼ି ଖୋଲି ଶୁଖିବା ପାଇଁ ଅଲଗା କରାଯାଉଥିଲା । ଏଥେରେ ଲାଗିଥିବା ଗେଣ୍ଡା ଶାମୁକା ଦଳ ସବୁ ଛଡ଼େଇ ଦିଆଯାଉଥିଲା ଆଉ ଶିଉଳି ଛଡ଼େଇବାକୁ ତାକୁ ବାଲିରେ ଘଷା ଯାଉଥିଲା, ଆଉ ଯଦି ଜଣେ ପାରେ ତେବେ ମଝିରେ ମଝିରେ ତାକୁ ପୋଲାଙ୍ଗ ତେଲ ଲେସା ଯାଉଥିଲା ଛିଣ୍ଡାକନାରେ । ଜାଲବୁଣା ହଉଥିଲା ଗାଁର ପୁରୁଷ ଆଉ ସ୍ତ୍ରୀଙ୍କ ଦ୍ୱାରା, ପାଖ ସହରରୁ ଅଣାଯାଇଥିବା ଟାଣୁଆ ବୁଣାସୂତାରେ । ଆଗେ କୋଣାର୍କରେ କୌଣସି ସହର ନ ଥିଲା ବୋଲି କୁହନ୍ତି । ସବୁଦିନେ ତୀର୍ଥଯାତ୍ରୀ ବି ଆସୁ ନ ଥିଲେ । ମନ୍ଦିର ପର୍ଯ୍ୟନ୍ତ ଯିବାକୁ ରାସ୍ତା ବି ନ ଥିଲା । ଗୋପ ପର୍ଯ୍ୟନ୍ତ ମାଇଲ୍ ମାଇଲ୍ ବ୍ୟାପୀ ଖାଲି ବାଲି ଥିଲା, ତେଣୁ ଜାଲ ପାଇଁ ସୂତା ଗୋପ ସେପଟୁ ନିମାପଡ଼ାରୁ ଆସୁଥିଲା ନ ହେଲେ କଟକ ବା ପୁରୀରୁ । ଆଜିକାଲି ପଇସାବାଲା ମାଛ ଧରାଳିମାନେ ବୁଣା ହେଇଥିବା ନାଇଲନ୍ ଜାଲ କିଣି ଆଣୁଚନ୍ତି । ଗରିବମାନେ ଏବେବି ସେମାନଙ୍କ ନିଜ ଜାଲ ସମୁଦ୍ରବାଲିରେ ବସି ବୁଣି ଚାଲିଚନ୍ତି ଆଉ ନାଇଲନ୍‌ଜାଲ ଛିଣ୍ଡି ଯାଉଥିଲେ କିଛି ପଇସା ପାଇବା ଆଶାରେ ସଜାଡ଼ି ଦଉଚନ୍ତି ।

ମାଗୀ ଯୋଉଠି ଗାଁର ଉତ୍ତରପଟେ ବସିଥିଲା, ସେଠୁ ତାର ଛୋଟ କୁଡ଼ିଆଟି ଦିଶୁଥିଲା, ଘଞ୍ଚ ହେଇ ଲଗାଲଗି ଗାଁର ଘରମାନଙ୍କଠୁଁ ଟିକେ ଅଲଗା ହେଇ । ମୁର୍ମୁ ତା' ମନ ଭିତରେ ଖୁବ୍ ନିଛାଟିଆ ଥିଲା । ତେଣୁ ସେ ତା' ଘରକୁ ଅନ୍ୟମାନଙ୍କଠୁ ଅଲଗାକରି ତିଆରି କରିଥିଲା ଉତ୍ତରରେ । ଯଦିଓ ଗାଁଟି ତା'ର ମନେଥିବା ଗତ କୋଡ଼ିଏ ବର୍ଷରେ ଅଧିକ ଗହଳିଆ ଓ ଜନାକୀର୍ଣ୍ଣ ହେଇଯାଇଥିଲା, ଏପର୍ଯ୍ୟନ୍ତ ମୁର୍ମୁର ଘରକୁ ଛୁଇଁପାରି ନ ଥିଲା । ମାଗୀକୁ ଏ ଦୂରତ୍ୱ ପସନ୍ଦ ଥିଲା । ଗାଁ ମଝିରେ ଥିବା କୋଠଘର ଉପର ନାଲିଆ ପତାକା ସବୁ ସକାଳର ଥଣ୍ଡାପବନରେ ଫରଫର ହେଇ ଉଡୁଥିଲା ଆଉ ମାଗୀକୁ ବସିବା ଜାଗାରୁ ଦିଶୁଥିଲା । ତାକୁ ଦଶ ଏଗାର ବର୍ଷ ବୟସ ହେଇଥିବାବେଳେ ସାରା ଗାଁ ସାଙ୍ଗେ ସେ ଖ୍ରୀଷ୍ଟିଆନ୍ ହେଇଯାଇଥିବାରୁ ତାକୁ ଭଲ ଲାଗୁଥିଲା । ଯଦିଓ ଗାଁର ଉତ୍ତର ଦିଗରେ ସମୁଦ୍ରବାଲିରେ ଥିବା ହନୁମାନ ମନ୍ଦିର

ବି ତାକୁ ଭାରି ଭଲ ଲାଗୁଥିଲା ଆଉ ଅନେକ ସମୟରେ ସେଇଠିକି ଯାଉଥିଲା । ଫାଦର୍ ଜାକବ୍ ତାକୁ ଖୁବ୍ ଆଦର କରୁଥିଲେ । ସେ କହୁଥିଲେ ଯେ କୌଣସି ମନ୍ଦିରକୁ ଯିବାରେ କିଛି କ୍ଷତି ନାହିଁ । ପ୍ରାର୍ଥନା କରିବା ଭଲ । ସେ ସବୁବେଳେ ତାଙ୍କ ହାତ ତା ମୁଣ୍ଡ ଉପରେ ରଖୁଥିଲେ, କାନ୍ଧକୁ ଚିପି ଦଉଥିଲେ, ପିଠି ଥାପୁଡ଼େଇ ସାଉଁଳେଇ ହାତକୁ ପିଚା ପର୍ଯ୍ୟନ୍ତ ଖସେଇ ନଉଥିଲେ । କିନ୍ତୁ ତାକୁ ଭଲ ଲାଗୁଥିଲା । ତାଙ୍କ ସ୍ପର୍ଶରେ କିଛି ଅଶ୍ଳୀଳ କି ଅପମାନିଆ କଥା ନ ଥିଲା, ଯଦିଓ ମାଗୀ ଅନୁଭବ କରୁଥିଲା ବୁଢ଼ା ଭିତେରେ ସୁନ୍ଦର ଉଷୁମ ନିଆଁର ଧାସ ଯୋଉଥିରେ ନିଆଁ ପୋଇବାରେ ତାର କିଛି ଆପତ୍ତି ହେଇ ନ ଥାନ୍ତା । ହୁଏତ ।

ମାଗୀ ଆକାଶରେ ଉଜ୍ଜ୍ୱଳ ନେଳି ରଙ୍ଗକୁ ଚାହିଁଲା ଯିମିତି ସେ ତା' ଭିତରୁ ସାହସ ପାଉଥିଲା । ସୂର୍ଯ୍ୟ ତା ଆଖିରେ ପାଣି ଆଣି ଦେଲେ । ମୁର୍ମୁ ମାଛର ପେଟ ଚିରିଦେଇଥିଲା ଆଉ ମାଛ ଜଲ୍‌ଦି ପଚି ନ ଯିବା ପାଇଁ ପେଟରୁ ଅନ୍ତବି ବାହାର କରି ଦେଇଥିଲା । ମାଗୀ ଆଉ ଦବି ନ ଯିବା ପାଇଁ ଟିକେ ହଳଦି ନେଇ ମାଛମାନଙ୍କର ମେଲା ପେଟରେ ବୋଳି ଦେଲା ଆଉ ତା ଭିତରେ ମୁଣ୍ଡାଲୁଣ ଭର୍ତ୍ତିକରି ଖରାରେ ଶୁଖେଇଦେଲା । ତିନି ଦିନର ଭଲ ଖରା ଖାଇଗଲେ ବଜାରକୁ ଯିବା ପାଇଁ ଶୁଖୁଆ ପ୍ରସ୍ତୁତ । ଲୁଣ ପାଣି କାଢ଼ିଦବ ଆଉ ବନ୍ଧୁ ସୂର୍ଯ୍ୟ ମାଉଁସ ଶୁଖେଇଦବ । ମାଗୀ ହିସାବରେ ବର୍ଷାହିଁ ଶୁଖୁଆର ଶତ୍ରୁ, ପିଶାଚ, ଯିଏ ପୋକ ସୃଷ୍ଟି କରେ । ସରଳା, ଗାଁରେ ମାଗୀର ଘନିଷ୍ଠ ସାଥୀ, ପାଖ ଗାଁମାନଙ୍କରେ ଶୁଖୁଆ ବିକିବାରେ ଓସ୍ତାଦ । ମୁଖ୍ୟତଃ ନିଜର ଛଡ଼ା ସେ ମାଗୀର ଶୁଖୁଆ ବିକେ । ଭଜା ହେଇଥାଉ ବା ପୋଡ଼ା, ପଖାଳ ସାଙ୍ଗରେ ଶୁଖୁଆଟାହିଁ ଜମିଯାଏ ଖାଇଲାବେଳେ, କି ଗରିବ କି ଧନୀ ସମସ୍ତେ ଶୁଖୁଆ ପସନ୍ଦ କରନ୍ତି, ପିଲା ବୁଢ଼ା ସମସ୍ତେ । କିନ୍ତୁ ସ୍ତ୍ରୀଲୋକ ୟାକୁ ସବୁଠୁଁ ବେଶି ପସନ୍ଦ କରନ୍ତି । କୁହନ୍ତି ଯେ ସହରର ବାବୁମାନେ ୟାକୁ ପସନ୍ଦ କରନ୍ତିନି । ବେଳେବେଳେ ମାଗୀ ହୋଲ୍‌ସେଲର୍‌କୁ ଏକାବେଳେକେ ଦେଇଦିଏ ଯିଏ ପ୍ରତି ଶନିବାର ଆସେ । ଶୁଖୁଆର ଦାମ୍ ସଜମାଛର ଦାମ୍ ତୁଳନାରେ କମ୍ ନୁହେଁ, ତେଣୁ ମାଛକୁ ଫୋପାଡ଼ିଦବା ଅପେକ୍ଷା ଶୁଖୁଆ କରିଦବା ଭଲ । କେତେ ମାଛ ଖାଇବ ସବୁଦିନ ।

ସମୁଦ୍ରକୁ ଯିବା ପାଇଁ ଦଳସବୁ ଏତେବେଳକୁ ପ୍ରସ୍ତୁତ ହେଇଯିବା କଥା । ବୋଧେ ଆଜିସକାଳୁ ସମସ୍ତେ ଅଳସୁଆ ହେଇଯାଇଚନ୍ତି । କିଛି ପୁରୁଷଲୋକ ଏପଟ ସେପଟ ହଉଥିଲେ, ବୋଧହୁଏ କାମଧନ୍ଦାରେ ବାହାରିବା ଆଗରୁ ରାତିର ଅଳସ ଖସଉଚନ୍ତି, କିନ୍ତୁ ସେମାନେ ଅଧିକା ଲୁଗାପଟା ପିନ୍ଧିଲା ପରି ମାଗୀକୁ ଲାଗିଲା । ମାଗୀ ଦେଖିଲା କେହି ବି ଡଙ୍ଗା ସଜାଡୁ ନାହାନ୍ତି, ଜାଲ ଗୋଟେଉ ନାହାନ୍ତି କି ତା'

ଦିହରେ ଓହଳ ବାନ୍ଧୁ ନାହାନ୍ତି କି ଦଉଡ଼ି ଗୁଡ଼ୋଉ ନାହାନ୍ତି । ତା ପରିବର୍ତ୍ତେ ଅର୍ଦ୍ଧକାଂଶ ଲୋକ ସମୁଦ୍ରକୂଳ ଛାଡ଼ି ଚାଲିଗଲେ, କିଛି ପିଲାଙ୍କୁ ଛାଡ଼ି, ଯୋଉମାନେ ବାଲିକଙ୍କଡ଼ା ପଛରେ ଗୋଡ଼ୋଉଥାନ୍ତି, ଆଉ ଦି'ଜଣ ଖଣ୍ଡେ ବୁଢ଼ାଲୋକ ହନୁମାନ ମନ୍ଦିର ପାଖରେ ତାଙ୍କ ବନ୍‌ଶୀଖଡ଼ା ପାଇଁ ଜିଆ ଖୋଳୁଥାନ୍ତି । ଖୁବ୍ ଶୀଘ୍ର ସେମାନେ ବି ଉଭେଇଗଲେ ।

କ'ଣ ହେଲା ମାଗୀ ଠିକ୍ ବୁଝିପାରି ନ ଥିଲା ଫାଦର ଜାକବ୍ ଆଉ କୋଠଘରକୁ. ଆସି ଗଲେକି ଯଦିଓ ଆଜି ବୁଧବାର ? ଏତିକିବେଳେ ସରଳା ଗାଁର ଗୋଟିଏ ସରୁ ଗଳି ଭିତରୁ ବାହାରି ତା' ଆଡ଼କୁ ଚାଲିଆସିଲା । ପରେ ପରେ ସରଳାର ବାଟଧରି ଯୂଇ ସହ ଯାମିନୀ ବି ତାରି ଆଡ଼କୁ ଆସିଲେ ।

''କଥା କ'ଣ ?'' ମାଗୀ ସରଳାକୁ ପଚାରିଲା । ''କାଲି ରାତିରେ କାମ୍‌ଦା ତତେ ପୁଣି ଧରିପକେଇଲା କି ?''

''ତୁ ଚୁପ୍ ହେଲୁ,'' ସରଳା ତା' ସ୍ୱଭାବସୁଲଭ ଭାବରେ ଦାନ୍ତ ଦି' ଭାଡ଼ି ଦେଖେଇ କହିଲା । ''ଆଜିକାଲି ସେ ସୁନାପିଲା ହେଇଯାଇଚି, କିନ୍ତୁ ବୁଦାମୂଳରୁ କୋକିଶିଆଳୀ ମୋ କୁକୁଡ଼ାକୁ ଟାକିଲା ମିଶା ମତେ ଦୂରରୁ ଦେଖୁଚି । ହେଲେ ଆମେ ସେଥିଲାଗି ତୋ ପାଖକୁ ଆସିନୁ ।''

''ତାହେଲେ କୋଉଥି ପେଇଁ ? କ'ଣ ହବାକୁ ଯାଉଚିନା କ'ଣ ? ଲୋକମାନେ ସବୁ ଗଲେ କୁଆଡ଼େ ? କେହି ବି ଡଙ୍ଗା ସଜାଡୁ ନାହାନ୍ତି ତ ।''

''ଜାଣିଲୁ ?'' ଯାମିନୀ କହିଲା, ''ଗାଁର ସବୁ ଲୋକ ପୁରୀକୁ ଯାଉଚନ୍ତି ।''

''କାହିଁକି ?''

''ଜନତା ନା କଂଗ୍ରେସ ନା ବିଜେପି ନା କିଏ କେଜାଣି ପୁରୀରେ କିସ ସଭା ଗୀଭା କରିବ ଯୋଠି କିଏ ଗୁଟେ ବଡ଼ ଭାତୁଆ ଆସୁଚି ଆଉ ସେଠା କୁଜି ଭାତୁଆମାନେ ତାକୁ ବଡ଼ ଗହଳି ଦେଖେଇବାକୁ ଲାଗିପଡ଼ିଚନ୍ତି । ସେଇଥିପାଇଁ ସେମାନେ ମିଣିପଙ୍କୁ ପଚିଶ ଟଙ୍କା ଆଉ ମାଇପିଙ୍କୁ କୋଡ଼ିଏ ଟଙ୍କା କରି ଦଉଚନ୍ତି ପୁରୀ ଯିବାକୁ । ଦୋକାନ ପାଖରେ ଟ୍ରକ୍ ସବୁ ଧାଡ଼ି ହେଇଗଲାଣି ମେରାଇନ୍ ଡ୍ରାଇଭ ବାଟେ ସେମାନଙ୍କୁ ନବାପାଇଁ ।''

''ମୁଁ ଯିବିନି ।''

''ଆମେ ବି ଯାଉନୁ,'' ଯୂଇ ତା' ଡେଙ୍ଗା ଦେହକୁ ବାଲିରେ ଥୋଉ ଥୋଉ କହିଲା ।

''ସେଇଠୁ ?'' ମାଗୀ ତଥାପି ଠିକ୍ ଠଉରାଇ ପାରୁ ନ ଥାଏ କଥାଟା, ତାକୁ ପୁରୀ ଯିବାକୁ ପଡ଼ିବ କିନ୍ତୁ ଏ ଗହଳିରେ ନୁହେଁ । ସେ ଦେଖିଲା ଏବେ ଗାଁର ମାଇପେ

ମିଣିପେ ଲୁଗାପଟା ପିନ୍ଧି ଫିଟ୍‌ଫାଟ୍ ହେଇ ବାଲିରେ ବାଲିରେ ହନୁମାନ ମନ୍ଦିର ପାରିହେଇ ଦୋକାନଛକ ଆଡ଼କୁ ମୁହେଁଇଚନ୍ତି ।

ହଠାତ୍ ସେ ଏ ତିନି ଝିଅଙ୍କ ଆଖିରେ ଦ୍ୱିଧାଗ୍ରସ୍ତ ମୁରୁକିହସା ଦେଖି ଉତ୍ତେଜିତ ଭାବେ ସନ୍ଦେହୀ ହେଇପଡ଼ିଲା ।

''ତମେ ସବୁ, ମାନେ ତମେ, ଆଜି.... ?''

''ହଁ । ଆଜି କରିବାକି ?'' ତିନିଜଣଯାକ ଉତ୍ତେଜିତ ହେଇ ଏକାସାଙ୍ଗରେ ପଚାରିଲେ ।

ମାଗୀ ଡେଇଁ ଠିଆ ହେଇପଡ଼ିଲା ଆଉ ହାତମୁଠାକରି ଆକାଶରେ ହଲାଇଲା । ଆନନ୍ଦର ଅଣନିଃଶ୍ୱାସୀ ଆବାଜଟାଏ ତା' ଅପ୍ରସ୍ତୁତ କଣ୍ଠରୁ ବାହାରିପଡ଼ିଲା ।

''ଆମେ ଭାବିଲୁ ତୁ ନିଶ୍ଚେ,'' ସରଳା କହିଲା ।

''ଆଉ ତିନିଜଣ ଗଲେ କୁଆଡ଼େ ?'' ମାଗୀ ଡରି ଡରି ପଚାରିଲା ।

''ସାନା ଆସୁଚି,'' ଯାମିନୀ ଚଉଡ଼ା ହସଟିଏ ହସି କହିଲା । ''ତୁ'ତ ଜାଣୁ ସେ ଲୁଗା ପିନ୍ଧିବାକୁ ସମୟ ନିଏ । ଆଉମାନେ ଆସୁନାହାନ୍ତି । ଶିରିର ଯାଉଚି, ଆଉ ସବୁଥର ମିଶା କଷ୍ଟ ପାଉଚି । ତାଛଡ଼ା ଚୁସୀ ଆଉ ସେ ଜଗନ୍ନାଥଙ୍କ ପାଖରେ କ'ଣ ମାନସିକ ଲାଗି ପୁରୀ ଯାଉଚନ୍ତି ।''

''ଦୁତୀୟଘଇତା ପାଇଁ,'' ଯୂଇ ତା ଚିଁଚିଁଆ ସ୍ୱରରେ କହିଲା ।

''କ'ଣ ହେଲା ସେଇଠୁ ?'' ସରଳା କହିଲା । ''ଆଉଥରେ ବାହା ହେଲେ କିସ୍‌ଟା ଅସୁବିଧା ହେଇଯାଉଚି ? କାଡୁଆ, ଭାଡୁଆ ପଛେରେ ଗୋଡ଼େଇବା ନ ଥିଲେ ଲୋକେ ଶୁଣେଇ ଶୁଣେଇ କହିବାଠୁତ ଭଲ ।''

''ତା'ମାନେ,'' ମାଗୀ କହିଲା, ''ତିନିଟାରୁ ଗୋଟେ ଡଙ୍ଗାରେ ଜଣେ ରହିଯିବ ।''

''କାହିଁକି, ଖାଲି ଦି'ଟା ଡଙ୍ଗା ନେଲେ ?''

''ମୁଁ ଏକା ଯାଇପାରିବି,'' ମାଗୀ କହିଲା, ''ଆଉ ମଝିରେ ରହିବି ।''

ସରଳା କହିଲା : ''ମୁଁ ତଥାପି ଭାବୁଚି ଦି'ଟାରେ ଗଲେ ଭଲ ହବ । ବଡ଼ ଜାଲକୁ ସମ୍ଭାଳିବା ସହଜ ହବ ।''

''କୋଉ ବଡ଼ ଜାଲ ?'' ମାଗୀ ପଚାରିଲା ।

''କାମ୍‌ଦାର,'' ଯାମିନୀ ଭୂରୁ ନଚେଇ କହିଲା, ''ସେ ଆମକୁ ଦେଲା ।''

''ତୁ ମାଗିଲେତ ସେ ତା ବାଟି ବି ଗଡ଼େଇଦବ, ''ଯୂଇ କହିଲା । ''ଚାହାଁ, ସେଠି ସେ, ତା' ଜାଲ ଆମ ପାଇଁ ପକେଇଦେଇ ଯାଉଚି । ସେ ବି ପୁରୀ ଯିବ ।''

ଚାରିଜଣଯାକ କାମ୍‌ଦାକୁ ହସି ହସି ଚାହିଁଲେ । କାମ୍‌ଦା ତା' ନାଇଲନ୍ ଜାଲକୁ ବାଲିରେ ପକେଇଦେଇଥିଲା ଆଉ ତାଙ୍କଆଡ଼କୁ ଚାଲିବାକୁ ଆରମ୍ଭ କରିଥିଲା, କିନ୍ତୁ ସେମାନେ ତାକୁ ଆଖେଇ ହସୁଚନ୍ତି ଦେଖି ସେ ଲାଜେଇଯାଇ କିଛି ଦୂରରେ ଠିଆ ହେଇଗଲା ।

ସେ ଯୋଉଠି ଠିଆ ହେଇଥିଲା ସେଇଠୁ ବଡ଼ପାଟିରେ କହିଲା

''ଭଉତ ମାଛ ଧର ରେ । ମୋର ଭାଗ ଲୋଡ଼ା ନାଇଁ । ହେଲେ ମୋ ଜାଲ ହଜେଇବନି । ଦଉଡ଼ି ଆଉ ତେଣୁଆ ହେଇ ସେଠି ଅଛି । ଜାଗ୍ରତରେ ଯିବ ।''

ସେ ବୁଲିପଡ଼ିଲା ଆଉ ଦୋକାନ-ମୋଡ଼· ଆଡ଼କୁ ଧାଇଁଲା ।

''ହଠାତ୍,'' ସରଳା କହିଲା, ''ସେ ଭଲ ପିଲା ହେଇଯାଇଚି । ତୁ ତାକୁ କିସ କଲୁ, ମାଗୀ ?''

''ମୁଁ ?''

''ହଁ ତୁ । ଏମିତି ନ ଜାଣିଲା ନ ଜାଣିଲା ହେ'ନା । ତୁ ତାକୁ ଗାଁ ଭିତରୁ ସିଧା ଝାଉଁବଣକୁ ଘିନିଯିବାର ମୁଁ ଦେଖିଚି । ଆଉ ବି ତୋ ପଛେ ପଛେ ମୁର୍ମୁ ଡାକବଙ୍ଗଳାର ସେ ପଚରାଉଚୁରା କଲାବାଲା ହିନ୍ଦୁସ୍ଥାନୀକି ନେବାର ବି ମୁଁ ଦେଖିଚି । ତା ପରଦିନ ବଡ଼ିଭୋରୁତ କାମ୍‌ଦା ସୁନାପିଲା, ଗୋଟାପଣେ । ସତ । ତା'ପରଠୁ ସେ ନା ମତେ ନା ଆଉ କାହାକୁ ଛୁଇଁବ ନାହିଁ । ସେ ତ ଖୁବ୍ ଢୋଲପିଟି ମନ୍ଦିରକୁ ଯିବ ଯେ ସିଂହଦୁଆରେ ତ ମୂର୍ଚ୍ଛା ହେଇଯିବ ।''

ସେ ହସିଲା । ଯାମିନୀ ମାଗୀକୁ କୁଣ୍ଢେଇ ପକେଇଲା । ଯୂଇ ଦାନ୍ତ ଚିପି ହସିଲା ।

''ଚୁପ୍‌କର, ନିଉଛୁଣାଯାକ । କି ଗ୍ରହାଚାର, ମୁଁ ତାକୁ କିଛି କରିନି ।''

ଯୂଇ ହସି ହସି କହିଲା, ''ସେ ବୋଧେ ତାକୁ କାଜୁବଣକୁ ନଡ଼ିଆ ଗଣିବାକୁ ନେଇଥିଲା ।''

''ଚୋପ୍ !''

ତିନିଜଣଯାକ ଚୁପ୍ ହେଇଗଲେ, ତା'ର ଏଡ଼େ ରାଗ ଦେଖି ।

ମାଗୀ ସାଙ୍ଗେ ସାଙ୍ଗେ ବୁଝିପାରିଲା । ସେ ହସିଦେଲା ।

''ତମମାନଙ୍କୁ ଡରେଇ ଦେଲି,'' ସେ କହିଲା, ''ମୁଁ ତାକୁ ସେଠିକି ନେଇଥିଲି ଜାଣିବାକୁ ଯେ ସ୍ମଗଲିଂ ଆଉ ମର୍ଡ଼ର୍ ପଛରେ କାହାର ହାତ ଅଛି ।''

''ଜାଣିଲୁ ?''

''ହୁଁ ।''

ଯୂଇ ପଚାରିଲା, ''ତୋର କ'ଣ ହେଇଚି ମାଗୀ ? ଏଇ କେତେ ମାସ ହେଲା ତତେ ଭିତେରେ ଭିତେରେ ଯିମିତି କିଏ କୋରି ଖାଉଚି ।''

''ତୁ କୁଆଡ଼େ ଯାଉ,'' ସରଳା ପଚାରିଲା, ''ପ୍ରତି ରବିବାର ଯେତେବେଳେ ତୁ ବାହାରକୁ ଯାଉ ?''

''ତୁ କ'ଣ ବାହା ହଉଚୁ ?''

''ତୁ ଗୋଳିପାଣିରେ ପଶନା । ସ୍ମଗ୍‌ଲର୍‌ଗୁଡ଼ା ତାଙ୍କ ବାଟରେ ଥା'ନ୍ତୁ ।''

''ମୁଁ ତ ବୁଡିଗଲିଣି । ବେକଯାଏ ।''

''ସତରେ ମାଗୀ, ଆମେ ସମସ୍ତେ ତୋର ଭଲ ଚାହୁଁଚୁ ।''

''ତୁ ଜାଣୁ,'' ଯାମିନୀ କହିଲା, ''କାମ୍‌ଦା ତତେ ଗତ ଦି'ଟା ରବିବାର ହେଲା ପିଛା କରୁଚି ।''

''ହଁ, ମୁଁ ଜାଣିଚି । ଏବେ ଚାଲ ଯିବା ।''

ମାଗୀ ଗୋଟାଏ ପୁରୁଣା ମଶିଣା ଓପରେ ଲୁଣଦିଆ ମାଛଗୁଡ଼ାକୁ ଖେଳେଇ ଦେଲା, ଟାଣ ଖରାରେ । ତା ଓପରେ ଗୋଟିଏ ପତଳା ନେଳି ଶାଢ଼ି ଘୋଡ଼େଇ ଦେଲା ଆଉ ମାଛରେ ବାଲି ନ ପଶିବା ପାଇଁ ଶାଢ଼ିକାନିମାନଙ୍କରେ ଗୋଟେ ଲେଖାଏଁ ଇଟାଥୋଇଦେଲା, ଯାହା ସେ ମାଛ କଂଟ୍ରାକ୍ଟର ଯାମଳା ପାତ୍ରର ଏଇ ପାଖରେ ତିଆରି ହଉଥିବା ଘରଠୁ ଆଣିଥିଲା । ଯୂଇ ହସିଲା : ''ଶାଢ଼ିଟା କାହିଁକି ଘୋଡ଼ୋଉଚୁ ? ଶୁଖୁଆକୁ ତୋ ଝିଅର ଶଶୁର ଘରକୁ ପଠେଇବୁ ନା କ'ଣ ?''

''ସେ ନିବାଲିଆ ଶୁଖୁଆ କରେ ରେ,'' ସରଳା କହିଲା, ''ମୋ କିଣାଳି ତ ତାକୁଇ ପସନ୍ଦ କରନ୍ତି । ଏବେ ତ ସେମାନେ ମାଗୀର ଶୁଖୁଆ କି ବୋଲି ପଚାରିବେ । ଘଣ୍ଟା ଘଣ୍ଟା ଭିଜେଇବା କି ବାଲି ଧୋଇବା ଦରକାର ନାହିଁ । ମୁଁ ବିକୁଚି ବୋଲି ଜାଣିଚି ।''

''ସେ କଥା ଥାଉ,'' ମାଗୀ ଠିଆ ହଉ ହଉ କହିଲା, ଗାଁର ତୃତୀୟ ଗଳିରୁ ବାହାରି ସାନା ଲମ୍ୱା ପାଦ ପକେଇ ସେମାନଙ୍କ ଆଡ଼କୁ ମାଡ଼ିଆସିଲା । ସେ ଡଉଲଡାଉଲ ହେଇ ସୁନ୍ଦର ଦିଶୁଥିଲା, ଅଳ୍ପ ବୟସର । ତା' ମୁହଁର ପାଉଡର ବାରି ହଉଥିଲା ।

''ଆମେ ଯାଉନେ ନା କ'ଣ ?'' ସେ ପଚାରିଲା ।

''ହଁ ଯାଉଚେ । ଚାଲ । ସମୟ ଗଡ଼ାଅନି ।''

''ମିଣିପିମାନେ କ'ଣ କହିବେକି ?'' ସାନା ପଚାରିଲା ।

''ଲାତ ମାରମ ମିଣିପିଙ୍କୁ,'' ମାଗୀ କହିଲା ।

ଝିଅମାନେ କୁରୁକୁରୁ ହେଲେ । ସାନା, ଯିଏ କି ପ୍ରଥମରୁ ଟିକିଏ ଥାଥାମାମା ହଉଥିଲା, ଶେଷରେ ନିଜର ଉଲ୍ଲାସ ଲୁଚେଇ ନ ପାରି ସେମାନଙ୍କ ସାଙ୍ଗେ ବଡ଼ପାଟିରେ ହେଁ ହେଁ ହବାକୁ ଲାଗିଲା ।

ମାଗୀ କହିଲା, ''ମୁ ତମକୁ ଅଧଘଣ୍ଟା ସମୟ ଦଉଚି, ତା' ଭିତରେ ଖାଇବ, ଲୁଗାପଟା ପିନ୍ଧିବ ଆଉ ତଙ୍ଗା ପାଖରେ ମତେ ମିଶିବ ।''

ସାନା କହିଲା, ମୁଁ ଭାବୁଚି ଗୋଟାଏ ହାଫ୍ ପେଣ୍ଟ୍ ଗୋଟାଏ ଛୋଟ ଶାଢ଼ି ତଳେ ପିନ୍ଧିବି । ଆଉ ବ୍ଲାଉସ୍ ।''

''ହେ ! ବଢ଼ିଆତ ।'' ସରଳା ମାଗୀର ସ୍ୱୀକୃତି ପାଇଁ ତା'ଆଡ଼କୁ ଚାହିଁ କହିଲା, ''ତୁ କ'ଣ କହୁଚୁ ?''

''ପେଣ୍ଟ ?'' ଯୂଇ ଭୂରୁ ଟେକି କହିଲା ।

''ବଢ଼ିଆ ହବ,'' ମାଗୀ କହିଲା । ''ସମସ୍ତଙ୍କ ଘରେ ପୁଅପିଲାଙ୍କ ପେଣ୍ଟ୍ ତ ଥିବ । ଯଦି ନ ଥିବ, ଆସ ଆମେ ମୁର୍ମୁର ବାକ୍ସ ଖେଳେଇବା । ପେଣ୍ଟ ଆଉ ବ୍ଲାଉଜ୍, ଆମ ପୋଷାକ ହବ ।''

''ହେ, ହେ, ହେ, ଶାଢ଼ି ପିନ୍ଧିବାନି ?'' ଯୂଇ କହିଲା, ''ଆମେତ ବାଲିରେ ସାଇବାଣୀ ପରି ଦିଶିବା ।''

''ସେଇଠୁ କ'ଣ ହେଲା ?'' ସାନା କହିଲା ।

''ତୋର ଯଦି ମନ ହଉଚି ତ ଶାଢ଼ିଟେ ଗୁଡ଼େଇ ହେଇ ପଡ଼, କିନ୍ତୁ ସେଇଟା ଯିମିତି କାମରେ ଅସୁବିଧା ନ କରେ ।''

''ଠିକ୍ ଅଛି,'' ଯାମିନୀ କହିଲା, ''ତା'ପରେ ?''

''ତମ ନିଜ ନିଜ ଟିଉବ୍‌ରେ ପମ୍ପ୍ ଭରିଦେଇଚ ?'' ମାଗୀ ପଚାରିଲା ।

''ହଁ,'' ସେମାନେ ଏକସ୍ୱରରେ କହିଲେ ।

''ଏବେ : ଗେଟ୍, ସେଟ୍, ଗୋ ।''

ପାଞ୍ଚଜଣଯାକ ଶୂନଶାନ ଗାଁ ଭିତରକୁ ଅଦ୍‌ଭୁତ ଉତ୍ସାହରେ ଦୌଡ଼ିଗଲେ । ପାଞ୍ଚଜଣ ଅବନ୍ଧା ସ୍ତ୍ରୀଲୋକ, ନିଜ ଗୋଡ଼ରେ ଠିଆ ହଉଥିଲେ, ସବୁକଥାରେ ପୁରୁଷଙ୍କୁ ଡରିଡରି ଚଳୁଥିବା ଲୋକ, ପ୍ରଥମଥର ପାଇଁ ସେମାନଙ୍କୁ ଅବଜ୍ଞା କରୁଥିଲେ ।

ମାଗୀ ଜାଣିଥିଲା ଥରେ ସେମାନେ ଏ କଥା କଲେ, ବାଟଟାଏ କାଳକାଳକୁ ଫିଟିଯିବ । ଏହିଭଳି ହିଁ ସବୁ ହୁଏ । ହୁଏତ ଇମିତିଇ ସେମାନେ ସବୁ ବଦଳେଇ ଦେଇପାରିବେ ଆଉ ଓପରବାଲା ଚୋରଖଣ୍ଡମାନଙ୍କୁ ରାସ୍ତାକଡ଼ରେ ଛାଡ଼ିଦେଇ ଚାଲିଯିବ ।

ସରଳା ମାଗୀର ପ୍ରବଳ ଅନୁଗାମୀ ଆଉ ଅନ୍ତରରେ ତା'ବିଚାରରେ ଆସ୍ଥା ରଖେ । ଦି' ବର୍ଷ ତଳର ଝଡ଼ବତାସରେ ସେ ତା' ସ୍ୱାମୀକୁ ସମୁଦ୍ରରେ ହରେଇଥିଲା । ତା' ବାପା ମା' ଆଗରୁ ମରିଯାଇଥିଲେ ଆଉ ତାଙ୍କର ଅନ୍ୟ ପିଲାପିଲି ନ ଥିଲେ । ତେଣୁ ସେ ତା ଶାଶୁଘର ଛାଡ଼ି ବାପଘର କୁଡ଼ିଆରେ ଆସି ରହିଲା ଯାହା ତା' ଶାଶୁଘରବାଲା ହାତେଇବାକୁ ବସିଥିଲେ, କିନ୍ତୁ ସେ ସେମାନଙ୍କୁ ଆଡ଼େଇ ନିଜେ ରହିଲା । ମାଗୀ ସେତେବେଳେ ତାକୁ ଯୁକ୍ତିତର୍କ ପାଟିତୁଣ୍ଡର ସାହାଯ୍ୟ ଦେଇଥିଲା । ସରଳା ମୁଖ୍ୟତଃ ଶୁଖୁଆ ତିଆରି କରୁଥିଲା ଆଉ ଆଖପାଖ ଗାଁରେ ବିକୁଥିଲା ।

ଯାମିନୀ ଥିଲା ପାତେଳୀ, କାଳି ଆଉ ମୁଖୁଦାନ୍ତୁରୀ, କିନ୍ତୁ ଭଲଝିଅଟାଏ ଥିଲା । ତା' ସ୍ୱାମୀ ନରୁ, ତାକୁ ଛାଡ଼ି କଲିକତାରେ ଗୋଟାଏ ମାଳୀର ସହକାରୀ କାମ ପାଇ ଚାଲିଗଲା । ସେଠି ସେ ସେଇ ମାଳୀର ଝିଅକୁ ବାହାହେଇ ରହିଗଲା । ଗତବର୍ଷ ସେ ଯେତେବେଳେ ଗାଁକୁ ଫେରିଥିଲା ଯାମିନୀ ସାଙ୍ଗେରେ ଶୋଇବାକୁ ଚାହିଁଲା କିନ୍ତୁ ଯାମିନୀ ତାକୁ ଘରୁ ବାହାର କରିଦେଲା । ତା' ଶଶୁର ଶାଶୁବି ଯାମିନୀକୁ ସମର୍ଥନ କଲେ କାରଣ ନରୁ ବୁଢ଼ାବୁଢ଼ୀଙ୍କୁ ପଇସାଟାଏ ବି ପଠଉ ନ ଥିଲା, ଯାମିନୀ ସେମାନଙ୍କ କଥା ବୁଝୁଥିଲା । ସେ ମାଛ ବିକି ଘର ଚଳଉଥିଲା ।

ଯୂଇ ଥିଲା ସ୍ତ୍ରୀସୁଲଭ ଓ କଅଁଳିଆ କିନ୍ତୁ ଖୁବ୍ ଶକ୍ତିଥିଲା ତାଠିଁ, ଟୁରିଷ୍ଟ୍‌ମାନଙ୍କର ମୁଖ୍ୟ ଶଯ୍ୟାସଙ୍ଗିନୀ ହବା ସତ୍ତ୍ୱେ । ତା'ର ନା ପୁରୁଷର ଅଭାବ ଥିଲା ନା ପଇସାର । ଯଦିଓ ତା' ପରିବାର ଗାଁରେ ରହୁଥିଲେ, ସେ ଗୋଟାଏ ବଖୁରିକିଆ ଘର ତିଆରି କରେଇ ଏକୁଟିଆ ରହୁଥିଲା । ତା'ର କିନ୍ତୁ ପ୍ରକୃତ କାମଦାମ କରିବାକୁ ଇଚ୍ଛା, ଯୌନ ତା'ର ପେସା ନ ଥିଲା, ଖାଲି କୌତୁକ ପାଇଁ ସେ କରୁଥିଲା । ତାକୁ ମଜା ଲାଗୁଥିଲା ।

ସାନା ଥିଲା ଟିକେ ଅଲଗା । ସେ ଭଲ ଲୁଗାପଟା ପିନ୍ଧୁଥିଲା ଓ ଦେଖେଇ ହଉଥିଲା । ସେ ସନାତନ ନାଁର ଗୋଟାଏ ଟ୍ରକ୍ ଡ୍ରାଇଭର ସାଙ୍ଗରେ ପଳେଇ ଯାଇଥିଲା । କିଛିଦିନ ପରେ ତାକୁ ଛାଡ଼ିଦେଲା ଓ ଟ୍ରକ୍ ମାଲିକ ସାଙ୍ଗରେ ରହିଲା ଯିଏ ତାକୁ କଟକରେ କୋଉଠି ଗୋଟାଏ ଜାଗାରେ ରଖିଥିଲା । କିଛିଦିନ ପରେ ସେ ତାକୁ ଛାଡ଼ିଦେଲା ଆଉ ଗାଁକୁ ଫେରିଆସି କିଛି କରିବାକୁ ଚାହିଁଲା । ତାକୁ କେହି ପସନ୍ଦ କରୁ ନ ଥିଲେ ବୋଧେ ମାଗୀ ଛଡ଼ା । ସେମାନଙ୍କ ଭିତରେ ସେ ସବୁଠୁ ଭଲ ପହଁରାଳି ଥିଲା ଆଉ ଥିଲା ଅକାତ ସାହସୀ ।

ମାଗୀର ନିଜର ସମସ୍ୟା ଥିଲା ବେଶ୍‌କିଛି । ମୁର୍ମୁର ଅବସ୍ଥା ଦିନକୁଦିନ ପିଇପିଇ ଖରାପ ହଉଥିଲା ଯାହାର ଖର୍ଚ୍ଚଭାର ମାଗୀ ସମ୍ଭାଳିପାରନ୍ତା କିନ୍ତୁ ମୁର୍ମୁର ପେଟଟା ନଷ୍ଟ ହୋଇଯାଉଥିଲା । ସେସବୁବେଳେ ଭୋକ ଭୋକ ହଉଥିଲା କିନ୍ତୁ ପେଟରେ ଖାଦ୍ୟ

ବେଶୀବେଳ ଯାଏ ରଖିପାରୁ ନ ଥିଲା । ପ୍ରାୟତଃ ବାନ୍ତିକରି ଦଉଥିଲା । ମାଗୀ ତାକୁ ଟାଣି ଭିଡ଼ି ଡାକ୍ତରଖାନାକୁ ନଉଥିଲା ସତ କିନ୍ତୁ ମୁର୍ମୁ ତା ଓଷଧ ନିୟମିତ ଭାବେ ଖାଉ ନ ଥିଲା କି ଡାକ୍ତରଙ୍କ କହିବା ଅନୁସାରେ ପିଇବା ଛାଡୁ ନ ଥିଲା । ଆଉ ଗତକାଲି, ତାର ମନା ନ ମାନି, ସେ କୁଆଡ଼େ ଚାଲିଗଲା ଯେ ଏପର୍ଯ୍ୟନ୍ତ ଫେରିନି ।

କୂଳର ଢେଉମାନଙ୍କୁ ପାରକରି ଡଙ୍ଗାକୁ ସମୁଦ୍ର ଭିତରକୁ ନବାର ଦୁଷ୍କର କାମ ଶେଷ ହେଇଯାଇଥିଲା । ମଙ୍ଗ ସଳଖେଇବା, ମୋଡ଼ିବା ଓ ପୁଣି ମଙ୍ଗ ସଳଖକରିବା କାମରେ ନିପୁଣତା ଆଣିବା ପାଇଁ ସେମାନଙ୍କୁ ଘଣ୍ଟାଏ ଓପରେ ଲାଗିଗଲା । ସେମାନେ ସମସ୍ତେ ପୂରା ଭିଜିଯାଇଥିଲେ, କିନ୍ତୁ ଏବେ ସମୁଦ୍ର ଭିତରେ ପହଞ୍ଚିଯାଇଥିଲେ ଆଉ ଆରାମରେ ଡଙ୍ଗା ବାହୁଥିଲେ । ସେମାନେ ଶେଷରେ ଦୁଇଟି ଡଙ୍ଗା ନବାକୁ ସ୍ଥିର କରିଥିଲେ, ଗୋଟାକରେ ଦି'ଜଣ ଆଉ ଆରଟିରେ ତିନି ଜଣ ।

ମାଗୀ ସରଳା ସଙ୍ଗେ ଥିଲା । ତାଙ୍କ ଡଙ୍ଗା ଆଗରେ ରହିବାର ଥିଲା । ସେମାନେ ଠିକ୍ କରିଥିଲେ ଯେ କିଲୋମିଟରେ ଖଣ୍ଡେ ସେମାନେ ଯିବେ ଯୋଉଠୁ ସମୁଦ୍ର ଗହୀରିଆ ହେଇଯାଇଚି, ଆଉ ଜାଲ ସେଇଠି ପକେଇବେ । କିନ୍ତୁ ପବନ ନ ଥିବା ସମୁଦ୍ରରେ ଡଙ୍ଗା ବାହିବା ସହଜ ଥିବାରୁ ମାଗୀ ଆହୁରି ଗଭୀରକୁ ଯିବାକୁ ସ୍ଥିର କଲା । ଯାମିନୀ, ଯୂଇ ଓ ସାନା ତାକୁ ଅନୁସରଣ କଲେ । ସେମାନେ ଗଭୀରତାର ଦେଢ଼ କିଲୋମିଟର ଖଣ୍ଡେ ପରେ ଏକାଠି ହେଲେ ।

ଡଙ୍ଗା ଦୁଇଟି, ଯାହା ଏପର୍ଯ୍ୟନ୍ତ ପାଖାପାଖି ଚାଲୁଥିଲେ, ଏବେ ଅଲଗା ହେଇଗଲେ । ଜାଲ ଯାମିନୀର ଡଙ୍ଗାରେ ଗୁଡ଼ିଆ ହେଇ ଥୁଆ ହେଇଥିଲା । ମାଗୀ ଆଉ ସରଳା ଜାଲର କାନିଧରି କୂଳସହ ସମାନ୍ତରାଳ କରି ଡଙ୍ଗା ବାହିଲେ । ଯିମିତି ଜାଲ ସମୁଦ୍ର ଭିତରକୁ ପକାଗଲା ଓଜନିଆ କଡ଼ଟା ବୁଡ଼ିଗଲା ଆଉ ସୋଲ ଲାଗିଥିବା କଡ଼ଟା ଭାସିବାକୁ ଲାଗିଲା । ଧୀରେ ଧୀରେ ଡଙ୍ଗା ଦି'ଟା ଯେତେବେଳେ ପରସ୍ପରଠୁଁ ଦୂରେଇ ଗଲେ ଜାଲଟା ପୂରା ଟାଣି ହେଇଗଲା । ଏଥର ସେମାନେ ସେମାନଙ୍କ ଜାଗାରେ ସ୍ଥିର ରହିଲେ । ସେମାନଙ୍କ ମଝିରେ ପାଖାପାଖି ଷାଠିଏ ମିଟର ବାଟ ଜାଲଟା ଝୁଲି ରହିଥିଲା ସମୁଦ୍ର ତଳକୁ ।

ସରଳା ଡଙ୍ଗାରେ ଘୋଡ଼ାପରି ବସି କହିଲା: ''ତୁ ରବିବାର କୁଆଡ଼େ ଯାଉ ମାଗୀ, ମୁଁ ବେସ୍ତ ହେଇଯାଏ ।''

ମାଗୀ କିଛି କହିଲାନି ।

''ସତକି ତୁ ସେ ଲୋକଟାକୁ ଦେଖିବାକୁ ଯାଉ ? ସେ କିଏଚି ?''

''ତୋର ନ ଜାଣିଲେ ଭଲ ।''

ଢେଉ ତାଙ୍କୁ ତଳ ଓପର କରି ଦୋହଲାଉଥିଲା । ତାଙ୍କ ଗୋଡ଼କୁ ଥାପୁଡ଼ୋଉଥିବା ପାଣି ଥଣ୍ଡା ଲାଗୁଥିଲା । ତେଣୁ ଆକାଶରେ ଟାଣ ହଉଥିବା ଖରା କାଟୁ ନ ଥିଲା । ଆଉ ତଳ ଗଭୀରତାର ଅଜଣା ଅନ୍ଧାର ଥିଲା ଶାନ୍ତ ଓ ଶୀତଳ ।

''ଆମେ ବାଉଁଶପାତିଆ ଟୋପି ଆଣିଥିଲେ ଭଲ ହେଇଥାନ୍ତା,'' ସରଳା କହିଲା ।

''ହଁ । ଆର ଥରକୁ ଆଣିବା ।''

ପୂର୍ବଦିଗକୁ ବ୍ୟାପୀ ନେଳିପାଣି ଅସରନ୍ତି ଭାବେ ଆକାଶକୁ ଛୁଇଁଲାଯାଏ । ଦୂରରେ ଗୋଟାଏ ଟ୍ରଲର୍ । ଗାଁର ପନ୍ଦର କୋଡ଼ିଏ ଜଣ ବୁଢ଼ୀ, ବୁଢ଼ା ଓ ଛୁଆ ସମୁଦ୍ର କୂଳକୁ ଆସି ଏବେ ସେମାନଙ୍କୁ ଲକ୍ଷ୍ୟ କରୁଥିଲେ । କାରଣ ମାଇପେ ସମୁଦ୍ରକୁ ଯାଇଥିବା କଥା ନିଶ୍ଚେ ରାଷ୍ଟ୍ର ହେଇଯାଇଥିବ ।

ଦି'ପହରର ପବନ ତେଜିଉଠିଲା । ବହୁଥିଲା ସମୁଦ୍ରରୁ କୂଳଆଡ଼କୁ । ଏଇଟା ଏକ ସୁନ୍ଦର ଅନୁଭୂତି, ସମୁଦ୍ର ମଝିରେ ଇମିତି ବସିରହିବାଟା, ଗୋଟେ ପଟେ ସମୁଦ୍ର ଆରପଟେ ଭୂଇଁ, ଆକାଶରେ ବହୁମୁଖୀ ସୂର୍ଯ୍ୟ ଆଉ ତଳେ ଚଳନ୍ତି ସମୁଦ୍ର ।

ସରଳା କହିଲା, ''ଆମେ ଦୁନିଆଟାକୁ ବଦଳେଇ ଦେଇପାରିବା ବୋଲି ତୁ ଭାବୁଚୁ ?''

''ହଁ,'' ମାଗୀ କହିଲା, । ''ଏଇଟା ଏତେ ଖରାପ ଯେ ବଦଳିବା ଦରକାର ।''

''ତୁ ଠିକ୍ କହୁଚୁ, ମତେ ବି ଲାଗୁଚି ।''

ମାଗୀର ଉପସ୍ଥିତିରେ ସରଳା ସବୁବେଳେ ସ୍ପଷ୍ଟଭାବେ ଏକଥା ଅନୁଭବ କରି ପାରୁଥିଲା ଯିମିତି ସେ ଗୋଟାଏ ଭାବ ବିକିରଣ କରୁଥିଲା । ଅନ୍ୟ ସମୟରେ ସେ ଏ କଥା ଭାବୁ ନ ଥିଲା ।

''କେତେବେଳେ ତୁ ଭାବୁଚୁ,'' ମାଗୀ ପଚାରିଲା, ''ଆମେ ଫେରିବା ଉଚିତ ?''

''ଆଉ ଅଧଘଣ୍ଟା ଯାଉ । ସୂର୍ଯ୍ୟ ପଶ୍ଚିମକୁ ନଉଁ ।''

''ଠିକ୍ ଅଛି ।''

''ତୁ ମତେ ବିଶ୍ୱାସ କରିପାରୁ ମାଗୀ । ମୁଁ ତୋ ସାଙ୍ଗେ ଯିବାକୁ ଚାହେଁ । ଯଦି କିଛି କରିବାର ଅଛି କହ, ମୁଁ କରିଦେବି । ଏଇଟା ଉଚିତ କାମଟିଏ ବୋଲି ମୁଁ ଭାବୁଚି । ମନ ପୂରି ଯାଉଚି ।''

ମାଗୀ କିଛି କହିଲାନି ଯେହେତୁ ସେ ଚାହିଁଥିଲା ତାଙ୍କଆଡ଼କୁ ଚୁପ୍‌ଚାପ୍ ମାଡ଼ି ଆସୁଥିବା ଗୋଟାଏ ମଝିଲା ଆକାରର ସାର୍କକୁ ।

''ଗୋଡ଼ ଟେକିଦେ,'' ସେ ନିଜ ଗୋଡ଼ ଉଠେଇ ଆଣୁ ଆଣୁ କହିଲା । ସେଇଟା ଗୋଟାଏ ଛୋଟ ବାଘୁଆ ସାର୍କ୍ ଥିଲା ଯିଏ ଖୁବ୍ ପାଖକୁ ଆସି ପାଟି ମେଲାକରି ସେମାନଙ୍କୁ ତା'ର ଦୁର୍ବୋଧ କଳା ଆଖିରେ କୌତୂହଳୀ ହେଇ ଚାହିଁଲା । ପଲକ ପଡୁ ନ ଥିଲା ତା କଳା ଆଖିଡୋଳାର ସ୍ଥିରତାରେ । ଗୋଟାଏ ଅଜବ ଉପସ୍ଥିତି ଥିଲା, ଯିମିତି ସମୁଦ୍ରର ଅଜଣା ଗଭୀରତା ସେଇବାଟେ ଫୁଟି ବାହାରି ଆସୁଥିଲା । ଆଖି ଦି'ଟାର ଗଭୀର କଳା ଗାତ ଭିତରୁ କିଛି ଗୋଟାଏ ଆରପଟୁ ତାଙ୍କୁ ଚାକିଥିବା ପରି ଲାଗୁଥିଲା । ଆଁଖିର ଡୋଳାକୁ ବେଢ଼ି ସକାଳ ସୂର୍ଯ୍ୟର ଜଳନ୍ତା ଲାଲ୍ ରଙ୍ଗର ଗୋଟିଏ ବଳୟ । ମୁହଁର ଚମଡ଼ା ଥିଲା ରୁପା ନେଳିବର୍ଣ୍ଣ । ସାର୍କ ତା' ପାଟି ବନ୍ଦ କଲା, ତା ପରେ ଜାଲଆଡ଼କୁ କିଛିବାଟ ପହଁରି ପହଁରି ଯାଇ ବୁଡ଼ିଗଲା ।

''ଏଇଟା ଧରାପଡ଼ିବ,'' ସରଳା କହିଲା ।

''ତା ଭାଗ୍ୟ ।''

ସେମାନେ ଚୁପ୍ ହେଇ ଯାଇଥିଲେ, ଜୀବନରେ ପ୍ରଥମ ଥର ପାଇଁ ଏକାକୀତ୍ୱକୁ ଉପଭୋଗ କରି । ସେମାନେ କେବେ ବି ଏକାକୀ ନ ଥିଲେ । ଗାଁଟି ରୁନ୍ଧି ହେଲାପରି ଗହଳିଆ ଆଉ ସମସ୍ତେ ଅନ୍ୟମାନଙ୍କ ସାଙ୍ଗେ ଘଷି ହେଲାପରି ଚଳୁଥିଲେ । ଏମିତିକି ସେମାନେ ହଗିବା ପାଇଁ ଝାଉଁବଣକୁ ଗଲାବେଳେ ଦଳ ଦଳ ହେଇ ଯାଉଥିଲେ । ଯଦି ସେମାନେ ଜାଳେଣି ପାଇଁ ଶୁଖିଲା ଡାଳ ଆଣିବାକୁ ବା ଶୁଖିଲା ପତ୍ର ଗୋଟେଇବାକୁ ଯାଉଥିଲେ, ଦଳ ବାନ୍ଧି ଯାଉଥିଲେ । ସେମାନେ ମୁଣ୍ଡରେ ମାଛବୋଝ ଧରି ଦଳ ହେଇ ବିକିବାକୁ ଯାଉଥିଲେ । ପ୍ରେମ କରିବାକୁ ସେମାନେ ଲୁଚି ଲୁଚି ନିରୋଳା ଜାଗାକୁ ଯାଉଥିଲେ ସତ, କିନ୍ତୁ ସେଥେରେ ସାଙ୍ଗୀ ତ ଥିଲେଇ । ବର୍ତ୍ତମାନ କିନ୍ତୁ ସେମାନେ ପ୍ରକୃତରେ ଏକାକୀ, ଅଲଗା, ଯଦିଓ ଡଙ୍ଗାରେ ସେମାନେ ଦୁଇଜଣ ଅଛନ୍ତି, ବସିଚନ୍ତି, ଅନ୍ଧାରରେ ଦୋହଲି ହେଇ ଭାସିଲା ପରି । ହଠାତ୍ ଯିମିତି ଖଣ୍ଡେ ମେଘ ସୂର୍ଯ୍ୟକୁ ଘୋଡ଼େଇ ଦେଇଚି, ସମୁଦ୍ର ଆହୁରି ନେଳି ହେଇଯାଇ ଛାଇଦ୍ୱାରା ଜୀବନ୍ତ ହେଇଉଠିଲା । ଅନ୍ଧାର ସମୁଦ୍ରର ଜୀବଙ୍କ ଜନ୍ତା ଖୋଲିଦେଲା । ଦଳେ ଧୂସର ରଙ୍ଗର କଣି ଜାଲ ପାଖରେ ପାଣି ଭାଙ୍ଗି ଭାସିଉଠି ଠିକ୍ ତାଙ୍କ ମଙ୍ଗ ପଛରେ ଅନିଶ୍ଚିତ ଭାବରେ ପହଁରିବାକୁ ଲାଗିଲେ, ବୁଡ଼ ମାରିବା ଆଗରୁ । ଦୁଇଟି ବଡ଼ ବେକ୍ଟି ପାଣିରୁ ଓପରକୁ ଡେଇଁଉଠିଲେ ଆଉ ପାଣି ଓପରେ ଲେଉଟି ପଡ଼ି, ପଲ୍ଟା ମାରି ଓଠ ଲୋଚା କରି ତାଙ୍କଆଡ଼କୁ ମାଡ଼ିଆସିଲେ । ଗୋଟିଏ ବଡ଼ ଚାନ୍ଦି ଦଳ ଡଙ୍ଗା ଦୁଇଟି ମଝିରେ ଅଙ୍କା ବଙ୍କା ବାଟକାଟି ଚାଲିଗଲେ । ଦଳେ ସାର୍‌ଡିନ୍ ଜାଲକୁ ଖୁମ୍ପିବାକୁ ଚେଷ୍ଟାକଲେ, ବୁଡ଼ିପଡ଼ିଲେ ଆଉ ପୁଣିଥରେ ଖୁମ୍ପିଲେ । ଗୋଲାପି ପଲିପ୍‌ମାନେ କେତୋଟି ତାରାମାଛଙ୍କ ସାଙ୍ଗେ ମିଶି ଭାସି ଚାଲିଗଲେ । ଗୋଟିଏ କାଳିଆସିଆ

ବାରାକୁଡ଼ା ସେମାନଙ୍କୁ ତା'ର ଦାନ୍ତ ଦେଖେଇଲା ଆଉ ଆର ଡଙ୍ଗା ଆଡ଼କୁ ସାପପରି ମୋଡ଼ିବାଙ୍କି ହେଇ ଚାଲିଗଲା, ତିନୋଟି ଶାକ୍ରୁଚ ଡେଣାମେଲେଇ ଓ ଲାଞ୍ଜ ସଳଖ କରି ଧାଡ଼ିହେଇ ଦେଖାଦେଲେ ଆଉ ଖୁବ୍ ଜୋର୍‌ରେ ପାଣି ଖପରେଇ ବୁଡ଼ିଗଲେ ଆଉ ତୁହାକୁ ତୁହା ପାଣିରୁ ବାହାରି ଡୁବି ଅଦ୍ଭୁତ ଖେଳ ପ୍ରଦର୍ଶନ କଲେ । ସେମାନେ ଯିମିତି ହଠାତ୍ ଆସିଥିଲେ ସିମିତି ଉଭେଇ ଗଲେ ।

ସରଳା ଏ ସମ୍ମୋହନ ଭାଙ୍ଗି କହିଲା, ''ମୁଁ ଭାବୁଚି, ସେ ଭିତରର ଅନ୍ଧାରରୁ କିସ୍‌ଟେ ତି ଆମଆଡ଼କୁ ଉଠିଉଠି ଆସୁଚି ।''

''ହଁ, ବହୁତଥର ମୁଁ ବି ତାକୁ ଦେଖେ, କିନ୍ତୁ ମୁଁ ଆକାଶରେ ତାକୁ ଦେଖେ ।''

''ମୁଁ ମିଶା ସେଠି ଦେଖେ, ହେଲେ, ଖାଲି ତୋ ସାଙ୍ଗେ ଥିଲାବେଳେ ।''

ସେମାନେ ପୁଣି ଚୁପ୍‌ଚାପ୍ ହେଇଗଲେ । ପବନ ଟିକେ ତୀଖା ହଉଥିଲା । ସମୁଦ୍ର ସାମାନ୍ୟ ଅଶାନ୍ତ ହବାକୁ ଆରମ୍ଭ କରିଥିଲା । ସୂର୍ଯ୍ୟ ପଶ୍ଚିମକୁ ଢଳି ପଡ଼ିଥିଲେ । ଅନ୍ୟ ଡଙ୍ଗାରେ ଯାମିନୀ ସେମାନଙ୍କୁ ହାତ ଠାରୁଥିଲା ।

ସରଳା କହିଲା, ''ତୁ କିସ ଭାବୁଚୁ, ସବୁ କଥା ସେଠି ଆଗରୁ ଲେଖା ଥାଏ, ଓପରେ ?''

''ନା ଆମକୁ ଭାଗ୍ୟ ତିଆରି କରିବାକୁ ପଡ଼େ, ମୁଁ ଯାହା ଭାବୁଚି ।''

ହଠାତ୍ ପବନ ଫୁଲିଉଠି ଝଞ୍ଜା ହେଇଗଲା ଆଉ ସମୁଦ୍ର ଲହଡ଼ିଆ ଆଉ କାଳିଆ ଦିଶିଲା ।

ମାଗୀ ତା ହାତକୁ କାହାଳୀ ପରି କରି ଅନ୍ୟ ଡଙ୍ଗାକୁ ଲକ୍ଷ୍ୟକରି କହିଲା, ''ଚାଲ ଯିବା ।'' କିନ୍ତୁ ତା ସ୍ୱର ପବନରେ ପିଟି ହେଇ ସେ ଦୂରତା ଭିତେରେ ହଜିଗଲା । ସେ ଆଉ ସରଳା ସେମାନଙ୍କ ହାତ ହଲେଇ ଗାଁଆଡ଼କୁ ଫେରିଯିବାର ସୂଚନା ଦେଲେ । ଅନ୍ୟମାନେ ଠିକ୍ ଧରିନେଲେ ଆଉ ଡଙ୍ଗା ଦି'ଟା କୂଳ ଆଡ଼କୁ ହଲି ଦୋହଲି ମୁହେଁଇବାକୁ ଲାଗିଲା । ଏଥର ଜାଲର ଦଉଡ଼ି ଟାଣି ହେଇଗଲା ଆଉ ଜାଲ ତାଙ୍କୁ ପଛରୁ ଟାଣି ଧରିବା ଦ୍ୱାରା ଆଗକୁ କେବଳ ବଢ଼ିବା ଯେ କଷ୍ଟକର ହେଲା ତା ନୁହେଁ ଡଙ୍ଗାଗୁଡ଼ିକ ଭୟଙ୍କର ଭାବେ ଦୋହଲିବାକୁ ଲାଗିଲା । ଏଇଟା ଥିଲା ତାଙ୍କର ଗୋଟାଏ ନୂଆ ଅଭିଜ୍ଞତା । ପବନ କିନ୍ତୁ ତୀବ୍ର ନ ହେଇ ସମାନ ରହିଗଲା ।

ଯେତେ ବେଶି ସେମାନେ ଘରମୁହାଁ ହଉଥିଲେ ଡଙ୍ଗା ଦୁଇଟି ସେତେ ବେଶି ପାଖେଇ ଆସୁଥିଲେ କାରଣ ଜାଲଟା ତାଙ୍କ ପଛପଟକୁ ଫୁଲେଇ ଯାଉଥିଲା ଗୋଲ୍ଲ ହେଇ ।

ହଠାତ୍ ଗୋଟାଏ ଢେଉ ସମୁଦ୍ର ଭିତରୁ କାଳିଆ କ'ଣଗୋଟାଏ ଓପରକୁ ଉଠେଇଆଣି ମାଗୀର ଡଙ୍ଗା ମଙ୍ଗରେ ଏତେ ଜୋରରେ ମାଡ଼ିଦେଲା ଯେ ଡଙ୍ଗାର ମଙ୍ଗପଟ ପାଣି ଓପରକୁ ଟେକି ହେଇଗଲା । ମାଗୀ ଯଦିଓ ଡଙ୍ଗାକୁ ଜାବୁଡ଼ି ଧରିଥିଲା, ଲହଡ଼ି ଭିତରକୁ ଗଡ଼ିପଡ଼ି ସାଙ୍ଗେ ସାଙ୍ଗେ ତା' ଭିତରେ ବୁଡିଗଲା । ସରଳା ତ୍ରସ୍ତ ହେଇ ·ଚାହିଁରହିଥିଲା । ଅନ୍ୟ ଡଙ୍ଗାଟାର ତିନିଜଣଯାକ ନିଜ ଡଙ୍ଗାକୁ ଆଉ ଜାଲକୁ ଜାବୁଡ଼ି ଧରିଲେ  ମାଗୀ ବୁଡ଼ିଯିବା କାଣ୍ଡ ଏପର୍ଯ୍ୟନ୍ତ ଦେଖି ନ ଥିଲେ । କୂଳରେ ଠିଆହେଇ ଏସବୁ ଦେଖୁଥିବା ତିନିଜଣ ବୁଢ଼ା ରାଗରେ ଗର୍ଜିବାକୁ ଆରମ୍ଭ କରିଦେଲେ । ବୁଢ଼ୀମାନେ ଆହ୍ଲାଦିତ ହେଇ ପାଟିକରିବାକୁ ଲାଗିଲେ, ''ମୁଁ କହୁଥିଲି ନା ! ଠିକ୍ ହେଇଚି !'' ଗୋଟିଏ ଗାଧୋଉଥିବା ସାହେବାଣୀ, ଡଙ୍ଗାକୁ ଦେଖି, ତା' ପୁରୁଷ ସଙ୍ଗୀକୁ ଛାଡ଼ି ସମୁଦ୍ର ଭିତରକୁ ଧସେଇ ପଶି ଲମ୍ଫଦେଲା ।

ମାଗୀ ତା' ଡଙ୍ଗାରୁ ପନ୍ଦରରୁ କୋଡ଼ିଏ ଫୁଟ୍ ଦୂରରେ ପାଣି ଭାଙ୍ଗିଲା, ତା' ମୁଣ୍ଡ ଭାସିଉଠିଲା ଆଉ ପାଟିଏ ପାଣିକୁ ସେ ଫୁ' କରି ଛାଡ଼ି ଚାରିଆଡ଼କୁ ଚାହିଁ ତା' ଡଙ୍ଗାର ସ୍ଥାନ ନିରୂପଣ କରିନେଲା ଠିଆ ପହଁରା ମାରି । ଅନ୍ୟ ଡଙ୍ଗାଟା ସେତେବେଳକୁ ଏ ଘଟଣା ଦେଖିସାରିଥିଲା ଆଉ ସାନା ସେତେବେଳକୁ ପାଣିକି ଓହ୍ଲେଇ ସାରିଥିଲା କିନ୍ତୁ ତା' ଡଙ୍ଗାକୁ ଧରିରହି ନିରୀକ୍ଷଣ କରୁଥିଲା ।

ମାଗୀ ସେମାନଙ୍କ ଆଡ଼କୁ ହାତ ହଲେଇଲା ଆଉ ନିଜ ଡଙ୍ଗାଆଡ଼କୁ ପହଁରା ମାରିଲା । ସରଳା ପମ୍ପଦିଆ ଟିଉବ୍‌ଟିକୁ ରଖିଦେଇ ଆଶ୍ୱସ୍ତ ଭାବେ ହସି ମାଗୀ ବଢ଼େଇଥିବା ହାତକୁ ଜାବୁଡ଼ିଧରିଲା । ଦୋଳାୟମାନ ଡଙ୍ଗାରେ ଚଢୁଚଢୁ ମାଗୀ ହାତ ସାମାନ୍ୟ ରାମ୍ପୁଡ଼ି ହେଇଗଲା । ସେମାନେ ବର୍ତ୍ତମାନ ବଡ଼ ଲହଡ଼ିର ବିପଦପୂର୍ଣ୍ଣ ଇଲାକାରେ ପଶୁଥିଲେ । ଭରା ଜାଲର ଓଜନ ଟାଣି ଟାଣି ସେମାନଙ୍କ ଡଙ୍ଗା ଲହଡ଼ି ସାଙ୍ଗେ ଉଠୁଥିଲା ଆଉ ପଡୁଥିଲା ଲହଡ଼ି ପର ଖାଲୁଆ ପାଣିରେ । ମାଗୀ ଆଉ ସରଳା ମଙ୍ଗକୁ କୂଳଆଡ଼କୁ ରଖିପାରୁ ନ ଥିଲେ ଯେହେତୁ ଲମ୍ବଭାବରେ ଡଙ୍ଗା ଢିଙ୍କିପରି ଉଠ୍‌ପଡ୍ ହଉଥିଲା । ଅଚେତନ ଭାବରେ କୌଶଳଗୁଡ଼ିକ ମନେପଡ଼ିଗଲା ତାଙ୍କର । ସେମାନେ ଡଙ୍ଗାକୁ କୂଳ ସାଙ୍ଗେ ସମାନ୍ତରାଳ କରିନେଲେ । ଏମିତି କରିବା ଦ୍ୱାରା ଲହଡ଼ି ଚଟାପଟ୍ ଡଙ୍ଗାର ଫୁଟିକିଆ ପ୍ରସ୍ଥକୁ ପାରି ହେଇଯାଉଥିଲା ଓ ପୂରା ଡଙ୍ଗାର ଉଠପଡ଼ ସମାନ ଭାବରେ ହଉଥିଲା, ଢିଙ୍କିକୁଟିଲା ପରି ନୁହଁ, କିନ୍ତୁ ଏବେ ସେମାନେ ଅଳ୍ପ ପାଣିରେ ପହଞ୍ଚି ଯାଇଥିଲେ  ବୋଧେ ବେଳେ ଗଭୀର ହବ ।

ସାହେବାଣୀ ଏତେବେଳକୁ ମାଗୀ ସରଳାଙ୍କ ଡଙ୍ଗା ପାଖରେ ପହଞ୍ଚିଗଲା ଆଉ ସେମାନେ ତାକୁ ଡଙ୍ଗା ଓପରକୁ ଉଠେଇ ଆଣିଲେ । ଅନ୍ୟ ଡଙ୍ଗାରେ ସାନା ପାଣିରୁ ଡଙ୍ଗା ଓପରକୁ ଚଢ଼ିଯାଇଥିଲା । କୂଳରେ ଠିଆ ହେଇଥିବା ବୁଢ଼ାବୁଢ଼ୀମାନେ ଚୁପ୍

ହେଇଯାଇଥିଲେ । ଛୋଟପିଲାମାନେ ତାଳି ମାରୁଥିଲେ । ତାଙ୍କ ଭିତରେ ଡିଆଁମାରୁଥିଲା ରଙ୍ଗୁ ଯାହାକୁ ମାଗୀ ଭାରି ଭଲ ଲାଗୁଥିଲା ଆଉ ଯିଏ ମାଗୀ ପାଖେରେ ଯେତେ ସମୟ ସମ୍ଭବ ବିତେଇବା ପାଇଁ କାରଣ ଉଦ୍‌ଭାବନ କରିପାରୁଥିଲା, କିନ୍ତୁ ସେ'ତ ପୁରୀ ଚାଲିଯାଇଥିଲା ସକାଳେ । ଫେରିଲା କେତେବେଳେ ? ଡଙ୍ଗାରେ ବସିଥିବା ସାହେବାଣୀର ସାହେବ ପୁରୁଷବନ୍ଧୁ ଆଣ୍ଠୁଏ ପାଣିରେ ଠିଆହେଇ ଚାହିଁଥିଲା ଅସହାୟ ଭାବରେ ।

ତିନୋଟିଯାକ ମାଇପି ହସିଦେଲେ । ଯେମିତି ସେମାନେ ପରସ୍ପର ସହ କଥାବାର୍ତ୍ତା ହେଇଯାଇଥିଲେ । ସାହେବାଣୀ କୂଳଆଡ଼କୁ ତା'ହାତ ହଲାଇଲା, ସଙ୍କେତରେ କହୁଥିଲା, ''ସାବଧାନ, ଆମେ କୂଳକୁ ଆସୁଚୁ ।''

ମାଗୀ ଓ ସରଳା ହସିଲେ ସତେଯେମିତି କହୁଥିଲେ

''ଆମେ ତ ନିଶ୍ଚେ କୂଳକୁ ଆସୁଚୁରେ ପିଲେ ।''

ସେମାନେ ଯିମିତି ପାଖକୁ ଆସିଗଲେ ସରଳା ଡଙ୍ଗାରୁ ପାଣିକି ଓହ୍ଲେଇ ପଡ଼ିଲା, କିନ୍ତୁ ବର୍ତ୍ତମାନ ସେମାନେ ଆଗେଇଲା ବେଳେ ଲହଡ଼ି ଏତେ ଉଚ୍ଛୃଙ୍ଖଳ ଥିଲା ଯେ ସେମାନେ ଡଙ୍ଗାକୁ ଜାବୁଡ଼ି ଧରିବା ଛଡ଼ା ଆଉ କିଛି କରିପାରୁ ନ ଥିଲେ । ସରଳା ପାଣିରେ ଥିଲାବେଳେ ଉଠପଡ଼ ହଉଥିବା ମଙ୍ଗରେ ତା' ମୁଣ୍ଡ ବାଡ଼େଇ ହେଇଗଲା । ମାଗୀ ଡଙ୍ଗାକୁ କୁଣ୍ଢେଇ ଧରିଥିବା ବେଳେ ତା'ଛାତି ରଞ୍ଜୁଡ଼ି ହେଇଯାଉଥିଲା । ସାହେବାଣୀ ବିଭିନ୍ନ ଭାବେ ପାଟି କରୁଥିଲା କିନ୍ତୁ ସାହସ କରି ଡଙ୍ଗାକୁ ଜାବୁଡ଼ି ଧରି ବସିଥିଲା । ଅନ୍ୟ ଡଙ୍ଗାଟି ଠିକ୍ ଭାବରେ ଚାଲିଥିଲା ଆଉ ତାଙ୍କଠାରୁ ସାମାନ୍ୟ ଆଗେଇଥିବାର ମାଗୀ ଦେଖିଲା । ଯାମିନୀ ଆଉ ସାନା ଡଙ୍ଗାରୁ ଡେଇଁପଡ଼ିଥିଲେ ଓ ଡଙ୍ଗାକୁ ବାଟ କଢ଼ଉଥିଲେ । ମାଗୀ ଏବେ ଛାତିଏ ଯାଏ ପାଣିକି ଡେଇଁ ପଡ଼ିଲା । ଏଥର ଏମିତି ପାଣିରୁ ଡଙ୍ଗାକୁ ମୁହେଁଇଲେ ଭଲ ହବ । ସାହେବାଣୀ ଲମ୍ବା ଡାଇଭ୍ ମାରି ପାଣିକୁ ଡେଇଁଲା ଆଉ ପହଁରି ଆସି ତାଙ୍କୁ ସାହାଯ୍ୟ କରିବାକୁ ଲାଗିଲା । ମାଗୀ ସରଳାକୁ ଜାଲ ଦଉଡ଼ିକୁ ଅଣ୍ଟାରେ ବାନ୍ଧି କୂଳକୁ ଯିବାକୁ କହିଲା । ସରଳା ସେମିତି କଲା କିନ୍ତୁ ସେ ଖୁବ୍ ଧୀରେ ଧୀରେ ଆଗେଇ ପାରୁଥିଲା କାରଣ ପଛରୁ ଭାରୀ ଜାଲଟା ଖୁବ୍ ଜୋର୍‌ରେ ଘୋଷାରି ନଉଥିଲା ଆଉ ତା' ପେଟ କଟିଗଲାପରି ଲାଗୁଥିଲା, କିନ୍ତୁ ଏ ଅନୁଭୂତିଟା ଖୁବ୍ ଭଲ ଲାଗୁଥିଲା ତାକୁ, ଯିମିତି ସେ ଜୀବନରେ ପ୍ରଥମଥର ପାଇଁ ପ୍ରକୃତରେ କିଛି କରୁଚି । ମାଗୀ ସାହେବାଣୀକୁ ସରଳା ପାଖକୁ ଯିବାକୁ କହିଲା । ଅନ୍ୟ ଡଙ୍ଗାରେ ଯୂଇ ସରଳାର ଉଦାହରଣକୁ ଅନୁସରଣ କଲା ଓ ଯାମିନୀ ସାନାକୁ ଯୂଇକୁ ସାହାଯ୍ୟ କରିବାକୁ ପଠେଇଲା । ବର୍ତ୍ତମାନ ଜାଲର ଗୋଟିଏ ମୁଣ୍ଡ ଧରିଥିଲେ ସରଳା ଆଉ ସାହେବାଣୀ, ଅଳ୍ପଦୂରରେ ଆରମୁଣ୍ଡଟା ଧରିଥିଲେ ଯୂଇ ଆଉ ସାନା ।

ଜାଲଟା ପେଟେଇ ରହିଥିଲା ସମୁଦ୍ର ଭିତରେ । ବଡ଼ କଷ୍ଟରେ ଏ ଚାରିଜଣ ପାଦେ ପାଦେ କରି ଟାଣି ଭିଡ଼ି ହେଇ ଆଗକୁ ବଢୁଥିଲେ ।

ଏଣେ ଏକହାତିଆ ଭାବେ ଡଙ୍ଗାଟିକୁ ବଶ କରିବା କାଠିକର ପାଠ ଥିଲା । ମାଗୀ ଭାବିଲା ମଙ୍ଗରେ ଦଉଡ଼ିର ଫାଶଟିଏ ପକେଇ ଦଉଡ଼ିର ଆର ମୁଣ୍ଡକୁ କୂଳକୁ ଟାଣିଲେ ସୁବିଧା ହବ । ସେ ଆସନ୍ତାକାଲି ପାଇଁ ଏ ବୁଦ୍ଧି ମୁଣ୍ଡରେ ଚିପି ରଖିଲା । କାଲିଟା କିନ୍ତୁ ଆରମ୍ଭ ହେଇ ଯାଇଥିଲା ସେମାନଙ୍କପାଇଁ ।

ଯେତେବେଳେ ଗାଁର ବୟସ୍କ ପୁରୁଷ ଓ ସ୍ତ୍ରୀମାନେ ପିଲାମାନଙ୍କୁ ଅନୁକରଣ କରି ତାଙ୍କୁ ସାହାଯ୍ୟ କରିବାକୁ ସମୁଦ୍ର ଭିତରକୁ ପଶିଆସିଲେ କୂଳରୁ ଗୋଟାଏ ଚିତ୍କାର ଶୁଭିଲା । ସେମାନେ ଯେତେବେଳେ ସରଳା ପାଖରେ ପହଞ୍ଚିଲେ ସାହେବାଣୀ ଉତ୍ତେଜିତା ହେଇ ଚିତ୍କାର କଲା

''ନୋ ମେନ୍, ନୋ ମେନ୍ ।''

କିନ୍ତୁ ସମସ୍ତେ ଉତ୍ସାହୀ ଭାବରେ ସାହାଯ୍ୟ କରିବାକୁ ମାଡ଼ିଯାଇଥିବାରୁ କେହି ତା' କଥା ଶୁଣିଲେନି କି ବୁଝିଲେନି । ହେଲେ ଯେମିତି ଜାଲ ଦଉଡ଼ି କୂଳକୁ ତାଳଦେଇ ଟଣାଗଲା ସ୍ୱତଃପ୍ରବୃତ୍ତ ଭାବେ ଟାଣିବା ସାଙ୍ଗକୁ ଗୋଟାଏ ଘୋଷା ବୋଲାହେବାକୁ ଲାଗିଲା, ''ନୋ ମେନ୍ ।'' ପୁରୁଷ, ସ୍ତ୍ରୀ, ପିଲା, ସମସ୍ତେ ଗାଇବାକୁ ଲାଗିଲେ, ''ନୋ ମେନ୍, ନୋ ମେନ୍ ।'' ଦଉଡ଼ି ଭିଡ଼ିହେଇ ଆସିଲା, ଜାଲ ଉଠିଆସିଲା ।

ସେଦିନ ଖୁବ୍ ମାଛ ପଡ଼ିଥିଲେ, ଅଧିକାଂଶ ଦିନଠୁଁ ଅଧିକ । ଝିଅମାନେ ଆତ୍ମହରା ଥିଲେ । ଏପରିକି ଗାଁର ବୁଢ଼ୀ ଡାହାଣୀମାନେ, ଯୋଉମାନେ ସବୁବେଳେ ଏ ଟୋକୀମାନଙ୍କ ପ୍ରତି ବିଷୋଦ୍‌ଗାର କରୁଥିଲେ, ମୁରୁକିହସା ଦେଲେ । ସମସ୍ତେ ମାଛଗଦା ପାଖରେ ଘେରି ଠିଆ ହେଇଥିଲେ, ଯାହା ଆଠ ଭାଗ ହେଇ ଥୁଆ ଯାଇଥିଲା । ମାଛ ଏବେବି ଫଡ଼ ଫଡ଼ ହଉଥିଲେ । ସେଥେରେ ଥିଲେ ଚାନ୍ଦି, ବେକ୍‌ଟି, ଟୁନା, କଣି, ଖଇଙ୍ଗା, ସବୁ ଦାମିକିଆ ଓ ଥିଲେ ସାର୍କ, ଇଲ୍, କାବେଲା, ମେଜି, ସାର୍‌ଡିନ୍, ପଲିପ୍ ।

ପାଞ୍ଚଟିଯାକ ଜଳଦସ୍ୟୁ ସମୁଦ୍ରର ଉପହାରକୁ ନେଇ ଖୁସୀ ଥିଲେ । ଏହା ପାଞ୍ଚ କ୍ୱିଣ୍ଟାଲ୍‌ଠୁ ଅଧିକା ଥିଲା ।

ଯୂଇ କହିଲା, ''ଆମେ ଏତେଗୁଡ଼ା ବିକିବା କିମିତି ? ଜମାରୁ ଦି'ଜଣ ଏଇଠିକା ଗରାଖ କିଣିବାକୁ ଆସିଚନ୍ତି ।''

''ସମସ୍ତେ ତ ଜାଣିଥିଲେ ଆଜି ମାଛ ଧରା ହଉନି ବୋଲି । ସାରା ଗାଁ ପୁରୀ ଯିବ ବୋଲି । ଆମେ ଖାଲି ମଜା ଦେଖିବା ପାଇଁ ମୁହଁ ମାରିଦବାକୁ ଆସିଥିଲୁ କାହିଁକିନା ଆମେ ଶୁଣିଲୁ ତମେ ଝିଅମାନେ ଡଙ୍ଗା ନେଇକି ଯାଇଚ ।''

"ତମେ କେତେ କିଣିବ ?" ମାଗୀ ପଚାରିଲା ।

"ଦାମ୍ ଠିକ୍ ଠାକ୍ ହେଲେ କୋଡ଼ିଏ କେଜି ।" ରମେଶ, ଯିଏକି ସେଇଠିକା ମାଛ ବିକାଳି, କିଣିବାର ଇଚ୍ଛା ନ ଥିଲା ଭଳିଆ ଜବାବ ଦେଲା, ଯିମିତି ଦାମ୍ କମ୍ ରହିବ ।

"ଆଉ ତମେ, ହରି ?"

"ସେତିକି, ଆଉ କେତେ । ଗୋପରେ ବେଶୀ ବିକ୍ରି ହବନି ।"

ପାଞ୍ଚଜଣଯାକ ହତୋତ୍ସାହ ଦିଶିଲେ । ତା'ପରେ ମାଗୀ ସାନାକୁ କଡ଼କୁ ଟାଣିନେଲା ।

"ଯଦି ଯାମଳା ରାଜି ହୁଅନ୍ତା, ସେ ସବୁ କିଣିପାରନ୍ତା ଆଉ ଭୁବନେଶ୍ୱରକୁ ନେଇ ଯାଆନ୍ତା । ଆମେ ନିଜେ ନିଜେ ଯଦି ଏଇଠୁ ନିମାପଡ଼ାଯାଏ ଖେଳେଇ ଯିବା କ୍ୱିଣ୍ଟାଲେ ବି ବିକ୍ରି କରି ପାରିବା କି ନାହିଁ । ତୁ ତାକୁ କାହିଁକି କହୁନୁ ? ସେ ତୋ କଥା ଶୁଣିବ ।"

"ସେ ଆଜି ଏଠି ନାହିଁ । ପୁରୀ ଯାଇଚି । ସେ ଇଲେକ୍‌ସନ୍‌ରେ ଠିଆ ହବ କହୁଚି, କିନ୍ତୁ ତା' ସୁପରଭାଇଜର୍ ଥିବ, ଆଉ ତା ପୁଅ, କୁନାର ମୋର ବି ଭଲ । ମୁଁ ଦେଖେ ।"

ସାନା ମୁହୂର୍ତ୍ତକରେ ଫେରିଆସିଲା ଆଉ କହିଲା, "କେହି ନାହାନ୍ତି ଖାଲି ତାଙ୍କ ମିନି ଟ୍ରକ୍‌ର ଡ୍ରାଇଭର ଅଛି । ସେ କହୁଚି ସେ ଆମକୁ ଭୁବନେଶ୍ୱର ନେଇ ଫେରେଇ ଆଣିବାକୁ ତିନିଶ' ଷାଠିଏ ନବ । ଆଉ ସେ କହୁଚି ସେ ମାଛ କିଣାଳିଙ୍କୁ ଜାଣିଚି ।"

ମାଗୀ ସାଙ୍ଗେ ସାଙ୍ଗେ ଠିକ୍ କରିନେଲା । "ଡାକ୍ ତାକୁ," ସେ କହିଲା ।

"ସେ ଟ୍ରକ୍ ଧରି ଆସୁଚି । ମୁଁ ବୁକ୍ କରିଦେଇଚି ।" ସାନା ତା ସୁନ୍ଦର ଦାନ୍ତ ଦେଖେଇ ସୁସ୍ଥ ହସଟିଏ ହସି କହିଲା ।

"ଟୋକେଇ ଯୋଗାଡ଼ କର ।"

"ଚାଲ ଲୁଗା ବଦଳେଇ ଦବା ।"

"ବରଫ କୋଉଠୁ ପାଇବା ?"

"ମୁଁ ଆଣିବି," ରଙ୍ଗୁ, ଯିଏକି ଚୁପ୍‌ଚାପ୍ ଠିଆହେଇ କଥାବାର୍ତ୍ତା ଶୁଣୁଥିଲା, ଦୌଡ଼ି ଆସି ଧଡ଼ପଡ଼ ହେଇ କହିଲା ଯିମିତି ତାକୁ କେହି ବାଧା ନ ଦିଅନ୍ତି : "ମୁଁ ମନ୍ଦିର ସାମ୍ନା ମୁରଲୀ ସର୍‌ବତ୍‌ବାଲାକୁ ଜାଣିଚି । ତା' ପାଖରେ ଗଦାଏ ବରଫ ଅଛି, ମୁଁ ଦେଖିଚି । ଚାଲ ମାଛତକ ଟୋକେଇରେ ପୂରେଇ ଦବା ଆଉ ଟ୍ରକ୍‌କୁ ଉଠେଇଦବା । ତା'ପରେ ତା ଦୋକାନଠିଁ ବରଫ ଦବା । ମୁଁ ତମ ସାଙ୍ଗେରେ ଯିବି । ତମର ଗୋଟାଏ ମର୍ଦ୍ଦ ଦରକାର ।"

ଦିହେଁ ତାଙ୍କର ଚାରିଫୁଟ୍ ଉଚ୍ଚାର ଏଗାରବର୍ଷିଆ ମର୍ଦ୍ଦକୁ ଦେଖି ମୁରୁକିହସା ଦେଲେ ।

"ତୁ ପରା ପୁରୀ ଯାଇଥିଲୁ ?" ମାଗୀ କହିଲା ।

‘‘ମୁଁ ଯାଇଥିଲି, ମୁଁ ଯାଇଥିଲି । ମୁଁ ପୁରୀ ଯାଇଥିଲି, କିନ୍ତୁ ମନ୍ଦିର ପାଖେରେ ମୁଁ ଟୁସୀକୁ ତମ କଥା ପଚାରିଲି ଆଉ ସେ କହିଲା ତମେ ସବୁ ମାଛ ଧରିବାକୁ ଯାଇଚ ଆଉ କାହାକୁ ନ କହିବାକୁ କହିଲା । ସେଇଠୁ ତ ମୁଁ ବସ୍‌ଷ୍ଟାଣ୍ଡକୁ ଦୌଡ଼ିଲି ଆଉ ପିପିଲିକୁ ବସ୍ ଧଇଲି, ସେଠୁ ଆଉଗୋଟାଏ ବସ୍‌ରେ କୋଣାର୍କ ଆସିଲି ଆଉ ସେଠୁ ଏଠିକି ଧାଇଁଲି ।’’

‘‘ବିଚରା ରଙ୍ଗୁ,’’ ମାଗୀ ତାକୁ ନିଜ ପାଖକୁ ଟାଣି ଆଣି କହିଲା ।

‘‘ତୁ ବସ୍‌ରେ ଆସିବାକୁ ପଇସା କୋଉଠୁ ପାଇଲୁ ?’’ ସରଳା ପଚାରିଲା ।

‘‘ମୋର ଅଛି, ମୋର ଅଛି, କିନ୍ତୁ ମୁଁ ଦେଇନି । ଚଳେଇଦେଲି, ମତେନିଅ ।’’

ଗାଁର ବୁଦ୍‌ବୁଦିଆ ଆଲୁଅ ଅନ୍ଧାର ଭିତରକୁ ସେମାନେ ଭୁବନେଶ୍ୱରରୁ ଫେରି ଆସିଲେ ରାତି ଦଶଟାରେ । ସବୁତକ ମାଛକୁ ସେମାନେ କ୍ୱିଣ୍ଟାଲ ପିଛା ୨୫୦୦ ଟଙ୍କାରେ ସାଢ଼େ ପାଞ୍ଚକ୍ୱିଣ୍ଟାଲକୁ ୧୩୭୫୦ ଟଙ୍କାରେ ବିକି ଦେଇଥିଲେ । କାମ୍‌ଦାକୁ ମିଶେଇ ସମସ୍ତଙ୍କୁ ଦି’ହଜାରେ ଓପରେ ଟଙ୍କା ମିଳିଲା । ଫେରିଲାବେଳେ ରଙ୍ଗୁ କହିବା ଅନୁସାରେ ସମସ୍ତେ ଢାବାରେ ପେଟ ପୂରେଇ ଖାଇ ଦେଇଥିଲେ ।

ଗାଁରେ ପହଞ୍ଚିଲା ବେଳକୁ ସେମାନେ କ୍ଳାନ୍ତ ହେଇଯାଇଥିଲେ ଏବଂ ଖୁସୀ ଥିଲେ । ଫେରିବା ବାଟ ସାରା ରଙ୍ଗୁ ଗୀତ ଗାଇଲା, ତାକୁ ମାଗୀ ଦେଇଥିବା ଶହେ ଟଙ୍କାକୁ ପକେଟ ଭିତେରେ ଭଲକରି ପୂରେଇ । ପୁରୀ ଯାତ୍ରାରୁ ଫେରିଥିବା ହାଲିଆ ଗାଁ, ତାଙ୍କୁ ଭକୁଆଙ୍କ ପରି ଚାହିଁଲେ ଯିମିତି ସେମାନେ ଆସିଚନ୍ତି ଅନ୍ୟ ଗ୍ରହରୁ ।

॥ ୮ ॥

## ବଡ଼ବଡ଼ିଆ ହେ ବଡ଼ବଡ଼ିଆ ଆଲୁଏ ଆସି ଅନ୍ଧାରେ ଯାଅ
## ବଡ଼ଦାଣ୍ଡରେ ଗଡ଼ଗଡ଼ୋଉ ଥାଅ ।

ପ୍ରଧାନମନ୍ତ୍ରୀ ବିଶ୍ୱରାଜ ସିଂହ, ପ୍ରତ୍ୟେକ ଦିନ ପରି ଜଳଖିଆ କରିସାରିବା ପରେ କାମ ଆରମ୍ଭ କରିବା ପୂର୍ବରୁ, ନିର୍ଦ୍ଧାରିତ ଅଧଘଣ୍ଟାଏ ନିଜ ପିଲାମାନଙ୍କ ସାଙ୍ଗେ କଟୋଉଥିଲେ । ଆଜି କଥାବାର୍ତ୍ତା ଠିକ୍ ଚାଲିପାରୁ ନ ଥିଲା । ପ୍ରଧାନମନ୍ତ୍ରୀଙ୍କ ଝିଅ ପ୍ରିୟା, ସତର୍କ ଆମୋଦରେ ଚାହିଁଥିବାବେଳେ ତାଙ୍କ ପୁଅ ଉଦ୍ଧବ ଉତ୍ୟକ୍ତ ହେଇଯାଇଥିଲେ ।

''ତୁମରି ଦଳ ଏସବୁ ଆରମ୍ଭ କରିଛି,'' ଶେଷରେ ଉଦ୍ଧବ କହିଲା, ''ସବୁଥିରେ ରାଜନୀତି ଭର୍ତ୍ତିକରି । ଗୁଣ୍ଡାମାନଙ୍କୁ ଦଳରେ ପୂରେଇ । ଆଉ ଏବେ ସେମାନେ ଧମକୋଉଛନ୍ତି, ଯଦି ତୁମେ ସେମାନଙ୍କ କଥା ନ ଶୁଣିବ ସେମାନେ ଅନ୍ୟ ଦଳକୁ ଚାଲିଯିବେ ।''

''ତା' ସତ । ହେଲେ ଏଠି ସବୁ ଏମିତି ହୁଏ । ତୁ ଏସବୁ ବୁଝିପାରିବୁନି କାରଣ ତୁ ବିଦେଶରେ ଖୁସୀରେ ରହୁଛୁ ।''

''ଆଉ କିଛି ଖୁସୀ ନାହିଁ । ସେମାନେ ଆଜିକାଲି ଭାରତୀୟମାନଙ୍କୁ ପିଟୁଚନ୍ତି । ଏମିତି ଆମ ସ୍ତ୍ରୀଲୋକମାନଙ୍କୁ ବି, ଡଟ୍‌ବଷ୍ଟର ପଟ୍‌ବଷ୍ଟର ସବୁ ।''

''ସେଥିରେ କିଛି ନୂଆ ନାହିଁ । ଏଠିତ ଆମେ ସବୁବେଳେ ସେଇ ଏକାକଥା କରୁଛୁ । ପୁରୁଣା ସଭ୍ୟତାର ବହୁତ ଦୃଢ଼ ପରମ୍ପରା, ଯାହା କିଛି ତୁ ଅନ୍ୟ କୋଉଠି ପାଇବୁ ? ସବୁ ଆମର ଏଠି ମହଜୁଦ ଅଛି । ଏଠି ଆମେ ସବୁବେଳେ କାହାରି ନା କାହାରିକୁ ପିଟୁଚୁ । ହରିଜନ ଆଦିବାସୀମାନଙ୍କୁ ପିଟୁଚନ୍ତି । ଅନ୍ୟାନ୍ୟ ପଛୁଆ ଜାତିମାନେ ହରିଜନଙ୍କୁ ପିଟୁଚନ୍ତି । ଯାଦବମାନେ ପଛୁଆ ଜାତିକୁ, ଠାକୁରମାନେ ଯାଦବମାନଙ୍କୁ, ମୁସଲମାନ ଓ ଶିଖ୍‌ମାନେ ହିନ୍ଦୁମାନଙ୍କୁ ପିଟୁଚନ୍ତି, ଆଉ ପୋଲିସ୍ ସମସ୍ତଙ୍କୁ ପିଟୁଚି ।''

ସେମାନେ ଆଜିକାଲି ଖାଲି ପିଟାପିଟି କରୁନାହାନ୍ତି ବାପା,'' ଉଦ୍ଧବ କହିଲା, ''ସେମାନେ ଆଜିକାଲି ସମସ୍ତେ ସମସ୍ତଙ୍କୁ ହାଣି ପକଉଚନ୍ତି । ତୁ ଇଉ.ଟି. ଅଷ୍ଟିନ୍ ଚାଲ୍, ପ୍ରିୟା । ମୁଁ ନାଁ ଲେଖାଇବା ପାଇଁ ସବୁ ବନ୍ଦୋବସ୍ତ କରିଦେବି ।''

''ସେ ସେଠି କ'ଣ କରିବ ?'' ପି.ଏମ୍. ପଚାରିଲେ । ''ସେ ସେଠି ପାଠ ପଢ଼ିବନି । ଖାଲି ପ୍ରତିବର୍ଷ ଲକ୍ଷେ ଦି' ଲକ୍ଷ ଟଙ୍କା ନଷ୍ଟ କରିବ ।''

''କିଛି ଅସୁବିଧା ନାହିଁ । ଆମ ପାଖରେ ବହୁତ ଅଛି ।''

ପି.ଏମ୍. ତାଙ୍କ ପୁଅଆଡ଼କୁ ଢଳିଯାଇ ଗୁପ୍ତଭାବରେ ଏକ୍‌ଦମ୍ ଚାପାଗଳାରେ ପଚାରିଲେ, ''ଏ ପର୍ଯ୍ୟନ୍ତ ଆମପାଖରେ କେତେ ଅଛି ?''

''ବୋଫର୍ସ ଅଂଶଧନ, ଗମ୍ଭାନୀଟଙ୍କା, ବୁଡ଼ାଜାହାଜ ଟଙ୍କା, ଏକ୍ସାଇଜ୍ ଛାଡ଼ ଟଙ୍କା, ଏସବୁ ମିଶି ପ୍ରାୟ ସାତଶହ କୋଟି ଟଙ୍କା ଅଛି ସ୍ୱିଜରଲ୍ୟାଣ୍ଡରେ । ଜମିଦାରୀ ଟଙ୍କା ଆଉ ସୁନା, ଯେଉଁତକ ବାହାରକୁ ସ୍ମଗଲ୍ କରି ନେଇଚେ, ଏ ସବୁର ପରିମାଣ ତିନିଶ' କୋଟି ଯାହା ସେଣ୍ଟ୍ କିଟ୍‌ସ୍‌ରେ ଥିଲା, କିନ୍ତୁ ବର୍ତ୍ତମାନ ମୁଁ ତାକୁ ଖେଳେଇ ସାରା ପୃଥିବୀରେ ରଖିଦେଇଚି ଯେମିତି କେହି ବି ତାକୁ କଦାପି ଖୋଜି ପାଇବନି ।''

''ତା ହେଲେ ପ୍ରିୟା କିଛି ବର୍ଷ ପାଇଁ ଯାଇପାରିବ,'' ସେ ଅତ୍ୟନ୍ତ ଦୁଃଖର ସହ କହିଲେ, ''ତାକୁ ନେଇଯାଅ ।''

ସେ ବହୁତ ସ୍ନେହପୂର୍ଣ୍ଣ ଦୃଷ୍ଟିରେ ତାଙ୍କ ଝିଅକୁ ଚାହିଁଲେ । ତାଙ୍କ ଆଖିରେ ଲୁହ ଭର୍ତ୍ତି ହେଇ ଚିକ୍‌ଚିକ୍ କରୁଥିଲା । ତାଙ୍କ ଓଠ କଡ଼ ଅଳ୍ପ କମ୍ପିଉଠିଲା ।

''ମୁଁ ଯିବିନି,'' ପ୍ରିୟା କହିଲା । ''ମୁଁ ତୁମକୁ ଏକା ଛାଡ଼ି କିମିତି ଚାଲିଯିବି ଏ ସମୟରେ ? ମା ଛାଡ଼ି ଚାଲିଗଲେ । ଏଠି ବିଭିନ୍ନ ପ୍ରକାରର ଘଟଣା ସବୁ ଘଟୁଚି ଆକାଶରେ, କ'ଣ ବୋଲି କେହି ବୁଝିବି ପାରୁ ନାହାନ୍ତି ! ମୁଁ ତୁମର ସବୁ ଟପ୍ ସିକ୍ୟୁରିଟି ରିପୋର୍ଟ ପଢ଼ିସାରିଚି । ତା ଛଡ଼ା ମୁଁ ଆମ ପରିବାରର ଧାରାକୁ ବନ୍ଦ କରିଦେବାକୁ ଚାହୁଁନି । ମୁଁ ବଲିଆ ନିର୍ବାଚନ ମଣ୍ଡଳୀ ଦେଖାଶୁଣା କରିଆସିଚି ତେଣୁ ମୁଁ ଆସନ୍ତା ନିର୍ବାଚନରେ ଟିକେଟ୍ ଚାହୁଁଚି ।''

ପି.ଏମ୍. ଦୀର୍ଘଶ୍ୱାସ ନେଲେ । ସେ ପଚାରିଲେ, ''ଯଦି ତୁ ମୋ ନିର୍ବାଚନ ମଣ୍ଡଳୀ ନେଇଯିବୁ ତେବେ ମୁଁ କୁଆଡ଼େ ଯିବି ?''

''ଓଃ, ତୁମେ ଗୋଟାଏ ସୁରକ୍ଷିତ ଜାଗା ଓଡ଼ିଶା, କି କର୍ଣ୍ଣାଟକ କି ଆନ୍ଧ୍ର କି ଅନ୍ୟ କୋଉ ଜାଗାରେ ଖୋଜିନବ ।''

''ଓଡ଼ିଶା ନୁହେଁ, କିନ୍ତୁ ମୁଁ ଗୋଟିଏ ଜାଗା ଖୋଜି ପାଇଯିବି । ମୁଁ ଖାଲି ଚାହୁଁଚି ଯେ ଉଦ୍ଧବ ରାଜି ହେଇ ଫେରିଆସୁ ଆଉ ଲଢୁ । ସେ ବଲିଆ ନେଇପାରନ୍ତା ।''

''ନା ବାପା, ମୁଁ ଅଷ୍ଟିନ୍‌ରେ ଠିକ୍ ଅଛି । ଫଷ୍ଟ୍ ନ୍ୟାସନାଲ୍ ମତେ ଉଚିତ ସମ୍ମାନ ଦଉଚି । ପିଲାମାନେ ସ୍କୁଲ କଲେଜ ଯାଉଚନ୍ତି । ସେମାନେ ଫେରି ଆସିବାକୁ ଚାହାନ୍ତିନି ।''

''ଉମା, ତୋ ସ୍ତ୍ରୀ, ଆଦୌ ଚାହୁଁ ନ ଥିବ । ସେ କ'ଣ ପାଇଁ ମତେ ବିରୋଧ କରୁଛି ମୁଁ ଜାଣେନି । ଠିକ୍ ଅଛି । ଯଦି ସେଠି ଖୁସୀରେ ଅଛୁ, ତେବେ ଆଉ ଅଧିକା କ'ଣ ଦରକାର ?''

''ବାପା ଏତେ ସକାଳୁ କୁଁକାଁ ନାହିଁ,'' ପ୍ରିୟା କହିଲା । '' ମୁଣ୍ଡ ଟେକ ଆଉ ମାଡ଼ିଚାଲ । ସେ ଫେରି ନ ଆସୁ ଯଦି ତା' ସ୍ତ୍ରୀ ସେ କଥା ଚାହୁଁନି । ମୁଁ ତ ରହିଚି, ମୁଁ ତୁମ ବାଟରେ ଚାଲିବି ।''

ପ୍ରଧାନମନ୍ତ୍ରୀ ପୁଣିଥରେ ଦୀର୍ଘନିଃଶ୍ୱାସ ନେଲେ, ତା' ପରେ ସେ ଜୋର୍‌ରେ ହାଇମାରିଲେ ଆଉ ତାଙ୍କ ବାହା ଦି'ଟା ଓପରକୁ ଟେକି ଭିଡ଼ି ମୋଡ଼ି ହେଇ ଉଠିଲେ । ସେ ତାଙ୍କ ହାତ ପ୍ରିୟାର ମୁଣ୍ଡ ଓପରେ ରଖି ପୁଅଆଡ଼କୁ ଚାହିଁଲେ ଆଉ ଅନୁଭବ କଲେ ଉଦ୍ଧବର ତାଙ୍କ ପ୍ରତି ଅନାସକ୍ତି ।

''କାମଦାମ ଅଛି,'' କହି ସେ କ୍ଳାନ୍ତ ମନରେ ଚାଲିଗଲେ ।

''କାଲି ରାତିଟାଯାକ ଜମା ଶୋଇ ନାହାନ୍ତି,'' ଉଦ୍ଧବ କହିଲା । ''ଖାଲି ଚକ୍ରାନ୍ତ, ଚକ୍ରାନ୍ତ, ଆଉ ଚକ୍ରାନ୍ତ, ଭୋର ଯାଏ, କେମିତି ଓଡ଼ିଶା, ଗୁଜୁରାଟ, ଆନ୍ଧ୍ର ଆଉ

ଏମ୍.ପି.ରୁ ନିଜ ମୁଖ୍ୟମନ୍ତ୍ରୀମାନଙ୍କୁ ତଡ଼ିବେ । ନିଜ ପାର୍ଟିର ! ଆଉ ଏବେ ଚାଲିଲେ ଇଲେକ୍‌ସନ୍ ବିଷୟରେ କାରସାଦି କରିବାକୁ ।''

''ସେଇଠୁଁ ?''

''ଆଉ ସେ ହାଇଦ୍ରାବାଦର ଜାତିଆଣ ଦଙ୍ଗା ଜମା ଜାତିଆଣ ନ ଥିଲା । ସେଇଟା ଏଇ ଘରେ ତିଆରି ହେଇଥିଲା, ଏଇଠୁଁ ପରିଚାଳିତ ହେଇଥିଲା ଆମ ଦଳ ଦ୍ୱାରା । କିଛି ବାଛବିଚାର ନ କରି ନିରୀହ ଲୋକମାନଙ୍କୁ ନିର୍ମମ ଭାବେ ହତ୍ୟା କରିବା ପାଇଁ ଭଡ଼ାରେ ଗୁଣ୍ଡାମାନଙ୍କୁ ପଠାଯାଇଥିଲା, ଯାହାଫଳରେ ଅରାଜକତା ବ୍ୟାପିଯିବ ଆଉ ଆଇନ୍ ଓ ଶୃଙ୍ଖଳାର ବିପର୍ଯ୍ୟୟର ଦ୍ୱାହି ଦେଇ ନିଜ ପାର୍ଟିର ଭେଙ୍କେଟ୍ ରେଡ୍ଡିଙ୍କୁ ବାହାର କରାଯିବ ।''

''କ'ଣ ଆଉ ସେ କରିପାରିବେ ? କର୍ଣ୍ଣାଟକର ମୁଖ୍ୟମନ୍ତ୍ରୀଙ୍କୁ ଇସ୍ତଫା ଦବାକୁ କୁହାଗଲା । ଲୋକଟା ତ ଏତେ ରୋଗାକ୍ରାନ୍ତ ଯେ ମାଲିସ୍ ପାର୍ଲର୍‌ରୁ ବାହାରକୁ ଆସିପାରୁନି, କିନ୍ତୁ ସେ ଦଳର ଅର୍ଡ଼ରକୁ ମାନି ଇସ୍ତଫା ଦେଲା ନାହିଁ ଆଦୌ । ଦଳର ସମ୍ମାନ ତ ଗଲା, ବାପାଙ୍କର ବି ମୁହଁ ରହିଲାନି । ପୁଣି ଏବେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ହବ । ଓଡ଼ିଶା, ଆନ୍ଧ୍ର, ମଧ୍ୟପ୍ରଦେଶ, ଗୁଜୁରାଟ ସେମାନଙ୍କର ଗୋଟାଏ ଅଲଗା ବୈଠକ ଡକେଇ ବିରୋଧୀ ଦଳକୁ ସମର୍ଥନ କରିବାକୁ ଗୁପ୍ତ ଯୋଜନା କରୁଛନ୍ତି । ସେଗୁଡ଼ାଙ୍କୁ ତ ଡମକୁ କାଢ଼ିବାକୁଇ ପଡ଼ିବ ।''

''ନିରୀହ ଲୋକମାନଙ୍କୁ ମାରିବାକୁ କିମିତି ଭଡ଼ାଟିଆ ଗୁଣ୍ଡାମାନଙ୍କୁ ପଠାଉଚ ମ ? ତୁମ ନିଜ ଲୋକମାନଙ୍କୁ ! ପଞ୍ଜାବର ଶିଖ୍ ଆଉ କାଶ୍ମୀରର ମୁସଲମାନମାନଙ୍କ କାମ ଅପେକ୍ଷା ଯେତ ଆହୁରି କଦର୍ଯ୍ୟ !''

''ତୁମେ ସେସବୁ କଥା ବୁଝିପାରିବନି । ଆମେରିକା ଫେରିଯାଅ ଆଉ ଭାଉଜଙ୍କ କଥାକୁ ଶିରୋଧାର୍ଯ୍ୟ କରି ରୁହ ।''

''ସିଟ୍ !''

''ସେ ସିଟ୍ ଫିଟ୍ ମତେ ଶୁଣାଅନି । ମୁଁ ବି ସିମିତି ପଦେ ଦି'ପଦ ଶୁଣେଇଲେ ମୁହଁ ବନ୍ଦ ହେଇଯିବ ।''

ପି.ଏମ୍. ବିରକ୍ତିରେ ଉଷା ଅଗ୍ରୱାଲଙ୍କୁ ଚାହିଁଲେ, ''କିନ୍ତୁ ସାର୍, ଆନ୍ଧ୍ର ଅକ୍ତିଆରକୁ ଆସିଯାଇଚି । ମୁଖ୍ୟମନ୍ତ୍ରୀ ଇସ୍ତଫା ଦେଇଚନ୍ତି ।''

''ମତେ କହିନ କାହିଁକି ?'' ପ୍ରଧାନମନ୍ତ୍ରୀ ଖୁସୀ ହେଇଗଲେ । ''ଆଉ ଓଡ଼ିଶା, ଗୁଜୁରାଟ ଓ ଇଉ.ପି.ରୁ କ'ଣ ଆଉ ନୂଆ ଖବର ଅଛି ?''

‘‘ଇଉ.ପି.ରୁ ଭଲ ଖବର ଅଛି । ମୁହିମ୍ ହିନ୍ଦୀରେ ଏସ୍.ଓ.ଏସ୍. ପଠେଇଛନ୍ତି, ଆସନ୍ତା ନିର୍ବାଚନରେ ତୁମର ଅନୁଗ୍ରହ ଚାହିଁ । ଟଙ୍କାବି ଦବାକୁ ରାଜି ଅଛନ୍ତି ।’’

‘‘କାହିଁକି ? ଫ୍ରଣ୍ଟ୍ ସାଙ୍ଗେ ଆସନ ବୁଝାମଣା କଥା କ’ଣ ହେଲା ?

‘‘ମୁଁ ଠିକ୍‌ରେ ଜାଣିନି । ଆପଣଙ୍କ ଦଳ କହିବ । ମୁଁ ଯାହା ଶୁଣିଚି, ଯେହେତୁ ଫ୍ରଣ୍ଟ୍ ଅଛି ବ୍ୟାକରେ ଆଉ ହୋରାଇଜୋଣ୍ଟାଲ୍ ରାମ ମାଗୁଚି ପାର୍ଲାମେଣ୍ଟର ୯୦% ଆଉ ଆସେମ୍ବ୍ଲିର ୬୦%, ମୁହିମ୍ ଆପଣଙ୍କୁ ପଛପଟେ ଠିଆକରେଇବାକୁ ଖୋଜୁଚି ।’’

‘‘ତାଙ୍କ କଥା ଠିକ୍‌ରେ ବୁଝ । ଓଡ଼ିଶା ଓ ଗୁଜୁରାଟ ଖବର କ’ଣ ?’’

‘‘ଗୋବର୍ଦ୍ଧନ ପଟେଲ୍ ଗୋଟେ ନୂଆ ଦଳ ଗଢୁଚନ୍ତି । ସେ ଜାଣିଥିଲେ ଆପଣ ମେହେଟ୍ଟା ସମର୍ଥକମାନଙ୍କୁ ସିଟ୍ ଦେବେ ଆଉ ଫ୍ରଣ୍ଟ୍ ବହୁତ ଆସନ ମାଗୁଚି । ତେଣୁ ସେ ସେମାନଙ୍କ ସହ ମେଣ୍ଟ ଭାଙ୍ଗି ଦେଇ ନିଜେ ଦଳ ଗଢୁଚନ୍ତି । କିନ୍ତୁ, ଭଲ ଖବର ହେଲା, ଆପଣଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେ ଗୋଟିଏ ଶାନ୍ତି କମିଟି ପଠେଇଚନ୍ତି ତିନୋଟି ସୁଟ୍‌କେଶ୍‌ରେ, ଉପମୁଖ୍ୟମନ୍ତ୍ରୀ ପାରିଖଙ୍କ ତତ୍ତ୍ୱାବଧାନରେ ।’’

‘‘ଭଲ ହେଲା । ଏଥର ମୁଁ ତାକୁ ସିଧା କରିଦେବି । କିନ୍ତୁ ଓଡ଼ିଶା ଖବର କ’ଣ ? ପଟ୍ଟନାୟକ୍ ତ ଆସିଲାନି, ଟଙ୍କା ବି ପଠାଇଲାନି । ତା’ ମତଲବ କ’ଣ ? ବି.ବି.ସି.ରେ କିଛି ଖବର ଥିଲା କି ? ଓଡ଼ିଶାଟା କ’ଣ ଗୋଟେ ଅଲଗା ଦେଶ ହେଇଗଲା କି ? ସେ ଖାରବେଳଟା କିଏ ?’’

‘‘ବ୍ୟସ୍ତ ହୁଅନ୍ତୁନି । ବି.ବି.ସି.ର କ’ଣ ଆଉ କିଛି କାମ ନାହିଁ ?

‘‘ମଲହୋତ୍ରାଠୁ ଆଉ କିଛି ଖବର ଅଛି ?’’

‘‘ଓଃ ହଁ । ମୁଁ ଭୁଲିଯାଇଚି । ସେ ଆଜି ସୂଚନା ଦେଇଛି ଯେ ସେ ଆପଣଙ୍କ ଲୋକଙ୍କୁ ଖୋଜିପାଇଛି ଆଉ କେସ୍ ବି ତିଆରି କରୁଚି ।’’

‘‘ଏଇଟା ଭଲ ଖବର । ଏଥର ମୁଁ ସେ ପଟ୍ଟନାୟକର ଇହା ଫଟେଇ ଦେବି ।’’

‘‘ଅସମ୍ଭବ ।’’

‘‘କାହିଁକି ?’’

‘‘ପଟ୍ଟନାୟକ ପାଖରେ ଆପଣଙ୍କ ବିରୋଧରେ ତିନୋଟି ଲାଞ୍ଚ ମାମଲାର ପ୍ରମାଣ ଅଛି ।’’

‘‘ଶଳା ! ମୁଁ କ’ଣ କରିବି ?’’

‘‘ଆପଣଙ୍କ ରାଜନୈତିକ କମିଟିକୁ ପଚାରନ୍ତୁ । ସେମାନେ ସଭାକକ୍ଷରେ ଅପେକ୍ଷା କରିଚନ୍ତି ।’’

''କିଏ କିଏ ସବୁ ଆସିଅଛନ୍ତି ?''

''ମୋଗଲ ସାମ୍ରାଜ୍ୟର ବାବର, କ୍ରୀତଦାସ ବଂଶର ଗୁଲାମ ବନ୍ଦୀ, ନାନକ୍ ସମ୍ପ୍ରଦାୟର ଛୋଟା ସିଂ, ଆଦିବାସୀ ଗୋଷ୍ଠୀର ବିଖ୍ୟାତ କୁମାରୀ ସରୀନ ସାନ୍ତାଳ ଆଉ କିଛି ଅକିଞ୍ଚନ ଲୋକ ଯୋଉମାନଙ୍କ ଭିତରେ ଆପଣଙ୍କ ଭଲ ବନ୍ଧୁ, ପଛୁଆ ଶ୍ରେଣୀର ପଛୁଆ ବିଦ୍ରୋହ କରୁଥିବା ଘାସୱାନ୍ ଆଉ ବ୍ରାହ୍ମଣ ସମ୍ପ୍ରଦାୟର ଧୂର୍ତ୍ତ ତିୱାରୀ । ପୂରା ମହାଭାରତ ଗୋଷ୍ଠୀ ଅପେକ୍ଷା କରିଛନ୍ତି ।''

ପ୍ରଥମେ ପାରିଖକୁ ମୋ ପାଖକୁ ପଠାଅ ।''

ଚିମନ୍‌ଲାଲ୍ ପାରିଖ୍ ଆସି ପହଞ୍ଚି ଟେବୁଲ୍ ବୁଲି ପାଖକୁ ଆସି ପି.ଏମ୍.ଙ୍କୁ ପାଦଛୁଇଁ ପ୍ରଣାମ କଲେ ।

''ପାରିଖ୍ ସା'ବ କେମିତି ଅଛ ? ବସ । ବସ ।''

''ଭଲ ସାର୍ । ସି.ଏମ୍. ମଧ୍ୟ ତାଙ୍କର ଅତ୍ୟଧିକ ଆନୁଗତ୍ୟ ପ୍ରକାଶ କରିଛନ୍ତି ।''

''କେତେ ?''

''ତିନୋଟି । ନିଜସ୍ୱ । କେବଳ ଆପଣଙ୍କ ପାଇଁ ।''

''ତୁମେ କ'ଣ ଚାହୁଁଛ ?''

''ଆପଣଙ୍କ ସମର୍ଥକ ହବାକୁ ଅନୁମତି । କାହିଁକି ସେ ମେହେଟ୍ଟା ଓପରେ ଆପଣ ବିଶ୍ୱାସ କରୁଛନ୍ତି ? ତା' ନୀତିନିୟମର ରେକର୍ଡ୍ କ'ଣ ? ସେ ପାଞ୍ଚଥର ତା' ସ୍ୱୀକୃତି ପରିବର୍ତ୍ତନ କରିଛି ଆଉ ତିନିଥର ଦଳ ପରିବର୍ତ୍ତନ କରିଛି । ତା' ଓପରେ ବିଶ୍ୱାସ କରନ୍ତୁ ନାହିଁ ସାର୍ ।''

''ତୁମେ ତ ଚାରିଥର ଦଳ ପରିବର୍ତ୍ତନ କରିଚ ।''

''ମୁଁ କିନ୍ତୁ ସବୁବେଳେ ଆପଣଙ୍କ ସମର୍ଥକ ରହିଆସିଚି ଏବଂ ମୁଁ କେବଳ ଆପଣଙ୍କ ସହ ଦଳ ପରିବର୍ତ୍ତନ କରିଛି । ମୁଁ ସମ୍ପୂର୍ଣ୍ଣଭାବରେ ଆପଣଙ୍କ ପ୍ରତି ପ୍ରତିଜ୍ଞାବଦ୍ଧ ।''

''କିନ୍ତୁ ପାରିଖ୍‌ସା'ବ, ତୁମ ବସ୍ ମୋ ବିରୋଧରେ ଆନ୍ଧ୍ର, ମଧ୍ୟପ୍ରଦେଶ ଓ ଓଡ଼ିଶା ସାଙ୍ଗରେ ଗୁପ୍ତ ମନ୍ତ୍ରଣା କରୁଚନ୍ତି । ବର୍ତ୍ତମାନ ଆନ୍ଧ୍ରତ ତାଙ୍କ ହାତଛଡ଼ା ହେଇଗଲା । ଏମ୍.ପି. ତ ମୋର । ଓଡ଼ିଶା କଥା ମୁଁ ବୁଝିବି । ତାପରେ ତୁମ ବସ୍‌ଙ୍କର କ'ଣ ହବ ?''

''ପଟେଲ୍ ମୋ ବସ୍ ନୁହନ୍ତି । ଆପଣହିଁ ମୋର ବସ୍ । କ'ଣ କରିବାକୁ ହବ ମତେ କୁହନ୍ତୁ ।''

''ପରବର୍ତ୍ତୀ ନିର୍ବାଚନ ପରେ ମୁଖ୍ୟମନ୍ତ୍ରୀ ହବ ?''

''ଯଦି ଆପଣ ମତେ ଆଶୀର୍ବାଦ କରନ୍ତି ।''

''କେତେ ଜଣ ଏମ୍.ଏଲ୍.ଏ. ତୁମ ସହ ଅଛନ୍ତି ?''

''ପ୍ରାୟ ନବେଜଣ ।''

''ଶହେ ଛୟାଳିଶିରୁ ନବେ ଜଣ । କେତେ ଜଣକୁ ତୁମେ କିଣିପାରିବ ?''

''ଷାଠିଏ ।''

''କେତେ ଟଙ୍କାରେ ?''

''ଆନୁମାନିକ ଜଣକୁ କୋଡ଼ିଏ ଲକ୍ଷ ଟଙ୍କା ।''

''ଏତେ ସହଜ ନୁହେଁ । ପଟେଲ ବି କିଣିବାକୁ ଚାହିଁବ । ମେହେଟ୍ଟା ମଧ ଚେଷ୍ଟା କରିବ ।''

''ଆପଣଙ୍କ ଆଶୀର୍ବାଦ ରହିଲେ ନିର୍ବାଚନରେ ଆମେ ସେମାନଙ୍କୁ ହରାଇ ଦେଇପାରିବା ।''

''ତୁମେ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ନ କରାଇ ସି.ଏଲ୍.ପି. ଲିଡର ବଛାହେଇଯାଇ ପାରିବ କି ?''

''ନେତୃତ୍ୱ ପରିବର୍ତ୍ତନ ପାଇଁ ନବେ ଜଣ ଏମ୍.ଏଲ୍.ଏ.ଙ୍କ ଦସ୍ତଖତ ଥାଇ ଏଠି ଏକ ଦରଖାସ୍ତ ଆଣିଛି । ତୁରନ୍ତ ଜି.ସି.ଏଲ୍.ସି.ର ଗୋଟେ ବୈଠକ ଡକାଇବାକୁ ପଟେଲକୁ ଗୋଟିଏ ନିର୍ଦ୍ଦେଶନାମା ଜାରି କରିବାକୁ ମୁଁ ଆପଣଙ୍କୁ ଅନୁରୋଧ କରୁଛି ।''

''ହେଇଯିବ । ଚିଠି ନେଇଯାଅ ।''

''ଏବଂ ସାର୍, ଅଣୀଭାଗ ଆସନ ପାଇଁ ଦୟାକରି ମୋତେ ନାଁ ସୁପାରିସ କରିବାକୁ ଦିଅନ୍ତୁ । ବାକି ସବୁ ଆପଣଙ୍କର ।''

''ସତୁରି ତିରିଶ ।''

''ମାନିନେଲି ସାର୍ ।''

''ଯାଅ, ଆରାମ କର, ଦିଲ୍ଲୀ ଉପଭୋଗ କର । ପଟେଲ୍ ପାଇଁ ତୁମର ଗୁପ୍ତ ଚିଠି ଗୁଜୁରାଟ ଭବନରେ ତୁମ ପାଖରେ ପହଞ୍ଚିଯିବ ଏବଂ ଗୋଟାଏ କଥା ମନେରଖ ପାରିଖ୍ । ମୁଁ ପୁଣି ପଟେଲ୍ କିମ୍ବା ଅନ୍ୟମାନଙ୍କର ସେଇ ପ୍ରକାର ବ୍ୟବହାର ନେଇ ଚିନ୍ତା କରିବାକୁ ଚାହୁଁ ନାହିଁ । ରାଜନୀତି ପିଲାଙ୍କ ଖେଳ ନୁହେଁ । ଏଇଟା ଖୁବ୍ ଶକ୍ତ ଖେଳ । ବର୍ତ୍ତମାନ ଯାଅ ତୁମର ସୁଟ୍‌କେଶ୍ ସବୁ ଅତିଥିଭବନରେ ଓହ୍ଲାଇ ରଖ । ଚାବି ଏଠି ଦେଇଯାଅ ।''

ସଭା ଗୃହରେ ସମସ୍ତେ ପି.ଏମ୍.ଙ୍କୁ ଗମ୍ଭୀର ଭାବରେ ଚାହିଁ ରହିଥିଲେ ।

''ଗୋଟିଏ ରାସ୍ତା ଅଛି ।'' ବାବର କହିଲେ, ''ଶଳାଙ୍କୁ ମୂଳପୋଛ କରିଦବା । ସୈନ୍ୟ ଓ ପୋଲିସ୍‌କୁ ଲଗେଇ ତାଙ୍କୁ ଖତମ କରିଦବା ।''

''ତାହେଲେ ?'' ପି.ଏମ୍. ପଚାରିଲେ ।

''ତାହେଲେ ସେମାନେ ଭୋଟ ଦବାକୁ ଆସିବେ ନାହିଁ । ସେମାନଙ୍କର ଭୋଟ ଗଲା ।''

''ମୁଁ କିନ୍ତୁ ମତ ଦେଉଛି,'' ଗୁଲାମ ବନ୍ଦୀ କହିଲେ, ''ସୈନ୍ୟ ଓ ପୋଲିସ୍ ପରିବର୍ତ୍ତେ, ଯେହେତୁ ଆମେ ତାଙ୍କୁ ବ୍ୟବହାର କରିପାରିବା ନାହିଁ, କାରଣ ବିହାରରେ ଆମ ପାର୍ଟିର ସରକାର ନାହିଁ, ଏ ଶଳା ଆଦିବାସୀମାନଙ୍କୁ ଖତମ କରିବା ପାଇଁ ଆମେ ଠାକୁର୍‌ମାନଙ୍କୁ କାମରେ ଲଗାଇପାରିବା ।''

''କ'ଣ !!'' ସରୀନ୍ ସାନ୍ତାଳ ଚିତ୍କାର କରିଉଠିଲେ, ''ତୁମେ ଆମକୁ ଶଳା ଆଦିବାସୀ କହିପାରିବ ନାହିଁ, ତୁମେ ଛେଳି-ଦାଢ଼ିଆ ମୁସଲମାନ ।''

''ବନ୍ଦକର, ବନ୍ଦକର,'' ପ୍ରଧାନମନ୍ତ୍ରୀ ପାଟି କଲେ । ''ତୁମ ନିଜ ନିଜ ଭିତରେ ଝଗଡ଼ା କରି ଏସବୁ କ'ଣ କରୁଛ ?''

''ସେ ଆମକୁ ଗାଳିଗୁଲଜ କରିପାରିବନି,'' ବନ୍ଦୀ ଓ ବାବର ଏକସ୍ୱରରେ ପାଟି କରିଉଠିଲେ, ତାଙ୍କ ସାଙ୍ଗକୁ ଇମାମ୍ ଆଲୁବୁଖାରା ବି ମିଶିଗଲେ ।

''ସେ ଆମକୁ କ'ଣ କ'ଣ କହିଲା ?'' ଇମାମ୍ ପଚାରିଲେ ।

''ତୁମେ ବି ଆମକୁ ଗାଳିଦେଇ ପାରିବନି,'' ସାନ୍ତାଳ କହିଲେ ।

''ସେ କ'ଣ ଇମିତି କହିଦେଲେ କି ?'' ପାଶଓ୍ୱାନ ପଚାରିଲେ ଯୁଦ୍ଧରେ ଧସେଇ ପଶି । ''ସେତ ଖାଲି 'ଶଳା' ବୋଲି କହିଲେ । ଶଳାଟା ତ....''

''ତୁମେ ବି ମତେ ଶଳା ବୋଲି କହୁଛ ?''

''କିନ୍ତୁ ଏଥିରେ କ'ଣ ଖରାପ କଥା ରହିଲା ?''

''ତାହେଲେ ତୁମେ ମୋତେ ଶଳା ବୋଲି କହୁଚ ।''

''ବହୁତ ହେଇଗଲା,'' ପ୍ରଧାନମନ୍ତ୍ରୀ କହିଲେ । ''ଆରେ ବାବା ଏକାଠି ହେଇ ଠିକ୍ କଥା ଓ ଯୁକ୍ତିଯୁକ୍ତ କଥା ଚିନ୍ତା କର । ବର୍ତ୍ତମାନ ଆମର ଲକ୍ଷ୍ୟ କ'ଣ ? ଭାରତକୁ ଦଖଲ କରିବା । କୋଉଠି ଆମେ ଲଢ଼ିବା ? ସାରା ଭାରତରେ । କି ପ୍ରକାର ଯୁଦ୍ଧ ? ରାଜନୈତିକ ଭୋଟ ଯୁଦ୍ଧ । କି ପ୍ରକାର ହତିଆର ? ହେଁ ? କି ପ୍ରକାର ଅସ୍ତ୍ରଶସ୍ତ୍ର ? ଭାଷଣ, ପୋଷ୍ଟର, ପ୍ରତିଶ୍ରୁତି, ଇସ୍ତାହାର, ଟଙ୍କା ଆଉ ମଦ ।''

''ଆମେ ଢେର୍ ଭାଷଣ ଦେଇପାରିବା ।'' ଛୋଟା ସିଂହ ନିଜ ଦାଢ଼ିକୁ କୁଣ୍ଡାଇ କହିଲେ ।''ଇମିତିକି ହସ କଥା ବି କହିପାରିବା ।''

''ଅନ୍ୟମାନଙ୍କଠାରୁ ଆମକୁ ବହୁତ ଅଧିକ ପ୍ରତିଶ୍ରୁତି ଦବାକୁ ହବ,'' ମୌଲାନା ବୁଖାରା କହିଲେ ।

''ଆମକୁ ମଦ ଦୋକାନୀମାନଙ୍କୁ ଅଗ୍ରିମ ଟଙ୍କା ଦେଇ ରଖିବାକୁ ହବ,'' ବାବର କହିଲେ । ''ମୁଁ ଯଦି ଅଗ୍ରିମ ଟଙ୍କା ପାଇବି ତେବେ ମୁଁ ମୋର ସବୁ ଦୋକାନ ଆମ ଦଳ ପାଇଁ ବୁକ୍ କରି ରଖିଦେବି ।''

''ସବୁ କିଛି ଟଙ୍କା ଓପରେ ନିର୍ଭର କରୁଚି ।'' ସାନ୍ତାଳ କହିଲେ, ଯେ'କି ରାଗରେ ବହୁତ ସମୟ ଚୁପ୍ ହେଇଯାଇଥିଲେ ।

ତିଓ୍ୱାରୀ ଏ ପର୍ଯ୍ୟନ୍ତ କିଛି କହି ନ ଥିଲେ, ଶେଷରେ ଗଳା ସଫାକରି ନିଜ ଚୌକିଟିକୁ ଟେବୁଲ ଆଡ଼କୁ ସଶବ୍ଦେ ଟାଣିନେଇ ଟେବୁଲ ଓପରେ ହାତରଖି ଆଉଥରେ ଗଳାସଫା କଲେ ।

''ଠିକ୍ ଅଛି ତିଓ୍ୱାରୀ, ଯଥେଷ୍ଟ ହେଇଗଲା,'' ଘାଶଓ୍ୱାନ ପାଟିକରି ଉଠିଲେ ।

''କିନ୍ତୁ ମୁଁ ତ ଏ ପର୍ଯ୍ୟନ୍ତ କିଛି କହିନି ।''

''ମୁଁ କହୁଚି, ବହୁତ ହେଇଗଲା,'' ଘାଶଓ୍ୱାନ ଗର୍ଜିଉଠିଲେ । ''ତୁମେ ବହୁତ କହିଲଣି, ତୁମେ ହଜାର ହଜାର ବର୍ଷ ଧରି କହିଆସୁଚ....''

''ମତେ ତ ପଞ୍ଚାବନ ବି ହେଇନି ।''

''ଆଉ ଅଧିକା ନୁହେଁ,'' ପାଗଳପ୍ରାୟ ଘାଶଓ୍ୱାନ ଚିତ୍କାର କରିଉଠିଲେ, ''ଆଦୌ ନୁହେଁ, ଆଉ ନୁହେଁ, ଆଉ ନୁହେଁ, ଆଉ ନୁହେଁ, ଆଉ ନୁହେଁ, ଆଉ ନୁହେଁ, ଆଉ ନୁହେଁ....''

''ଚୁପ୍ ହେଇଯାଅ ଘାଶଓ୍ୱାନ,'' ପି.ଏମ୍. କହିଲେ ।

''ଆଦୌ ନୁହେଁ, ଆଦୌ ନୁହେଁ, ଆଦୌ ନୁହେଁ ବୋଲି ତୁମେ କ'ଣ କହୁଚ ?'' ତିଓ୍ୱାରୀ ରାଗରେ ଜଳୁଥିଲେ । ତାଙ୍କ ନାକ ଲାଲ ହେଇଯାଇଥିଲା, ତାଙ୍କ ଅନ୍ତଲ ପେଟ ଥରୁଥିଲା ''କି ଅପଗଣ୍ଡ କଥା ଯେ,'' ସେ କହିଲେ ।

''ତାକୁ ଦେଖ ! ତାକୁ ଦେଖ !'' ଘାଶଓ୍ୱାନ ନିଜ ଚୌକିଟାକୁ ପଛକୁ ଠେଲିଦେଇ ଉଠିପଡ଼ିଲେ । ''ସେ ଅବୈଧାନିକ ଭାଷା କହୁଛି, ପୁଣି ପି.ଏମ୍.ଙ୍କ ସାମ୍ନାରେ ।''

''ଆହା ଦେଖ । କିଏ ସାଧୁଭାଷା କଥା କହୁଚି ?'' ସାନ୍ତାଳ କହିଲେ । ''ସେ ମତେ ଶଳା କହି ଗାଳିଦେଲା । ସେ ମୋ ନାରୀତ୍ୱକୁ ଆଘାତ କଲା, ଆଉ ଖୋଜୁଚି କ'ଣ ନା ସାଧୁଭାଷା ।''

"ମୁଁ ତାଙ୍କ ନାରୀତ୍ୱକୁ ଆଘାତ କରିନି," ଘାଶଓ୍ୱାନ ରକ୍ଷାତ୍ମକ ଭାବରେ ଉତ୍ତର ଦେଲେ । "ମୁଁ କେତେବେଳେ ତାଙ୍କ ନାରୀତ୍ୱକୁ ଆଘାତ କଲି ?"

"କାଲି ରାତିରେ କ'ଣ କଲ ?" ସାନ୍ତାଳ ପରିହାସ କରି କହିଲେ ।

"କ'ଣ କାଲି ରାତି ? ମୁଁ କ'ଣ କିଛି କରିଚି ? ମୁଁ କାଲିରାତିରେ କିଛି କରିନି । ମୁଁ କରିଚି ? ମୁଁ କାଲିରାତିରେ କେମିତି କ'ଣ କଲି ? ମୁଁ ତ ଖାଲି ଢୁଲୋଉଥିଲି । ଦେବୀଲାଲ୍‌ଙ୍କ ପୁଅ ତାଙ୍କ ହରିଆଣା ଭବନ ରୁମ୍‌ରେ ଏତେ ସୋଡ଼ା ପାଣି ପିଆଇଦେଲେ ଯେ, ମୁଁ ବିହାର ଭବନରେ ପହଞ୍ଚିଲା ବେଳକୁ ଉବୁଟୁବୁ ହଉଥିଲି । ତା ଛଡ଼ା ଗତରାତି ତ ଗତରାତି ଥିଲା । ମୁଁ ତ ସରି କହିଲି । ରୁହ ରୁହ, ହଜାରିବାଗ ଡାକବଙ୍ଗଳା କଥା ଆଉ ଉଠାଅନି, ଅତୀତରେ ବହୁତ ବର୍ଷ ତଳେ ଘଟିଥିଲା । ଅତୀତକୁ ଭୁଲିଯିବା । ସେଥିରେ କ'ଣ ଅଛି ଅତୀତ ଘଟଣା ସବୁକୁ ଘୋଷାରି ବାହାର କଲେ କେବଳ ଅସୁବିଧା ହିଁ ସୃଷ୍ଟି ହେବ ।"

ତିଓ୍ୱାରୀ ମାଡ଼ିବସିଲେ : "ତୁମେ ହିଁ ତ ବିଗତ୍ କଥା ସବୁକୁ ଉଖାରୁଚ । ତୁମେ ଅତୀତରେ ଏ କଥା କରିଥିଲ, ତୁମେ ପୂର୍ବେ ସେ କଥା କରିଥିଲ, ତୁମେ ହଜାର ହଜାର ବର୍ଷ ଧରି କହୁଚ, ଲକ୍ଷ ଲକ୍ଷ ବର୍ଷ ଧରି ଖାଉଚ । ଆଉ ଏଇଟା ଯେତେବେଳେ ନିଜକୁ ଲାଗୁଚି, ସେତେବେଳେ କହୁଚ କ'ଣ ନା ଅତୀତକୁ ଭୁଲିଯିବା ।"

"ଦେଖ, ଦେଖ, ତା କଥା ଶୁଣନି । ସେ ପୁଣିଥରେ ଆରମ୍ଭ କଲାଣି । କଥାର ପେଞ୍ଚ ମୋଡ଼ା । ଆମେ କେମିତି ଅତୀତକୁ ଭୁଲିଯିବୁ ? ଆମେ ଅତୀତକୁ ଭୁଲିବୁ ନାହିଁ । ସେ ଆମକୁ ଲକ୍ଷ ଲକ୍ଷ ବର୍ଷ ଧରି ଶୋଷଣ କରି ଆସୁଚି । ବହୁତ ହେଇଗଲା, ତୁମେ ବହୁତ କହିଲଣି, ଲକ୍ଷେ ବର୍ଷ ଧରି କହିଲଣି.... ।"

"ତୁମେ ଏ କଥା ଆଗୁରୁ କହିସାରିଚ ବାବା," ତିଓ୍ୱାରୀ କହିଲେ ।

"ହଁ, ସେ ଏ କଥା ଆଗରୁ କହି ସାରିଚନ୍ତି," ସରୀନ୍ ସାନ୍ତାଳ କହିଲେ ।

"ଯେ କ'ଣ ? ମତେ ଶେଷ କରିବାକୁ ଦିଅ । ଆହୁରି ବହୁତ ଅଛି । ମୁଁ ଏ ପର୍ଯ୍ୟନ୍ତ ଆରମ୍ଭ ବି କରିନି । ମତେ କହିବାକୁ ଦିଅ । ମୁଁ କହେ ।"

"ଏ ପର୍ଯ୍ୟନ୍ତ ମୁଁ ସାତଥର ଶୁଣି ସାରିଲିଣି," ସରୀନ୍ ସାନ୍ତାଳ କହିଲେ । "ପୁରୁଲିଆ, ମୂଷାବଣି, ଚାଇଁବସା, ହଜାରିବାଗ, ଛତିଶଗଡ଼, ବିଳାସପୁର ଆଉ ରେଓ୍ୱାରେ ।"

"କ'ଣ ହେଲା ସେଇଠୁ ? ସେ ଚୁଟିଆ, କାନଫୋଡ଼ା, ପେଟୁଆ ବ୍ରାହ୍ମଣ ହଜାର ହଜାର ବର୍ଷ ପର୍ଯ୍ୟନ୍ତ କହିପାରିବ । ମୁଁ କିନ୍ତୁ ଆଠଥର ବି କହିପାରିବିନି ? କ'ଣ ଏ ସବୁ ?"

‘‘ଠିକ୍‌ଅଛି,’’ ଘାଶ୍ୱାନ ଆଡ଼କୁ ରାଗିକରି ଚାହିଁ ତିୱାରୀ କହିଲେ, ‘‘ତୁମେ ପଚାରିଲ, ତେଣୁ ମୁଁ ଠିକଣା ଜବାବ ଦେବି । ତମର ଶିଖିବା ସମୟ ଆସିଗଲା । ମୁଁ ତୁମ୍ଭକୁ ଶିଖେଇବି ।’’

‘‘ଦେଖ, ଦେଖ ତାକୁ, ସେ ମତେ ଧମକ ଦଉଚି । ତାଙ୍କୁ ଚୁପ୍ କରାଅ, ହେ ଭଗବାନ୍ ! ସେ ଧମକ ଦଉଚି । ଏଇଟା ଗୋଟାଏ ରାଜନୈତିକ ସଭା ନା ଗୁଣ୍ଡାମାନଙ୍କର ସଭା ? ମୁଁ ପ୍ରଧାନମନ୍ତ୍ରୀଙ୍କୁ କହୁଚି ଏସବୁ ବନ୍ଦ କରନ୍ତୁ । ତାକୁ ଟିକେ ଦେଖ, ମୁଁ କହୁଚି ।’’

‘‘ହଁ ମତେ ଦେଖ । ମତେ ଭଲଭାବରେ ଦେଖ ଆଉ ମୋ ମୁହଁରେ ଦୁଃଖ ଓ କଷ୍ଟର ରେଖାଗୁଡ଼ିକୁ ଦେଖ । ହଜାର ହଜାର ବର୍ଷ ଧରି ପୋଥି ପଢ଼ି ପଢ଼ି ଶୁଣି ଶୁଣେଇ ଆମେ ଆମ ଆଖିକାନ ନଷ୍ଟ କରିଛୁ । ବର୍ଷ ପରେ ବର୍ଷ, ଦିନ ପରେ ଦିନ, ଲିତା ପରେ ଲିତା ଧରି ଆମେ ପ୍ରକୃତିଠୁଁ ଜ୍ଞାନ ଆହରଣ କରିଛୁ । ପ୍ରତ୍ୟେକ ଜିନିଷକୁ ପ୍ରାଞ୍ଜଳ ଭାବେ ମନେ ରଖିଚୁ । ଯେ କେହି ବିଦ୍ୟାଶିକ୍ଷା ପାଇଁ ଆସିଚନ୍ତି ସମସ୍ତଙ୍କୁ ପ୍ରକୃତ ରୂପରେ ବିଦ୍ୟାଦାନ କରିଚୁ । କୃଷି, ରାଜ୍ୟଶାସନ, ଯୁଦ୍ଧକୌଶଳ, ଦର୍ଶନ, ଶିକ୍ଷା, ଜଳସେଚନ, ଔଷଧ, ଧର୍ମ, ମୃତ୍ତିକା ବିଦ୍ୟା, ଭାଷା, ଜନନ, ଯୌନ, ସାହିତ୍ୟ, ପ୍ରତ୍ୟେକ ଜିନିଷ ।’’

‘‘ତାଙ୍କୁ ଚୁପ୍ କରାଅ,’’ ଘାଶ୍ୱାନ ପାଟି କରି କହିଲେ । ‘‘ସେ ଗଲାକଥାକୁ ଦୋହରାଉଚି । ସେ ସବୁକଥା ସମସ୍ତଙ୍କୁ କହିଦବ । ଗଡ଼େଇପକେଇ ତାକୁ ହୋରାଇଜଣ୍ଟାଲ କରିଦିଅ । ମୁଁ କହୁଚି ତାକୁ ଅଟକାଅ । ନଚେତ୍....’’

କିନ୍ତୁ ତିୱାରୀ ତାଙ୍କୁ ଅବଜ୍ଞା କରି ପୁଣି ଆରମ୍ଭ କଲେ : ‘‘ଆଉ ଏ ସମାଜ ଆମକୁ କ'ଣ ଦେଇଚି ? ଜଙ୍ଗଲର କୁଡ଼ିଆ । ଜଙ୍ଗଲରେ ଆମେ ବଞ୍ଚିଥିଲୁ କିମିତି ? ଭିକମାଗି ଆଉ ଜଙ୍ଗଲର ଫଳମୂଳ ଘାସପତ୍ର ଖାଇ, ଯଦି ମିଳୁଥିଲା, ସରୀନ୍‌ର ପୂର୍ବପୁରୁଷଙ୍କ ପରି, ଯେତେବେଳେକି ମଣ୍ଡଳ ଘାଶୱାନଙ୍କ ପୂର୍ବପୁରୁଷମାନେ ସହର କି ଗାଁରେ ରହୁଥିଲେ, ଜମି ଚାଷ କରୁଥିଲେ, ଫସଲ ଭାଗ ନଉଥିଲେ, ସମସ୍ତ ପ୍ରକାର ସୁବିଧା ଉପଭୋଗ କରୁଥିଲେ ଆଉ ଘଞ୍ଚ ଜଙ୍ଗଲ ଭିତରେ ପଶିବାର ଦୁଃସ୍ୱପ୍ନ ବି ଦେଖୁ ନ ଥିଲେ । ସେମାନେ ତ ମଗଧରେ ଶାସନ କରୁଥିଲେ ଏବଂ ବହୁପତ୍ନୀ ରଖି ସୁଦ୍ଧା ଆହୁରି ଖୋଜୁଥିଲେ ।’’

‘‘ତା ପାଟି ଚୁପ୍ କରାଅ ନ ହେଲେ ମୁଁ ଭୋଟ ଦେବି ନାହିଁ,’’ ଘାଶ୍ୱାନ ପାଟିକରି ଉଠିଲେ । ‘‘ମୁଁ ଦଳ ପରିତ୍ୟାଗ କରିଦେବି ।’’

‘‘ମୁଁ ଆଜି ଚୁପ୍ ହେବି ନାହିଁ । ଯେ ସବୁ ଘାଶ୍ୱାନ ପାଶ୍ୱାନ୍, ସିଂ ଫିଙ୍ଗ୍, ଯାଦବ-ଗର୍ଦ୍ଦବମାନେ ସବୁ ଆମକୁ ବହୁତ ଦିନରୁ ଶୋଷଣ କରି ଆସୁଚନ୍ତି । ଆମେ

ଆଉ କରିବାକୁ ଦବୁ ନାହିଁ । ଅନେକ ଦିନରୁ ତୁମେ ଆମ ପିଠି ଥାପୁଡେଇ ଆମକୁ ଗୁରୁଜୀ ପଣ୍ଡିତଜୀ ବୋଲି ଡାକି, ପ୍ରଣାମ କରି ମୁଠାଏ ଖାଇବାକୁ ଦେଇ ତୁମ କଥା ଅନୁସାରେ ତୁମ କାମ କରିବା ପାଇଁ ଆମକୁ ପ୍ରବର୍ତ୍ତାଇଛ....''

''ବନ୍ଦ କର ଏ ବାଜେ କଥା ।'' ଘାଶ୍ୱାନ ଚିତ୍କାର କଲେ ।

''ଦୟାକରି, ଦୟାକରି, ନେତା ବନ୍ଧୁମାନେ,'' ଶେଷରେ ପି.ଏମ୍. ମଝିରେ ହସ୍ତକ୍ଷେପ କରି କହିଲେ । ''ଆମେ ସମସ୍ତେ....''

''ମତେ ତୁମେ 'ନେତା ବନ୍ଧୁ' ବୋଲି କୁହ ନାହିଁ ବିଶ୍ୱରାଜ ସିଂହ,'' ତିୱାରୀ ଉତ୍ତେଜିତ ହେଇ ଗର୍ଜିଉଠିଲେ । ''ତୁମେ ମଧ୍ୟ ଆମକୁ ଶୋଷଣ କରିଚ, ତୁମେ ଶାସକ ଦଳ ଲୋକ, ତୁମେ ଠାକୁର୍‌ମାନେ ଆଉ ରାଜପୁତ୍‌ମାନେ, ବଣିଆ ଆଉ ମୁସଲମାନମାନେ, ତୁମେ ଆମକୁ ଶାସନ କରି ଆମ ରକ୍ତ ଶୋଷି ସାରିଲଣି ।''

''ସେ ମୁସଲମାନ ବୋଲି କହିଲାକି ?'' ବୁଖାରା ପଚାରିଲେ ।

''ସେମିତି କହିପାରିବନି କେହି,'' ବାବର କହିଲେ, ''ଆମେ ଭାରତକୁ ମୁକ୍ତ କରିଚୁ....''

''କୋଉଥିରୁ ମୁକ୍ତ କରିଛ ?'' ତିୱାରୀ ପଚାରିଲେ ।

''ତା ବି ତୁମେ ଜାଣ ନାହିଁ ?'' ବୁଖାରା କହିଲେ, ''ଆମେ ଭାରତକୁ ମୁକ୍ତ କରିଚୁ.... ।'' ସେ ଚୁପ୍ ହେଇଗଲେ, ଟିକିଏ ଦ୍ୱନ୍ଦରେ ପଡ଼ିଗଲେ, ଆଉ ବାବରଙ୍କୁ ଧୀରେ ପଚାରିଲେ, ''ଆମେ ଭାରତକୁ କୋଉଥିରୁ ମୁକ୍ତ କରିଥିଲୁ ?''

ବାବର ବିରକ୍ତ ହେଲାପରି ଜଣାପଡୁଥିଲେ, କିନ୍ତୁ ବୁଖାରାଙ୍କ ପରି ଧାର୍ମିକ ଲୋକ ତାଙ୍କୁ ଅନୁରୋଧ କରିଥିବା କଥା ଭାବି ଖୁସୀ ହେଲେ । ତା ଛଡ଼ା ଜଣେ ସାମ୍ବାଦିକ ଭାବରେ ସେ ଗର୍ବିତ ଥିଲେ ଶବ୍ଦମାନଙ୍କୁ ଓଲଟପାଲଟ କରିଦବାରେ ।

ସେ ଚାପାଗଳାରେ ବୁଖାରାଙ୍କୁ କହିଲେ, ''ମୂର୍ତ୍ତିପୂଜା, ଅଜ୍ଞତା, ଗୋଷ୍ଠୀବାଦ ।''

ବୁଖାରା ହସିଲେ ଓ ଟିକିଏ ସନ୍ତୁଷ୍ଟ ହେଇ କହିଲେ, ''ଆମେ ଭାରତକୁ ମୂର୍ତ୍ତିପୂଜା, ଅଜ୍ଞତା, ଅକ୍ଷମତା ଏବଂ ଗୋଷ୍ଠୀବାଦରୁ ରକ୍ଷା କରିଚୁ ।''

''କ'ଣ !'' ତିୱାରୀ ପାଟି କରିଉଠିଲେ । ''ଏଠି ଏକାଠି ହେଇଥିବା ସବୁଲୋକଙ୍କୁ ତୁମେ ମୂର୍ତ୍ତିପୂଜକ ବୋଲି ଗାଳି ଦଉଚ ? ଯିମିତି ଏଇଟା ଗୋଟିଏ ଗର୍ହିତ ଅଶୌଚ କାମ । ପ୍ରାଚୀନ ଯୁଗର ସବୁ ବଡ଼ ବଡ଼ ସଭ୍ୟତାଗୁଡ଼ିକ ତେବେ ଅଶୌଚ ! ଇଜିପ୍‌ସିଆନ୍, ବାବିଲୋନିଆନ୍, ମେସୋପଟାମିଆନ୍, ଗ୍ରୀକ୍, ହରପ୍ପାନ୍, ହିନ୍ଦୁ ସମସ୍ତେ ଅଶୌଚ ! ଦେଖ ! ଏଇ ଦାଢ଼ିଆ ଆଲ୍ଲାବାଲା ତୁମ ଧର୍ମକୁ ଅପମାନିତ କରୁଚି !''

ବୁଖାରା ପୁଣିଥରେ ଦ୍ୱିଧାରେ ପଡ଼ିଲେ । ସେ ରାଗିକରି ବାବରଆଡ଼କୁ ଚାହିଁଲେ, କିନ୍ତୁ ବାବର, ତାଙ୍କ ଟେବୁଲ ଓପରେ ପଡ଼ିଥିବା କେତେକ କାଗଜପତ୍ରରେ ନିଜକୁ ଗଭୀର ଭାବେ ବୁଡ଼ାଇ ରଖିଥିବା ପରି ଜଣା ପଡୁଥିଲେ ।

ବୁଖାରା କହିଲେ, ''ମୁଁ ଏ କଥା କହି ନ ଥିଲି...''

''ଆଉ ସେ କହୁଚି ଯେ ତୁମେ ସମସ୍ତେ, ଠାକୁର୍‌ମାନେ, ରାଜପୁତ୍‌ମାନେ ଆଦିବାସୀମାନେ ଆଉ ଘାଶ୍‌ୱାନ ଯୋଉମାନେ ଭାରତର ଶାସକ ଥିଲେ, ସେମାନେ ଅଜ୍ଞାନୀ ଆଉ ଅକ୍ଷମ । ଅଗାଡ଼ି, ମୂର୍ଖ, ଅପଗଣ୍ଡ, ଏମିତିକି ପି.ଏମ୍. ମଧ୍ୟ ।''

''କ'ଣ !'' ସରୀନ୍ ଚିତ୍କାର କରିଉଠିଲେ । ''ତୁମେ ନାରୀ ନିର୍ଯ୍ୟାତକ, ଜବରଦସ୍ତି ଧର୍ମ ପରିବର୍ତ୍ତନକାରୀ, ତୁମେ ମୋ ପୂର୍ବପୁରୁଷମାନଙ୍କୁ ମୂର୍ଖ ଆଉ ଅକ୍ଷମ କହିବାକୁ ସାହସ କରୁଚ ! ତୁମେ ଜାଣିଚ ବାଘୁଣୀର କେତେଟା ନିଶ ଅଛି ?''

ଶୀତତାପ ନିୟନ୍ତ୍ରିତ ସଭାଗୃହରେ ଆରାମରେ ବସିଥିଲେ ବି ବୁଖାରାଙ୍କର ପରସ୍ତେ ଝାଳ ବୋହିଗଲା । ଏଥର ସେ ସିଧା ବାବରଙ୍କୁ ଦୋଷାରୋପ କରିବା ଦୃଷ୍ଟିରେ ଚାହିଁଲେ କାରଣ ସେଇ ହିଁ ତାଙ୍କୁ ଏ ଅଡୁଆରେ ପକେଇଥିଲେ, କିନ୍ତୁ ବାବର ନ ଜାଣିଲା ପରି କାଗଜଗୁଡ଼ାକରେ ମନମୁନ ଚଇତନ ଲଗେଇ ଇମିତି ବୁଡ଼ିଯାଇଥିଲେ ଯିମିତି ଗଭୀର ସମୁଦ୍ରରେ ବୁଡ଼ାଜାହାଜ, ପେରିସ୍କୋପ ବି ଓପରକୁ ଦିଶୁନି । ଅନ୍ୟମାନେ ସମସ୍ତେ ବୁଖାରାଙ୍କୁ କଟମଟ କରି ଚାହିଁଥିଲେ ।

''ମୁଁ ତୁମକୁ ବୋଲି ତ କହି ନ ଥିଲି...''

''ତୁମେ ଜାଣ ନା ନାହିଁ ?'' ସରୀନ ପଚାରିଲେ ।

''ନା,''

''ବିଲୁଆ କେତେବେଳେ ବୋବାଏ ?''

''ମୁ ଜାଣିନି ।''

''କେତେବେଳେ ଚନ୍ଦ୍ର ଚାରିପଟେ ମଣ୍ଡଳ ପଡ଼େ ?

''ମୁଁ ଏସବୁ କଥା କିଛି ଜାଣିନି ବୋଲି କହୁଚି ପରା ।''

''ମାଛ କେବେ ମଞ୍ଜି ଛାଡ଼େ ?''

''ମୁଁ ଏ ସବୁ କଥା କିମିତି ଜାଣିବି ? କି ଆଶ୍ଚର୍ଯ୍ୟ କଥା !''

''ବାଘ କେତେବେଳେ ବାଘୁଣୀ ପାଇଁ ମାତେ ? ଧାନ ପାଚେ କେବେ ? ହଳଦିବସନ୍ତ ଆସିଲେ କ'ଣ ବୁଝାଏ ? ବର୍ଷାଦିନ ପାଣିରେ ଶୀତ ଦିନେ କିମିତି ଚାଷ

କରାଯାଏ ? ପାହାଡ଼ ଢାଲୁରେ ପୋଡୁଚାଷ କରିବ କିମିତି ? କେତେବେଳେ ଲାହି କାଟିଦବ ? ତୁମ ଗୋଷ୍ଠୀର ସୁଷମ ବଣ୍ଟନ ମାନେ କ'ଣ ? ନ୍ୟାୟୋଚିତ ବଣ୍ଟନଠୁ ସେଇଟା କିମିତି ଅଲଗା ? ଜଙ୍ଗଲ ନଷ୍ଟ ନ କରି ତା ଉପରେ ଚଳିବ କିମିତି, ତା ଭିତରେ ରହିବ କିମିତି ? କୋଉ ଗଦ ମୂଳ ତୁମକୁ ସାପକାମୁଡ଼ାରୁ ରକ୍ଷା କରିପାରିବ ? ମଶାମାନଙ୍କୁ ଭଗେଇବାକୁ ଗାଁ ଚାରିପଟେ କ'ଣ ଲଗେଇବ ? ତୀରକୁ କିମିତି ଏକଦମ ସିଧା ଚଳେଇବ ? କୋଉ ପତ୍ରର ରସ ଗର୍ଭନିରୋଧ କରେ ? କୋଉ ଗଛର ଛେଲି ଘା'କୁ ଖୁବ୍ ଶୀଘ୍ର ଶୁଖାଇଦିଏ ? କୋଉ ଡାଳର କ୍ଷୀର ଆଖିରୋଗ ଭଲ କରିଦିଏ ? ଗୋଷ୍ଠୀ ଭିତରେ ଅପରାଧ କିମିତି ରୋକାଯାଇପାରିବ ? ନେତା କିମିତି ବାଛିବ ? ତୁମେ କିମିତି...''

ବୁଖାରାଙ୍କ ମୁହଁ ରାଗରେ ଏକଦମ୍ ଲାଲ ଦେଖାଯାଉଥିଲା : ''ଆଲ୍ଲାଙ୍କ କସମ୍ ମୁଁ ଏଇସବୁ ଆଜେବାଜେ କଥା କିଛି ଜାଣି ନାହିଁ ! ତୁମେ ମୋଠାରୁ କ'ଣ ଚାହୁଁଚ ?''

ମୁହୂର୍ତ୍ତକ ପାଇଁ ସମସ୍ତେ ଚୁପ୍ ହେଇଗଲେ । ତିୱାରୀ, ଯେ କି ଏପର୍ଯ୍ୟନ୍ତ କଥା ଶେଷ କରି ନ ଥିଲେ ଏ ସୁଯୋଗରେ ଆଉଥରେ ଆରମ୍ଭ କରିଦେଲେ, ''ଆଉ ସେ କହୁଚନ୍ତି କ'ଣନା ସେ ଭାରତକୁ ଗୋଷ୍ଠୀବାଦରୁ ରକ୍ଷା କଲେ । ହେ ଭଗବାନ୍ ! ତମକୁ କିଏ ଇତିହାସ ପଢ଼େଇଥିଲା ? ତୁମେ ଧସେଇ ଧସେଇ ପଶିଲ ଏ ଦେଶରେ, ଆଉ ଧ୍ୱଂସ କଲ, ଧର୍ଷଣ ଓ ଲୁଟ୍ କଲ, ଆମ ମନ୍ଦିର ସବୁକୁ ଅପବିତ୍ର କଲ, ଆମ ସମ୍ପତ୍ତି ସବୁ ଆମଠୁଁ ଛଡ଼େଇ ନେଲ, ଏସବୁ କ'ଣ ଆମକୁ ଗୋଷ୍ଠୀବାଦରୁ ରକ୍ଷାକରିବା ପାଇଁ ? ବରଂ ତମେ ଆଣିଲ ଗୋଷ୍ଠୀବାଦକୁ ସବୁଠୁ କଦର୍ଯ୍ୟ ରୂପରେ । ଆଲ୍ଲାଉଦ୍ଦିନ୍ ଖିଲିଜିକୁ ଦେଖ, ଆଉରଙ୍ଗଜେବକୁ ଦେଖ । ନିଜକୁ ଦେଖ । ଆମକୁ ଗୋଷ୍ଠୀବାଦ ବତଉଚ !''

ବାବର, ବୁଖାରାଙ୍କଠାରୁ ଖୁବ୍ ଜୋର୍ ଖେଞ୍ଚାଖାଇ, ଶେଷରେ ତାଙ୍କ ସୁଲଳିତ ମାଇଚିଆ ସ୍ୱରରେ କହିଲେ, ''କ'ଣ ହେଇଚି ତମର ? ଏଇଟା ତ ସି.ଆଇ.ଏ.ର ଭୁଲ-ଭାଲ ବିଭାଗର କାମଠୁ ବଳେଇଗଲା । କ'ଣ ତୁମେ ଦେଖିପାରୁନା ଆମେ ତମ ସାର୍ବଭୌମତ୍ୱ ପାଇଁ ସେ ବ୍ରିଟିଶ୍ କୁକୁରମାନଙ୍କ ସହ ଲଢ଼ିଲୁ ? ଆମେ, ତୁମର ଶାସକ ଭାବରେ, ସେ ବ୍ରିଟିଶ୍ ଘୁଷୁରିମାନଙ୍କଠାରୁ ତୁମକୁ ରକ୍ଷା କରିବାକୁ ଯାଇ ନିଜ ରକ୍ତ ବୁହାଇଲୁ । ତୁମେ କ'ଣ ଏକଥା ଜାଣିପାରୁନ ? ତୁମେ ସବୁ ଦୂରଦର୍ଶନ ଦେଖୁ ନାହଁ କି ?''

ତିୱାରୀ ତୁରନ୍ତ ଉତ୍ତର ଦେଲେ, ''ଆମେତ ୟାକୁ ପରିଷ୍କାର ଦେଖିପାରୁଚୁ । ଆମ ସାର୍ବଭୌମତ୍ୱ ଇଏ ରକ୍ଷା କରିଛନ୍ତି ! ତମର ଲମ୍ପଟ ନବାବମାନେ ଆମଲୋକମାନଙ୍କୁ ଖାଲି ଯୁଦ୍ଧ ବନ୍ଦି ଭାବରେ ବ୍ୟବହାର କରୁଥିଲେ ଯିମିତିକି ସେମାନଙ୍କର ହାରେମ୍ ଆଉ ସିଂହାସନ ସୁରକ୍ଷିତ ରହିବ । ତୁମେମାନେ ଗୋଷ୍ଠୀବାଦକୁ ଅତି ଜଘନ୍ୟ କରି ଗଢ଼ିଲ

ଆଉ ଯୋଉ ସାମନ୍ତବାଦର ମୂଳୋତ୍ପାଟନ ହେଇ ସାରିଥିଲା ଏ ଦେଶରେ ତୁମେ ତାକୁ ପୁଣି ଆଣିଦେଲ । ଚୋଳ, ଗଙ୍ଗ, ସାତବାହନ, ପାଣ୍ଡ୍ୟମାନଙ୍କୁ ଦେଖ, ଉତ୍କଳ, କର୍ଣ୍ଣାଟ, କାଞ୍ଚି ଓ ମାଳବକୁ ଦେଖ । ଆମର ସମସ୍ତ ଆଦିବାସୀଙ୍କୁ ଦେଖ । ସୁନ୍ଦର ଗଣତନ୍ତ୍ର ଗଢ଼ିଛନ୍ତି । ଆଉ ତୁମେ ହିଁ ସବୁ କିଛି ଧ୍ୱଂସ ମୁହଁକୁ ଠେଲିଦେଲ । ବ୍ରିଟିଶମାନଙ୍କୁ ଧନ୍ୟବାଦ ସେମାନେ ଆମକୁ ତୁମମାନଙ୍କ କବଳରୁ ରକ୍ଷା କଲେ ।''

''ବ୍ରିଟିଶ୍ ଜୋତାଚଟା ଚାମଚା !''

''ପାକିସ୍ଥାନୀ ଦଲାଲ୍ !''

ପି.ଏମ୍. ନିଜର ମାନସିକ ଦୁଶ୍ଚିନ୍ତାରୁ ବାହାରିଆସି ଦୁଃଖପୂର୍ଣ୍ଣ ସ୍ୱରରେ ଗଭୀର ଉଦ୍‌ବେଗ ପ୍ରକାଶ କରି ଗର୍ଜିଉଠିଲେ : ''ଯଥେଷ୍ଟ, ଯଥେଷ୍ଟ, ଯଥେଷ୍ଟ ହେଇଗଲା ।''

ଘାଶ୍‌ୱାନ ଉଠିପଡ଼ି ପାଟିକଲେ : ''ବଦମାସ୍ ବ୍ରାହ୍ମଣ ଆମକୁ ଶୋଷଣ କରିଛି ।''

''ମୁଁ ନୁହେଁରେ ମୂର୍ଖ,'' ତିୱାରୀ କହିଲେ । ''ମୁଁ କହିଲିପରା ମୁଁ କେଡ଼େ ଗରିବ । ଏ ରାଜପୁତ, ଠାକୁର୍, ଏ ମୁସଲମାନମାନେ ଯୋଉମାନେ ତୁମଠୁ ଶାସନ ଛଡ଼େଇ ତୁମର ଶାସକ ଆଉ ଜମିଦାର ହେଲେ, ସେମାନେଇ ତମକୁ ଶୋଷଣ କରିଚନ୍ତି । ସେମାନେ ଟିକସ ବସେଇଲେ, ତୁମକୁ ବେଠି ଖଟେଇଲେ, ସେମାନେ ତମର ଜମି, ତମ ସ୍ତ୍ରୀ, ସବୁ ମାଡ଼ିବସିଲେ...''

''ସେ କଥା ତ ଠିକ୍,'' ଘାଶ୍‌ୱାନ କହିଲେ । ''କିନ୍ତୁ ତମେ...''

''କ'ଣ ଠିକ୍ ବୋଲି ତମେ କହୁଚ ?'' ପି.ଏମ୍. କହିଲେ । ''ଆମେ ତୁମ ପାଇଁ ସହର ବସେଇଚୁ ? ଆମେ ତୁମ ପାଇଁ ନୂଆ ରାଜ୍ୟ ସ୍ଥାପନ କରିଚୁ, ତୁମମାନଙ୍କ ଚାଷ ପାଇଁ ଭଲ ଜମି ଉଠିଆ କରି ଦେଇଚୁ । ଅନ୍ନ, ବସ୍ତ୍ର, ଘର ମଧ୍ୟ ଆମେ ତମ ପାଇଁ ପ୍ରଦାନ କରିଚୁ । କୁମ୍ଭାର, କମାର, ବଣିଆ, ଗଉଡ଼, କାଠୁରିଆ, ରାଜମିସ୍ତ୍ରି, ଗାୟକ, ନର୍ତ୍ତକୀ, ବ୍ରାହ୍ମଣ, ଝାଡୁଦାର ସମସ୍ତଙ୍କୁ ଆମେ ତମର ସେବା ପାଇଁ ଆଣି ଗାଁ ଗାଁ ସହର ସହରରେ ରଖିଚୁ । ଆମେ ତମମାନଙ୍କ ପାଇଁ ଯୁଦ୍ଧ କରି ରକ୍ତାକ୍ତ ହେଇଚୁ । ଆଉ ତମେ କହୁଚ ଆମେ ତମକୁ ଶୋଷଣ କରୁଚୁ ! କୃତଘ୍ନ ଜୀବମାନେ ! ଆଗାମୀ ନିର୍ବାଚନରେ ମୁଁ କାହାରିକୁ ଟିକେଟ ଦେବି ନାହିଁ ।''

ସମସ୍ତେ ହଠାତ୍ ଚୁପ୍ ହେଇଗଲେ ।

ପି.ଏମ୍. ଶୀଘ୍ର କହିଲେ, ''ଆମକୁ ଗୋଟାଏ ଯୁଦ୍ଧ ଲଢ଼ିବାକୁ ହବ । ଭାରତକୁ ପୁଣିଥରେ ଜିତିବାକୁ ହବ । ଚାଲ ଆମେ ଏକଜୁଟ ହେଇ ସମସ୍ତ ଭେଦଭାବ ଭୁଲିଯିବା । ଆସ, ଆକ୍ରମଣ କରିବା । ମୁଁ କହୁଚି । ଏ କି ଶତ୍ରୁମ ? ଏଇଟା କିଛି

ନୁହେ । ଅଧାପାଠୁଆ, ଅଧାପେଟ, ଅଧାଲଙ୍ଗଳା, ଅଧାଛପର, ଖଣ୍ଡିଆଘର । ଯଦି ଆମେ ଏକଜୁଟ ହେଇଯିବା ଓ ମିଳିତ ଆକ୍ରମଣ କରିବା ତେବେ ସେ ଆମ ଗୋଡ଼ତଳେ ପଡ଼ି ଆମର ଦୟା ଭିକ୍ଷା କରିବ ।''

''କିନ୍ତୁ ଓଡ଼ିଶା ଓ ଗୁଜୁରାଟର କଥା କ'ଣ କରିବା ? ବିରୋଧୀଦଳଙ୍କ କଥା କ'ଣ କରିବା ?''

''ପ୍ରଥମେ ଶତ୍ରୁକୁ ଆମେ ନଷ୍ଟ କରିଦବା । ଆଉ ବିରୋଧୀଦଳଙ୍କୁ ଭୋଟ ଦିଆଇ' ଦବା ନାହିଁ ।''

''ତା' କେମିତି କରିପାରିବା ?''

''ଆନ୍ଧ୍ର ସରକାର୍‌ ଭାଙ୍ଗିଯାଇଚି । ଭେଙ୍କେଟ ଗଲେଣି ବାହାରି ।''

''ବାହାବା, ବାହାବା ।''

''ଗୁଜୁରାଟ ସରକାର ସପ୍ତାହେ ମଧରେ ଭାଙ୍ଗିଯିବ ।''

''କି ଲୋକରେ !''

''ଗୁରୁ ! ମହାଗୁରୁ ।''

''ଓଡ଼ିଶା, ଆମେ ଓଡ଼ିଶା ବିଷୟରେ କିଛି କରିବା । ମୁଁ ଜଣକୁ ଠିକ୍ କରିଚି ଘଟନାଏକକୁ ସାବାଡ଼ କରିବା ପାଇଁ । ମୁଁ ଇମିତି ମଜା ଚଖେଇବି ଓଡ଼ିଶା ଅଶୋକଙ୍କର କଳିଙ୍ଗ ଯୁଦ୍ଧକୁ ଭୁଲିଯିବ । ଏତକ ହେଲା ଗୃହଶତ୍ରୁ ବିନାଶ-କାର୍ଯ୍ୟକ୍ରମ । ତା'ପରେ ବିରୋଧୀଦଳ କଥା । ପ୍ରଥମେ ଆମର ଶକ୍ତି ସାମର୍ଥ୍ୟକୁ ଅଟକଳ କରାଯାଉ । ଯେଉଁଠାରେ ଆମେ ଦୁର୍ବଳ ଅଛୁଁ, ସେଠାରେ ଆମେ ନିଜକୁ ସୁଦୃଢ଼ କରିବା, ଯେଉଁଠାରେ ଆମେ ସୁଦୃଢ଼ ଅଛୁଁ, ସେଠାରେ ଆମେ ଶକ୍ତ ହୋଇ ରହିବା, ଆମର ଯାହା ଅଛି ତାକୁ ଦେଖି ଲେଖ ।

(୧) ''କେତେ ଡକାୟତି ଦଳ ଭୋଟ କେନ୍ଦ୍ର ଅଧିକାର କରିବା ପାଇଁ ଅଛନ୍ତି ?

(୨) ''କେତେଜଣ ନିର୍ବାଚନ କର୍ମଚାରୀ ସମର୍ଥକ ଅଛନ୍ତି ଯେଉଁମାନେ ଭୋଟକେନ୍ଦ୍ର ଜବରଦଖଲ ରିପୋର୍ଟ ଦେବେ ନାହିଁ ?

(୩) ''କେତେ ଜଣ ମଦ ଦୋକାନୀଙ୍କୁ ଆମେ ଚୁକ୍ତିବଦ୍ଧ କରିଛୁ ?

(୪) ''କେତେ ଜାତି ଗୋଷ୍ଠୀଙ୍କୁ ଆମେ କିଣିଛୁ ?

(୫) ''କେତେ ସଂଖ୍ୟାଲଘୁ ଗୋଷ୍ଠୀ ସାଙ୍ଗେ କିଣାବିକା ବୁଝାମଣା ହେଇଚି ?

(୬) ''କେତେ ଭି.ଡି.ଓ. ଓ ଅଡିଓ କ୍ୟାସେଟ୍ ଆମେ ତିଆରି କରିଚୁ ?

(୭) ''ଆମେ କେତେ ଗାଡ଼ି ଭଡ଼ାରେ ଆଣିବୁ ?

(୮) ''କେତେ...''

ବାବର ଖଣ୍ଡିକାଶ ମାରିଲେ ।

''ତାଲିକାରେ କ'ଣ କିଛି ଭୁଲ ହେଇଚି ?'' ପି.ଏମ୍. ବିରକ୍ତ ହେଇ ପଚାରିଲେ ।

''ନା ନା । ବହୁତ ଭଲ ହେଇଚି । ହେଲେ ଭୋଟ ପାଇଁ କୌଶଳଟା ଏକଦମ ସହଜ । ସଂଖ୍ୟାଲଘୁ ଗୋଷ୍ଠୀଙ୍କୁ ଭଲ ଜିନିଷର ପ୍ରତିଶ୍ରୁତି ଦେଲେ ଆରାମରେ ଭୋଟ ପାଇଯିବା । ଉଦାହରଣସ୍ୱରୂପ, ଓ.ବି.ସି. ସଂରକ୍ଷିତ ସ୍ଥାନ ଘାଶ୍ୱାନଙ୍କୁ ଦେଇ ତାଙ୍କ ଭୋଟ ନେଇଯାଅ । ତୁମେ ଆମକୁ ପନ୍ଦର ପ୍ରତିଶତ ସ୍ଥାନ ଚାକିରିରେ ସଂରକ୍ଷଣ କରାଅ ଓ ବିରାଟ ଆକାରରେ ଆମର ଭୋଟ ନେଇଯାଅ । ନାରୀମାନଙ୍କୁ ୨୦ ପ୍ରତିଶତ ଦିଅ ଏବଂ...''

''କିନ୍ତୁ ସେମାନେ ତ ପଚାଶ ଭାଗ ।''

''ତୁମେ କେମିତି ସେମାନଙ୍କୁ ପଚାଶ ଭାଗ ଦେଇଦବ ?'' ଅଲୁବୁଖାରୀ ପଚାରିଲେ ? ''ସବୁ ମିଶି ତ କେବଳ ଶହେଭାଗ ଅଛି । ଯଦି ଆମେ କିଛି ଗଣିତଜ୍ଞ ବା ଅର୍ଥନୀତିଜ୍ଞଙ୍କ ସାହାଯ୍ୟ ନେଇ କିମ୍ୱା ଆଲ୍ଲାଙ୍କ ଆଶୀର୍ବାଦରୁ ଏ ଶହେ ଭାଗଟା ବଢ଼େଇ ଦେଇ...''

''କୋଡ଼ିଏ ପ୍ରତିଶତ ଆମ ପାଇଁ ଯଥେଷ୍ଟ ନୁହେଁ,'' ସରୀନ୍ ପାଟି କରି ଉଠିଲେ ।

ପି.ଏମ୍. କହିଲେ, ''ଦେଖ । ସରୀନ୍ ଇତ୍ୟାଦିଙ୍କ ପାଇଁ ୨୨ ପ୍ରତିଶତ ଅଛି । ଘାଶ୍ୱାନଙ୍କ ପାଇଁ ୨୭ ଭାଗ ରହିବ । ୧୫ ଭାଗ ତୁମମାନଙ୍କ ପାଇଁ । ସେସବୁ ମିଶି ୬୪ ଭାଗ ହେଉଚି । ୨୦ ଭାଗ ସ୍ତ୍ରୀଲୋକମାନଙ୍କ ପାଇଁ, ମିଶି ୮୪ ଭାଗ ହେଲା । ଦେଶର ଅନ୍ୟମାନଙ୍କ ପାଇଁ କ'ଣ ରହିଲା ? ମାତ୍ର ୧୬ ଭାଗ !''

''ଆଉ ଆମ କଥା ?'' ଛୋଟା ସିଂହ ରାଗରେ ଚାହିଁ ପଚାରିଲେ, ''ଆମକୁ ୬ ପ୍ରତିଶତ ଦିଆଯାଉ ।''

''୬ ପ୍ରତିଶତ ?''

''ତା ହେଲେ ଠିକ୍ ଅଛି । ଆମକୁ ଖଲିସ୍ତାନ ଦେଇଦିଅ ।''

''ଆମକୁ ଟିପୁ ସୁଲତାନ, ହାଇଦ୍ରାବାଦ ଓ କାଶ୍ମୀର ଦେଇଦିଅ,'' ଗୁଲାମବନ୍ଦୀ କହିଲେ ।

''ଆମକୁ ତାହେଲେ ଆସାମ ଦେଇଦିଅ ?'' ଗୋହାଇଁ କହିଲେ ।

''ସମସ୍ତେ ଯଦି ସବୁ ନବ, ମୁଁ ଶାସନ କରିବି କୋଉଠି ?'' ପି.ଏମ୍. ବିରକ୍ତ ହେଇଗଲେ ।

ତିୱାରୀ ଜୋର୍‌ରେ କାଶିଲେ ଓ ସିଧା ହେଇ ବସିଲେ ।

ପ୍ରଧାନମନ୍ତ୍ରୀ ରାଗିଯାଇ ତାଙ୍କଆଡ଼କୁ ବୁଲିପଡ଼ିଲେ, ''ତୁମ ପାଇଁ ସଂରକ୍ଷଣ ବ୍ୟବସ୍ଥା ହୋଇପାରିବ ନାହିଁ । ନା । ନିଶ୍ଚିତ ଭାବେ, ନା ।''

''ମୁଁ ସେ ସଂରକ୍ଷଣ କଥା କହୁନି । ଦାର୍ଶନିକ ଦୃଷ୍ଟିକୋଣରୁ ଏଇଟା ନିହାତି ଫାଲ୍‌ତୁ । ତମେ ଗୋଟାଏ ଥାର୍ଡ଼କ୍ଲାସ୍ କୋଟା ସରକାର ଚାହୁଁଚ ? ଲୋକେ ଏଇଆ କହିବେ । ନିର୍ବାଚନ କୌଶଳ ଭାବରେ ବି ଏଇଟା କିଛି କାମର ନୁହେଁ । ତୁମେ ସଂରକ୍ଷଣ କଥା କହୁଚ । ସବୁଦଳ ସଂରକ୍ଷଣ କଥା କହିବେ । ତେବେ ? ତୁମେ କହୁଚ ୧୦ ଭାଗ, ଅନ୍ୟମାନେ କହିବେ ''ବସ ବସ,'' ଆଉ ୧୨% ଯାଚିବେ । ତା ପରେ ? ତୁମେ ଜାତିକଥା କହିଲେ ସେମାନେ ଶ୍ରେଣୀ କହିବେ । ତୁମେ ଶ୍ରେଣୀ କହିଲେ ସେମାନେ ଭାଷା ପ୍ରସଙ୍ଗ ଉଠେଇବେ । ତୁମେ ଭାଷା କଥା କହିଲେ ସେମାନେ ଅର୍ଥନୈତିକ ଦୁର୍ବଳତା କଥା କହିବେ । ତୁମେ ଅର୍ଥନୈତିକ ଦୁର୍ବଳତା କହିଲାବେଳକୁ ସେମାନେ ନାରୀମାନଙ୍କ ଉନ୍ନତି କଥା କହିବେ । ତୁମେ କହିବ...''

''ଠିକ୍ ଅଛି, ଠିକ୍ ଅଛି, ତୁମେ କ'ଣ କହୁଚ ?''

''ଯିଏ କୋଟା ବ୍ୟବସ୍ଥାକୁ ଆରମ୍ଭ କରିଥିଲେ ସେ ବୋଧେ ମଝି ମଗଜ ନ ଥିବା ଅବିବର୍ତ୍ତିତ ଲାଇନ୍‌ର ଅକ୍ଷତ ଦାୟାଦ ହେଇଥିବେ ।''

ବାବର ଏଥର ପୁଣିଥରେ ଜୋର୍‌ରେ ଖଣ୍ଡିକାଶ ମାରିଲେ ।

''ଆରେ ବାବା, ଏତେ କାଶ ନାହିଁ, ତଣ୍ଟି ଛିଣ୍ଡିଯିବ,'' ସିଂହ କହିଲେ । ''ତୁମ ମନରେ କ'ଣ ଅଛି କହିଦିଅ ।''

''ଗତ ରାତିରେ ମୁଁ ଭାବୁଥିଲି,'' ବାବର ରହିରହି କହିଲେ, ''ଏଇଟା କେବଳ ଗୋଟିଏ ଚିନ୍ତାଧାରା, ମନେରଖ । ମୋର ସ୍ତ୍ରୀମାନଙ୍କ ମଧ୍ୟରୁ ଜଣେ ସ୍ତ୍ରୀସହ ଝଗଡ଼ା ହେବା ପରେ ମୋ ମନରେ ଏ କଥା ଆସିଥିଲା । ଗଣ୍ଡଗୋଳ ହେଲେ ମୋ ମନକୁ କଥା ଆସେ । ମୁଁ କ'ଣ କହୁଛି, ତୁମେ ବୁଝିପାରୁଥିବ !''

''ଉପସଂହାର ସଂକ୍ଷିପ୍ତ କର, ବାବର । ଜଲଦି କୁହ କ'ଣ ତୁମର ଇଚ୍ଛା ?''

''ସହାନୁଭୂତି ଭୋଟ, ବିତୃଷ୍ଣା ଭୋଟ,'' ସେ କହିଦେଇ ଆଉକିଛି କହିବା ଆଗରୁ ଟିକିଏ ରହିଗଲେ । ''ମୁଁ ଭାବୁଥିଲି, ଆମେ ଯଦି ରାଜ୍ୟ କିମ୍ବା ଅଞ୍ଚଳ ଅଞ୍ଚଳ କରି ସହାନୁଭୂତି ଭୋଟ ପାଇଁ ବ୍ୟବସ୍ଥା କରିପାରିବା, ଯେପରିକି ଗୋଟିଏ ବିରୋଧୀଦଳ

ଶାସିତ ରାଜ୍ୟରେ ଗୋଟିଏ ଗୋଷ୍ଠୀ ଉପରେ ପୋଲିସ୍ ଦ୍ୱାରା ନିର୍ମମ ଅତ୍ୟାଚାର ଘଟିଯାଇଚି । ସେଠି ଆମ ପାଇଁ ଭୋଟ ନାହିଁ । ଅଛି ତାଙ୍କ ପାଇଁ ବିତୃଷ୍ଣା । ଆମେ ସେହି ବିତୃଷ୍ଣା ଭୋଟକୁ ସେହି ରାଜ୍ୟରେ ଆମ ସପକ୍ଷରେ ଆଣିପାରିବା, କିମ୍ବା କୌଣସି ରାଜ୍ୟରେ ଜଣେ ସମ୍ମାନନୀୟ ବରିଷ୍ଠ ନେତା ଯଦି ମୃତ୍ୟୁବରଣ କରନ୍ତି, ସେଠି ଅନ୍ୟ ଭୋଟ ସହ ଆମେ ଅନୁକମ୍ପା ଭୋଟ ପାଇପାରିବା ।''

''ବହୁତ କଷ୍ଟ କାମ,'' ସରୀନ୍ ସାନ୍ତାଳ କହିଲେ ।

''ପ୍ରକୃତରେ ଖରାପ ପ୍ରସ୍ତାବଟିଏ ନୁହେଁ,'' ଛୋଟା ସିଂହ କହିଲେ ।

''ମୁଁ ରାଜି ନୁହେଁ ଏଥିରେ,'' ଘାଣ୍ଓ୍ୱାନ କହିଲେ । ''ଆମେ ଯେତେ ଅସୁବିଧାର ସମ୍ମୁଖୀନ ହେବା ସେଥିରୁ ବେଶୀ ଲାଭବାନ ହେବା ନାହିଁ ଏବଂ ସମୟ ଏତେ କାହିଁ ? ନା, ମୁଁ ରାଜି ନୁହେଁ । ମୁଁ ଜାତୀୟସ୍ତରରେ ଗୋଟିଏ ସହାନୁଭୂତି ଭୋଟ୍‌ର ପ୍ରସ୍ତାବ ଦେଉଚି । ଜଣେ ବିଶିଷ୍ଟ ନେତାଙ୍କ ମୃତ୍ୟୁ ।''

ତିଓ୍ୱାରୀ, ଯିଏକି ଏ ପର୍ଯ୍ୟନ୍ତ ମନ ଦେଇ ଶୁଣୁଥିଲେ, ହସିଦେଇ ପି.ଏମ୍.ଙ୍କୁ ବୁଲି ଚାହିଁଲେ ।

ଧୀରେ ଧୀରେ ସମସ୍ତେ ମୁହଁ ବୁଲାଇ ବିଶ୍ୱରାଜ ସିଂହଙ୍କୁ ଚାହିଁଲେ ଯାହାଙ୍କ ଆଖି ବଡ଼ ବଡ଼ ହୋଇ ପାଟି ମଧ୍ୟ ମେଲି ଯାଇଥିଲା ।

''ନା । ତୁମେ ଏପରି କରିପାରିବ ନାହିଁ,'' ସେ କହିଲେ । ''ଓଃ ନା । ନା-ନା-ନା-ନା । ଆଦୌ ନୁହେଁ । ନା ନା ନା ନା ନା ନା ନା...''

ବିଜୟବଲ୍ଲଭ ପଟ୍ଟନାୟକ ଅପର କେ.ଜି. ପାଇଁ ଉଦ୍ଦିଷ୍ଟ ଭାରତବର୍ଷର ଗୋଟିଏ ଜିଗ୍-ସ ମାନଚିତ୍ରକୁ ଧରି ବସିଥିଲେ । ସେ ସବୁ ପ୍ରଦେଶକୁ ଅଲଗା ଅଲଗା କରି ଚାରୋଟି ଗଦାରେ ପରିଣତ କରିଥିଲେ । ସବୁଠୁ ବଡ଼ ଗଦାଟି ବିଶ୍ୱରାଜ ସିଂହଙ୍କ ଦଳର, ଯୋଉଟା କି ପଟ୍ଟନାୟକ୍‌ଙ୍କ ନିଜର ଦଳ, କିନ୍ତୁ ଯୋଉଥିରୁ ସେ ନିଜେ ଓହରି ଯିବାକୁ ନ ହେଲେ ସିଂହ ଓ ତାଙ୍କ ଶୃଗାଳ ମଣ୍ଡଳ ଘାଣ୍ଓ୍ୱାନକୁ ସେଥିରୁ ବାଦ୍ ଦେବାକୁ ଚାହୁଁଥିଲେ । ସେ ସେ ଖଣ୍ଡଗୁଡ଼ିକୁ ଗୋଟିଏ ଗଦାରୁ ଅନ୍ୟ ଗଦାକୁ ଥରକୁଥର ବଦଳଉଥିଲେ, ଯେ ପର୍ଯ୍ୟନ୍ତ ସେ ସନ୍ତୁଷ୍ଟ ହେଇ ନ ଥିଲେ । ତାଙ୍କ ବୁଲା ଚଉକିରେ ନିଜ ବେକକୁ ପଛ ପଟକୁ ଆଉଜେଇ ଦେଇ ଗୋଡ଼କୁ ଟେବୁଲ ଉପରେ ଲମ୍ବାଇ ସଳଖ ହେଲେ । ସେ କିଛି ସମୟ ଇମିତି ଅବସ୍ଥାରେ ଚୁପ୍ ହେଇ ରହିଲେ । ସେ ସିଂହଙ୍କ ପରି ନୁହନ୍ତି, ସେ ଭାରି ଏକାକୀ । କୌଣସି କିଚେନ୍ କ୍ୟାବିନେଟ୍ ସାହାଯ୍ୟ ନ ନେଇ ସେ ନିଜ ଚିନ୍ତା ନିଜ ଯୋଜନା ନିଜେ କରୁଥିଲେ । ସେ ଥିଲେ ଜଣେ

ସାଂଘାତିକ ଆଉ କ୍ଷମାହୀନ ଲୋକ । ପ୍ରଥମରୁ ସେ ଖାଲି ନିଜ ଆସନ ଆଉ ଟଙ୍କାର ସୁରକ୍ଷା କଥା ହିଁ ଚିନ୍ତା କରି ଆସିଥିଲେ । କିନ୍ତୁ ବର୍ତ୍ତମାନ ସିଂହ ଯେହେତୁ ଏ ଦୁଇଟାଯାକ ଜିନିଷ ଆଡ଼କୁ ହାତ ବଢ଼େଇଚନ୍ତି, ପଟ୍ଟନାଏକ ପ୍ରତିଆକ୍ରମଣ ପାଇଁ ସିଧା ଦିଲ୍ଲୀର ସିଂହାସନ ଉପରେ ଆଖି ପକେଇଲେ । ସିଂହଙ୍କୁ ତଡ଼ିବା ପାଇଁ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଈଶ୍ୱର ପ୍ରେରିତ ଘଟଣା ଥିଲା, ଯୋଉଁଥିରେ କି ସେ ସିଂହଙ୍କୁ ତାଙ୍କ ଜୀବନରେ ଗୋଟାଏ ଉଚିତ ଶିକ୍ଷା ଦବା ପାଇଁ ଚାହୁଁଥିଲେ ।

ବେଶ୍ କିଛି ସମୟ ପରେ ସେ ତାଙ୍କ ଆଖି ଖୋଲିଲେ ଆଉ କୁନ୍ଥେଇ ହେଇ ଗୋଡ଼ ଟେବୁଲ୍‌ରୁ ତଳକୁ ଖସେଇଲେ । ଘରେ ପେଟେ ଖାଇ, ତାଙ୍କ ପେଟ ଭର୍ତ୍ତିଥିଲା । ଏଇ ରବିବାରଟା ହିଁ ସେ ନିଜ ପାଇଁ ବାହାର କରିଥିଲେ ସବୁ ସାକ୍ଷାତକାରକୁ ବାତିଲ କରି । ତାଙ୍କ ପତ୍ନୀ ଘରେ ଖୁସୀରେ ଗପସପ କରି ବହୁତ ଖୁଆଇ ଦେଇଥିଲେ । ମାହେଶୀ ଇମିତି କରିବାରେ ବହୁତ ଆନନ୍ଦ ପାଆନ୍ତି । ସେ ଟିକିଏ ଅଧିକ ସମୟ ପତ୍ନୀଙ୍କ ସାନ୍ନିଧ ପାଇଁ ଦବା ବିଷୟରେ ଭାବିଲେ । ମାହେଶୀ ଜଣେ ଖୁସୀବାସିଆ ସ୍ତ୍ରୀ ଆଉ ଚାହୁଁଥିଲେ ଜୋରଦାର କାମ । କିନ୍ତୁ ସେ କ'ଣ କରିବେ ? ଏ ସବୁ ରାଜନୈତିକ ଅସୁବିଧା ସାଙ୍ଗକୁ ତାଙ୍କ ପ୍ରୋଷ୍ଟେଟ ଗଣ୍ଡଗୋଳ ଭିତରେ ସେ ଆଉ କ'ଣ କରିପାରିବେ । ନିଜ ତୃପ୍ତି ପାଇଁ ପେସାଦାର କିମ୍ୱା ପ୍ରାୟ ପେସାଦାର ଭଦ୍ରମହିଳା ହିଁ ତାଙ୍କ କାମରେ ଲଗାନ୍ତି । ସେମାନଙ୍କ ସାଙ୍ଗେ ହିଁ ତାଙ୍କ ଦେହ କସମସ କରିଉଠେ । ମାହେଶୀଙ୍କ ପାଇଁ ଆଗାମୀ ନିର୍ବାଚନରେ ଗୋଟିଏ ଟିକେଟ୍ ଦେଇଦେଲେ ସବୁଠୁଁ ଭଲ ହବ ସମସ୍ତଙ୍କ ପାଇଁ ।

ପଟ୍ଟନାଏକ ତାଙ୍କ ଟେବୁଲ ଉପରେ ଥିବା ଅଧା ଗ୍ଲାସ୍ ପାଣି ପିଇଗଲେ । ତା'ପରେ ସେ ଫୋନ୍ ଉଠେଇ ତାଙ୍କ ପି.ଏ.ଙ୍କୁ ଗୁଜୁରାଟ ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗେ ଯୋଗାଯୋଗ କରିବାକୁ କହିଲେ ।

''ପଟେଲ ସା'ବ ?''

''ପଟ୍ଟନାଏକ୍ ଜୀ ।''

''ତୁମେ ସବିଶେଷ ଖବର କିଛି ଜାଣ କି ?''

''ନା, କିନ୍ତୁ ମୋ ଡେପୁଟି ପାରିଖଙ୍କୁ ଟଙ୍କା ଦେଇ ପଠେଇଚି । ତା ସେ ଲୋଭୀକୁ ବୋଧେ ସନ୍ତୁଷ୍ଟ କରିପାରିବ । ଭେଙ୍କଟ ତ ଆନ୍ଧ୍ରରେ ତଡ଼ାଖାଉଚନ୍ତି ।''

''ପାରିଖ ଗୋଟିଏ ଚିଠି ନେଇ କାଲି ଦିଲ୍ଲୀରୁ ବାହାରିବ ଆସନ୍ତା ସୋମବାରଦିନ ସି.ଏଲ୍.ପି.ର ବୈଠକ ଡକାଇବା ପାଇଁ, ଯୋଉଥିରେ କି ତୁମ ବିଷୟରେ ଭୋଟ ହବ ।''

''କ'ଣ ?''

''ପାରିଖ ତୁମ ସ୍ଥାନ ଦଖଲ କରିବ ।''

''ହାଃ ।''

''ତୁମେ ମେଜରିଟି ବଜାୟ ରଖିପାରିବ ?''

''ମୁଁ ପାଖାପାଖି ଅଛି ।''

''ଭାବୁଚ ।''

''ମୁଁ କ'ଣ କରିବି, ପଟ୍ଟନାଏକ ଜୀ ? ମୁଁ କ'ଣ କରିବି ?''

''କେବଳ ଗୋଟିଏ କାମ କରାଯାଇପାରିବ, ତୁମେ ଯଦି ଅଧିକାଂଶଙ୍କୁ କିଣି ନ ପାରିବ, କାରଣ ଅନ୍ୟପକ୍ଷରୁ ବି ଟଙ୍କାର ସୁଅ ଛୁଟିବ ।''

''କ'ଣ ?''

''ପାରିଖକୁ ଚୁପ୍ କରାଇହବ । ଦିଲ୍ଲୀରେ ତୁମ ଲୋକ କିଏ ଅଛି ଯିଏ କି ପାରିଖ ସହ ଅନ୍ତରଙ୍ଗ ହେଇପାରିବ । କେହି ବିଶ୍ୱସ୍ତ ଅଛି କି ?''

''ହଁ, ସୋଲାଙ୍କି ସେଠି ଅଛି । ସେ ମୋର ବହୁତ ଅନ୍ତରଙ୍ଗ ଓ ପାରିଖ ସହ ମଧ୍ୟ ବନ୍ଧୁପରି ମିଶନ୍ତି ।''

''ମୁଁ ତୁମକୁ ଯୋଉ ନାଁ ଓ ଠିକଣା ଦଉଚି, ତାକୁ ଟିପିରଖ । ସୋଲାଙ୍କି ମଉଜ ପାଇଁ ଆଜି ରାତିରେ ପାରିଖକୁ ସେଠିକି ନେଇଯିବ । ଆସନ୍ତାକାଲି ସକାଳେ ସେ ଭଦ୍ରମହିଳାଜଣକ ଯୋଉ ପ୍ୟାକେଟ ଦବ ସେଇଟାକୁ ସୋଲାଙ୍କି ନିଜେ ଆଣି ତୁମକୁ ଦବ । ଆଉ ଯେତେବେଳେ ପାରିଖ୍ ତମକୁ ସାକ୍ଷାତ କରିବ ତାକୁ ସେ ପ୍ୟାକେଟ୍‌ରେ ଥିବା ଫଟୋସବୁ ଦେଖେଇବ ।''

''ମତେ ଠିକଣା ଦିଅ ପଟ୍ଟନାଏକଜୀ, ମତେ ଠିକଣା ଦିଅ ।''

''ତା ପରିବର୍ତ୍ତେ ମୁଁ ଗୋଟେ ଜିନିଷ ଚାହୁଁଚି ।''

''ଯାହାଇଚ୍ଛା, ମତେ ଖୋଲି କୁହ ।''

''ତୁମ ପାଖରେ ଯାହା କିଛି ଟଙ୍କା ଅଛି ତୁରନ୍ତ ସେସବୁ ଗୋଟିଏ ସ୍ୱତନ୍ତ୍ର ବିମାନରେ ଭେଙ୍କଟଙ୍କ ପାଖକୁ ହାଇଦ୍ରାବାଦ ପଠାଅ । ଠିକ୍ ଗୋଟିଏ ଘଣ୍ଟା ପରେ ମୋ ବିମାନ ବି ଭୁବନେଶ୍ୱର ଛାଡ଼ିବ ।''

''ମୋ ପାଖରେ ଟଙ୍କା ଅଛି ।''

''ଏଇଟାକୁ ଏକ ଋଣ ବୋଲି ଭାବ । ଆମେ ଯେତେବେଳେ ଦିଲ୍ଲୀ ଜିତିବା ସେତେବେଳେ ଫେରସ୍ତ ପାଇଯିବ । ସେ ଶଳା ମତେ ଅଶୋକ ଧମକ ଦେଇଚି । ସେ ଶଳା ବୋଧେ ଏ ପର୍ଯ୍ୟନ୍ତ ଖାରବେଳ କଥା ଜାଣିନି ।''

''ତୁମେ କ'ଣ କହୁଚ ? ମୁଁ କହିଲି ପରା ମୋ ପାଖରେ ଟଙ୍କା ଅଛି । ଧାର ନେବା ବିଷୟ କହି ମତେ ଅପମାନିତ କର ନାହିଁ । କିନ୍ତୁ ଭେଙ୍କଟ ତ ଇସ୍ତଫା ଦେଇଛନ୍ତି ଓ ଆନ୍ଧ୍ର ସି.ଏଲ୍.ପି.ର ଅଧିବେଶନ ବସିଚି । ଭେଙ୍କଟ ତ ହାରିଗଲେଣି ବୋଧେ ।''

''ନା । ଗତକାଲି ଗୋଟିଏ ଭୋଜିରେ ଯୋଗ ଦେବାପରେ କେନ୍ଦ୍ରୀୟ ପର୍ଯ୍ୟବେକ୍ଷକମାନେ ସୁଟ୍‌କେଶ୍ ରୋଗରେ ଅସୁସ୍ଥ ହେବାରୁ ସଭାକୁ ଆସନ୍ତାକାଲି ପର୍ଯ୍ୟନ୍ତ ମୁଲତବୀ ରଖାଯାଇଚି । ଆମ ଟଙ୍କାର ସହାୟତାରେ ଭେଙ୍କଟ ଆସନ୍ତାକାଲି ସକାଳେ ପୁଣି ସି.ଏମ୍. ଭାବରେ ନିର୍ବାଚିତ ହେବେ, କେନ୍ଦ୍ରୀୟ ପର୍ଯ୍ୟବେକ୍ଷକମାନଙ୍କ ପୂରା ଅନୁମୋଦନ ଲାଭକରି । ସେମାନେ ପ୍ରତ୍ୟେକ ଦଶଲକ୍ଷରେ ରାଜି ହେଇଚନ୍ତି । ପରବର୍ତ୍ତୀ ନିର୍ବାଚନ ପରେ ଆମ ଦିଲ୍ଲୀ ଅଧିକାର ବେଳେ ଭେଙ୍କଟ ବି ଆମ ପଛେ ପଛେ ଥିବେ ।''

''ଗୁରୁ । ତୁମେ ବାସ୍ତବିକ ଗୁରୁ । ଗୁରୁ ଗୁରୁ ଗୁରୁ ଗୁରୁ ।''

''ଟଙ୍କା ପଠେଇଦିଅ ଆଉ ସୋଲାଙ୍କିଙ୍କୁ ଫୋନ୍ କର ।''

''ଗୁରୁ ।''

ବିଜୟବଲ୍ଲଭ ପଟ୍ଟନାୟକ୍ ଯୋଉ ଗଦାରେ ଓଡ଼ିଶା, ମଧ୍ୟପ୍ରଦେଶ, ହିମାଚଳ, ଆସାମ, ମିଜୋରାମ, ନାଗାଲାଣ୍ଡ ଓ କର୍ଣ୍ଣାଟକ ଦଳ ରଖିଥିଲେ ସେଥିରେ ଗୁଜୁରାଟ ଓ ଆନ୍ଧ୍ରର ଜିଗ୍-ସ ମାନଚିତ୍ର ଖଣ୍ଡଗୁଡ଼ିକୁ ଯୋଡ଼ିଦେଲେ ।

ସେ ତା'ପରେ ଚେନ୍ନାଇରେ ଥିବା ଜୟଲକ୍ଷ୍ମୀଙ୍କ ସହ ଫୋନ୍ ଲଗାଇ କଥାବାର୍ତ୍ତା ହେଲେ ।

''ମିସ୍ ଜୟଲକ୍ଷ୍ମୀ, ମୁଁ ଓଡ଼ିଶାରୁ ପଟ୍ଟନାଏକ୍ କହୁଚି ।''

''ଆହା, ପଟ୍ଟନାଏକ୍ ଗାରୁ, ଆପଣ କେମିତି ଅଛନ୍ତି ?''

''ଭଲ, ଆଉ ତୁମେ ?''

''ଭଲ ।''

''ହଁ ସିଧା କାମ ଓପରକୁ ଆସିଯାଇଚି ।''

''ମୁଁ ମଧ୍ୟ ସେଇଆ ଚାହୁଁଚି ।''

''ବର୍ତ୍ତମାନ ଆମଦଳ ଦୁଇଟି ଭାଗରେ ବିଭକ୍ତ ହେଇଚି, ଗୋଟିଏ ଇଉ.ପି. ବାଲା ସିଂହଙ୍କ ନେତୃତ୍ୱରେ ଆଉ ଅନ୍ୟଟି ମୋ ନେତୃତ୍ୱରେ । ଆସନ୍ତା ସପ୍ତାହରେ ଆସନ ବୁଝାମଣା ନେଇ ସିଂହ ତୁମ ସହ କଥାବାର୍ତ୍ତା କରିବେ । ତୁମେ ଯାହା ରାଜିନାମା କରିବ ସେଥିରେ ମୁଁ ରାଜି, କିନ୍ତୁ ନିର୍ବାଚନ ପରେ ସଂସଦରେ ତୁମେ ମତେ ସମର୍ଥନ କରିବ ।''

"ବିଶ୍ୱସ୍ତତା ବିଷୟରେ କ'ଣ କହୁଚନ୍ତି ?"

"ସେଇଟା ଆମଦଳକୁ ନା ସିଂହକୁ ?"

"ନିଶ୍ଚିତ ଭାବେ, ଆପଣଙ୍କ ଦଳକୁ ।"

"ତୁମକୁ ଧନ୍ୟବାଦ । କଥା ହେଲା, ମୁଁ ଏ ସିଂହ, ମୁହିମ୍ ଓ ଯାଦବମାନଙ୍କ ପରି ହିନ୍ଦୀବାଲାଙ୍କ ସାଙ୍ଗେ ରହିପାରିବି ନାହିଁ । ଆଉ ଓଡ଼ିଶା ଓପରେ କି ତାମିଲନାଡୁ ଓପରେ ଉତ୍ତରପ୍ରଦେଶ ଶାସନ କରିବ, 'ଏଇଟା ମୁଁ ପସନ୍ଦ କରୁନି ।"

"ମୋ ମତ ଠିକ୍ ସେଇଆ ।"

ଆମେ ସମ୍ବିଧାନକୁ ହିନ୍ଦୀ ବିଷୟରେ ସଂଶୋଧନ କରିବୁ ।"

"ଏଇଟା କ'ଣ ପକ୍କା କଥା ?"

"ମୁଁ ତୁମକୁ ବହୁତ ଭଲପାଏ । ମୁଁ ତୁମକୁ ମିଛ କହିବି ନାହିଁ । ମୁଁ ପ୍ରତିଜ୍ଞା କରୁଚି ।"

"ଧନ୍ୟବାଦ । ସେ ସିଂହ ଭାରି ସାଂଘାତିକ ହେଇଗଲାଣି । ଆନ୍ଧ୍ରକଥା ଦେଖନ୍ତୁ ।"

"କେବଳ ତୁମ ପାଇଁ ମୁଁ ଗୋଟାଏ ବ୍ୟବସ୍ଥା କରିଚି । ତୁମ ବନ୍ଧୁ ଭେଙ୍କଟ ଆସନ୍ତା କାଲି ପୁଣି ସି.ଏମ୍. ଅଫିସ୍‌ରେ ବସିଥିବ ।"

"ଆପଣ ଥଟ୍ଟା କରୁଚନ୍ତି । ସେ ଗତକାଲି ଇସ୍ତଫା ଦେଇଚନ୍ତି ଓ ସେମାନେ ଆଜି ହିଁ ନୂଆ ନେତା ଅନ୍ୟଜଣଙ୍କୁ ବାଛୁଚନ୍ତି । ମୁଁ ଗତକାଲି ରାତିରେ ତାଙ୍କ ସହ କଥା ହେଇଥିଲି । 'ସେ ଏକେବାରେ ଭାଙ୍ଗିପଡ଼ିଚନ୍ତି ।"

"ବର୍ତ୍ତମାନ ତାଙ୍କ ସାଙ୍ଗେ କଥା ହୁଅ ।"

"ଓକେ । କଥା ରହିଲା ।'

ପଟ୍ଟନାଏକ୍ ସିଂହଙ୍କ ପରି ଦିଲ୍ଲୀରେ ବସି ରାଜନୀତି କରନ୍ତି ନାହିଁ, ସେ ଜଣେ ଜଣେ ବ୍ୟକ୍ତିଙ୍କୁ ନେଇ କାମ କରନ୍ତି । ସେ ମହାରାଷ୍ଟ୍ରର ବିରୋଧୀନେତା ଚୌହାନ୍‌ଙ୍କୁ ଫୋନ୍ ଲଗେଇଲେ ।

"ଆଚ୍ଛା, ତୁମେ ହଉଚ ମାଗୀ ।"

"ହଁ । ମୁଁ ମାଗୀ । ସମସ୍ତେ ମତେ ମାଗୀ ସୁନ୍ଦରୀ ବୋଲି କହନ୍ତି । ନା ମୋର ମାତଙ୍ଗୀ ।"

"ତୁମେ ମତେ ପୁରୀରେ ବୋକା ବନେଇଦେଲ ।"

ନିଜ ଗାଁଠୁଁ କିଛି ଦୂରରେ ମାରାଇନ୍ ଡ୍ରାଇଭ କଡ଼ରେ ନିର୍ଜନ ସମୁଦ୍ର କୂଳରେ ବସି ମାଗୀ ଆଙ୍ଗୁଠିରେ ବାଲି ଖେଳୋଉଥିଲା ଆଉ ମଲ୍‌ହୋତ୍ରାକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଥିଲା । ଏଠିକି ତାକୁ ମଲ୍‌ହୋତ୍ରାଙ୍କ ଲୋକମାନେ ନେଇ ଆସିଥିଲେ । ସେମାନେ ତାକୁ ତା'ର ଗାଁରୁ ଆଣି ଟ୍ୟାକ୍‌ସିରେ ପୂରେଇ ଏ ନିଛାଟିଆ ଜାଗାକୁ ନେଇ ଆସିଥିଲେ । ଚାରିଜଣ ଲୋକ ସେଇ ନିଛାଟିଆ ବାଲିରେ ଚାରିଦିଗକୁ ଘେରାଉ କରି ଜଗି ରହିଥିଲେ ।

''ହଁ ମୁଁ ତୁମକୁ ବୋକା ବନେଇଥିଲି । ତୁମେ କାହିଁକି ପାଣ୍ଡୁ ପଛରେ ପଡ଼ିଚ ? ତୁମେ ସବୁ ପାଣ୍ଡୁକୁ ମାରିବାକୁ ଚେଷ୍ଟା କରିଥିଲ ?''

''ନା, ଯେଉଁମାନେ ତାକୁ ମାରିବାକୁ ଉଦ୍ୟମ କରୁଥିଲେ ସେମାନଙ୍କଠାରୁ ରକ୍ଷା କରିବାକୁ ମୁଁ ଆସିଚି । ମୁଁ ସି.ବି.ଆଇ.ରୁ ଆସିଚି ।''

''ସେଇଟା କ'ଣ ?''

''ତୁମେ ଜାଣିନ ? ଏଇଟା ହେଲା ଦିଲ୍ଲୀର ଗୋଟିଏ ପୋଲିସ୍ ବିଭାଗ । ମତେ ପି.ଏମ୍. ପଠେଇଚନ୍ତି ।''

''ସେ ପୁଣି କ'ଣ ?''

''ତୁମେ ତା'ବି ଜାଣିନା ? ସେ ସାରା ଦେଶର ପ୍ରଧାନମନ୍ତ୍ରୀ । ତୁମେ ମତେ ପୁଣି ବୁଦ୍ଧୁ ବନେଇବାକୁ ଚେଷ୍ଟା କରୁଚ ?''

''ନା ।''

''ତୁମେ ପି.ଏମ୍., ସି.ଏମ୍. ଓ ଅନ୍ୟମାନଙ୍କୁ ହତ୍ୟାକରିବାକୁ ପାଣ୍ଡୁକୁ ପ୍ରବର୍ତ୍ତାଇ ନ ଥିଲ ?''

''ହଁ ।''

''ଏଥିପାଇଁ କିଏ ପଇସା ଦଉଚି ତୁମକୁ ?''

''ପଇସା ଦଉଚି ?''

''ନ ଜାଣିଲା ପରି ଛଳନା କରନି । ତୁମେ କ'ଣ ଭାବୁଚ ଗୋଟିଏ ଲୋକକୁ ସେବା ଶୁଶ୍ରୂଷା କରି, ତାକୁ ମୃତ୍ୟୁମୁଖରୁ ରକ୍ଷା କରି, ଭଲ କରିଦବା ପରେ, ତାକୁ ରାଜନୈତିକ ନେତାମାନଙ୍କୁ ହତ୍ୟା କରିବାକୁ ପ୍ରବର୍ତ୍ତାଇବାରେ ତୁମର କିଛି ସ୍ୱାର୍ଥ ନାହିଁ ? ଏଥିପାଇଁ ତୁମକୁ କିଏ ଟଙ୍କା ଦଉଚି କୁହ ।''

''କେହି ନୁହେଁ ।''

''ତୁମେ କମ୍ୟୁନିଷ୍ଟ, ନା ଉଗ୍ରବାଦୀ ନା ଆଉକିଛି ?''

''ସେମାନେ ସବୁ କିଏ ?''

"ତୁମେ ଭାବ ନାହିଁ ଯେ ତୁମେ ଜଣେ ନାରୀ ହେଇଥିବାରୁ ମୁଁ ତୁମକୁ ଛାଡ଼ିଦେବି । ଯଦି ତୁମେ ନ କହିବ ମୁଁ ତୁମର ସୁନ୍ଦର ମୁହଁକୁ ଏତେ ଅସୁନ୍ଦର କରିଦେବି ଯେ ତୁମେ ଦୁନିଆରେ ମୁହଁ ଦେଖେଇ ପାରିବ ନାହିଁ । ଆଉ ତୁମ ଦେହ, ହା,ହା ।'

"ତମେ ମତେ ବଳାତ୍କାର କରିବ ?"

"ଦେଖିବା ।"

"ତମେ ମୋ ଦେହକୁ ପୋଡ଼ିଦବ ?"

"ଦେଖିବା ।"

"ତମେ ମୋ ବାଳ ଓପାଡ଼ିଦବ ?"

"ଦେଖିବା ।"

"ମୋ ବେକ କାଟି ପକେଇବ ?"

"ଆରେ...."

"ତମେ ଶାବଳ ପୂରେଇ ଦବ ମୋ ଛାତିରେ ?"

"ରୁହ ରୁହ..."

"ତମେ କ'ଣ ଏ ପର୍ଯ୍ୟନ୍ତ ଏସବୁ ମତେ କରିନ ?"

"ଆରେ ଆରେ ମୁଁ କେତେବେଳେ ଏସବୁ କଲି ? ମୁଁ ତୁମକୁ ଛୁଇଁ ବି ନାହିଁ ।"

"ଚାରିଆଡ଼କୁ ଚାହଁ ।"

ମଲ୍‌ହୋତ୍ରା ଚାରିଆଡ଼କୁ ଚାହିଁଲେ କିନ୍ତୁ କିଛି ଉଦ୍ଦୀପକ ଜିନିଷ ଦେଖି ପାରିଲେନି ଏ ଅସରନ୍ତି ବାଲିରେ, କୋଳାହଳମୟ ଲହଡ଼ିମାଳରେ, ନିଶ୍ଚଳ ଝାଉଁଗଛମାନଙ୍କରେ, ଦୂରରେ ଠିଆ ହେଇଥିବା ତାଙ୍କ ଲୋକମାନଙ୍କଠାରେ ଆଉ ପେଯୁଆ ଆକାଶରେ ।

"ଆଉଥରେ ତମ ଚାରିଆଡ଼କୁ ଚାହଁ ।"

ମଲ୍‌ହୋତ୍ରା ପୁଣିଥରେ ଚାରିଆଡ଼କୁ ଚାହିଁଲେ ଆଉ ଦେଖିଲେ ଢେଉ ଢେଉଆ ବାଲି ସମୁଦ୍ର କୂଳେ କୂଳେ ଦୂରଦୂରାନ୍ତକୁ ଚାଲିଯାଉଚି ତାଙ୍କର ଦି'ପଟେ କେତେ ଆକାରର ଢାଞ୍ଚା ଗଢ଼ି । ଅସ୍ଥିର ଢେଉ ସବୁ କୂଳର ବାଲିପଟିକୁ ଓଦାକରି ଚାଟି ଚିକଣେଇ ଦଉଚି, ମଣିଷର ପାଦଟିଏ ବି ପଡ଼ିନି ସେଠି, ଆଉ ଭେଣ୍ଡିଆ ଝାଉଁମାନେ ଦୋହଲୁଚନ୍ତି ସମୁଦ୍ରର ଥଣ୍ଡା ପବନରେ । ସେ ଦେଖିଲେ କୁନି କୁନି କଙ୍କଡ଼ା ତାଙ୍କ ଗାତରୁ ଉଠିଆସି ବାଲିରେ ନାଚି ନାଚି ଅନ୍ୟ ଗାତଭିତରେ ପଶିଯାଉଥିଲେ କୋଉ ଅଜଣା ଖେଳରେ । ଜିଆମାନେ ଓଦାବାଲି ଫୁଟେଇ ଲାଙ୍ଗୁଡ଼ ହଲେଇଲେ ପବନରେ

ଆଉ ପୁଣି ଗାତରେ ପଶିଗଲେ ଯିମିତି ଢେଉମାଡ଼ିଆସିଲା ବାଲିକୁ ଚିକ୍କଣ କରି ଛାଡ଼ିଯିବାକୁ । ରାସ୍ତା ଆରପଟ ନଡ଼ିଆ, ଝାଉଁ ଆଉ ଲଙ୍କାଆମ୍ବ ବଣରେ ତା ଆରପଟ କଦଳୀ ଆଉ ଆମ୍ବ ବଗିଚାରେ ଘରଚଟିଆ, ବଣି, କଜଳପାତୀ, ହଳଦିବସନ୍ତ ଆଉ କୋଇଲି ଉଡ଼ିବୁଲୁଥିଲେ ଗୀତ ଗାଇ । ବଗମାନେ ନଡ଼ିଆ ଗଛରେ ଓହ୍ଲେଇ ପଡ଼ି ସବୁ ନିରୀକ୍ଷଣ କରୁଥିଲେ । ଗୋଟିଏ ଆଲବାଟ୍ରସ୍ ନେଳି ଆକାଶରେ ଉଡ଼ିଚାଲିଗଲା । ବାଁ ଆଡ଼କୁ, ବହୁତ ଦୂରରେ, ଆଖି ଅଦୁରୁଶିଆ, ଗଲ୍ ଦଳଟିଏ ସମୁଦ୍ର ଓପରେ ଥମି ଦେଖୁଥିଲେ ଗୋଟିଏ ଉଡ଼ନ୍ତା ମାଛଦଳକୁ ଗୋଟିଏ ଲହଡ଼ିରୁ ଉଠି ଆଉ ଗୋଟିଏ ଉଠୁଥିବା ଲହଡ଼ିରେ ହଜିଯିବାର । ପରପଇସ୍‌ଟାଏ ଆକାଶକୁ ଡିଆଁମାରି ପଡ଼ିଗଲା ସମୁଦ୍ର ଚହଲେଇ ଆନନ୍ଦରେ ଆକାଶରୁ ଚେନାଏ ସମୁଦ୍ର ଭିତରକୁ ଟାଣିନେଇ । ସାର୍କ ଡେଣାଟାଏ ଦୁଶୁଥାଏ ବୁଡୁଥାଏ । ସେ କେତେ ଆକାରର ଛାଇ ଦେଖିଲେ, କୋଉ ସୁଦୂରର ଶବ୍ଦ ଶୁଣିଲେ, ତାଙ୍କ ଦିଲ୍ଲୀବାଲା ଚାରିଜଣ ସତର୍କ ହେଇ ଚାରିଦିଗକୁ ମୁହାଁଇ ଠିଆ ହେଇଥିବା ସତ୍ତ୍ୱେ ।

ମଲ୍‌ହୋତ୍ରାଙ୍କ ସ୍ତ୍ରୀ ବୀଣା ତାଙ୍କର ଆର୍.କେ.ପୁରମ୍ ଘରେ ଏକା ସୋଫା ଓପରେ ଶୋଇ ଘୁଙ୍ଗୁଡ଼ି ମାରୁଥିଲେ, ପିଲାମାନେ ସ୍କୁଲ ଯାଇଥିଲେ ଓ ଟି.ଭି. ତାର ପ୍ରତିଦିନର ଦି'ପହରର କାର୍ଯ୍ୟକ୍ରମ ପ୍ରସାରଣ କରୁଥିଲା । ସୁନୀତା ଲାଗି ଲାଗି ଦୁଇଟି କ୍ଲାସ ନେଇ କ୍ଲାନ୍ତ ହେଇ ଷ୍ଟାଫ୍ କମନ୍‌ରୁମ୍‌ରେ ବସି କପେ ଚା' ପିଉଥିଲେ । ଡି.ଜି. ଫୋନ୍‌ରେ ଦିଲ୍ଲୀ ବାହାରେ ତାଙ୍କ ଫାର୍ମହାଉସ ପାଇଁ ଗୋଟିଏ ଜମି ସଂକ୍ରାନ୍ତରେ ଆଲୋଚନା କରୁଥିଲେ । ପି.ଏମ୍. ସଭାକକ୍ଷରେ ବସି ଯୋଜନା କରୁଥିଲେ । ସବ୍-ଇନ୍‌ସପେକ୍ଟର ଭବାନୀ ଦାସ ଶହେଜଣ ସ୍ଥାନୀୟ ଲୋକଙ୍କୁ ଏକଜୁଟ୍ କରୁଥିଲେ, ସମୁଦ୍ର କୂଳରେ ଚଢ଼ାଉକରି ମାଗୀକୁ ଉଦ୍ଧାର କରିବା ପାଇଁ । ସେ ଶନିର ବଳୟ ଭିତରେ କିଛି ଗୋଟାଏ ସାଏଁକରି ଚାଲିଯିବାର ଦେଖିଲେ ।

ସେ ମାଗୀକୁ ଚାହିଁଲେ ଯେ କି ନିଜ ଟେକା ଆଣ୍ଠୁକୁ ହାତରେ ଭିଡ଼ିଧରି ମୁହଁ ତା ଓପରେ କଡୁଆ କରି ରଖି ମଲ୍‌ହୋତ୍ରାଙ୍କୁ ସ୍ନେହପୂର୍ବକ ଚାହିଁଥିଲା ।

ମଲ୍‌ହୋତ୍ରା ଚାରିଆଡ଼କୁ ପୁଣିଥରେ ଚାହିଁ ସବୁ ଦେଖିଦେଲେ ।

''ଆଉ ତମେ କ'ଣ ଚାହଁନି ଆମକୁ ଯୋଉମାନେ ଏମିତି କରିଛନ୍ତି ସେମାନେ ଯିବା ଉଚିତ ବୋଲି ? ତମେ କ'ଣ ଭାବୁନ ଭୋକିଲାକୁ ଖାଇବାକୁ ମିଳୁ, ଲଙ୍ଗଳାକୁ ଲୁଗା, ଅଘରୁଆକୁ ଘର ମିଳୁ, ଅବିଚାରର ଅନ୍ତ ହଉ, ଅତ୍ୟାଚାର ବନ୍ଦ ହଉ ଆଉ ଆମେ ସବୁ ମୁକ୍ତି ପାଉ ?''

''କିଏ ମୁକ୍ତ ହବାକୁ ନ ଚାହେଁ ? କିନ୍ତୁ ମୁକ୍ତି କାହିଁ ? ମୁଁ ଥରେ ଫ୍ଲୁରେ ପଡ଼ିଥିଲା ବେଳେ ଭାବୁଥିଲି, ମୁଁ ଅବଶ୍ୟ ବହୁତ କମ୍ ରୋଗରେ ପଡ଼େ । ମୁଁ ବିଛଣାରେ

ଶୋଇଥିଲି । ତା'ପରେ ମୁଁ ଭାବିଲି । ମୁଁ ଚିନ୍ତା କଲି ଆମେ ଅନେକ କାମ କରୁ କରିବାକୁ ଇଚ୍ଛା ନ କରି, ସବୁ ବିଷୟରେ ନ ଭାବି ବି । ଆମେ ରାତିରେ ଶୋଇ ସକାଳୁ ଉଠୁ । କାହିଁକି ? କାରଣ ସମସ୍ତେ ଯା କରନ୍ତି ।''

''ରାତିରେ ତ ଅନ୍ଧାର, ତମେ କ'ଣ କରିପାରିବ ? ତମେ ସହରୀମାନେ ଏ କଥା ବୁଝିପାରିବନି କାରଣ ତମ ପାଇଁ ସବୁବେଳେ ଆଲୁଅ ଅଛି ।''

''ଆମେ ସକାଳେ ଉଠି ଦାନ୍ତ ଘଷୁ । କାହିଁକି ? କାରଣ ସମସ୍ତେ ଘଷନ୍ତି ।''

''ନ ହେଲେ ତମ ପାଟି ଗନ୍ଧ ହବନି ?''

''ମତେ ବାଧା ଦିଅନି ଆଜି । ଥରେ ହେଲେ କହିବାକୁ ଦିଅ । ଯେତେବେଳେ ପିଲାଟାଏ ବଡ଼ ହୁଏ, ସେ ସ୍କୁଲକୁ ଯାଏ । କାହିଁକି ? କାରଣ ସବୁ ପିଲେ ଯାଆନ୍ତି । ସ୍କୁଲ ପରେ ତାକୁ କଲେଜ ଯିବାକୁ ହବ । କାହିଁକି ? ସମସ୍ତେ ତାହା ହିଁ କରନ୍ତି । କଲେଜ ସରିଲେ ତାକୁ ଚାକିରି କରିବାକୁ ହବ । କାହିଁକି ? ସମସ୍ତେ କରନ୍ତି, ଆଉ କ'ଣ ? ତା ପରେ ସେ ବାହାହବ । କାହିଁକି ? ସମସ୍ତେ ବାହାହୁଅନ୍ତି । ବାହା ନ ହେଇ ଆରାମରେ ତମେ ପ୍ରେମ କରିପାରିବ, ଛୁଆ ଜନ୍ମ କରିପାରିବ, ସବୁ କିଛି କରିପାରିବ । କିନ୍ତୁ ନା, ତୁମକୁ ବାହା ହବାକୁ ହବ, ଆଉ ଜନ୍ତାରେ ସଢ଼ିବାକୁ ହବ, ପାଟିରେ ବିଟ, ମୁହଁରେ ତୁଣ୍ଡା, ବେକେରେ ପଟି, ହାତେରେ କଡ଼ି, ଗୋଡ଼େରେ ବେଡ଼ି, ଆଉ ଜୀବନଯାକ ପାଇଁ ଚିଆଁଦାଗ । ନ ହେଲେ ତମେ ଶୁଖୁଆ ପରି ଜାଲରେ ପଡ଼ି, ଭୂଇଁକୁ ଆସି, ପେଟଚିରା ହେଇ, ଅନ୍ତନାଡ଼ି ଭିଡ଼ାହେଇ, ହଳଦି ଲେସା ହେଇ, ଲୁଣ ଠେସା ହେଇ ଖରାରେ ପଡ଼ିଥିବ ପୋଡ଼ାହେଇ ଖିଆହବା ଯାଏ ।''

''ତମେ ସ୍ତ୍ରୀମାନଙ୍କୁ ଭଲ ପାଅନି ।''

''ନା ନା, ନା-ନା । ମୁଁ ଭଲପାଏ । ସେ କଥା ନୁହେଁ.... ।''

''ତମ ସ୍ତ୍ରୀ ତମକୁ ଭଲ ଲାଗନ୍ତିନି ।''

''ମାନେ, ତା ନୁହେଁ ପ୍ରକୃତରେ, ଏଇ ଯୁ ଢାଞ୍ଚା । ଆମେ ତା ଭିତରେ ବନ୍ଦ ହେଇ ଯାଇଚେ । କାରଣ ନ ଜାଣି କରି ଚାଲିଚେ । ଆମେ ଫ୍ରି ନୁହଁ, ମୁକ୍ତ ନୁହଁ । କି ପ୍ରକାର ସ୍ୱାଧୀନତା ଆମର ଅଛି ? ମତେ ଦେଖାଅ, କୋଉଠି ଅଛି । ଯଦି ସ୍ୱାଧୀନତା ଥା'ନ୍ତା ତେବେ ମତେ ଆୟକର ଦବାକୁ ପଡୁ ନ ଥା'ନ୍ତା । ଏଇବର୍ଷ ମୁଁ କୋଡ଼ିଏ ହଜାର ଟଙ୍କା ଦେଇଚି । ଅତି କଷ୍ଟରେ ରୋଜଗାର କରିଥିବା ଟଙ୍କା ମୋର, ଝାଳ ବୁହା ଧନ । କାହିଁକି ? କାରଣ ଏଇଟା ଏଠାର ପ୍ରଚଳିତ ଢାଞ୍ଚା । ଏ ଟଙ୍କା କୁଆଡ଼େ ଯାଏ ? ସରକାରଙ୍କ ବିରାଟ ଟିକସ କଳକୁ ବଞ୍ଚାଇ ରଖିବା ପାଇଁ, ଯାହାର କାମ ହେଲା ଖାଲି ଟ୍ୟାକ୍ସ ସଂଗ୍ରହ କରିବା । ଯଦି ଏ ଟିକସ ଉଠେଇ ଦିଆଯିବ ଆଉ

କଲଟା ବି, ତେବେ ସମସ୍ତେ ଲାଭବାନ ହେବେ, କେହି କ୍ଷତିରେ ପଡ଼ିବେ ନାହିଁ, କିନ୍ତୁ ଆମେ ଯା କରିବୁନି କାରଣ ଯାହା ପ୍ରଚଳିତ ଅଛି ତାକୁ ହିଁ ଆମେ ଚଳେଇବୁ। ବିକ୍ରିକର, ଏକ୍ସାଇଜ୍ ଶୁଳ୍କ, ଅକ୍ଟ୍ରାଇ ଟିକସ, ନିର୍ବାଚନ ଟିକସ, ଆମଦାନୀ ଓ ରପ୍ତାନୀ ଟିକସ, ରୋଗ ଟିକସ, ସ୍ୱାସ୍ଥ୍ୟ ଟିକସ, ଜୀବନବୀମା ଟିକସ, ସାଇକେଲ୍ କର, ରାସ୍ତାକର, ଘର ଟିକସ, ପାଣି ଟିକସ, ବିଦ୍ୟୁତ୍ ଶୁଳ୍କ, ବସ୍ କର, ରେଳ ଟିକସ, ଉଡ଼ାଜାହାଜ ଟ୍ୟାକ୍ସ, ଟିକଟର ସରଚାର୍ଜ ଟିକସ, ଟିକସର ଟିକସ, ଟିକସର ଟିକସର ଟିକସ, ଟିକସର ଟିକସର ଟିକସର ଟିକସ। ସ୍ୱାଧୀନତା କାହିଁ ? ଏ ଦେଶର ଚାରିଆଡ଼େ ଖାଲି ଟ୍ୟାକ୍ସ୍ ହିଁ ଟ୍ୟାକ୍ସ୍।''

''ତେଣୁ ଆମେ ନିଜେ ହିଁ ନିଜକୁ ସ୍ୱାଧୀନ କରିବାକୁ ହବ, ନୁହେଁ କି ?''

ମଲ୍ହୋତ୍ରା ଗୋଟିଏ ଲମ୍ବା ନିଃଶ୍ୱାସ ନେଲେ।

''ହଁ,'' ସେ କହିଲେ।

''ଆମେ ସମସ୍ତେ ଏକାଠି କାମ କରିବାକୁ ହବ।''

''ହଁ, ଆମକୁ ଏକାଠି କାମ କରିବାକୁ ହବ।''

ସେ ଗାଡ଼ିରେ କହିଲେ, ''ତମେ କ'ଣ ଭାବୁଚ, ମୁଁ ମୋ ସ୍ତ୍ରୀକୁ ଛାଡ଼ ପତ୍ର ଦେଇ ପାରିବି ?''

''ସେ ଭାରି ସୁନ୍ଦରୀ।''

''କିଏ ?''

''ସେଇ ଝିଅଟି, ଯିଏ ଗଲାବର୍ଷ ଏଠିକି ତମ ସାଙ୍ଗେ ଆସିଥିଲେ।''

''ତମେ ଦେଖିଥିଲ ?''

''ହଁ।''

''ମୁଁ ତାକୁ ବାୟାଙ୍କ ଭଳିଆ ଭଲପାଏ।''

''କିଛି ଖରାପ କଥା ନୁହେଁ।''

''ବାହା ହବାଟା ଯଦି ବିଲ୍କୁଲ ନ ଥା'ନ୍ତା।''

''ହେଇପାରେ, ତମ ପୁଅ ପାଇଁ।''

''ମୋର ପୁଅ ନାହିଁ।''

''ତେବେ ତମ ଝିଅମାନଙ୍କ ପାଇଁ।''

''ହୁଁ। କିନ୍ତୁ ମୋ କଥା କ'ଣ ହବ ?''

''ଦେଖିବା ।''

ମଲ୍‌ହୋତ୍ରା ତା ହାତକୁ ଧରି ପକେଇଲେ ।

''ତମେ ଭାରି ସୁନ୍ଦର ଯଦିଓ ମାଛ ଗନ୍ଧ ହେଉଚ । ସେଇଟା ଅବଶ୍ୟ ସୁଧାରି ନେଇ ହବ ।''

ସେ ମଲ୍‌ହୋତ୍ରାଙ୍କ ହାତକୁ ଚିପିଧରିଲା ଆଉ କିଛି ସମୟପରେ ନିଜ ହାତ ଖସେଇ ନେଲା ।

ମଲ୍‌ହୋତ୍ରା ତାକୁ ଛୁଇଁବା ମାତ୍ରେ ଅନୁଭବ କରିପାରିଲେ ଯେ ସେ କ୍ଳାନ୍ତ ଥିଲା ।

''ତମେ ଖୁବ୍ ବିବ୍ରତ ଅଛ,'' ତାକୁ ଚାହିଁ ମଲ୍‌ହୋତ୍ରା କହିଲେ ।

''ଗୋଟିଏ ଲୋକ ଅଛି, ମୁଁ ତାକୁ ନିଶ୍ଚୟ ଦେଖାକରିବି,'' ମାଗୀ କହିଲା । ''ଭୁବନେଶ୍ୱରରେ ।''

''ଏଇ ବିଷୟରେ ?''

''ହଁ ।''

''ମତେ ସାଙ୍ଗେରେ ନିଅ ।''

ମାଗୀ ଇତସ୍ତତଃ ହେଲା ।

''ନା,'' ସେ ଶେଷରେ କହିଲା । ''ତମେ ଏଇଠି ଅପେକ୍ଷା କର । ମୁଁ ଆସନ୍ତା କାଲି ସନ୍ଧ୍ୟାରେ ଫେରିଆସି ତମକୁ କହିବି ।''

''ତୁମ ଇଚ୍ଛା ।''

ମଲ୍‌ହୋତ୍ରା କିଛିସମୟ ପାଇଁ ଚୁପ୍‌ହେଇ ଧ୍ୟାନମଗ୍ନ ହେଇ ଚିନ୍ତାକଲେ । ତା'ପରେ ମୁଣ୍ଡ ଉପରକୁ ଉଠେଇ ବ୍ୟସ୍ତହେଇ ପଚାରିଲେ, ''ତମେ ଭାବୁଚ ମୋ ପାଇଁ କିଛି ଆଶା ଅଛି ?''

''ହଁ,'' ସେ କହିଲା ।

ସେ ଆଉଥରେ ଦୀର୍ଘନିଃଶ୍ୱାସ ନେଲେ । ଦୋକାନ ଛକ ଚକଡ଼ାରେ ଭବାନୀ ଦାସ ଫୁଙ୍ଗୁଳା ଦେହରେ ଗରିବଗୁରୁବାଙ୍କ ଖାଲିହାତ ସୈନ୍ୟଦଳଧରି ଖାକି ହାଫ୍ ପ୍ୟାଣ୍ଟ୍ ପିନ୍ଧି ଠିଆ ହେଇଥିଲେ ।

''କାମ କରିବା,'' ମଲ୍‌ହୋତ୍ରା କହିଲେ । ସେ ତାଙ୍କ ନିଜ୍ କଳା ଚଷମାକୁ ଝରକା ବାହାରକୁ ଫୋପାଡ଼ି ଦେଲେ ଓ କାର୍‌ରୁ ଓହ୍ଲେଇ ପଡ଼ି ଭବାନୀ ଦାସଙ୍କ ସାମନାରେ ଠିଆହେଲେ ଯାହାଙ୍କ ପଛରେ ଲୋକମାନଙ୍କର ଗୋଟାଏ ଛୋଟ

ସୈନ୍ୟବାହିନୀ ଠିଆ ହେଇଥିଲା । ଭବାନୀବାବୁ ଫଟାଫଟ୍ ଗୋଡ଼ ବାଡ଼େଇ ହାତଟେକି ସାଲ୍ୟୁଟ୍ ମାରିଲେ । ମଲ୍‌ହୋତ୍ରା ଆଶ୍ଚର୍ଯ୍ୟ ହେଇଯାଇ ସାଲୁଟ୍‌ର ପ୍ରତ୍ୟୁତ୍ତର ଦେଲେ । ମାଗୀ ଗାଡ଼ିରୁ ଓହ୍ଲେଇ ଆସିଲା । ତା ଆଖି ଦି'ଟି ମୁର୍ମୁକୁ ଖୋଜି ପକେଇଲେ ସେ ଗହଳିରେ, କିନ୍ତୁ ମୁର୍ମୁ ନ ଥିଲା । ହଠାତ୍ ପୃଥିବୀ କମ୍ପିଗଲା ପରି ଶବ୍ଦ ହେଲା ଲୋକମାନଙ୍କ ପଛରୁ । ଲୋକମାନେ ତରତର ହେଇ ଆଡ଼େଇ ହେଇଗଲାବେଳକୁ ପଛରୁ ଦିଶିଲା ଘଡ଼ଘଡ଼ ହେଇ ମାଡ଼ି ଆସୁଥିବା ଧଡ଼ଧଡ଼ିଆ ମଡ୍‌ଗାର୍ଡ଼ ଝୁଲା ସରକାରୀ ସାଇକଲ୍, ଯାହା ଓପରେ ବସି ଧଇଁସଇଁ ହେଇ ପେଡାଲ୍ ମାରୁଥିଲା କନ୍‌ଷ୍ଟେବଲ ତ୍ରିପାଠୀ । ସେ ସାଇକେଲ୍‌ରୁ ଡେଇଁପଡ଼ି ସାଲ୍ୟୁଟ୍ ମାରି ଧଇଁପେଲିବାକୁ ଲାଗିଲା ।

''କ'ଣ ହେଲା ?'' ଭବାନୀ ପଚାରିଲା ।

ତ୍ରିପାଠୀ ସେଇଠି ସିମିତି ଠିଆ ହେଇ ରହିଲା ଉର୍ଦ୍ଧ୍ୱଶ୍ୱାସ ହେଇ ।

''ପି.ଏମ୍., ଫି.ଏମ୍. କିଏ ଆସିଗଲେ ନା କ'ଣ ?'' ଭବାନୀ ପଚାରିଲେ, ''ନା ମନ୍ଦିର ଭୁଶୁଡ଼ି ପଡ଼ିଲା ?''

''ନାଃ,'' କନ୍‌ଷ୍ଟେବ୍ଲ ତ୍ରିପାଠୀ ପରିଶେଷରେ କହିଲା । ''ନିମାପଡ଼ାରୁ ଟେଲିଫୋନ୍ ଆସିଚି ।''

''କ'ଣ ?''

''ଏମେଲେ ଗୁଣନିଧିବାବୁ ମର୍ଡ଼ର ହେଇଚନ୍ତି କି କ'ଣ ଆଉ ତାଙ୍କ ନିମାପଡ଼ା ଘରେ ନିଆଁଲଗେଇ ଦିଆଯାଇଚି ।''

''ଆହା ! ଲୋକମାନେ କରିଚନ୍ତି ?'' ଭବାନୀ ଖୁସୀରେ ପଚାରିଲେ ।

''ନାଇଁ ସାର,'' ସେ କହିଲା, ମାଗୀ ଆଡ଼େ ଚାହିଁ । ''କଲ୍‌କୀ ସାର୍ । ବସ୍ ଚଢ଼ି ମାଡ଼ିଆସିଲା । କିଏ କିଏ କହୁଚନ୍ତି ଧଳା ବସ୍ । ଆଉ ପଛେ ପଛେ ଗୋଟେ କଳା ବସ୍ । ହନୁମାନ କି ଘଟୋତ୍କଚ କେଜାଣି । ସେ ଯାହା ହଉ ଗୋଟେ ପାହାଡ଼ ଭଳିଆ ଲୋକଟେ, ମୁହଁଟା କଟା କଟି ହେଇ ଯୋଡ଼ା ଯୋଡ଼ି ହେଲା ପରି, ପୁଣି ଛୋଟୋଉଥିଲା ଯେ କାହିଁରେ କ'ଣ, କିନ୍ତୁ ଯାହା ଶୁଣିଲି ଚାଲିଲାବେଳେ ଭୂଇଁ ଦୁଲୁକୁଥିଲା ।''

''ଗୋଟିଏ ଲୋକ ?''

''ହଁ ସାର୍ ।''

ମାଗୀ ଗୁଣୁ ଗୁଣୁ ହେଲା ଆଉ ମଲ୍‌ହୋତ୍ରା ତାକୁ କଣେଇ ଚାହିଁଲେ ।

''ଆହା !'' ଭବାନୀ ଆନନ୍ଦରେ କହିଲେ । ''ମେଘ ଘୋଟେଇଲାଣି ନା କ'ଣ ?''

ସେଦିନ ରାତିରେ ଭୋର ବେଳକୁ ଭବାନୀ ଦାସ ଆଉ ମହାରାଜ ମଲ୍‌ହୋତ୍ରା କେବଳ ତାଙ୍କ ସବୁଜ ଟୋପିଟିମାନ ପିନ୍ଧି ଯାଇ କୋଣାର୍କ ମନ୍ଦିରର ଚଉଡ଼ା ପାଚିରି ଓପରେ ଠିଆହେଇ ଚାହିଁଲେ ଭଙ୍ଗାରୁଜା ମନ୍ଦିରର ଆଲୁଅପକା ଐଶ୍ୱର୍ଯ୍ୟକୁ ।

"ଅଦ୍‌ଭୁତ ଏ ମନ୍ଦିର, ନା ?"

"କିଛି କହିବାର ନାହିଁ ।"

"ତା' ପରେ କ'ଣ ହବ ?"

"ଯେତେବେଳେ ହବ, ଠିକ୍ ଜାଣିବ । ଖୁବ୍ ଶୀଘ୍ର । ଆରମ୍ଭ ହେଇଗଲାଣି । କିନ୍ତୁ ବର୍ତ୍ତମାନ ଭୁବନେଶ୍ୱର ଯିବାକୁ ହବ ।"

"ସେ ଯାଉଚି ?"

"ହଁ ।"

॥ ୯ ॥

## ତୋ ପରି କିଏ ହବ

## ଉଡ଼ିଯାଉଥିବା ସୁବର୍ଣ୍ଣ ଚଢ଼େଇ ଧରିଆଣି କିଏ ଦବ ?

ଓ୍ୱାଆ ଆ ଆ ଆ ଆ ଆ ଆ ଆ ଆ ଆ ଆ ଆ ଆ ଆ ଆ !

ଏ ଅଭଦ୍ର ହଲାହଲି ଓ ଅଶ୍ଳୀଳ ଗ୍ରାଫିକ୍ ଚିତ୍ର ବନ୍ଦ କର !

ମତେ ସତର୍କ ଖେଞା କାହିଁକି ଦେଲ ? ଉଠା ସଙ୍କେତ ଜାଲରେ କାହିଁକି ଚିଆଁଇଲନି ? ବାବା ବୁଗି ବିଳାପ କଲେ ।

ସଙ୍କେତରେ ତମେ ଉଠିଲ ନାହିଁ, ଉତ୍ତର ଦେଲେ ପାରା ସାଇବାର୍ଗ ୩୨୧ ।

ସେଇଠୁ କ'ଣ ହେଲା ? ଆଉଥରେ ଚେଷ୍ଟା କରିଥା'ନ୍ତ ।

ଅବାନ୍ତର । ସମୟ ଚାପ । ଗୋଟାଏ କଫି-ଧକ୍‌କା ଆସୁଚି ।

ଓ୍ୱା ଓ୍ୱା ଓ୍ୱା, ଓସ୍ ! କାହିଁକି ଏତେ ବ୍ୟସ୍ତ ? କି ସମୟ ଚାପ ?

ତୃତୀୟ ଅବଗତି ସମୟ ହୋଇଗଲା । ଉତ୍ତରାଷାଢ଼ା ତାରାପୁଞ୍ଜ ଆସୁଚି । ପରୀକ୍ଷା କରିବାର ସ୍ଥଳଟି ଲକ୍ଷ୍ୟରେ ଅଛି । ଅବଗଣନା ବ୍ୟସ୍ତ ପାଞ୍ଚ ।

ଇଲୋ ବାପାଲୋ ! ମୁଁ ଅଧିକା ଶୋଇପଡ଼ିଲି ।

ଗୁଡ଼ାଏ ସ୍ୱିଚ୍ ଧକ୍‌କା ଆଉ ମୃଗଶିରା ତୈତିଳ ଫାଟପରେ ଯେତେ ସବୁ ଅଶ୍ଳୀଳ କବଚ ।

କିନ୍ତୁ ମଣିଷ-ଯୌନ ବଡ଼ ବିରକ୍ତିକର । କିଛି ବି ହେଲାନି । ସେଠି ନା ସ୍କୃ ଡ୍ରାଇଭର ଥିଲା, ନା ସୋଲ୍‌ଡର ଆଇରନ ନା ୱେଲଡିଂଗନ୍ ନା ସ୍ଫୁଲିଙ୍ଗ । କିଛି ନାହିଁ । ହଲାହଲି, କେଞ୍ଚାକେଞ୍ଚି, ମୋଡ଼ାମୋଡ଼ି, କଷାକଷି, ସେଁ ସାଁ କିଛି ନାହିଁ । କୁଆଡ଼େ ଗଲା ମୋର ସେ ମଣିଷଟା, ସ୍ତ୍ରୀ ବୋଲି ଯାହାକୁ କହନ୍ତି ? ଆଉ କ'ଣ କ'ଣ ଘଟୁଚି ?

ଗଡ଼ାଣି ପ୍ରକ୍ରିୟା ଆରମ୍ଭ ହେଇଗଲାଣି । କିନ୍ତୁ ସେ ସବୁ ପରେ । ଶେଷ ଅବଗଣନା ପ୍ରକଳ୍ପର ଡାକ ଦିଅ ।

ପରିକ୍ରମକ ସମୟ ବନ୍ଧକ କ'ଣ ହେଲା ? ସେମାନେ ଯାହାକୁ ଭାବିବେ କିମିଆଁ, ତନ୍ତ୍ର ।

ନିର୍ଘଣ୍ଟ ଅନୁସାରେ ଛଡ଼ା ଯାଇଥିଲା । ପରିକ୍ରମଣ କରୁଥିବ, ବାର୍ତ୍ତାବେଳେ ସମୟକୁ ରହିତ କରିବାକୁ ।

ଠିକ୍ ଅଛି ଠିକ୍ ଅଛି । ସଂଚାଳିତ କରିବାକୁ ପ୍ରସ୍ତୁତ ଅଛି ।

ପୃଥିବୀ ଆଶଙ୍କାରେ ଅପେକ୍ଷା କରୁଥିଲା । ଯୋଉ ସଙ୍କେତ ଦେଖିଲେ ଆଉ ଯାହା ବୈଜ୍ଞାନିକମାନେ ଦେଖିଲେ କିନ୍ତୁ ବୁଝିପାରିଲେନି, ସେ ସବୁର ଭାରରେ ଲୋକେ କୋକୁଆ ଭୟ ଆଉ ଉଚ୍ଛ୍ୱସିତ ଆନନ୍ଦ ମଝିରେ ଝୁଲିଝୁଲି ଯେ ଯାହା କାମ କରି ଚାଲିଥିଲେ ।

ସୂର୍ଯ୍ୟ ଯିମିତି ବୁଡିଗଲେ ଆଉ ଅନ୍ଧାର ଘୋଟିଆସିଲା, ମାଗୀ ତା କୁଡ଼ିଆରୁ ବାହାରି ଆସିଲା ହାତେରେ ସାନ ପୁଡ଼ିଆଟିଏ ଧରି । ନଡ଼ିଆ ବଣ ଆଡ଼େ ଗଲାବେଳକୁ ତା ଆଖି ତରକି କାହାକୁ ଖୋଜି ବୁଲୁଥିଲା । ଅଳ୍ପ ସମୟରେ କାମ୍‌ଦାକୁ ଗୋଟାଏ ଗଛ ଉହାଡ଼ରୁ ବାହାରି ଆସିବା ଦେଖିଲା ସେ । ମାଗୀ ତା ଆଡ଼କୁ ପୁଡ଼ିଆଟା ବଢ଼େଇ ଦେଲା ।

''ଏଇଟା କ'ଣ ?''

''ଜାଲ ପାଇଁ ତୋ ଭାଗ ।'' ମାଗୀ କାମ୍‌ଦାକୁ ନିରେଖି ଚାହିଁଲା । ''କୋଉଠି ଥିଲୁ ତୁ ? ମୁଁ ଚାରିଆଡ଼େ ଖୋଜି ସାରିଲିଣି ତତେ ।''

''ସେମାନେ ମୋ ପଛରେ ଲାଗିଗଲେଣି, ମହାସ୍କନ୍ଧର ଲୋକମାନେ ବୋଧହୁଏ । ଏଣେ ତ କିଏ ଗୋଟାଏ ଗୁଣନିଧିକି ଦେଲାଣି ଘାଟ ପହଞ୍ଚେଇ, କିଏ ଜାଣେ ସେ ଆସି ଏଠି ନ ପହଞ୍ଚିଯିବ ମତେ ଠିକଣା କରିବାକୁ । ମୁଁ ଚାନ୍ସ୍ ଦଉନି । ମୁଁ ଲୁଚିକିରି ଅଛି । ଖାଲି ତତେ ଦେଖା କରିବାକୁ ଆସିଥିଲି ଅନ୍ଧାର ହେଲାରୁ । ହେଲେ ଅନ୍ଧାରରେ

କି ରକ୍ଷା ଅଛି, ନେଳି ଆଲୁଅ ଫାଲୁଅ ବାହାରୁଚି । କ'ଣ ସବୁ ହଉଚି ବୋଲି ଭାବୁଚୁ ?''

''ମୁଁ ବୁଝିପାରୁନି । ଭଲକଥା ହଉଚି ବୋଧେ । ନେ, ତୋ ଟଙ୍କା ନେ ।''

''ତୁ ରଖ । କହିଥିଲିନା । ତୁ ରଖ ।''

''ନେଇଯା', ତୋର ଏଇଟା,'' କାମ୍‌ଦା ହାତରେ ମାଗୀ ଜବରଦସ୍ତି ପଇସା ତକ ଗେଞ୍ଜି ଦେଲା, ''ବାଇଶି ଶ' ଏକାନବେ ଅଛି ଗଣିନେ ।''

''ବାଇଶି ଶ'.... ! କେମିତି ଇମିତି ? ଏତେ ଗୁଡ଼ା ?''

''ତୋ ଜାଲଟା ଲକ୍ଷ୍ମୀଙ୍କର ।''

''ସେଇଟା ତୋର ହେଲା ।'' କାମ୍‌ଦା ପଇସାତକ ଇତସ୍ତତଃ ହେଇ ପକେଟରେ ପୂରାଇଲା । ''ସେଇଟା ସବୁଦିନ ତୁ ନେଇଯା । ମାଛ ଜମା ନ ପଡ଼ିଲେ ବି ମୋର କିଛି ଚିନ୍ତା ନାହିଁ ।

''ସତେରେ ?''

''ହଁ ।''

''ଠିକ୍ ଅଛି,'' ମାଗୀ କହିଲା । ''ଆଉ ଗୋଟାଏ କଥା । ଆମକୁ ତୋ ସାହାଯ୍ୟ ଦରକାର । ଆମର ଆଉ ଗୋଟିଏ ଡଙ୍ଗା ଲୋଡ଼ା । ପଇସା ଅଛି । ଗୋଟେ ଭଲ ବଢ଼େଇ ଆଣିବାକୁ ହବ ତିଆରି କରିବାକୁ ?''

''ଗୋପର ରାହାସ ସବୁଠୁ ଭଲ କାରିଗର । କାଲି ତାକୁ ଡାକିଆଣିବି ଯିମିତି ହଉ ।''

''ତାହେଲେ ତତେ ପଇସା ନେଇ ରାହାସ କହିଲାମିତି କାଠ ଆଣିବାକୁ ପଡ଼ିବ । ତୁ ଆମ ପାଇଁ ସେତକ କରିବୁ ?''

''ମତେ ତୁ ସନ୍ଦେହ କରୁଚୁ କାହିଁକି ?''

''ମୁଁ ତତେ ସନ୍ଦେହ କୋଉଠି କରୁଚି ? ତୁ ତ ମତେ ଭଲ ଲାଗୁ । ନ ହେଲେ ତତେ କାହିଁକି କହନ୍ତି ?''

''ମୁଁ ଠିକ୍ କରିଚି ଏ ସ୍ମଗ୍‌ଲିଂ ଧନ୍ଦା ଛାଡ଼ିଦେବି । ହେଲେ ମତେ ସେମାନେ ସହଜେ ଛାଡୁ ନାହାନ୍ତି । ଧମକଉଚନ୍ତି । ଦେଖେ ।''

କାମ୍‌ଦା ମାଗୀ ହାତକୁ ଧରି ପକେଇ ତା ମୁଣ୍ଡରେ ରଖିଲା । ମାଗୀ ଆଙ୍ଗୁଠିକୁ ଲାଗିଲା ତା ମୁଣ୍ଡରେ ଗୋଟାଏ ଆବୁ ଯାହା ଓପରେ ରକ୍ତ ଶୁଖି ଯାଇଥିଲା ।

''ସେମାନଙ୍କ କାମ ।''

''ମୁଁ ଭବାନୀବାବୁଙ୍କୁ କହିବି ।''

''ଦି'ଦିନ ତଳେ ସେ ମତେ ସେ ଦିଲ୍ଲୀ ଲୋକ, ମଲ୍‌ହୋତ୍ରା ହାବୁଡ଼ରୁ ବଞ୍ଚେଇ ଥିଲେ ।''

''ଭବାନୀବାବୁ ?''

''ଆଉ ସେ କହିଲେ : 'କାମ୍‌ଦା ଯେତେବେଳେ ବି ତୋର କିଛି ଅସୁବିଧା ହବ, ମୁଁ ତତେ ସାହାଯ୍ୟ କରିବି । ମୋର କେହି ବଦଳି କରିପାରିବେ ନାହିଁ ।' ଏଇଆ ସେ କହିଲେ ।''

''ତା'ହେଲେ ତାଙ୍କୁ ଏ କଥା କହ । ସେ ନିଶ୍ଚେ କିଛି କରିବେ । ଆଉ ସେ ଦିଲ୍ଲୀବାଲା ବି ତତେ ହଇରାଣ କରିବନି ।''

''ହଁ ?'' ସେ କୌତୂହଳୀ ହେଇ ଚାହିଁଲା ତାକୁ । ''କେତେବେଳେ ଖସି ବାହାରିଲେ ସିନା କହିବି । ମୋ ପେଇଁ ଲୋକ ଜଗେଇଚନ୍ତି ସେମାନେ ।''

''ମୁଁ ତାଙ୍କୁ କହିବି ।''

''ହଁ, ଟିକେ ।''

''ଏବେ ଯା' । ସେ ଟୋକୀଯାକ ଆମକୁ ଦେଖିଲେ ମତେ ଥଟ୍ଟା କରିବେ ।''

''ଯୂଇ ଆଉ ସାନା କୋଠଘର ପାଖରୁ ଚାହିଁଚନ୍ତି । ଦେଖୁଚୁ ? ଆମୁକୁ ଦେଖି ପାରୁଥିବେ ? ତାଙ୍କୁ କହିଦବୁ ମୋ କଥା କାହାକୁ କହିବେନି ।''

''ହଁ ।''

''ମୁର୍ମୁ ଆସିଲାଣି ? ମୁଁ ଶୁଣିଲି ସେ ପିଇକିରି ଗୋଟାଏ ଟ୍ରକ୍‌ରେ ଶୋଇପଡ଼ିଥିଲା ଆଉ ଟ୍ରକ୍ ତାକୁ ରାତିରେ ନେଇ ଚମ୍ପଟ ।''

ମାଗୀ ବିବ୍ରତ ଜଣା ପଡ଼ିଲା ।

''ସେ ଆସିଲାଣି,'' ମାଗୀ କହିଲା, ''ହେଲେ ତା' ଦେହ ଭଲ ନାହିଁ । ମୁଁ କ'ଣ ଯେ କରିବି ଭାବିପାରୁନି ।''

''ଛାଡ଼ି ଦେ' ତାକୁ ।''

''ନା,'' ସେ ଧୀର କିନ୍ତୁ ଗମ୍ଭୀର ଭାବରେ କହିଲା, ''ଜମା ନୁହଁ, କିନ୍ତୁ ମତେ ଭୁବନେଶ୍ୱର ଯିବାକୁ ପଡ଼ିବ । ବହୁତ କାମ ଅଛି କରିବାକୁ । କିମିତି କ'ଣ.... ମୁଁ ଭାବିଥିଲି.... ।''

ସେ ରାତିରୁ ପର ରାତି ପର୍ଯ୍ୟନ୍ତ ମାଗୀକୁ ନିଃଶ୍ୱାସ ନବାକୁ ସମୟ ନ ଥିଲା । ସେ ଥକିଯାଇଥିଲା । ମୁର୍ମୁର ଦେହ ଭାରି ଖରାପ ଥିଲା । ବାନ୍ତିରେ ଛେଲା ଛେଲା

ରକ୍ତ ପଡ଼ିଥିଲା ଆଉ ଝାଡ଼ା କୋଇଲା ପରି କଳା । ମାଗୀ ଯେତେ ଶୀଘ୍ର ପାରେ ମଇଳାତକ ଛିଣ୍ଡା ଅଖାରେ ପୋଛି ସଫା କରିଦେଇଥିଲା । ମୁର୍ମୁ ଜୋର୍ ଜୋର୍ ନିଃଶ୍ୱାସ ମାରି ଅଚେତ ହେଇଗଲା । ମାଗୀ ଘର ପଛ ବୁଦା ଆଡ଼କୁ ସେ ମଇଳା ଅଖାକୁ ଫୋପାଡ଼ି ଧାଇଁଲା ବାଲିରେ ବାଲିରେ ଦୋକାନ ଛକ ଆଡ଼େ, କାହାକୁ ଗୋଟାଏ ଡାକ୍ତରଙ୍କ ପାଖକୁ ପଠେଇବ ବୋଲି । ରାତିଟା ଅନ୍ଧାରିଆ ଥିଲା ଝାପ୍‌ସା ତାରା ଆଲୁଅରେ । କାମ୍‌ଦା ବୋଧେ ବୁଦା ମୂଳେ କି ବାଲିଗଦା ଉହାଡ଼ରେ ବସିଥିଲା ଯୋଉଠୁ ସେ ମାଗୀ ଦୌଡ଼ିଯିବା ଦେଖିପାରିଲା କାରଣ ସେ ତା'ପଛେ ପଛେ ଦୌଡ଼ି ଦୌଡ଼ି ଆସିଲା । ପଛରୁ ପାଟିକଲାନି, ବୋଧେ ତା' ଦୃଷ୍ଟି ଆକର୍ଷଣ କରି ସେ ଲଜ୍ଜିତ ହବାକୁ ଚାହୁଁ ନ ଥିଲା ।

ତା'ର ପୂରା ପାଖକୁ ଆସି ସେ କହିଲା, ''କ'ଣ ହେଲା କିଲୋ ମାଗୀ ?''

ମାଗୀ ଥମକରି ଅଟକିଗଲା । କଥା କହିବା ଆଗରୁ ସେ ଟିକେ ଥକ୍‌କା ମାରିଲା, ''ମୁର୍ମୁ ଅବସ୍ଥା ଭାରି ଖରାପ । ଡାକ୍ତର ପାଖକୁ ଯିବାକୁ କାହାକୁ ଗୋଟାଏ ମୁଁ ଖୋଜୁଚି । ତା' ବାନ୍ତିସାରା ରକ୍ତ । ଝାଡ଼ା ଏକ୍‌ଦମ କଳା । ମେଘ ବର୍ଷିଲାଭଳିଆ ଝାଳ ବାହାରୁଚି ଆଉ ଦିହ କୋଲ ମାରିଯାଉଚି । ଚେତା ବୁଡ଼ିଗଲାଣି ତାର ।''

''ମୁଁ ଯିବି ।''

''ଏ ପଇସା ନେ,'' ସେ ତା' ହାତ ମୁଠାରେ ଧରିଥିବା ନୋଟର ଛୋଟ ବିଡ଼ାଟେ କାମ୍‌ଦା ହାତରେ ଗୁଞ୍ଜିଦେଲା । ତା'ହାତ ମାଗୀ ହାତରେ ଘଷିହେଇଯିବାରୁ ତା' ମୁହଁ ଲାଜରେ ଲାଲି ପଡ଼ିଗଲା । ମାଗୀ ତା' ଲକ୍ଷ୍ୟକରି କ୍ଲାନ୍ତ ଭାବରେ ହସିଲା ।

କାମ୍‌ଦା ତା' ମୁହଁକୁ ଚାହିଁଲା ଓ ତଳ ବାଲିକୁ ଦେଖିଲା ଯୋଉଥିରେ ତା' ପାଦର ଅଧେ ପୋତି ହେଇଯାଇଥିଲା ।

''କିଛି କହିବୁ ?''

''କିଛି ନ ହେଲେ, କିଛି ନ ହେଲେ ବି ତୁ ମୋର ଭଉଣୀ ହେଇପାରିବୁ ।''

ତାକୁ ଏକାବେଳକେ ଲଜ୍ଜିତ, ସନ୍ତୁଷ୍ଟ ଆଉ ଆଶ୍ଚର୍ଯ୍ୟ କରି ମାଗୀ ନିର୍ଭୀକ ଭାବେ ତା' ହାତକୁ ନିଜ ହାତରେ ମୁଠେଇ ଧରିଲା ।

''ମୁଁ ଖାଲି ଭଉଣୀ, କି ଭାର୍ଯ୍ୟା, କି ମା' ହେବି ବୋଲି ତୁ କାହିଁକି ଭାବୁଚୁ ? ଆମେ କିଛି ବି ହେଇପାରିବା ।''

କାମ୍‌ଦା ହାତ ଝାଳେଇ ଯାଇଥିଲା । ତା ଛାତି ଧଡ୍‌ଧଡ୍ ହେଇଗଲା । ସେ କିଛି ନ କହି ବୁଲିପଡ଼ି ଦୌଡ଼ିଗଲା । ମାଗୀ ଦେଖିଲା ତାକୁ ଅନ୍ଧାର ଭିତରେ ଦୌଡ଼ି ଦୌଡ଼ି କୋଣାର୍କ ରାସ୍ତାକଡ଼ର ଗଛ ବୁଦା ଭିତରେ ହଜିଯିବାର । ସେ ଅନେକ ବାଟ ଯିବା

ପର୍ଯ୍ୟନ୍ତ ମାଗୀ ତାକୁ ଚାହିଁ ରହିଥିଲା । ସେ କିନ୍ତୁ ପଛକୁ ଫେରି ଚାହିଁଲା ନାହିଁ । ମାଗୀ ଦେଖିଲା ହରି, ମିଠା ଦୋକାନୀ, ଦାମ, ସେ ମନୋହରି ଦୋକାନୀ, ଆଉ ଶିବ ଚାଲ ଚାଲ ହେଇ ଏକାଠି ହେଲେ କଥାବାର୍ତ୍ତା ହବାକୁ ହୁଏତ । ସେମାନେ ମାଗୀକୁ ଗାଁ ଆଉ ତାଙ୍କ ଦୋକାନର ଅଧାବାଟରେ ବାଲିରେ ଠିଆ ହେଇଥିବାର ଦେଖିଲେ ବୋଧହୁଏ । ନ ଦେଖିଥାଇ ବି ପାରନ୍ତି, କାରଣ ସନ୍ଧ୍ୟା ଘନେଇ ଯାଇଥିଲା ମୁହଁ ଅନ୍ଧାରକୁ ।

ପଛକୁ ଫେରିଲା ବେଳକୁ ମାଗୀର ଆତ୍ମା କ୍ଲାନ୍ତ ଆଉ ଦେହ ନିର୍ଜୀବ ହେଇ ଯାଇଥିଲା । ବାରଣ୍ଡାରେ ଗୋଡ଼ ବାଡ଼େଇ ବାଲି ଝାଡ଼ିବା ବେଳେ ସେ ତା' ପାଟି ପିତା ପିତା ଲାଗୁଥିବାର ଅନୁଭବ କଲା । ଘରେ ପଶି ଦେଖିଲା ମୁର୍ମୁ ଚିତ୍‌ହେଇ ଉପରକୁ ଚାହିଁ ପଡ଼ିଚି, ମଲାପରି । ନିଃଶ୍ୱାସ ଚାଲୁନି କି ନାଡ଼ି ଚାଲୁନି । ମରିଯାଇଚି । ହଠାତ୍ ମାଗୀ ଦେହରୁ ଝଞ୍ଜା ବତାସ ଉଡ଼ି ଚାଲିଗଲା, ତାକୁ ନିସ୍ତେଜ ନିର୍ଜୀବ କରି । ସେ ମୁର୍ମୁ କଡ଼ରେ ଗଡ଼ିପଡ଼ିଲା ପିଲାଟାଏ ମା' କୋଡ଼ରେ ଶୋଇଲା ପରି, ଆଉ ସ୍ତ୍ରୀ ପୁରୁଷକୁ ଆଲିଙ୍ଗନ କଲାପରି ସେ ତାକୁ ଭିଡ଼ିଧରିଲା । ସ୍ଥିର ହେଇ ସେ ଶୋଇରହିଲା ମୁର୍ମୁକୁ ଧରି । କାହାର କଣ୍ଠସ୍ୱର ଶୁଭିବାରୁ ସେ ଗଡ଼ିଯାଇ ଉଠିବସିଲା । ତା' ଆଖିରେ ଲୁହ ନ ଥିଲା ।

ଡାକ୍ତର ମୁର୍ମୁକୁ ମୃତ ଘୋଷିତ କଲେ । କାମ୍‌ଦା ବାହାରିଯାଇ କବାଟ ପାଖରେ ନିଶ୍ଚଳଭାବେ ଠିଆ ହେଇଥିଲା । ଡାକ୍ତର ଫେରିଗଲେ ।

''ଡାକ୍ତରବାବୁଙ୍କୁ ଦୋକାନ ଛକରେ ଛାଡ଼ି, ସମସ୍ତଙ୍କୁ ନେଇ ମୁଁ ଆସୁଚି,'' କାମ୍‌ଦା କହିଲା । ମୁର୍ମୁ ପାଖରେ ବସି ମାଗୀ ଅଚେତ ହେଲାପରି ନୀରବ ଥିଲା ଯାହା ତାର ଅସ୍ଥିରତାକୁ ବାହାରକୁ ଆଣିପାରୁ ନ ଥିଲା । ସେ ଉପରକୁ ଚାହିଁଲା ଆଉ ଚାଳବାଟେ ଦେଖିଲା ଆକାଶକୁ, ନେଳି, କାହିଁ କେତେ ଗଭୀର । ଗୋଟାଏ ଆଲୁଅ ତା' ଭିତରେ ସ୍ପନ୍ଦିତ ହେଲା । ଯେତେବେଳେ ମୁର୍ମୁ ତା ହାତକୁ ଛୁଇଁଲା, ସେ ଚମକି ଏକରକମର ଡେଇଁପଡ଼ିଲା । ମୁର୍ମୁର ଆଖି ଖୋଲା ଥିଲା । ସେ ଅଳ୍ପ ଅଳ୍ପ ହସୁଥିଲା ଓ ଆଦୌ ରୋଗଣା ଦିଶୁ ନ ଥିଲା ।

ସେ ସ୍ପଷ୍ଟ ଭାବେ ଫୁସ୍ ଫୁସ୍ ହେଇ କହିଲା, ''ମାତଙ୍ଗୀରେ, ଏଇଟା ଭାରି ଭଲ । ମୁଁ ଠିକ୍ ଅଛି । ପ୍ରକୃତରେ ଏଇଟା ଭାରି ସୁନ୍ଦର । ତୁ ଦେଖିବୁ ।''

ସତ୍କାର କରି ସମୁଦ୍ରରେ ଗାଧେଇ ସାରି ମାଗୀ ଘରକୁ ଫେରିଲାବେଳକୁ ଅଧରାତି ହେଇଯାଇଥିଲା ।

ଘରଟା ଖାଲି ଓ ଫୁଙ୍ଗୁଳା ଲାଗୁଥିଲା । ମୁର୍ମୁର ସବୁ ଜିନିଷ ସେ ଜଳେଇ ଦେଇଥିଲା ତା ଜୁଇରେ । ସରଳା ସେଦିନ ରାତିରେ ଆସି ତା ସାଙ୍ଗେ ଶୋଇଲା । ସେମାନଙ୍କ ଅଜାଣତରେ କାମ୍‌ଦା ତାଙ୍କ ବାରଣ୍ଡାରେ ବସିରହିଲା ସାରା ରାତି । ରଙ୍ଗୁ

ତା କଡ଼ରେ ଶୋଇପଡ଼ିଲା । ରଙ୍ଗୁ ସନ୍ଧ୍ୟାବେଳ ସାରା ମାଗୀ ପଛେ ପଛେ ବୁଲୁଥିଲା । ଟିକିଏ ଦୂରେଇ, ଅନ୍ୟ ଲୋକମାନଙ୍କ ମଝିରେ ଚୋରେଇ ଚୋରେଇ ଚାହୁଁଥିଲା, ଅପେକ୍ଷାରେ, କାଳେ ମାଗୀ ତାକୁ ଦେଖିବ ଆଉ କିଛି କାମ ବରାଦ କରିବ ବୋଲି । ସାରା ସନ୍ଧ୍ୟାରେ ଥରେମାତ୍ର ମାଗୀ ତାକୁ ସ୍ୱୀକାର କରିଥିଲା । ଦାହ ପରେ ସମୁଦ୍ରରେ ଗାଧୋଇଲା ବେଳେ ପାଣି ଭିତରେ ତାକୁ ଟାଣି ଆଣି ଛାତିରେ ଚାପି ଧରିଥିଲା । ରଙ୍ଗୁ ଲାଜେଇଯାଇ ପାଣିରେ ବୁଡ଼ିଗଲା । ଆଉ ଗୋଟାଏ ଉଜ୍ଜ୍ୱଳ ଧଳା ଆଲୁଅ ସୁଦୂର ଉତ୍ତର ଆକାଶରେ ଜଳିଉଠିଲା ଢେଉ ଢେଉକା ହେଇ ।

ସେଦିନ ରାତିରେ ଗାଁରେ ଗୋଟାଏ ଅଦ୍ଭୁତ ନୀରବତା ଛାଇଗଲା ।

ଏଇଟା କ'ଣ ଖୋଲା ଖୋଲି ? ବାବାବୁଗି ପଚାରିଲେ ।

ନା । ଯାକୁ ମୃତ୍ୟୁ କହନ୍ତି ।

ନା ନା । ତା'ପରେ ଯାହା ହେଲା । ଅଗ୍ନ୍ୟୁତ୍ସବ । ଯଜ୍ଞ ।

ସେଇଟା ଜୈବ-ରସାୟନ ପ୍ରକ୍ରିୟାର ଭୌତିକ ରୂପାନ୍ତରଣ, ପୃଥକୀକରଣ ପରେ ।

ତା'ହେଲେ ଇମିତି ସେମାନେ ଖୋଲାଖୋଲି ହୁଅନ୍ତି ।

ଏଇଟା ଖୋଲାଖୋଲି ନୁହେଁ । ଏଇଟା ଭିନ୍ନ ।

ହଉ ହେଲା ହେଲା ।

ତମେ ଧଳା ଆଲୁଅ ଷ୍ଟ୍ରିମ୍-ଫ୍ଲେଆର୍ କାହିଁକି ଛାଡ଼ିଲ ? ସେଇଟା କାର୍ଯ୍ୟସୂଚୀରେ ନ ଥିଲା ।

ମୋର ଇଚ୍ଛା ହେଲା । ବୋଧହୁଏ ଯାକୁଇ ପୁରୁଣା ଗ୍ରନ୍ଥରେ କହନ୍ତି ଇମ୍ପଲ୍ସ୍ ।

ନା ଏଇଟା ଈର୍ଷା ବୋଲି କୁହାଯାଉଥିବା ବ୍ୟବହାର ପ୍ରକରଣ ସହ ଖାପ ଖାଉଚି । ଏଇଟା ସେ ଶ୍ରେଣୀର, ଯାହାକୁ କହନ୍ତି ଭାବ । ଏକ ଅତି ପୁରାତନ ଅନ୍ତର୍ବସ୍ତୁ ।

ମୋ ଲୋକଟା ମୋ ଫ୍ଲେଆର୍ ଦେଖିଲା କି ?

ହଁ ।

ଆଃ ।

ଆଃ ଫାଃ କିଛି ନୁହେଁ । ଏଇଟା ଅତି ପ୍ରାଚୀନ ଏକ କର୍ମକଣ୍ଡ ସହ ମଧ୍ୟ ଆଂଶିକ ଭାବେ ଖାପ ଖାଉଚି ଯାହାକୁ କହନ୍ତି ସ୍ୱ ପ୍ରଦର୍ଶନ ।

ଭଲ ଶୁଭୁଚି ତ ।

ଆଉ ଗୋଟିଏ ଖାପ ଆସୁଚି, ପ୍ରଥମଟି ସହ ସମ୍ପୃକ୍ତ ପ୍ରାଚୀନ ଭାବ ସହ, ଯାହାକୁ କହନ୍ତି ପ୍ରେମ ।

ଭଲ ଭଲ । ମୁଁ ସେଇଟାକୁ ଆଗରୁ ବ୍ୟବହାର କରିଥିଲା ଭଳି ମନେ ହଉଚି ।

ଭଲ ଫଲ କିଛି ନୁହେଁ । ଆଉ ଗୋଟିଏ ଖାପବି ଆସୁଚି । ନିଷ୍କାସିତ ହେଇଯାଇଥିବା ଫସିଲ ଭାବ, ମାନିଆ ଶ୍ରେଣୀର, ଯାହାକୁ କହନ୍ତି ପ୍ୟାସନ୍, ଉଦ୍ଦାମତା ।

ଭଲ ଲାଗୁଚି, ଏତେ ପ୍ରାଚୀନତା ଭିତରକୁ ଚେର ମାଡ଼ିଯାଇଥିବାରୁ ।

ପ୍ରାଚୀନ ଫ୍ରାଚୀନ କିଛି ନୁହେଁ । ତୁମେ ପୁନର୍ମୂଷିକ ରୋଗରେ ପୀଡ଼ିତ । ପୂର୍ବାନୁବର୍ତ୍ତନ, ଆଟାଭିଜମ୍ ।

ମୁଁ ପୁରୁଣା ଇତିହାସ ଦ୍ୱାରା ଅନୁମୋଦିତ ।

ଯାହାକୁ କହନ୍ତି, ତାଙ୍କ ଭାଷାରେ, ପୁରୁଣା ଦାଗୀ ?

ଭିନ୍ନ ସମୟ ଆଉ ଭିନ୍ନ ମହାଶୂନ୍ୟର ବିକିରଣର କେନ୍ଦ୍ରହବା ଅର୍ଥ ଯାଜକ ଶ୍ରେଣୀର ଜାଇବୋର୍ଗ୍ ହେଇଯିବା....

ଛାଡ଼ ସେ ଯାଜକଶ୍ରେଣୀ ! ଖାଲି କଳଙ୍କିଲଗା ପୁରୁଣା ଯୁଗର ଯନ୍ତ୍ରପାତି : ରିସେପ୍‌ଟର୍, ଡିକୋଡର୍, ଟାଇମ୍-ଟ୍ରାନ୍‌ସ୍‌ଲେଟର୍, ଇକୋ ଇଣ୍ଟର୍‌ପ୍ରିଟର୍, ଫ୍ୟାନ୍‌ସି ଇମାଜିନେଟର୍ । ପାରା ସାଇବର୍ଗ୍‌ଠାରୁ ଅଧିକ ଯନ୍ତ୍ରପାତିଜନିତ ବିଭେଦ କିଛି ନାହିଁ ।

....ଆଉ ସବୁ ସମୟ ଓ ସମସ୍ତ ଶୂନ୍ୟତା ଭିତରକୁ ପଶିଯାଇ ଭାଗନବା ।

ହେଇ ଦେଖ, ତମେ ସମୟ ଜାତୀୟ ଅତିପୁରାତନ ପୁନର୍ମୂଷିକ ଭୂତାଣୁ ଆକ୍ରମଣପ୍ରବଣ । ଟିକା ନେଇଥିଲ ୨୬୪୮୩୫୭ । କିନ୍ତୁ ଟିକାଟା କାମ ଦଉନାହିଁ । ଲେଖିଲି : ଟିକା ଅକାମୀ ।

ଏଇଟା କ'ଣ କହନ୍ତି, ଭୂତାଣୁ ନୁହେଁ, କହୁଚି ପରା ! ଏଗୁଡ଼ା ମୋ ଇତିହାସ ଚିପ୍ । ଏଇଥିରେ ମୁଁ ଗଢ଼ା । ମୁଁ ଯାଜକ ଶ୍ରେଣୀର ।

ଗୋଟିଏ ଆଟାଭିଜମ୍ ଟିକା ଆସୁଚି ।

ନା, ଅପେକ୍ଷାକର ! ଶୁଣ ! ଆଉବ୍ !

ତାଙ୍କ ଭାଷାରେ, ଧେଦ୍ ତେରିକି । ଟିକାଟା ତମ ଫିଲ୍‌ଟର୍ ଛଣାରେ ଅଟକିଗଲା ।

ଯେତେବେଳେ ପାଣ୍ଡୁ ଏମ୍.ଏଲ୍.ଏ. ଗୁଣନିଧିଙ୍କ ଘରକୁ ଧ୍ୱଂସ କରିଦେଲା ତା ନିକ୍ଷେପିତ ଦେହର ଶକ୍ତି ଦେଖି ତାକୁ ଆଶ୍ଚର୍ଯ୍ୟ ଲାଗିଲା, ଆଉ ଭଲ ଲାଗିଲା ଗୁଣନିଧିକୁ ପିଟିଲାବେଳେ, ଯେତେବେଳେ କି ଲୋକଟା, ପ୍ରଥମେ ତାକୁ ଦେଖି

ଛାନିଆ ହେଇଯାଇଥିଲେ ବି, ଅଲାଜୁକଙ୍କ ଭଳିଆ ତାକୁ ''ଭାଇ'' ବୋଲି ସମ୍ବୋଧନ କରି ମହାସ୍କନ୍ଧ ବିଶ୍ୱାଳ ପ୍ରତି ତାର ବନ୍ଧୁତ୍ୱ ନିଧଡ଼କ ଭାବରେ କହିଗଲା । ସ୍ମଗ୍‌ଲିଂ କାରବାରକୁ ବଜାୟ ରଖିବାକୁ ତାର କାରପଟ୍‌ଦାରୀ କଥା କହିଗଲା, ଆଉ କହିଥିଲା ଯେ ଯିଏ ବି ତାଙ୍କ କାମର ବିରୋଧ କରିବ ତାକୁ କିମାକରି ସାର୍କଙ୍କୁ ଖୁଆଇଦବ । ଏକା ବ୍ରହ୍ମ ଚାପୁଡ଼ାକେ ତା ମୁହଁର ଗୋଟାଏ ପାଖ ଫୁଲି ଉଠିଥିଲା ଆଉ ତା ମଦୁଆମି ଛାଡ଼ି ଯାଇଥିଲା ଆଉ ସେ କାକୁତି ମିନତି କରିବାକୁ ଲାଗିଥିଲା । ପାଣ୍ଡୁର ଏମିତି ଲୋକଙ୍କ ପ୍ରତି ଦୟା ମାୟା ନ ଥିଲା । ସେ ତାକୁ ତାର ଠିକ୍ ପ୍ରାପ୍ୟ ଦେଇଗଲା, ଯେପର୍ଯ୍ୟନ୍ତ ସେ ତା ଗୋଡ଼ତଳେ ରକ୍ତାକ୍ତ ହେଇ ପଡ଼ି ନ ଯାଇଚି ଚେତାବୁଡ଼େଇ । ସେ ସେମାନଙ୍କୁ ତା ପ୍ରତି ଯାହା କରିଚନ୍ତି ତାରି ସ୍ୱାଦ ଚଖଉଥିଲା । ପାଣ୍ଡୁ ତା ଡ୍ରୟାର, ଥାକ ଇତ୍ୟାଦି ଖୋଜିଗଲା, ସବୁ ଟାଣି ତଳେ ଫୋପାଡ଼ି । ତା ସ୍ତ୍ରୀ, ତିନୋଟି ପୁଅ, ଆଉ ଦୁଇ ଚାକରଙ୍କୁ ରୁଷେଇ ଘରେ କିଳି ଦେଇଥିଲା । ଗୋଟାଏ ଶୋଇବା ଘର ଆଲମାରିରେ ସେ ପାଇଲା ଥାକଥାକ ଟଙ୍କା ଆଉ ଗୁଡ଼ାଏ ବନ୍ଧୁକ । ସେ ଗୋଟାଏ ପିସ୍ତଲ ଉଠାଇଲା ଗୁଳିଭବା ସାଙ୍ଗେ ଆଉ ଗୋଟିଏ ନୋଟବିଡ଼ା ପକେଟ୍‌ରେ ପୂରାଇଲା । ଏତେ ଟଙ୍କା ଭରିଥିଲା ଆଲମାରିରେ, କିନ୍ତୁ ଅଧିକା ନବାକୁ ତାର ସ୍ପୃହା ନ ଥିଲା ଆଦୌ । ସେ ଭାବିଲା, ସେ ଯିଏ ହଉ ତାର ହୁଏତ ଧନାସକ୍ତି ନ ଥିଲା ବା ବହୁତ ଧନ ଥିଲା । ତାକୁ ଲାଗିଲା ଯେମିତି ସମୟ ପାଖେଇ ଆସୁଚି ତା'ର ନିଜ ପରିଚୟ ପାଇଯିବାର । ଏଥର ମାଗୀ ପାଖକୁ ଲସରପସର ହେଇ ଟଙ୍କା ପାଇଁ ଯିବା ଦରକାର ନାହିଁ । ଶାଳୀଟା ଅବଶ୍ୟ ଭଲ ଲାଗୁଥିଲା, କିନ୍ତୁ ଆଉ ଗୋଟାଏ ପାଗଳାମି ତାକୁ ଏବେ ଗ୍ରାସିଥିଲା । ତା'ର ପରବର୍ତ୍ତୀ ଶିକାର ଥିଲା ମହାସ୍କନ୍ଧ ଯାହାକୁ ସେ ମାଗୀ ଆଉ ଏ ଗୁଣନିଧିର କଥା ଅନୁସାରେ ତାର ପରମଶତ୍ରୁ ବୋଲି ଧରିନେଇଥିଲା । ତାହେଲେ ଭୁବନେଶ୍ୱରକୁ, ଆଉ ମହାସ୍କନ୍ଧ ତରକିଯିବା ପୂର୍ବରୁ । କ୍ଷିପ୍ର ହେଲେହିଁ କାମ ହବ । ସେ ଗୁଣନିଧି ଭୂୟାଁର ଘରେ ନିଆଁ ଲଗେଇ ଦେଲା ।

ପି.ଏମ୍. ବିଶ୍ୱରାଜ ସିଂହ ବିରକ୍ତିରେ ସି.ବି.ଆଇ.ର ମୁଖ୍ୟ ସତ୍ୟମୁଖ ଶାସ୍ତ୍ରୀଙ୍କୁ ଚାହିଁଲେ ଯାହାଙ୍କୁ ତାଙ୍କ ପ୍ରିନ୍ସପାଲ୍ ସେକ୍ରେଟାରୀ ଉଷା ଗ୍ରେୱାଲ୍‌ଙ୍କ ପରାମର୍ଶ କ୍ରମେ ସେ ଗାଳି ଦବାକୁ ଡକେଇଥିଲେ । ଉଷାଙ୍କ ରାଗହେଲା ଯେ ସେ ଆଖେଇଥିବା ଜମିଖଣ୍ଡକ ସତ୍ୟମୁଖ ଶାସ୍ତ୍ରୀ ନିଜ ଫାର୍ମହାଉସ ପାଇଁ ମାରି ନେଇଯାଇଥିଲେ ।

''ସେ ଲୋକ ଖସିଗଲା ? କ'ଣ କହିବାକୁ ଚାହୁଁଚ ସେଠି ବସି ? ସି.ବି.ଆଇ. ହାତରେ ଥିବା ଲୋକଟା ଆରାମରେ ଉଠି ଚାଲିଗଲା !''

''ମୁଁ ନିଜେ ଫାଇଲ୍ ତିଆରି କରୁଚି ସାର୍ । ସେ ଅଫିସର୍‌ମାନଙ୍କୁ ସସ୍‌ପେଣ୍ଡ କରିବାକୁ, ଆଉ ତାଙ୍କ ଅର୍ଣ୍ଣଡ୍ ଲିଭ୍‌କୁ କାଟି ଦବାକୁ, ରିଟାୟାର କଲାବେଳେ ଗ୍ରାଚୁଇଟି

ବନ୍ଦ କରିବାକୁ, ଡିପାର୍ଟମେଣ୍ଟାଲ୍ ତଦନ୍ତ କରିବାକୁ, ତାଙ୍କ ଫୋନ୍ ଟ୍ୟାପ୍ କରିବାକୁ, ତାଙ୍କ ସି.ସି.ଆର୍. ଖରାପ କରିବାକୁ, ତାଙ୍କ ପ୍ରେମଜୀବନ ତଦନ୍ତ କରିବାକୁ, ଆଉ ଆପଣଙ୍କର ସମ୍ମତି ମିଳିଲେ ସି.ବି.ଆଇ. ରେଡ୍ କରିବାକୁ...''

''କ'ଣ ହେଲା।'' ପି.ଏମ୍. କାବା ହେଇ ତାଙ୍କୁ ଚାହିଁଲେ। ''ତମେ କ'ଣ ଗଜମୂର୍ଖ ?''

ସତ୍ୟମୁଖ ଶାସ୍ତ୍ରୀ କିଛି କହିଲେନି।

''ଆମେ ଆମ ନିଜ ପାର୍ଟିର ଜଣେ ବିଶିଷ୍ଟ ମୁଖ୍ୟମନ୍ତ୍ରୀଙ୍କ ବିଷୟରେ ଅତି ଗୁପ୍ତରେ ତଦନ୍ତ କରୁଚେଁ ଆଉ ତୁମେ କ'ଣନା ତାକୁ ମାଛହାଟ ଭଳିଆ କାଉକାଉ ହେଇ ପାର୍ଟିରେ କି କୋଉଥିରେ ଲାଉଡସ୍ପିକର ଲଗେଇ ଦୁନିଆସାରା ପ୍ରଘଟ କରିବ ?''

''ଆମେ ତାକୁ ଧରିନବୁ ସାର୍।''

''ଧରିନବ।''

''ସେ ଯିବାକୁ ଆରମ୍ଭ କରିଚି, ସାର୍। ପୁରୀରୁ ସେ ୫୦ କିଲୋମିଟର ଉତ୍ତର ଉତ୍ତର-ପୂର୍ବ ଦିଗରେ ଯାଇ ନିମାପଡ଼ା ବୋଲି ଗୋଟାଏ ଜାଗାରେ ପହଞ୍ଚିଛି।''

ସେ ଓଡ଼ିଶାର ଗୋଟାଏ ମ୍ୟାପ୍ କାଢ଼ି ପି.ଏମ୍.ଙ୍କ ଆଗରେ ଖୋଲିଦେଲେ।

''ଆଉ ସେ ଏ ନିମାପଡ଼ାରେ କ'ଣ କରୁଚି ?''

''ସେ ଏଇ ଅଳ୍ପ ସମୟ ହେଲା ସେଠା ଏମ୍.ଏଲ୍.ଏ.କୁ ମାରିଚି ଆଉ ତା' ଘର ପୋଡ଼ି ଦେଇଚି।''

''ଆଶ୍ଚର୍ଯ୍ୟ। ସି.ବି.ଆଇ. ଦ୍ୱାରା ଧରାଯାଇଥିବା ଗୋଟାଏ ଖଣ୍ଡିଆଖାବରା ଅକର୍ମଣ୍ୟ ଲୋକ, ଆରାମରେ ଉଠି ଚାଲିଯାଉଚି ତାଙ୍କ କବଳରୁ, ଆଉ ତମେ କିଛି କରିପାରୁନ ! ସେ ତମ କଥା ଅନୁସାରେ ୫୦ କିଲୋମିଟର ଉତ୍ତର ଉତ୍ତର-ପୂର୍ବ ଆଡ଼କୁ ଯାଉଚି, ଜଣେ ଦେଶର ସେବକଙ୍କ ଘରେ ପଶି ତାକୁ ପିଟୁଚି, ତା ଘର ପୋଡ଼ି ଦଉଚି, ଆଉ ତାପରେ ଧୀରେ ସୁସ୍ଥେ ଚାଲିଯାଉଚି ଆଉ ତମେ କିଛି କରିପାରୁନ ! ସେ ସି.ଏମ୍. ବି କ'ଣ କରୁଚି ? ସେ ଲୋକଟା ତ ଏମ୍.ସି.ଏମ୍.ର ପରମ ଶତ୍ରୁ, ତା ପୁଲିସ୍ ତାକୁ ଧରିନବା ଉଚିତ। ମତେ ଯାହା ଲାଗୁଚି, ସେ ତାକୁ ଶେଷ କରିଦବ। ମୋ: ଖେଳ ସରିଯିବ।''

''ନାଇଁ ସାର୍, ଆପଣଙ୍କ ଖେଳ ସରିବନି, ସାର୍। ଆମେ ଆପଣଙ୍କ ସାଙ୍ଗେ ଅଛୁ। ମୁଁ ପ୍ରତିଜ୍ଞା କରୁଚି ବାସ୍ତରି ଘଣ୍ଟା ଭିତେରେ ସେ ଲୋକକୁ ଧରିନେବି।''

''ବାସ୍ତରି ଘଣ୍ଟା।''

''ଅଠଚାଳିଶ କରି ଦେଇପାରିବି । ଏ ମ୍ୟାପ୍‌ଟା ଦେଖନ୍ତୁ । ଲୋକଟା ପୁରୀରୁ ଭୁବନେଶ୍ୱର ଆଡ଼େ ଯାଉଚି । ତାକୁ ଗୋଟାଏ ମାଛବାଲୀ ରକ୍ଷା କରିଥିଲା ଯିଏ ନିମାପଡ଼ାଠୁଁ କୋଡ଼ିଏ କିଲୋମିଟର ଦୂରରେ ରହେ । ମୋ ଲୋକ ସେଠି ଜଗିରହିଚନ୍ତି । ସେ ସେ ମାଇକିନାକୁ ଦେଖା କରିବାକୁ ଯିବ ବୋଲି ଆଶା । ଯଦି ଯାଏ ଆମେ ଧରିନବୁ । ମୁଁ ଆହୁରି ଲୋକଙ୍କୁ ପଠେଇ ସାରିଚି, କିନ୍ତୁ ସେ ଯଦି ସେଠିକି ନ ଯାଏ, ସମ୍ଭବତଃ ଭୁବନେଶ୍ୱରଆଡ଼େ ମୁହାଁଇବ, କାରଣ ଏମ୍.ଏଲ୍.ଏ.ଙ୍କ ସ୍ତ୍ରୀ ଶୁଣିଚନ୍ତି ଗୁଣନିଧିବାବୁଙ୍କଠୁ ସେ ମହାସ୍କନ୍ଧ ବିଶ୍ୱାଳ କଥା ପଚାରୁଥିବାର, ଯିଏକି ପୂର୍ବ ଉପକୂଳର ସ୍ମଗଲର୍‌ଙ୍କ ରଜା ।''

''ହେ ଭଗବାନ୍ ! ସେ ତାହେଲେ ମହାସ୍କନ୍ଧ ନୁହେଁ ! ମହାସ୍କନ୍ଧ ମୋ ଲୋକ । ରୋକ ଯାକୁ । ମହାସ୍କନ୍ଧକୁ ଯେମିତି କିଛି ନ କରେ । ରୋକ ଯେ, କିନ୍ତୁ କିଛି କରନି ତାକୁ । ସେ ବି ମୋ ଲୋକ ହେଇଯିବ । ଶଳା, ଦି'ଟା ଲୋକ ! ମୁଣ୍ଡ ଗୋଳମାଳ ହେଇଯାଉଚି । ସେ ଶଳା ନେଳି ଆଲୁଅର କାମ ଯେ ବୋଧେ ।''

''ସାଙ୍ଗେ ସାଙ୍ଗେ କରୁଚି, ସାର୍ । ମୁଁ ଆଉ ଗୋଟେ ଡି.ଆଇ.ଜି ପଠାଉଚି ଏ କାମ କରିବାକୁ ।''

''ଆରଟା କୁଆଡ଼େ ଗଲା ? ମଲ୍‌ହୋତ୍ରା ନା କ'ଣ ।''

''ସେ ନିଖୋଜ ହେଇଯାଇଚି, ସାର୍, ଖବର ଅନ୍ତର ନାହିଁ ।''

''ନିଖୋଜ ? କ'ଣ ଇଏ ହଉଚି । ଆକାଶରେ ନେଳି ଢେଉ ମାଡ଼ିଆସୁଚି, ଶନି ବଳୟରେ ବାଣ ଫୁଟୁଚି, ସି.ବି.ଆଇ. ଲୋକ ଅନ୍ତର୍ଦ୍ଧାନ ହେଇଯାଉଚନ୍ତି ।''

ସତ୍ୟମୁଖ ଗଲାପରେ, ପ୍ରଧାନମନ୍ତ୍ରୀ ଉଷା ଗ୍ରେୱାଲ୍‌ଙ୍କୁ ଡାକି ପଚାରିଲେ, ''ମଲ୍‌ହୋତ୍ରାର ଟେଲିଫୋନ୍ ନମ୍ବର ଅଛି ପରା ।''

''ହଁ ସାର୍ । ସେ ବର୍ତ୍ତମାନ କୋଣାର୍କ ପୁଲିସ୍ ଷ୍ଟେସନରେ ମିଳିବ । ସେ କହିଚି ଯେ ସେମାନେ ତାକୁ ସାଙ୍ଗେ ସାଙ୍ଗେ ଖବର ନେଇ ଦେବେ । ସମ୍ଭବ ହେଲେ ଦଶ ମିନିଟ୍‌ରେ ।''

''ଲଗାଅ । ମୁଁ ତା ସାଙ୍ଗରେ ନିଜେ କଥା ହବାକୁ ଚାହେଁ ।''

''ହଉ । କିନ୍ତୁ...''

''କ'ଣ ହେଲା ?''

''ମୁଁ ଠିକ୍ ବୁଝିପାରୁନି । ଗଲାଥର କଥା ହେଲାବେଳେ ତା କଥାବାର୍ତ୍ତା କିମିତି ଟିକିଏ ଗୋଳମାଳିଆ ଲାଗିଲା ।''

"ଗୋଳମାଳିଆ ମାନେ ?"

"ସମସ୍ତେ ଅବଶ୍ୟ ଟିକିଏ ବିବ୍ରତ ଅଛନ୍ତି । ଆକାଶରେ ଏସବୁ ଅଘଟନ ଘଟୁଚି ବୋଲି, କିନ୍ତୁ ସେ ଯାହା କହିଲା ତାର ଆଦି ଅନ୍ତ ମୁଁ ପାଇଲିନି ।"

"ସିଧା କୁହ । କ'ଣ ସେ କହିଲା ?"

"ମୁଁ ଭାବୁଚି ସେ ମତେ ଲାଇନ୍ ମାରିଲା ।"

"କ'ଣ ହେଲା, କ'ଣ ହେଲା । କ'ଣ କହିଲା ? ମୋ କଥା କ'ଣ ହବ ?"

"ସେ କହିଲା, ମୁଁ ତା ଭାଷାରେ କହୁଚି, ସେ କହିଲା 'ମିସ୍ ଗ୍ରେୱାଲ୍ । ଆପଣ କେବେ ଭାବିଚନ୍ତିକି ପ୍ରେମଟା ଗୋଟାଏ ସପ୍ତଫେଣୀ ନାଗ ଯାହା ଫଣାର ମଣିମାନେ ମହାଶୂନ୍ୟରେ ଚମକୁଚନ୍ତି ଆଉ ଆମେ ବୁଝିପାରୁଚୁ ଯେ କ୍ୱାଣ୍ଟମ୍ ମେକାନିକ୍ସ ପୂରା ଭୁଲ୍ ଆଉ ଚାର୍ମ ପାଟିକ୍ଲଗୁଡ଼ାକ ଖାଲି ମନଗଢ଼ା' ।"

"ଯା ଅର୍ଥ କ'ଣ ? କୋଡ୍‌ରେ କହିଲା କି ?"

"ମୁଁ ବୁଝିପାରୁନି..."

"ଲଗାଅ ତାକୁ ।"

ପାଣ୍ଡୁ ଗାଁ ରାସ୍ତା ଦେଇ, ନିଆଳି ବାଟେ ବୁଲି, ମୁଖ୍ୟରାସ୍ତାର ପୁଲିସ ଘେରରୁ ବର୍ଞ୍ଚି ଭୁବନେଶ୍ୱର ପହଞ୍ଚିଲା ବେଳକୁ ସନ୍ଧ୍ୟା ବେଶ୍ ଗଡ଼ି ଯାଇଥିଲା । ଭୁବନେଶ୍ୱରରେ ମହାସ୍କନ୍ଧର ଅଫିସ୍ କୋଉଠି ତାକୁ ଯିମିତି ଠିକ୍ ଜଣାଥିଲା । ରାଜରାଣୀ ମନ୍ଦିର ଛକ ପାଖରେ ଯୋଉଟାକି ନିର୍ଜନ ହେଇ ଆସୁଥିଲା, କିଛି ସାଧାପୋଷାକ ପିନ୍ଧା ପୁଲିସ୍‌ବାଲା ଟହଲୁଥିଲେ । ଏତେ ରାତିରେ ଆଉ କିଏ ଏପଟସେପଟ ହଉଥିବ ? ପାଖରେ ଗୋଟାଏ ଟାକ୍ସି ଠିଆ ହେଇଥିଲା । ଟାକ୍ସି ? ତା ମାନେ ଭାରତ ସରକାରଙ୍କ ଲୋକ, ରାଜ୍ୟସରକାରଙ୍କ ପୁଲିସ ହେଇଥିଲେ ତାଙ୍କ ଜିପ୍ ଆଣିଥାନ୍ତେ । ମଲ୍‌ହୋତ୍ରା ବୋଧହୁଏ ପୁଣି ଥରେ ତା ପିଛାରେ ଲାଗିଗଲାଣି ।

ମହାସ୍କନ୍ଧର ଅଫିସ୍‌ର ଗାର୍ଡଟା ପ୍ରକୃତରେ ତାକୁ ଦେଖି ଆଶ୍ଚର୍ଯ୍ୟ ସମ୍ବରଣ କରି ତାକୁ ସାଲ୍ୟୁଟ କରିଥିଲା, ପାଣ୍ଡୁ ତା ମୁଣ୍ଡରେ ପିସ୍ତଲ ହାଣ୍ଡଲ୍‌ରେ ପାହାର ଦେଇ ତାକୁ ବେହୋସ କରିଦବା ଆଗରୁ । ତାଲାଭାଙ୍ଗି ଅଫିସ୍ ଭିତରକୁ ପଶିଯାଇ ତାକୁ ଅଦ୍ଭୁତ ଲାଗିଲା । ତାକୁ ଲାଗିଲା ସେ ଯିମିତି କିଛିଗୋଟାଏ ଖୁବ୍ ମହତ୍ତ୍ୱପୂର୍ଣ୍ଣ ଜିନିଷ ବା ବ୍ୟକ୍ତି ପାଖରେ ପହଞ୍ଚି ଆସୁଥିଲା । ହୁଏତ ତାର ଘାତକ । ସେ ଉଦ୍‌ବେଳିତ ହେଇଗଲା ଏ ଭାବନାରେ, ଭୟରେ ବି । ସେ ଜାଗାର ଗୋଟାଏ ମଣ୍ଡଳ ଥିଲା ଯିମିତି, ଯାହା ଭିତରେ ସେ ଆଲୋଡ଼ିତ ହେଇଯାଉଥିଲା । ସେ କେବେ ଭାବିପାରି ନ ଥିଲା ଯେ

ନିଜ ଶତ୍ରୁକୁ ଶିକାର କରିବାରେ ତାକୁ ଏତେ କାଉଲା ଆନନ୍ଦ ମିଳିବ। ଯିମିତି ସେ ନିଜ ପ୍ରେମିକାକୁ ଖୋଜୁଚି। ଇମିତି ଥିଲା ତାର ଉତ୍କଣ୍ଠା ଆଉ ଯୌନଉଦ୍ଦୀପନା। ଯିମିତି ବହୁତ ଦିନରୁ ମରି ହଜି ଯାଇଥିବା ପ୍ରେମ ଆଉଥରେ ଅସମ୍ଭବ ଭାବରେ ସଂଜୀବିତ ହେଇ ଉଠୁଚି। ପେଟ ତାର କାଟିଉଠିଲା। ଯିମିତି ସେ ସେଇଠି ମୂତି ପକେଇବ। ଅଫିସଟା ଠିକ୍ ଦୁଶୁଥିଲା ଆଉ ଠିକ୍ ବାସୁଥିଲା। ସେ ଯେତେବେଳେ ସେ ବଡ଼ ଟେବ୍ଲ୍ ପଛରେ ବସିପଡ଼ିଲା। ସେ ତା ଲକ୍ଷ୍ୟସ୍ଥଳ ପାଖରେ ପହଞ୍ଚିଯାଇଥିଲା ଯିମିତି। ଶିକାର ଓପରେ।

ସେ ଫାଇଲ୍‌ଗୁଡ଼ାକ ଦେଖିସାରି ରୁମ୍ ମଝିକୁ ଗୋଟାକ ପରେ ଗୋଟାଏ ଫିଙ୍ଗି ଦେଇଥିଲା ଗୋଟେ ଗଦାରେ। ହଠାତ୍ ଗୋଟାଏ ଫାଇଲ୍ ପାଇଲା ଯୋଉଥିରେ ପ୍ରଧାନମନ୍ତ୍ରୀଙ୍କ ସାଙ୍ଗରେ ଦିଆନିଆ ହେଇଥିବା ଚିଠି ଥିଲା। ମହାସ୍କନ୍ଧ ତା ସାହାଯ୍ୟ ଆଉ ସାମର୍ଥ୍ୟ ଯାଚୁଥିଲା ଆଉ ପ୍ରଧାନମନ୍ତ୍ରୀ ତାକୁ ମହା ଆନନ୍ଦରେ ଗ୍ରହଣ କରୁଥିଲେ। ତାହେଲେ ପ୍ରଧାନମନ୍ତ୍ରୀ ହେଲେ ତା ଶତ୍ରୁର ମାଲିକ। ସେ ଭାବିଲା, ମାଗୀ ମହା ଧୂର୍ତ୍ତ ଟୋକୀ। ଟଙ୍କା ଦାନ ଆଉ ଲାଇସେନ୍ସ୍ ଇତ୍ୟାଦି କଥା ଥିଲା ସେଥିରେ। ପାଣ୍ଡୁ ମନେ ମନେ ବୁଝିନେଲା ଚୋର ଡକେଇତଙ୍କ ସମ୍ପର୍କ। ସେ ଫାଇଲ୍‌ଟା ଟେବୁଲ୍ ଓପରେ ରଖିଲା। ଆଲ୍‌ମାରିଟା ତାଡ଼ି ଖୋଲି ତା ଭିତରୁ ପାଇଲା ଗୋଟାଏ ଛୋଟ ଫାଇଲ୍ ଯୋଉଥିରେ ମୁଖ୍ୟମନ୍ତ୍ରୀଙ୍କ ହାତ ଲେଖା କିଛି ଚିଠି ଥିଲା ଚାନ୍ଦା ମଗାର। ଶେଷଟା ଥିଲା :

ସ୍କନ୍ଧ :

ପାଞ୍ଚ କୋଟି ଦରକାର ପାର୍ଟିର। ତାପରେ ମୁଁ ଦେଖିବି ତମ ଫ୍ରୋଜେନ ଚିଙ୍ଗୁଡ଼ି ଆଉ ଚିଙ୍ଗୁଡ଼ି କ୍ୟାନିଂ କାରଖାନା ବସେଇବା କଥା। ମାମଲାଟା ଭାରି ଗମ୍ଭୀର। ନ ମିଳିଲେ ଭାରି ଅସୁବିଧା ହବ।

ବିଜୟବଲ୍ଲଭ

ଆଗ ଚିଠିମାନଙ୍କରେ ବି ଟଙ୍କା ମଗା ଯାଇଥିଲା, କିନ୍ତୁ ଅଙ୍କ ଟଙ୍କା, କୋଟିଏ ପହଞ୍ଚୁ ନ ଥିଲା। ବର୍ତ୍ତମାନ ପାଣ୍ଡୁ ବୁଝିପାରିଲା ମୁଖ୍ୟମନ୍ତ୍ରୀ ବି ତା ଶତ୍ରୁ ମହାସ୍କନ୍ଧର ପାଉଣାରେ। ସବୁ ବଡ଼ବଡ଼ିଆ ତା ଶତ୍ରୁ ଗୋଷ୍ଠୀରେ। ଆଉ ଗୋଟାଏ ଫାଇଲ୍ ଥିଲା ଖୁବ୍ ଭଲଭାବରେ ବନ୍ଧାଛନ୍ଦା ହେଇ। ସେଥେରେ ଥିଲା କିଛି ସରକାରୀ କାଗଜପତ୍ରର ଜେରକ୍ସ କପି, କିଛି ବ୍ୟକ୍ତିଗତ ଚିଠିର କପି, ଆଉ କିଛି ଦସ୍ତଖତ ବା ଟିପଚିହ୍ନ ଦିଆ ଷ୍ଟେଟ୍‌ମେଣ୍ଟ। ସେସବୁ ମିଶି କିଛି ମର୍ଡର ଆଉ ଲାଞ୍ଚ କେଶ ମୁଖ୍ୟମନ୍ତ୍ରୀ ଓ କିଛି ଅନ୍ୟ ମନ୍ତ୍ରୀଙ୍କ ବିଷୟରେ। ପାଣ୍ଡୁ ବେଶ୍ ବୁଝିପାରୁଥିଲା ବର୍ତ୍ତମାନ ଯେ ଏ ମହାସ୍କନ୍ଧ ଥିଲା ମହାଧୂର୍ତ୍ତ, ଯିଏ ଦାନ୍ତ କାମୁଡ଼ି ଲଢୁଥିଲା। ତାକୁ କାବୁ କରିବା ସହଜ ହବନି ନିଶ୍ଚୟ।

ମୁଖ୍ୟମନ୍ତ୍ରୀ କି ପ୍ରଧାନମନ୍ତ୍ରୀଙ୍କୁ ବି ସହଜରେ ଗଡ଼େଇ ହବନି, କିନ୍ତୁ ଆଉ ଫେରିଯିବାର ପ୍ରଶ୍ନ ନ ଥିଲା । ତା ଅଙ୍ଗପ୍ରତ୍ୟଙ୍ଗ ଫୁଲି ଉଠିଥିଲା । ଯିମିତି ମାତି ଉଠିଥିବା ରେପିଷ୍ଟ ପରି । ପୁରୀରେ ତା'ର ଆଗର ଭୟକଥା ମନେପଡ଼ି ତାକୁ ହସ ଲାଗିଲା, କିନ୍ତୁ ନିଜ ଭିତରର ଯୁକ୍ତିତର୍କରେ ସେସବୁ ଅନିଶ୍ଚିତତା ଦୁହିଁ ହୋଇ ବାହାରିଯାଇଥିଲା । କାହାରିକୁ ଗୋଟେତ ଏଗୁଡ଼ାଙ୍କ ବିରୋଧରେ ଲଢ଼ିବାକୁ ପଡ଼ିବ । କାହାରିକୁ କାହିଁକି । ତାକୁ । ସେ ଟୋକୀ ପାଇଁ ନୁହେଁ କି ତା ଉଦ୍ଦେଶ୍ୟ ସାଧନ ପାଇଁ ନୁହେଁ । ନିଜ ସଂରକ୍ଷଣ ଆଉ ଶାନ୍ତି ପାଇଁ । ବର୍ତ୍ତମାନଠୁଁ ଲଢ଼େଇ ଘନେଇବ, କିନ୍ତୁ ତାକୁ ବିଶ୍ୱାସ ଥିଲା ସେ ଏ ଲୋକଗୁଡ଼ାଙ୍କୁ ପାରିବ, ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ ଇତ୍ୟାଦି ଭାବରେ ନୁହେଁ, ମଣିଷ ଭାବରେ । ଏ ପ୍ରତିହିଂସା ଭାବନାରେ ତାର ଗୋଟାଏ ଅଜବ ଆନନ୍ଦ ଥିଲା, କାରଣ ଯା ସାଙ୍ଗେ ମିଶି ଥିଲା ନ୍ୟାୟର ଭାବ ଆଉ ଭାରସାମ୍ୟର ଆଶା ।

ସେ ପରିସ୍ଥିତିଟା ବୁଝିବାକୁ ଆରମ୍ଭ କରୁଥିଲା । ତେଣୁ ସେସବୁ ଫାଇଲ୍ ଯେତେ ଶୀଘ୍ର ପାରେ ଗଡ଼େଇ ନେଇଗଲା, ଆଉ କେତେଗୁଡ଼ିଏ ବାଛିରଖି ବାକିତକ ତଳେ ପକେଇଦେଲା । ତା'ପରେ ସେ ଘରମଝିରେ ଫାଇଲ୍ ଗଦାକୁ ନିଆଁ ଲଗେଇଦେଲା, କିନ୍ତୁ ଯେତେବେଳେ ସେଗୁଡ଼ାକ ଜଳିଉଠିଲା, ତାକୁ ଛାନିଆ ଲାଗିଲା, କାହିଁକି କେଜାଣି, ଯିମିତି ସେ ଖୁବ୍ ବିପଦ ମଝିକି ଠେଲିହେଇ ଯାଉଚି । ତେଣୁ ସେ ଶୀଘ୍ର ଚାଲିଆସିଲା ସେଠୁଁ । ହେଲେ ବାହାରିଗଲା ବେଳକୁ ସେ ଅଟକି ଦୁଆର ପାଖରେ ଅଚେତ ହେଇପଡ଼ିଥିବା ଗାର୍ଡ଼କୁ ନିଆଁ ଝାସରୁ ଟାଣିଆଣି ବଗିଚା ମଝିରେ ଶୁଆଇଦେଲା । କାହିଁକି, ବୁଝିପାରିଲାନି । ନିଆଁ ହୁତୁ ହୁତୁ ହେଇ ଜଳୁଥିଲା ଏବେ । ସେ ଶୀଘ୍ର ସେଠୁ ବାହାରିଗଲା ।

ତା'ର ପର ଲକ୍ଷ୍ୟ. ସେ ଠିକ୍ ଦେଖିପାରୁଥିଲା, ମହାସ୍କନ୍ଧ ବିଶ୍ୱାଳଙ୍କର ଘର ଯୋଉଟାକି ସେଇ ରାସ୍ତାରେ ଅଳ୍ପଦୂରରେ । ମୁନିଆ ଛଡ଼ ଉଠା ବଡ଼ଲୁହା ଗେଟ୍‌ଟା ଭିତରୁ ତାଲାପଡ଼ିଥିଲା । ପାଚିରିଟା ଡେଇଁବାକୁ ବେଶ୍ କଷ୍ଟ ହେଲା ତାକୁ । ନାନାପ୍ରକାର ଗଛଲଗା ବଡ଼ ବଗିଚାଟା ନିର୍ଜନ ଥିଲା, କିନ୍ତୁ ପୋର୍ଚରେ କିଏ ଯିମିତି ଉଠିବସିଲା । କର୍କଶ ଭୁକିବା ଶବ୍ଦ ଆସିଲା ଆଉ ହଠାତ୍ ଛ'ଟା ଡୋବର୍‌ମାନ୍ ପିନ୍‌ଶ୍ଚର୍ ପୋର୍ଚରୁ ଛୁଟିଆସିଲେ ତା'ଆଡ଼େ । ପାଣ୍ଡୁ ଛୋଟେଇ ଛୋଟେଇ ପାଚିରି ପାଖକୁ ଫେରିଆସିଲା କିନ୍ତୁ ଜଲ୍‌ଦି ଡେଇଁ ପଳେଇବା ସମ୍ଭବ ନ ଥିଲା ତା ପକ୍ଷରେ । ତେଣୁ ସେ ସ୍ଥାଣୁ ହେଇ ଠିଆ ହେଇଗଲା ଯୋଉଠି ଥିଲା ସେଇଠି, କିଛି ଭାବି ନ ପାରି, ତା ଅଣ୍ଟାରେ ଖୋଷା ଗୁଣନିଧିର ପିସ୍ତଲକୁ ଭୁଲିଯାଇ । ମୁହୂର୍ତ୍ତକରେ ଛ'ଟାଯାକ କୁକୁର ତା ଉପରକୁ ଡେଇଁପଡ଼ିଲେ ଲାଙ୍ଗୁଡ଼ ହଲେଇ ଖେଳିଲାପରି । ହେ ଭଗବାନ୍, ସେ ଡାକିଲା, କୁକୁରଗୁଡ଼ାକ ପୋଷା ଆଉ ଟ୍ରେନିଂ ପାଇନାହାନ୍ତି ବୋଧେ । ସେମାନେ ତା' ସାଙ୍ଗେ ଘର ପର୍ଯ୍ୟନ୍ତ ଗଲେ, ଆଉ ସେ କଷ୍ଟେମଷ୍ଟେ ଲତା ଧରି ପୋର୍ଟିକୋ ଉପରକୁ ଚଢ଼ିଲାବେଳେ ତଳେ ଚାହିଁ ବସି ରହିଲେ ।

ଘର ଭିତରେ ଖାଲି ଥିଲେ ଜଣେ ବୃଦ୍ଧା ଆଉ ଦି'ଜଣ ଚାକରବାକର, ଜଣେ ପୁରୁଷ, ଜଣେ ସ୍ତ୍ରୀ । ଓପରର ଆଗପଟ ବଡ଼ ଶୋଇଲାଘରେ ମହାସ୍କନ୍ଧ ନ ଥିଲା । ଓପର ପଛପଟ ଶୋଇଲା ଘରେ ବୃଦ୍ଧାଜଣକ ଶୋଇଥିଲେ ନିଘୋଡ଼ ନିଦରେ । ସେ ନିଶ୍ଚୟ ମହାସ୍କନ୍ଧଙ୍କ ଆତ୍ମୀୟ ହେଇଥିବେ । ସେ ଭାବିଲା ଯେ ବୁଢ଼ୀଟାକୁ ଉଡ଼େଇ ଦେଲେ ମହାସ୍କନ୍ଧକୁ ତାର ଜବାବର ଉପଚାର ଠିକ୍ ଭାବେ ଆରମ୍ଭ ହବ । ପିସ୍ତଲ ଗୁଳିର ଆବାଜ ଘରସାରା ଖେଳିଗଲା । ଆଉ ସେ ବୃଦ୍ଧା ନିଶ୍ଚଳ ହେଇ ଶୋଇରହିଲେ । କପାଳର ଛୋଟକଣାରୁ ଖାଲି ଧାରେ ରକ୍ତ ବୋହିଆସୁଥିଲା । ହଠାତ୍ ତାଙ୍କ ଆଖି ଦି'ଟା ଠକ୍ କରି ଖୋଲିଗଲା ଆଉ ସେ ଅଳ୍ପ ହସିଲା ପରି ତାଙ୍କ ଓଠ ହେଇଗଲା । ପାଣ୍ଡୁ ଚଟ୍‌କରି ଘୂରି ପଡ଼ିଲା । ତା ତଣ୍ଟି ଶୁଖିଯାଉଥିଲା ।

ତଳ ମହଲାର ଘଣ୍ଟାରେ ବାରଟା ବାଜିଲା ।

ଦୂରରେ ବଢୁଥିବା କୋଳାହଳ ବଢ଼ି ଜୋର ହେଇଗଲା । ପାଣ୍ଡୁ ଝରକା ବାଟେ ଦେଖିଲା ଦୂରରେ ମହାସ୍କନ୍ଧର ଅଫିସ୍ ହୁ ହୁ ହେଇ ଜଳୁଥିଲା । ତଳେ ଚାକରଚାକରାଣୀ ଉଠିପଡ଼ି ପାଟିକଲେ : "ମା !" ବାହାରେ କିଏ ଗେଟ୍ ହଲେଇବାକୁ ଲାଗିଲେ କାରଣ ଗେଟ୍‌ଟା ଢାଉଁ ଢାଉଁ ଶବ୍ଦ କଲା । ଯିବା ବେଳ ହେଲା, ପାଣ୍ଡୁ ଭାବିନେଲା । ସେ ପାହାଚରେ ଓହ୍ଲେଇଲାବେଳକୁ ଚାକର ଚାକରାଣୀ ପାହାଚ ତଳ ମୁଣ୍ଡେ ଠିଆହେଇ ଓପରକୁ ଚାହିଁଥିଲେ । ସେମାନେ ପାଟିଖୋଲିବା ପୂର୍ବରୁ ସେ ତାଙ୍କୁ ଗୁଳି ମାରିଦେଲା । କେହିସବୁ ଦାଣ୍ଡ ଦୁଆରେ ପହଞ୍ଚି ଯାଇଥିଲେ । ପାଣ୍ଡୁ ରୁଷେଇଘର ଦୁଆର ଖୋଲି ପଛ ପାଚିରି ଆଡ଼କୁ ଧାଇଁଗଲା । ସେ ଜାଣିଥିଲା ପଛ କାନ୍ଥରେ ଦୁଆରଟାଏ ଥିଲା । ସେ ଠିକ୍ ଜାଣିଥିଲା । ବର୍ତ୍ତମାନ ପାଇଁ ମହାସ୍କନ୍ଧ ଖସିଯାଇଥିଲା ସତ, କିନ୍ତୁ ସେ ତାକୁ ପରିଶେଷରେ ନିଃଶେଷ କରି ଦବ । ସେ ଜାଣିଥିଲା ।

ଆଉ, ଏଥର । ମୁଖ୍ୟମନ୍ତ୍ରୀଙ୍କ ପାଳି । କ୍ଷିପ୍ରତା ହିଁ ଏ ଖେଳର ନିୟମ ।

ବିଜୟବଲ୍ଲଭ ପଟ୍ଟନାଏକ୍ ଡରି ଯାଇଥିଲେ । ଏସ୍.ପି.ଙ୍କ ଫୋନ୍ ମିଳିବା ପରେ ଆଉ ସେ ଗୋଟିଏ ଫୋନ୍ କରିସାରିବା ପରେ ତାଙ୍କୁ ଆଉ ନିଦ ହେଲାନି । ଲୋକଟା ଦିନ ଦି'ପହରେ ନିମାପଡ଼ାରେ ପହଞ୍ଚି, ଏମ୍.ଏଲ୍.ଏ. ଗୁଣନିଧି କି ଦରମରା କରି, କୋମାରେ ଛାଡ଼ି, ତା ଘର ଛାରଖାର କରି ନିଆଁଲଗେଇ ଚାଲିଗଲା, କେହି କିଛି କରିପାରିଲେନି । ଆଉ ଏବେ କିଏ ଗୋଟାଏ ଭୁବନେଶ୍ୱରରେ ମହାସ୍କନ୍ଧକୁ ଆକ୍ରମଣ କରିଚି । ତା ଅଫିସ୍ ପୋଡ଼ି ଦେଇଚି, ତା ଖୁଡ଼ୀ ଆଉ ଚାକର ଚାକରାଣୀଙ୍କୁ ମାରିଦେଇଚି । ସେ ପ୍ରଥମେ ଭାବିଥିଲେ ଯେ ମାର୍କ୍ସ ଗ୍ୟାଙ୍ଗ ଯାହାକୁ ସେ ମହାସ୍କନ୍ଧ ପଛରେ ଲଗେଇଥିଲେ ଆଉଥରେ ତାଙ୍କ ଅସମ୍ପୂର୍ଣ୍ଣ କାମ ପୂରା କରିବାକୁ ଲାଗିଗଲେଣି,

କିନ୍ତୁ ତା ନୁହେଁ । କର୍ମକାରଠୁଁ ସେ ଫୋନ୍‌ରେ ବର୍ତ୍ତମାନ ବୁଝିନେଇଥିଲେ ଯେ ସେମାନେ କାମ ଆରମ୍ଭ କରିନାହାନ୍ତି । ତାହେଲେ କିଏ ? ଏଣେ ମହାସ୍କନ୍ଧ ବି ମାଡ଼ିଆସୁଥିବ ତାଙ୍କଆଡ଼କୁ । କ'ଣ ଏସବୁ ଘଟୁଚି ? ମହାସ୍କନ୍ଧକୁ ଆକ୍ରମଣ ହଉଚି ଭଲକଥା । ସେ ପ୍ରାର୍ଥନା କରୁଥିଲେ, ଯିଏବି ହଉ ମହାସ୍କନ୍ଧ କାମ ଶେଷ କରିଦଉ, କିନ୍ତୁ କିଏ ଏ କାମ କରୁଚି ନ ଜାଣିପାରିବାରୁ ତାଙ୍କୁ ଭୟ ଲାଗୁଥିଲା । ଆଉ ମହାସ୍କନ୍ଧ ମୁକ୍ତ ଥିବାରୁ ତାଙ୍କୁ ଆହୁରି ଡର ଲାଗୁଥିଲା ।

ଗ୍ରୀଲ୍‌ଲଗା ବାରଣ୍ଡାର ସୁରକ୍ଷିତ ପରିସରରୁ ହତା ଭିତରର ସୁରକ୍ଷା ବନ୍ଦୋବସ୍ତ ଆଉଥରେ ଦେଖିନେଇ ପଟ୍ଟନାୟକ ଓପରମହଲାକୁ ଉଠିଲେ ନିଶ୍ଚିନ୍ତ ହେଇ ଯେ ସବୁ ବ୍ୟବସ୍ଥା ଠିକ୍ ଅଛି । ମାହେଶୀ ଏପର୍ଯ୍ୟନ୍ତ କଟକରେ ଥିଲେ । ପଟ୍ଟନାଏକ୍ ହାଲ୍‌କା ମନରେ ଶୋଇଲାଘରକୁ ପଶିଯାଇ ଲାଇଟ୍ ଲଗେଇଲେ ।

ପାଣ୍ଡୁର ବନ୍ଧୁକ ପଟ୍ଟନାଏକ୍‌ଙ୍କ ମୁଣ୍ଡକୁ ଲକ୍ଷ୍ୟ କରିଥିଲା । ସେ ବିଜୟର ମୁରୁକି ହସା ଦେଲା ।

''ଆହା,'' ସେ କହିଲା । ''ଆମ ମୁଖ୍ୟମନ୍ତ୍ରୀଙ୍କ ରାସ୍ତା ସରିଲା ।''

''ତୁ !'' ପଟ୍ଟନାଏକ୍‌ଙ୍କ ପାଟି ଆଁ ହେଇଗଲା, ଆଖି ଖୋଷି ହେଇଗଲା, ଆଉ ସେ ଛେପ ଢୋକି ପକେଇଲେ ।

''ହଁ, ମୁଁ, ଯାହାକୁ ମାରିବାକୁ ତମେ ବହୁତ କଷ୍ଟ କଲଣି । ମୁଁ ଆସିଚି ହିସାବ ନିକାସ କରିବାକୁ ।''

''ନା, ନା,'' ପଟ୍ଟନାଏକ୍ ଅନୁନୟ କଲେ । ''ଦୟାକର ସ୍କନ୍ଧ, ମତେ ମାରନା । ଦୟାକରି ମତେ ଛାଡ଼ିଦିଅ । ମୁଁ ଆଉ ପାହୁଲାଟାଏ ବି ମାଗିବିନି ଆଉ କେବେ ବି, ଆଉ ସେ ଲାଇସେନ୍ସ ଫାଇସେନ୍ସଗୁଡ଼ାକ ସପ୍ତାହକ ଭିତରେ କରେଇଦେବି । ମାର୍କ୍ସ ଗ୍ୟାଙ୍ଗ୍‌କୁ ଫେରେଇନେବି । ଟଙ୍କା ଯଦି ଦରକାର, ମୋ ପାଖେରେ ଯାହା ଅଛି ନେଇଯାଆ, କିନ୍ତୁ ଦୟାକର ମହାସ୍କନ୍ଧ, ମତେ ଛାଡ଼ିଦିଅ । ମୁଁ ପ୍ରଧାନମନ୍ତ୍ରୀ ହେଇଗଲେ ତମକୁ ସାରା ଭାରତର ପୂରା ସମୁଦ୍ରକୂଳ ଛାଡ଼ିଦେବି ।''

''କ'ଣ... ?''

ପାଣ୍ଡୁ ଘାଣ୍ଟୁ ପରି ବସିପଡ଼ିଲା ଖଟଉପରେ, ମୁଣ୍ଡ ତାର ଝାଇଁ ଝାଇଁ ହେଇଯାଉଥିଲା । ମନ ତାର ବୁଢ଼ିଆଣୀ ଜାଲରେ ପଡ଼ି ଥରୁଥିଲା, ତା ହୃଦୟ ଧାଏଁ ଧାଏଁ ପିଟି ହଉଥିଲା ତା ପଞ୍ଜରା ହାଡ଼ରେ, ତା ପେଟ ଗୋଳେଇଘାଣ୍ଟି ହେଇଯାଉଥିଲା ।

ସେ ମହାସ୍କନ୍ଧ !

ସେ ତାହେଲେ କ'ଣ ନିଜକୁ ଗୋଡ଼ୋଉଥିଲା, ପିଛାକରୁଥିଲା ନିଜର, ଶିକାରୀ ପରି, ନିଜ ଛାଇକୁ ଖୋଜି ବୁଲୁଥିଲା, ଆଉ ଛୁରି ଧରି ନିଜକୁ ଭୁସିବାକୁ ଧାଇଁ ଆସୁଥିଲା ? ନିଜର ଧ୍ୱଂସ କ'ଣ ସେ ନିଜେ ଆରମ୍ଭ କରି ଦେଇଥିଲା ? ନିଜକୁ ମାରିବାକୁ କ'ଣ ସେ ନିଜେ ଆଦେଶ ଦେଇଥିଲା, ସେ ଆକ୍ତାବାକ୍ତା ହେଇ ଭାବିଲା । ନିଜକୁ ଗୋଡ଼ୋଉଥିଲା ? ଏଇଟା ସମ୍ଭବ ନୁହେଁ ।

''ଅସମ୍ଭବ,'' ସେ କହିଲା । ''ମୁଁ ମହାସ୍କନ୍ଧ ନୁହେଁ । ମୁଁ ନୁହେଁ । ମୁଁ ପାଣ୍ଡୁ । ମୁଁ ମହାସ୍କନ୍ଧ ନୁହେଁ । ମୁଁ ମହାସ୍କନ୍ଧ ହେଇପାରିବିନି ।''

''ଯାହା ଇଚ୍ଛା ନିଜକୁ ଡାକ ପଛେ ସ୍କନ୍ଧ, କିନ୍ତୁ ଚାଲ ଆଗପରି ସାଙ୍ଗ ହେଇଯିବା । ମୁଁ ତମ ଗୋଡ଼ତଳେ ପଡ଼ି ନେହୁରା ହଉଚି । ମତେ କ୍ଷମା କରି ଦିଅ । ମୁଁ ରାଗିଯାଇଥିଲି । କିଏ ନ ହବ ଯେତେବେଳେ ସେ କେଶ୍‌ଗୁଡ଼ାକ ମୋ ମୁହଁ ଆଗରେ ଝୁଲାଇ ଦେଲ ଆଉ କହିଲ ଯେ ସବୁ ପ୍ରମାଣ ପ୍ରଧାନମନ୍ତ୍ରୀ କି ଦେଇଦବ । ତମେତ ଜାଣିଚ ସେ ମତେ ଖତମ କରିବାକୁ ଲାଗିପଡ଼ିଚି । ଗ୍ୟାଙ୍ଗ୍‌କୁ ଡାକିବା ଛଡ଼ା ମୋର ଆଉ ଚାରା କ'ଣ ଥିଲା, କିନ୍ତୁ ହଲପ କରି କହୁଚି ମୁଁ ତମ ଖୁଡ଼ୀ ଆଉ ଚାକରବାକରଙ୍କୁ ମାରିନି କି ତମ ଅଫିସ୍ ଜଳେଇନି । ଏଇଟା ମୋ କାମ ନୁହେଁ, ମୁଁ ଗ୍ୟାଙ୍ଗ୍‌ଠୁ ବୁଝିସାରିଲିଣି ।''

''ମୁଁ ମହାସ୍କନ୍ଧ ନୁହଁ,'' ସେ ଦୋହରେଇଲା, କିନ୍ତୁ ମନ ତାର ମରିଯାଉଥିଲା । ଜୀବନ କି ଖେଳ ଖେଳୁଚି ତା ସାଙ୍ଗେ ? ସମସ୍ତେ କ'ଣ ନିଜ ନିଜର ଧ୍ୱଂସ ଖୋଜି ବୁଲୁଚନ୍ତି ?''

''ଏଇଟା ନିଶ୍ଚୟ ସେ ପ୍ରଧାନମନ୍ତ୍ରୀର କାମ । ଜାଣିଚ, ସେ ତମ ପଛରେ ସି.ବି.ଆଇ. ଲଗେଇଚି । ତମୁକୁ, ମତେ ଆଉ ମୋ ବନ୍ଧୁମାନଙ୍କୁ ସେ ତା ଗୋଡ଼ତଳେ ଚକଟି ଦବାକୁ ଚାହୁଁଚି । ସେ ନେଳି ଆଲୁଅ ଫାଲୁଅ ବି ତାରି କାମ ହେଇଥିବ । ତା ପଛରେ ତମେ ଲାଗିବା ଉଚିତ, ସ୍କନ୍ଧ । ସେଇ ଆମର ଶତ୍ରୁ । ଚାଲ ତାକୁ ଧରିବା । ସ୍କନ୍ଧ, ପ୍ଲିଜ୍, ମତେ ଛାଡ଼ିଦିଅ । ତାକୁ ଧର । ତାରି ପଛରେ ଲାଗିଯାଅ । ତାକୁଇ... ।''

''ମୁଁ ମହାସ୍କନ୍ଧ ନୁହେଁ,'' ସେ ଯନ୍ତ୍ରଣାର ଆକ୍ରୋଶରେ ଗୁମୁରି ଉଠିଲା । ''ମୁଁ ନୁହେଁ, ମୁଁ ନୁହେଁ, ମୁଁ ନୁହେଁ, ମୁଁ ନୁହେଁ...''

ସିକ୍ୟୁରିଟି ଗାର୍ଡ଼ମାନେ ଯେତେବେଳେ ପହଞ୍ଚିଗଲେ, ପଟ୍ଟନାଏକ୍ କହିଲେ, ''ତାଙ୍କୁ କିଛି କରନି । ଏସ୍କର୍ଟ୍ ଦେଇ ନେଇଯାଅ ଯୁଆଡ଼େ ଯିବାକୁ କହିବେ ।''

ପଟ୍ଟନାଏକ ହଠାତ୍ ମଲାପରି ହାଲିଆ ହେଇଯାଇଥିଲେ ।

ମହାସ୍କନ୍ଧ ତାଙ୍କର ଅତୃପ୍ତ ତିକ୍ତତାରେ ଗୁଞ୍ଜରି କହିଲେ, ''ଶାଳୀ ! ମୋର ସର୍ବନାଶ କରିଦେଲା ।''

## ।। ୧୦ ।।

## ଅର୍କ କୋଣର ଯେତେ ତର୍କବାଣ
## ସଭିଙ୍କୁ ସୁମରି ଧନୁଶରେ ଟାଣ

ମୁର୍ମୁର ଅନୁପସ୍ଥିତିର ଶୂନ୍ୟତା ଭିତରେ, ପାଣ୍ଡୁ ପାଇଁ ଦିନେ ଅପେକ୍ଷା କଲା ପରେ, ତା ସାହାଯ୍ୟରେ ଜିତିବାର ଆଶା କରିଥିବା ମାଗୀ ନିଜ ଯୁଦ୍ଧ ଚଳେଇ ରଖି, ଯେତେବେଳେ ମହାସ୍କନ୍ଧ ବିଶ୍ୱାଳ ସାଙ୍ଗେ ମୁହାଁମୁହିଁ ହବାକୁ ଭୁବନେଶ୍ୱର ଗଲା, ସେ ପ୍ରକୃତରେ ନିରୁତ୍ସାହିତ ନ ଥିଲା । ପାଣ୍ଡୁର ନିଜସ୍ୱ ଯୁଦ୍ଧ, ଯଦି ସେ ହିଁ ନିମାପଡ଼ା ଆକ୍ରମଣ କରିଥାଏ, ମାଗୀର ବର୍ତ୍ତମାନ ରାସ୍ତାଠାରୁ ଅଲଗା ହେଇ ଯାଉଥିଲା । ସେ ପ୍ରଥମରୁ ଏ କାମ ପାଇଁ ପାଣ୍ଡୁକୁ ମତେଇ ଠିକ୍ କରିଚି କି ନାହିଁ ଭାବିବାକୁ ଲାଗିଲା, ଅବଶ୍ୟ ଆରମ୍ଭରେ ସେ ହଠାତ୍ ମାଡ଼ି ଚାଲିଗଲା ଗୋଟାଏ ଅନିବାର୍ଯ୍ୟ ଶକ୍ତିର ଅପ୍ରତିହତ ସଂଘାତରେ, କିନ୍ତୁ ଯଦି ପାଣ୍ଡୁ ଏବେ ତା ବୁଦ୍ଧିରେ କିଛି କରୁଚି ମାଗୀ ତା ପାଇଁ ଦାୟୀ ନୁହେଁ । ମାଗୀର ବାଟ ଅପ୍ରତ୍ୟାଶିତ ଭାବରେ ବଦଳିଯାଉଚି । ତଥାପି ନିମାପଡ଼ାକାଣ୍ଡରେ ତାକୁ ଏକରକମ ଉଲ୍ଲାସ ମିଳିଥିଲା, ଯିମିତି ପାଣ୍ଡୁ ତାକୁ ଭିନ୍ନଭାବରେ ସାହାଯ୍ୟ କରୁଚି । ପାଣ୍ଡୁର ଖସି ପଳେଇବା ତା ପାଇଁ ଯେତେବଡ଼ ଧକ୍କା ଥିଲା, ସେ ଗିରଫ ନ ହେଇଥିବାଟା ସେତିକି ବଡ଼ ସାନ୍ତ୍ୱନା ବି ଥିଲା । ଆଉ, ବୋଧହୁଏ, ତା ବୋଝରୁ ମୁକ୍ତ ହବାର ଉଶ୍ୱାସ ।

କିନ୍ତୁ ଏବେ ମଲ୍‌ହୋତ୍ରା ଯିମିତି ଭବାନୀ ଭଳି ଚେଇଁ ଉଠିଲାଣି, ସେ ମୁହୂର୍ତ୍ତକ ପାଇଁ ତାଙ୍କ ସାହାଯ୍ୟ ନବାପାଇଁ ଲାଳାୟିତ ହେଇଉଠିଲା, କାରଣ ସମୟ ସମୟରେ ଖୁବ୍ ଏକୁଟିଆ ଲାଗୁଥିଲା ତାକୁ । ଆଉ ତା ଉଦ୍ଦିଷ୍ଟ କାମ କରିବାରେ ଶକ୍ତିର ଅଭାବ ଅନୁଭବ କରୁଥିଲା ସେ, କିନ୍ତୁ ସେ ଭାବନା କ୍ଷଣସ୍ଥାୟୀ ଥିଲା । କାରଣ ଖୁବ୍ ଶୀଘ୍ର ସେ ନିଜ ଦାୟିତ୍ୱ ପାଇଁ ଉଦ୍ଦେଶ୍ୟ ଆଉ ସଂକଳ୍ପ ଖୋଜି ପାଇଯାଉଥିଲା, ଯେମିତି ସେ ତା ଉଦ୍ଦେଶ୍ୟର ଉତ୍ସରେ ବୁଡ଼ି ଯାଇଥିଲା । ସେଥେରେ କିଛି ବିଭେଦ ନ ଥିଲା । ନା ଥିଲା କିଛି ନାସ୍ତିବାଚକ ଭାବ, କେବଳ ଅତ୍ୟନ୍ତ ଆସକ୍ତି ଓ ତୃପ୍ତି । ତେଣୁ ସେ ମଲ୍‌ହୋତ୍ରା ବା ଭାବାନୀ ଦାସଙ୍କ ସାହାଯ୍ୟ ନବାର ଲାଳସାରୁ କ୍ଷାନ୍ତ ରହିଲା । ସରଳା, ଯିଏକି ଏତେବେଳକୁ ତା'ର ଖୁବ୍ ପାଖକୁ ଆସିଯାଇଥିଲା । ତା' ପଦକ୍ଷେପକୁ ଅନୁମାନ କରି ତା ସାଙ୍ଗରେ ଆସିବାକୁ ଜିଦ୍ କରିଥିଲା, କାରଣ ତା କହିବା ଅନୁସାରେ ସେ ପୂରା ସହଯୋଗ କରିବାକୁ ଇଚ୍ଛା କରୁଥିଲା ।

କିନ୍ତୁ ମାଗୀର ନିର୍ଣ୍ଣୟ ହେଲା, କେତେଗୁଡ଼ିଏ କାମ ତାକୁ ଏକୁଟିଆ ହିଁ କରିବାକୁ ପଡ଼ିବ, ବିଶେଷତଃ ଯୋଉଥିରେ ତାର ଜିଜ୍ଞାସା ସନ୍ନିବିଷ୍ଟ, ଯୋଉ କାମରେ କ'ଣ କରିବାକୁ ହବ ସେ ନିଜେ ଜାଣିନି ବା ସ୍ଥିର କରିନି । ତା ବ୍ୟାଗ୍‌ରେ ସେ ପାଣ୍ଡୁର

ଟଙ୍କା ରଖିଥିଲା । ସେ ତା ନିଜର କିଛି ପଇସା ବି ଆଣିଥିଲା । ତା ମନରେ ଗୋଟାଏ ଗୁପ୍ତ ଆଶା ଥିଲା ଯେ ସେ ହୁଏତ ତାର ମହାସ୍କନ୍ଧଙ୍କ ପାଖକୁ ଯାତ୍ରାରେ କୋଉଠି ଗୋଟାଏ ପାଣ୍ଡୁ ସାଙ୍ଗେ ମୁହାଁମୁହିଁ ହେଇଯିବ । ସେ ହିଁ ଯଦି ଗୁଣନିଧିକୁ ନଷ୍ଟଭ୍ରଷ୍ଟ କରିଚି, ତାହେଲେ ସେ ମହାସ୍କନ୍ଧଆଡ଼କୁ ଯାଉଥିବ । ପାଣ୍ଡୁ ଭାଗ୍ୟର ଚାବି ନିଶ୍ଚୟ ମହାସ୍କନ୍ଧ ହାତରେ ଅଛି । ସେ ଏ ବିଷୟର ମୂଳପର୍ଯ୍ୟନ୍ତ ଯିବାକୁ ଆଉ ଏଇଟା କାହିଁକି ଘଟିଲା ଦେଖିବାକୁ ଆଉ ଦୋଷୀମାନଙ୍କୁ ଜାଣିବାକୁ ଚାହୁଁଥିଲା ।

ସେ ବସ୍ କଣ୍ଡକ୍ଟରକୁ ପଚାରିଲା, ଭୁବନେଶ୍ୱରର ଟଙ୍କପାଣି ରୋଡ୍ କୋଉଠି ବୋଲି । ଯେହେତୁ କୋଣାର୍କରୁ ଯଥେଷ୍ଟ ଯାତ୍ରୀ ଚଢ଼ି ନ ଥିଲେ, ମଧ୍ୟବୟସ୍କ ଭୁବନେଶ୍ୱର ବାସିନ୍ଦା କଣ୍ଡକ୍ଟରଟି ତାକୁ ଭୁବନେଶ୍ୱର ଓପରେ ଗୋଟିଏ ଜଟିଳ ଭାଷଣ ଦେଇ, ପୁରୁଣା ସହର, ରାଜାଧାନୀ, ସବୁ ୟୁନିଟ୍ ଆଉ ବଜାର, ଯାମାହା ଡକେଇତ ଆଉ ସଚିବାଳୟର ତୋଟିକଟା କାରବାର ବିଷୟରେ କହିଗଲା । ଯାହାହଉ ରାଜରାଣୀ ମନ୍ଦିର ଛକରେ ସେ ତାକୁ ଓହ୍ଲେଇ ଦେଇ ଅତି ସହଜ ଭାବରେ ବୁଝେଇଦେଲା ଯେ ତାକୁ ସିଧା ରାଜରାଣୀ ମନ୍ଦିରପାଖକୁ ଯାଇ ବାଁକୁ ମୋଡ଼ିଯିବାକୁ ପଡ଼ିବ ।

କିନ୍ତୁ ଓହ୍ଲେଇଲା ବେଳକୁ ସେ କହିଲା, ‘‘ସାବଧାନ ରହିବ, ହାଁ । ଏଠି ଏବେ ଅଘଟନ ସବୁ ଘଟିଯାଇଚି । ମହାସ୍କନ୍ଧବାବୁଙ୍କ ମାଉସୀ ଆଉ ଚାକର ବାକରଙ୍କୁ କିଏ ହାଣି ପକେଇଚି । ଖବରକାଗଜରେ ବାହାରିନି ଏଯାଏ, ହେଲେ ସତ । ସମସ୍ତେ ଫୁସୁରୁଫାସର ହଉଚନ୍ତି । ସେ ବି କୁଆଡ଼େ ପଳେଇଚନ୍ତି କେଇ ଦିନ ହେଲା । ଆଉ କୋଉ ଦେଶକୁ ଖସିଯାଇଥିବେ କି କ’ଣ । ସ୍ମଗ୍ଲର୍‌ଙ୍କ ରଜା ତ ।’’

ମାଗୀର ମନ ହଠାତ୍ ଦବିଗଲା, ଆଉ ମୁହୂର୍ତ୍ତକ ପାଇଁ ତା ଗୋଡ଼ ହାତ ଚାଲିଲାନି, ଯିମିତି ତା ଦେହର ସବୁ ଶକ୍ତି ଉଡ଼ି ଚାଲିଯାଇଚି ଅଜଣା ଶଙ୍କାରେ, କିନ୍ତୁ ବସ୍ ଚାଲିଗଲା ପରେ ସେ ଦୀର୍ଘଶ୍ୱାସଟିଏ ନେଇ ବୁଲିପଡ଼ି ଚାଲିଲା ସାହସ ବାନ୍ଧି ରାଜାରାଣୀ ମନ୍ଦିରଆଡ଼େ ।

ଘରଟା ଥିଲା ବେଶ୍ ସୁଦୃଶ୍ୟ, ଆଧୁନିକ, ଆଉ କୋଉ ଦୁନିଆର ଘର ପରି ଲାଗିଲା ମାଗୀକୁ । ଚାରିପଟେ ଉଚ୍ଚା ପାଚିରି ଆଉ ଫାଟକଟା ଲୁହାର । ବାଁପଟ ଫାଟକ ଖୁମ୍ବ ଯାହା ଓପରେ ରାତିରେ ଆଲୁଅ ଜଳିବା ପାଇଁ କାଚ ଘୋଡ଼ଣୀ ଓ ତା ଭିତରେ ଗୋଟିଏ ବଲ୍‌ବ ଥିଲାପରି ମାଗୀକୁ ମନେହେଲା । ଓଡ଼ିଆରେ ଲେଖାଥିଲା ‘‘ଆଶ୍ରମ’’ ଆରପଟେ ଇଂରେଜୀରେ ।

ସେ ଫାଟକ ଖୋଲିଲା, ପଶିଲା ଆଉ ଭିତରପଟୁ ବନ୍ଦ କଲା । ଘରଟା ପରିତ୍ୟକ୍ତ ଜଣା ପଡୁଥିଲା ।

ପୋର୍ଟିକୋରୁ ପାହାଚରେ ଚଢ଼ି ସେ ଗୋଟାଏ ବିରାଟ ଶାଗୁଆନ କବାଟ ସାମନାରେ ଅଟକିଗଲା । କବାଟ ଭିତରପଟୁ ବନ୍ଦ ଥିଲା କାରଣ ସେଇଟା ତା ପେଲାରେ ଖୋଲିଲାନି । ବାଁ ପଟେ ବଗିଚାରେ ଗଛରେ ପାଣିଦଉଥିବା ଟୋକାମାଳୀଟି ତାକୁ ଦେଖି ବୁଲିପଡ଼ି ତରତରରେ କଳଟା ବନ୍ଦ କରିଦେଲା ଯୋଉଥିରେ ପାଣି ମଡ଼େଇବା ପ୍ଲାଷ୍ଟିକ୍ ପାଇପ୍‌ର ଗୋଟିଏ ପଟ ଲାଗିଥିଲା । ମାଳୀଟୋକା ପାଇପ୍‌କୁ ରଖି ତାଆଡ଼କୁ ଆସିଲା । ତାକୁ ଦେଖି ମାଗୀ ଓହ୍ଲେଇ ଆସିଲା ପୋର୍ଟିକୋ ପାହାଚ ଦେଇ ତଳକୁ ।

''କାହାକୁ ଦେଖା କରିବ ?''

''ବାବୁଙ୍କୁ ।'' ମାଗୀ କହିଲା ।

ମାଳୀର ଦୃଷ୍ଟି ମାଗୀ ଦେହରେ ଲାଖିଯାଇଥିଲା ସନ୍ଦେହ ଆଉ ଆକର୍ଷଣରେ । ସେ କହିଲା, ''ଓଃ, ବାବୁ ? ବାବୁ ତ ଘରେ ଅଛନ୍ତି କି ନାହିଁ ମୁଁ ଜାଣିନି । ମୁଁ ତ ମାଳୀ । ଘର ଭିତୁରୁକୁ ପ୍ରବେଶ ନାହିଁ । ହେଲେ ମୋ ଜାଣିବାରେ ବାବୁ ତ ବିଦେଶ ଯାଇଚନ୍ତି ଆଉ ପାର୍ବତୀ ମା' ତୀର୍ଥ କରି ଯାଇଚନ୍ତି ଚାକର ବାକରଙ୍କୁ ନେଇ ।''

ମାଗୀ ସିଧା ତା ଆଖିକୁ ଚାହିଁଲା ଆଉ ସେ ଟୋକା ଅପ୍ରତିଭ ହେଇ ଚୁପ୍ ହେଇଗଲା ।

ସେ ଏପଟ ସେପଟକୁ ଚାହିଁ କହିଲା, ''ହେଇଟି ମୋର ସେ ବରଗଛ ପାଖୁକୁ ଆସ ।''

''ହଉ,'' କହି ମାଗୀ ତା ପଛେ ପଛେ ଦକ୍ଷିଣ-ପଶ୍ଚିମ ପଟେ ଥିବା ଗୋଟାଏ ବଡ଼ ବୁଢ଼ା ବରଗଛଆଡ଼େ ଚାଲିଲା । ଉଚ୍ଚା ପାଚିରିଟା ଦକ୍ଷିଣ ଆଉ ପଶ୍ଚିମ ପଟେ ବରଗଛଟାକୁ ରାସ୍ତା ଆଉ ପାଖ ଜମିରୁ ଅଲଗା କରି ରଖିଥିଲା । ଦକ୍ଷିଣରୁ ଉତ୍ତରକୁ ଧାଡ଼ିଏ ଦେବଦାରୁ ତାକୁ ଘରଠୁଁ ଲୁଚେଇ ରଖିଥିଲା । ତା ପାଖକୁ ଧାଡ଼ିଏ କ୍ରୋଟନ୍ ଗଛ ବି ଲାଗିଥିଲେ । ସେ ମାଳୀଟୋକା ତାକୁ କ୍ରୋଟନ, ଦେବଦାରୁ, ଆଉ ତା ପରେ ନଡ଼ିଆ ଗଛ ପାରିକରି ବରଗଛ ମୂଳକୁ ନେଇଗଲା । ମଝିଆଳିଆ ବରଗଛଟା କିନ୍ତୁ ବେଶ୍ ବୁଢ଼ା, କାରଣ ବହୁତ ଓହଳ ଖସିଥିଲେ ତଳକୁ ଯୋଉଗୁଡ଼ାକ ମାଟିରେ ପଶି ମୋଟେଇ ଯାଇଥିଲେ । ତା ତଳଟା ଥଣ୍ଡା, ଗଛ ଥଣ୍ଡା ଯୋଉଟାକି ସମୁଦ୍ର ଥଣ୍ଡାରୁ ଭିନ୍ନ । ଗଛ ଓହଳ ବିହ୍ୱ ଭିତର ଦେଇ ମାଗୀକୁ ସେ ପିଲା ନେଇଗଲା ଗଛର ମୋଟା ଗଣ୍ଡି ପାଖକୁ ଯାହା ଚାରିପଟେ ହେଇଥିଲେ ଗୋଟାଏ ପଥର ଆଉ ମାଟି ତିଆରି ଚଉତରା, ଓପରଟା ସିମେଣ୍ଟ କରାହେଇ ।

''ବସ । ଏଇଟା ଘରୁକୁ ଦୁଶୁନି ।''

ମାଗୀ ବସିଲା । ମାଳୀଟୋକା ବି ବସିପଡ଼ିଲା ଗୋଡ଼ଟେକି ।

''ତମେ ଭଲ ପିଲା ଯେ, ହେଲେ ଭାରି ମିଛୁଆ, କିନ୍ତୁ ଧରା ତ ପଡ଼ିଯାଉଚ ।''

''ହେଁ ?''

''ତୀର୍ଥ ନାହିଁ ? ଦି'ଦିନ ତଳେ ପରା ଖୁଣ ହେଇଚନ୍ତି, କି ନାହିଁ ?''

ମାଳୀଟୋକା ମୁହଁ ତଳକୁ ପୋତି ଦେଲା ଲାଜେଇ ।

ସେ କହିଲା, ''ମୁଁ ଏଠି ନୂଆ । ଜମା ମାସେ ହେଲା କାମ କରୁଚି । ମୋ ଆଗରୁ ମୋ ବାପା ଏଠି କାମ କରୁଥିଲେ । ସେ ଚାଲିଗଲେ । ତା ପରେ କକା ମତେ ଏଠିକି ଆଣି ଲଗେଇ ଦେଲେ ବାବୁ ନ ଥିଲା ବେଳେ । ତିନିଶ' ଟଙ୍କା, ଦିନଯାକ ବଗିଚା କାମ, ବଖତେ ଖାଇବା । ମୁଁ ବାହାରେ ରହୁଚି କକାପୁଅ ଭାଇ ସାଥିରେ । ସେମାନେ ଖାଇସାରିଲେ ମତେ ଡାକିବେ ଆଉ ପଛ ବାରଣ୍ଡାରେ ବାଢ଼ିଦେବେ । ଆମ ଗାଁ ଅସ୍ତରଙ୍ଗ । ତମେ ବି ଗାଁରୁ ଆସିଚ, ନୁହଁ ?''

''ହଁ ।''

''ସେଇଆ ତ । ତମେ ସହରୀ ଝିଅଙ୍କ ପରି ଲୁଗାପଟା ପିନ୍ଧିନା ।''

''ମୋ ଲୁଗା ପିନ୍ଧିବାରେ ଅସୁବିଧା କ'ଣ ହେଲା ।''

''ଅବଶ୍ୟ, ତମେ ପୂରାପୂରି ଗାଁରୁ ଆସିଲା ପରି ଦିଶୁନ ଯେ, ତେବେ ତମ ବାଳରେ ସୁନ୍ଥା କରିଚ ଆଉ ପାରିକି କୁଣ୍ଡେଇଚ । ଏଠି ଝିଅଗୁଡ଼ା କେମିତି କେଜାଣି, ଫୁରୁଫୁରିଆ, ହୁଗୁଳା । ସାୟା ଆଉ ଶାଢ଼ି ମାଟିରେ ଘୁଷୁରୁଥିବ ଯେ ପାଦ ଦିଶିବନି । ତମେ ଯିମିତି ଶାଢ଼ି ପିନ୍ଧିଚ ସେଥେରେ ତମ ପାଦ ବି ଭଲ ପଡ଼ିବ ଆଉ ଆରାମ ଲାଗିବ । ତାପରେ କାନି । ଏଠି ଏମିତି ଲମ୍ବେଇକି ଛାଡ଼ିଦେଇଥିବେ ଯିମିତି ଯାତ୍ରାରେ ରାଜାଙ୍କ ପଛରେ ଝୁଲୁଥାଏ । ତମର ଟଣାଟଣି ହେଇ ଅଣ୍ଟାରେ ଗୁଡ଼ିଆ ହେଇଚି ଯିମିତି ହୁଗୁଳା ହେଇ ଓହଳି ରହିବନି ।''

ମାଗୀ ତା'ର ଏ ବର୍ଣ୍ଣନାରେ ସାମାନ୍ୟ ହସି ଅଜାଣତରେ ତା ଶାଢ଼ିର କାନି ଖୋଲିଦେଲା ।

''ତମେ ବହୁତ ବୁଦ୍ଧିଆ ପିଲା ।''

''ମୁଁ ବୁଦ୍ଧିଆ ଯେ, ହେଲେ ଭଗବାନ୍ ଜାଣନ୍ତି । ହୁଏତ ବାଳପାଚି ଅଣ୍ଟା ବାଙ୍କିଗଲାଯାଏ ଏଇଠି ମାଳୀ ହେଇ ପଡ଼ିଥିବି ।''

''ତମର ନିଶ୍ଚେ ଉନ୍ନତି ହବ । ତମ ନାଁ କ'ଣ ?''

''ଚକ୍ରବର୍ତ୍ତୀ ଖୁଣ୍ଟିଆ ।''

''ଚକ୍ରବର୍ତ୍ତୀ ! ମାନେ ସମ୍ରାଟ ! ଖୁଣ୍ଟିଆ ମାନେ କ'ଣ ?''

‘‘ଖୁଣ୍ଟ ପୋଟାଳି,’’ ପିଲାଟି ହସିଲା, ‘‘ତମ୍ଭୁ ବାନ୍ଧିବାକୁ । ମତେ ସମସ୍ତେ ଚକୁ ବୋଲି ଡାକନ୍ତି ।’’

‘‘ବଢ଼ିଆ ଡାକ ନାଁ । ଏବେ ମତେ କହିଲ ବାବୁଙ୍କୁ ଦେଖା କରିବାକୁ କ’ଣ କରିବାକୁ ପଡ଼ିବ ?’’

‘‘ମୁଁ ମୋ ଚାକିରି ହରେଇବାକୁ ଚାହେଁନି । ଆହୁରି ବି ଅନେକ ଲୋକ ବାବୁଙ୍କ ବିଷୟରେ ପଚାରୁଚନ୍ତି । ମୁଁ ଯୋଉଠି ରହୁଚି ସେମାନେ ସେଠିକି ବି ଆସୁଚନ୍ତି । ଯୋଡ଼ାଏ ରାଜରାଣୀ ମନ୍ଦିରରେ ଛକିଚନ୍ତି । ମୁଁ କାହାରିକୁ କିଛି କହିନି । ସେମାନେ ମତେ ପଇସା ଯାଚିଲେ ତଥାପି ମୁଁ ସେମାନଙ୍କୁ କହିଲି ଯେ ବାବୁ ଏଠି ନାହାନ୍ତି । ସେ ସତରେ ବି ନ ଥିଲେ ।’’

‘‘ମତେ ବିଶ୍ୱାସ କର,’’ ମାଗୀ ତା ହାତକୁ ଚକୁର ଆଣ୍ଠୁରେ ରଖିଲା ।

‘‘ଏମିତି ନୁହଁ ଯେ ଚାକିରି ଚାଲିଗଲେ ଆମେ ଭୋକିଲା ରହିବୁ । ଆମର ଖଣ୍ଡେ ଜମି ଅଛି ଯାହାକୁ ଆମେ ହାତଚାଷ କରୁ । ବେଳେବେଳେ, ବିଶେଷ କରି ରୁଆ, କଟା ଆଉ ଧାନ ବାଡ଼ିଆବେଳେ ଅଳ୍ପ ମୂଲିଆ ଲାଗନ୍ତି । ତା ଆମକୁ ଏ ଗୋଛିକଟା ଭାଗଚାଷୀଙ୍କ କବଳରୁ ରକ୍ଷାକରେ । ଆମର ବର୍ଷକର ଖର୍ଚ୍ଚ ପାଇଁ ଧାନ ହେଇଯାଇ, କିଛି ବଳିପଡ଼େ ବିକିବା ପାଇଁ । ବାପା ଯେତେବେଳେ ଏଠି ଥିଲେ ମୁଁ ବୁଝାସୁଝା କରୁଥିଲି । ମୁଁ ଦୋଫସଲ ବି କରିଥିଲି । ଶୀତଦିନେ ପରିବାପତ୍ର କରୁଥିଲି । ଦି’ପଇସା ମିଳୁଥିଲା । ଯଦି ମୋ ସାନଭାଇ ଦିନୁ ତା ଓପରେ ଟିକେ ନଜର ଦିଅନ୍ତା, କାହାକୁ ଭୋକିଲା ରହିବାକୁ ପଡ଼ନ୍ତାନି । ସିଏ ଏ ବର୍ଷ କଲେଜ ଗଲା । ଜିନ୍ ଫିନ୍ ପିନ୍ଧେ । ବୋଉର ଇଚ୍ଛା ସିଏ ଗୋଟେ ବାବୁ ହଉ ଆଉ ଟାଉନରେ ରହୁ । ତା’ର ସହରରେ ମନ । ଗାଁକୁ ସିଏ ନାକ ଟେକେ । ମତେ କିନ୍ତୁ ସହର ଭଲ ଲାଗୁନି । ଆମେ ପାଞ୍ଚଜଣ ବଖରାଏ ଘରେ ଶୋଉଚୁ । ଜଣକା ପଚାଶ । ସେଇ ଭଳିଆ ଦଶବଖରା ଘର ଗୋଟିଏ ଧାଡ଼ିରେ । ସରୁ ବାରଣ୍ଡାଟିଏ ଯୋଉଠି ତମକୁ ରୋଷେଇ କରିବାକୁ ପଡ଼ିବ ନ ହେଲେ ବାହାରେ ଖାଇବ । ସାଇକଲ ରଖିବା ପାଇଁ ବି ଜାଗାଟିକେ ନାହିଁ । ସର୍ବସାଧାରଣ ପାଇଖାନା । ପଇଁଚାଳିଶି ଜଣଙ୍କ ପାଇଁ ପାଞ୍ଚୋଟି । କୂଅ କଡ଼ରେ ଗାଧେଇବାକୁ ପଡ଼େ ଆଉ ସେଇଠି ଲୁଗାପଟା ଧୋଇବାକୁ ପଡ଼େ, ସେଇଥିପାଇଁ ଜାଗାଟା ବର୍ଷାଦିନ ଛଡ଼ା ସବୁବେଳେ ସନ୍ତସନ୍ତିଆ ଥାଏ । ବର୍ଷାଦିନେ ତ ବଢ଼ି । ଏବେ, ଗାଁରେ...’’

‘‘ଚକୁ !’’ ଘର ପଛପଟୁ ଗୋଟିଏ ସରୁକଣ୍ଠୀ ସ୍ତ୍ରୀଲୋକର ମୁକ୍ତକଣ୍ଠ ଡାକରା ଆସିଲା । ‘‘ଚକ୍ରବର୍ତ୍ତୀ ଖୁଣ୍ଟିଆ । ଆସ ଖାଇବ ।’’

''ଅପେକ୍ଷା କର । ଏଇ ସାଙ୍ଗେ ସାଙ୍ଗେ ମୁଁ ଆସୁଚି । ଯେ ଆମ ନୂଆ ମା ।'' ଚକୁ ଗଛକଡ଼ରୁ ଗୋଟିଏ ମାଟିଆ ବ୍ୟାଗରୁ ଗୋଟିଏ ପ୍ଲାଷ୍ଟିକ୍ ଥାଳି ଆଉ ଗୋଲ ପିତ୍ତଳ ଢାଳଟିଏ କାଢୁକାଢୁ କହିଲା । ''ଆଉ ମୁଁ ନୂଆ ଖବର ନେଇ ଆସୁଚି, ଯିବନି ଭାରି ।''

ମାଗୀ ଚାହିଁଥିଲା ସେ ଥାଳିଟାକୁ ପିଟାରେ ପୋଛି ପୋଛି ତରତର ହେଇ ଯାଉଥିବା ଦୃଶ୍ୟକୁ । ସେ ଠିଆ ହେଲା, ଚାରିକଡ଼କୁ ଦେଖିଲା ଆଉ କୂଅ କଡ଼ରେ ଥିବା ଗୋଟିଏ ବଡ଼ କ୍ରୋଟନ ଗଛ ପଛପଟକୁ ଗଲା ।

ପାଚିରି ବାହାରେ ପାନଦୋକାନ ପାଖ ଗଛ ତଳେ ଗୋଟିଏ କାର୍ ରହିଲା । ତା' ଭିତରୁ ବାହାରିଲେ ଦି'ଜଣ ଲୋକ । ଜଣେ ନିଶ ଦାଢ଼ି ନ ଥିବା ଲୋକ, ଅନ୍ୟଟିର ମୁହଁରେ ନିଶ । ପ୍ରଥମଜଣକ ଓଡ଼ିଆ ପରି ଦିଶୁଚି, ଆର ଜଣକ ଉତ୍ତର ଭାରତୀୟ ପରି ।

''ଦି'ଟା ପାନ,'' ନିଶୁଆଜଣକ କହିଲା ।

''ଏ ଘରଟା ତ ବେଶ୍ ସୁନ୍ଦର,'' ଆରଜଣକ କହିଲା ।

''ଏଇଟା ବିଶ୍ୱାଳବାବୁଙ୍କ ଘର,'' ପାନବାଲା କହିଲା ।

''ଆହାଃ,'' ସେମାନେ ତାଙ୍କ ଟୋପିକୁ ମୁଣ୍ଡରୁ କାଢୁ କାଢୁ କହିଲେ ମନ୍ଦିର ଆଡ଼େ ଚାହିଁ ।

ଦି'ଜଣ ମଧ୍ୟବୟସ୍କ ଲୋକ - ଜଣେ ଧୋତି ପଞ୍ଜାବି ପିନ୍ଧିଚି ବଙ୍ଗାଳୀ ଲୋକଙ୍କ ପରି ଓ ଅନ୍ୟଜଣକ କେରଳୀମାନଙ୍କ ପରି ଲୁଙ୍ଗି ସାର୍ଟ ପିନ୍ଧିଚି - ରାଜାରାଣୀ ମନ୍ଦିର ଚଉତରାରେ ବସି ଘରଆଡ଼େ ଦୃଷ୍ଟିନିକ୍ଷେପ କରୁଥିଲେ । ସେମାନେ କଳାଚଷମା ପିନ୍ଧିଥିଲେ ଓ ବିଡ଼ି ଭିତରେ ଗଞ୍ଜେଇ ପୂରେଇ ଟାଣୁଥିଲେ ।

''ମୁଁ ଯାହା ଦେଖୁଚି ତମେ ସେଇଆ ଦେଖୁଚ ତ ଭବାନୀ ? ମାର୍କ୍ସବାଦୀ ବିଶ୍ୱାଳ ପଛରେ ପଡ଼ିଚନ୍ତି ।''

''ହଁ, ମହାରାଜ । ଆମକୁ ବୋଧେ ଏବେଠୁ ତାଙ୍କ ଓପରେ ନଜର ରଖିବାକୁ ପଡ଼ିବ ।''

''ବଡ଼ବଡ଼ିଆ କାର୍‌ବାର୍, ନା କ'ଣ ?''

''ଯେତେବଡ଼ ସେତେ ଭଲ ।''

ଚକୁ ଫେରିବାକୁ ବେଶୀ ସମୟ ନେଲାନି ଆଉ ଯେତେବେଳେ ଫେରିଲା, ତା ହାତରେ ଥିଲା ସେ ଥାଳି ଯୋଉଥିରେ ଏତେ ଭାତ ଥିଲା ଯେ ବିଲେଇବି ଡେଇଁ

ପାରିବନି । ତା ଓପରେ ଡାଲି ଢଳା ଯାଇଥିଲା, ତରକାରି ଓ ଭଜା ଥାଳି କଡ଼ରେ ଥିଲା, ତା ଛଡ଼ା ଥିଲା ଲୁଣ, ଅଧଡଜନେ ଖଣ୍ଡେ କଞ୍ଚା ଲଙ୍କା ଆଉ ଚେନାଏ ପିଆଜ ।

"ଆମ ଦି'ଜଣଙ୍କ ପାଇଁ ଯଥେଷ୍ଟ," ସେ ଥାଳିକୁ ସତର୍କତାରସହ ତଳେ ରଖିଲା ଆଉ ମାଗୀ ତାକୁ ସସ୍ନେହରେ ଦେଖୁଥିବା ବେଳେ ସେ ପାଣିଥିବା ଢାଳକୁ ତଳେ ରଖିଲା । "ମୁଁ ନୂଆ ମା'ଙ୍କୁ କହିଲି ମତେ ଭାରି ଭୋକ । ବାବୁଙ୍କର ଦୂରସମ୍ପର୍କୀୟା ଖୁଡ଼ୀ । ବିଧବା । କାଲି ଅଣାହେଲେ ଗାଁରୁ । ନହେଲେ ଘର ଚଳେଇବ କିଏ ? ସେ ଏବେ ଘର ସମ୍ଭାଳୁଚନ୍ତି, ତାଙ୍କ ତଳେ ଜଣେ ରୋଷେୟା ଆଉ ଚାକରାଣୀ ନୂଆ ଆସିଚନ୍ତି । କଡ଼ା ସ୍ତ୍ରୀଲୋକ । ତାଙ୍କୁ ଦେଖିଲେ ପିଲ୍ହେଇ ପାଣି । ପାର୍ବତୀମାଙ୍କ କଥା ନିଆରା ଥିଲା ।" ତା ଆଖି ଛଳଛଳ ହେଇଗଲା ।

"ମୁଁ ଖାଇ ପାରିବିନି । ମତେ ଭୋକ ଲାଗୁନି । ଆସିବା ଆଗରୁ ମୁଁ ପଖାଳ, ଭଜାମାଛ ଆଉ ବାଇଗଣ ପୋଡ଼ା ଖାଇ ଆସିଚି । ମୋ ପେଟ ଏ ପର୍ଯ୍ୟନ୍ତ ପୂରା ଅଛି ।"

"ଠିକ୍ ଅଛି ତେବେ," ସେ ବାଧ କଲାନି । ଭାତ ଭିତରେ ଆଙ୍ଗୁଠି ପୂରେଇ ସେ ଭାତ ଡାଲି ଗୋଳେଇ ଗୁଣ୍ଡାଏ ଲେଖା କରି ପାଟିରେ ପୂରେଇଲା । ତା ସାଙ୍ଗେ ସେ ତରକାରି ଆଉ ଭଜାରେ ହାତ ମାରିଲା, ମଝିରେ ମଝିରେ ଲଙ୍କା ଆଉ ପିଆଜକୁ ଲୁଣ ମଡ଼େଇ ଚୋବେଇ ସ୍ୱାଦର ଗୋଟାଏ ଘମାଘୋଟିଆ ସନ୍ତୁଳନ ରକ୍ଷାକରି ଖାଇଲା ।

"ଘରେ ଆଉ ସବୁ କିଏ ରହନ୍ତି ?"

"ନୂଆମା, ନୂଆ ରୋଷେୟା ଦାମ, ନୂଆ ଚାକରାଣୀ ପାମୀ, ଛଅଟା କୁକୁର, ଡୋବରମାନ୍ ନା କ'ଣ ସେଗୁଡ଼ାଙ୍କୁ କହନ୍ତି, ଆଉ ବାବୁ । ଜଗୁଆଳିମାନେ ଚବିଶ ଘଣ୍ଟା ରହୁଚନ୍ତି ଏବେ, ଆଠଘଣ୍ଟିଆ ସିଫ୍ଟ୍ ଡ୍ୟୁଟିରେ ଆସନ୍ତି ଯେ ସେମାନେ ଘରେ ରହନ୍ତି ।"

"ଜଗୁଆଳି ? କେହିତ ଜଗୁଆଳି ନ ଥିଲେ । ମୁଁ ତ ଆରାମରେ ଭିତରକୁ ପଶିଲି ।"

"ସେମାନେ ବସିଚନ୍ତି ଆଗଦୁଆର ଭିତରେ । ପଛଦୁଆର ଭିତେରେ, ଆଉ ଛାତ ଓପରେ । କାଳରାତି ପରେ ।"

"ତୋ ବାବୁଙ୍କ ବାପା ମା ?"

"ବାପା କହୁଥିଲେ ସେମାନଙ୍କୁ ଗାଁରେ ହାଣିଦେଇଥିଲେ ଆଉ ତାଙ୍କ ପଇସାପତ୍ର, ସୁନା ରୁପା ସବୁ ଚୋରି ହେଇଯାଇଥିଲା । ବହୁତ ଅସୁବିଧା ହେଇଥିଲା, ସମସ୍ତଙ୍କୁ ସନ୍ଦେହ କରାଗଲା । ତା ପରେ ସିନା ବାବୁ ଜୋରସୋର ବିଜିନେସ୍ କଲେ । ସେ ବେଳେ ବେଳେ ବାହାରକୁ ବି ଯାଆନ୍ତି, ବହୁତ ଦିନ ରହନ୍ତି ବୋଲି ମୁଁ ଶୁଣିଚି । ଗଲାଥର ଭଳିଆ । ଏବେ ଅବଶ୍ୟ ଘରେ ନାହାନ୍ତି ।"

''ଘରେ ନାହାନ୍ତି ନା ? ମୁଁ ଭାବିଥିଲି ତମେ ମୋ ସାଙ୍ଗ ଆଉ ମୁଁ ତୁମକୁ ବିଶ୍ୱାସ କରିପାରିବି । ଏବେ ତମେ ମତେ ମିଛ କହୁଚ ? ଠିକ୍ ଅଛି ଯଦି ତମେ ମତେ ଏଇଭଳିଆ ବ୍ୟବହାର ଦେଖେଇବ, ମୁଁ ଯାଉଚି ।''

ସେ ଠିଆ ହେଇ ପିଚାରୁ ଧୂଳିଝାଡ଼ିଲା ।

''ନା ନା ଯାଅନି । ମୁଁ ଖାଲି ଟିକେ ମଜା କରୁଥିଲି । ମଣିଷ କ'ଣ ତା ପସନ୍ଦ ହଉଥିବା କାହା ସାଙ୍ଗେ ଟିକେ ଥଟ୍ଟା ଟାପରା କରିପାରିବନି ? ଆଉ କ'ଣ ଅଛି ? ପାଣି, ଗୋବର, କାଟ, ପୋତ ସାରାଦିନ । ଖାଅ, ଯଦି ଗୋଡ଼ରେ ଦମ୍ଭ ଅଛି ସନ୍ଧ୍ୟାରେ ମାର୍କେଟ୍ ଆଡ଼େ ଟିକେ ଯାଅ, ଦୋକାନ ଆଉ ଝିଅମାନଙ୍କୁ ଦେଖ । ଯଦି ପଇସା ଥାଏ ମାସକୁ ଦି'ତିନିଥର ଚାଟ୍ ନ ହେଲେ ଆଉ କିଛି ଖାଅ । ଗୋଟାଏ ବା ଦୁଇଟି ଫିଲିମ୍ । ରାତି ସୁଦ୍ଧା ଏତେ ଥକି ଯାଇଥିବ ଯେ ସ୍ୱପ୍ନ ବି ଦେଖିପାରିବନି, କିଛି ବି କରିପାରିବନି ।''

''ଠିକ୍ ଅଛି, ମୁଁ ରହିବି, କିନ୍ତୁ ତମେ, ମୁଁ ମହାସ୍କନ୍ଧବାବୁଙ୍କ ସାଙ୍ଗେ ଦେଖା କରିବା ପୂର୍ବରୁ ତାଙ୍କ ବିଷୟରେ ମତେ କହିବ ।''

''ତମେ କ'ଣ ଜାଣିବାକୁ ଚାହୁଁଚ ?''

''ସେ କ'ଣ କରନ୍ତି ?''

''ମୁଁ ଠିକ୍ ଜାଣିନି । ତାଙ୍କର ଟ୍ରଲର୍ ଅଛି ଆଉ ସେ ଚିଙ୍ଗୁଡ଼ି ବେପାର କରନ୍ତି । ଜାପାନ ଆଉ ଆମେରିକା ପଠାନ୍ତି । ତାଙ୍କର ଟ୍ରକ୍ ଅଛି, ଆହୁରି ଅନେକ ଜିନିଷ ଅଛି ମୁଁ ଜାଣିନି ।''

''ତମେ ଠିକ୍ ଜାଣ । ସେ ସ୍ମଗଲର ନୁହନ୍ତି ?''

''ତମେ କ'ଣ ପୁଲିସ୍‌ରୁ ଆସିଚ ?''

''ବାୟା ହେଲ କି ? ମୁଁ ପୁଲିସ୍‌ରୁ କିମିତି ଆସିବି ? ମୁଁ କ'ଣ ପୁଲିସ୍ ଭଳିଆ ଦିଶୁଚି ? ଠିକ୍ କଥା ମତେ କୁହ ଏଥର ।''

''ମୁଁ କିମିତି ଜାଣିବି ? ମୁଁ ଏଠି ନୂଆ ଆଉ ମୁଁ ହେଲି ମାଳୀ ଯାହାର ଘର ଭିତରକୁ ବି ଯିବାର ଅଧିକାର ନାହିଁ । ହେଲେ ବାପାଙ୍କଠୁଁ ଯାହା ଶୁଣିଚି । ବାପା ପ୍ରାୟ ଚୁପ୍‌ଚାପ୍ ରହନ୍ତି, ହେଲେ ରାତି ଖିଆଟା ଭଲ ହେଇଥିଲେ, ଯଦି ଟିକେ ଥଣ୍ଡା ଲାଗୁଥାଏ, ହାଲକା ପବନ ବହୁଥାଏ, ମଶାଙ୍କ ଉପଦ୍ରବ ନ ଥାଏ, ସେ ଇଆଡୁ ସିଆଡୁ ବହୁତ କଥା କହନ୍ତି । ସେ କହିଥିଲେ ମହାସ୍କନ୍ଧବାବୁ ଜଣେ ସ୍ମଗଲର୍ । ସେ କହିଥିଲେ ଯେ ସେ ଭାରତର ସବୁଠୁ ବଡ଼ ସ୍ମଗ୍‌ଲର୍ ହବାକୁ ଚାହୁଁଥିଲେ । ସେ କହିଥିଲେ ଯେ ମନ୍ତ୍ରୀମାନେ ତାଙ୍କ ପକେଟ୍‌ରେ ଗେଞ୍ଜାହେଇଚନ୍ତି ଆଉ ଆଇ.ଏ.ଏସ୍. ଅଫିସରମାନେ ତାଙ୍କ ଜୋତା ସଫା କରନ୍ତି, କିନ୍ତୁ ମୁଁ ଏସବୁ କଥା ଠିକ୍ ଜାଣେନି ।

ବାପାଙ୍କର ଯେତେବେଳେ ମୁଡ୍ ଭଲଥାଏ ସେ ବହୁତ କଥା କହନ୍ତି । ଏମିତିକି ସେ କହିଥିଲେ ମହାସ୍କନ୍ଧବାବୁ ତାଙ୍କ ନିଜ ବାପା ମାଙ୍କୁ ମାରି ସବୁ ପଇସା ଲୁଟି ନେଇଥିଲେ ବୋଲି ପୁଲିସ୍ ସନ୍ଦେହ କରି ଧରିଥିଲେ ବି ପରେ ଛାଡ଼ି ଦେଇଥିଲା । ମାମଲା ସତ ହେଲେ ବି ପ୍ରମାଣ ନ ଥିଲା । ଆମ ପୁଲିସ୍‌ର କାମ ସେଇମିତି । ଏମିତି ସେ ବେପାର ଆରମ୍ଭ କଲେ ବୋଲି ଶୁଣାଯାଏ, କିନ୍ତୁ ମତେ କିଛି ଜଣା ନାହିଁ ।''

''ସେ କାହାକୁ ମାରି ଦେଇ ପାରନ୍ତି ?''

''ବାପା କହୁଥିଲେ ସେମାନଙ୍କ ବେପାରରେ ମାରଧର ସାଧାରଣ କଥା, କିନ୍ତୁ ମୁଁ ଜାଣିନି । ହେଃ, ମୁଁ କ'ଣ କହୁଚି ?''

''ତାଙ୍କ ଚେହେରା କିମିତି ?''

''ମୁଁ କିମିତି ଜାଣିବି ଭଲା । ମୁଁ ଯେତେବେଳେ ଏଠିକି ଆସିଲି ସେ ଏଠି ନ ଥିଲେ । ପାର୍ବତୀ ମା ମତେ ରଖିଲେ । ବାବୁ ଦି'ମାସ ହେଲା ନିଖୋଜ ଥିଲେ ଆଉ ସମସ୍ତେ ବହୁତ ବ୍ୟସ୍ତ ଥିଲେ, ସେ ଏବେ ଯେତେବେଳେ ଫେରିଲେ ତାଙ୍କୁ କେହି ଚିହ୍ନି ପାରିଲେନି ।''

ଚକୁ ହଠାତ୍ ରହିଗଲା ଆଉ ଓଠ କାମୁଡ଼ି ପକେଇଲା । ତାପରେ ସେ ମାଗୀଆଡ଼କୁ ଦୋଷୀଙ୍କ ଭଳିଆ ଚାହିଁ, ଅଳ୍ପ ହସି ତା' ଥାଳି ସଫାକରି ଖାଇବାକୁ ଲାଗିଗଲା ।

''ତାଙ୍କୁ କେହି ଚିହ୍ନିପାରିଲେନି ମାନେ ?''

''ମୋ ମୁଣ୍ଡ ଠିକ୍ ନାହିଁ ।''

''କୁହ ମ ।''

''ମୁଁ ଅଧିକା କିଛି ଜାଣିନି ।''

''ଚକୁ !''

''ମୁଁ ତାଙ୍କୁ ଦୂରରୁ ଦେଖିଥିଲି । ସେତେବେଳେ ମୁଁ କ୍ରୋଟନ୍ ଗଛ ସାଇଜ କରୁଥିଲି । ସେ ଟିକିଏ ଛୋଟେଇ ଛୋଟେଇ ବାଲ୍‌କୋନିକୁ ଆସିଲେ କାଲି ସନ୍ଧ୍ୟାରେ । ମୁଁ ପରିଷ୍କାର ଦେଖିପାରିଲିନି, କିନ୍ତୁ ତାଙ୍କ ଚେହେରା କିଛି ଭଲ ନୁହେଁ । କ'ଣ ଆକ୍ସିଡେଣ୍ଟ ହେଇଚି ବୋଲି ସମସ୍ତେ କହୁଚନ୍ତି ।''

''ସେ ମହାସ୍କନ୍ଧ ବିଶ୍ୱାଳ ?'' ମାଗୀ ଚକୁକୁ ଚାହିଁ ରହିଲା ।

''ମୁଁ ପରେ ଶୁଣିଲି ସେ ପହଞ୍ଚିଲା ବେଳେ ଘରେ ତାଙ୍କୁ କେହି ଚିହ୍ନିପାରି ନ ଥିଲେ । ସେ ଆସିଲା ପରଠୁଁ କ'ଣ ହେଲା କେଜାଣି, ଘର ଶୂନଶାନ । ତାଙ୍କ ଅଫିସ୍‌ର ଲୋକ ସବୁ, ଆଗରୁ ଯିଏ ରୀତିମତ ଆସୁଥିଲେ, ଆଉ ଆସୁ ନାହାନ୍ତି ।

ଏଇଟା ଗୋଟାଏ ଭୂତଖାନା ଭଳିଆ ହେଇଗଲାଣି । ଗାର୍ଡ଼ମାନେ ଚୁପଚାପ ଆଉ ବାବୁ ଫୋନ୍ ଆଉ ୱାରଲେସ୍ ଧରି ତାଙ୍କ ରୁମ୍‌ରେ ।''

''ମୁଁ କିମିତି ତାଙ୍କୁ ଦେଖା କରିବି ?'' ନିଜ ଉତ୍ତେଜନାକୁ ପ୍ରଶମିତ କରି ମାଗୀ ପଚାରିଲା ।

''କିଛି ଆଶା ନାହିଁ, କାରଣ ସେ ଆସି ନାହାନ୍ତି ବୋଲି ସମସ୍ତଙ୍କୁ କୁହାଯାଉଚି ।''

''ମୁଁ ନିଶ୍ଚେ ଦେଖା କରିବି,'' ମାଗୀ କହିଲା ।

''ମୁ ଯାଏଁ ଥାଳି ଧୁଏଁ । ଗୁଡ଼ାଏ କାମ ତେଣେ ପଡ଼ିଚି ।''

''ଶୁଣ ।''

କିନ୍ତୁ ଚକୁ ତରତର ହେଇ ଚାଲିଗଲା ।

ମାଗୀ ଘର ଭିତରକୁ ଯିବା ପାଇଁ ମନ ସ୍ଥିର କରିନେଲା । ଠିଆ ହେଇ ବୁଲିପଡ଼ିଲା ବେଳକୁ କ୍ରୋଟନ ଗଛ ଆଡୁଆଳରୁ ପାଣ୍ଡୁ ଆସୁଥିଲା । ସେ ଅଟକି ଗଲା ମାଗୀକୁ ଦେଖି । ପାଣ୍ଡୁର ସନ୍ଦେହ ଠିକ୍ ଥିଲା । ସେ ମାଇକିନାଟା ସେଠି ଥିଲା ।

''ପାଣ୍ଡୁ !'' ମାଗୀ ଆଶ୍ଚର୍ଯ୍ୟ ହେଲା । ''ତମେ ଏଠି କ'ଣ କରୁଚ ?''

ମହାସ୍କନ୍ଧ ଥମ କରି ରହିଗଲା । ତାଙ୍କ ଛାତି ଧଡ଼୍‌ଧଡ଼୍ ହେଇ ଉଠିଲା । ତାଙ୍କ ନିଃଶ୍ୱାସ ଘନ ଘନ ଚାଲିଲା, ତାଙ୍କ ମାଂସପେଶୀ ଖାଞ୍ଚିହେଇଗଲା, ଆଉ ତାଙ୍କ ଆଖି ଜଳି ଉଠିଲା । ଏଇ ସେ ମାଇକିନା ଯାହା ଯୋଗୁ ତାଙ୍କ ଅଫିସ ଜଳିଗଲା, ତାଙ୍କ ମାଉସୀ ମରିଗଲା, ଚାକରବାକର ମରିଲେ, ମୁଖ୍ୟମନ୍ତ୍ରୀ ପଟ୍ଟନାଏକ୍ ଆଗରେ ସେ ଅପଦସ୍ତ ହେଲେ । ନିଜକୁ ନିଜେ ଦଂଶିଲେ । ସେ ହିଁ ତାଙ୍କୁ କହିଥିଲା । ମହାସ୍କନ୍ଧ ତାଙ୍କର ଘାତକ । ସେ ହିଁ ତାଙ୍କୁ ଅନୁନୟ, ବିନୟ କରି, ତାଙ୍କୁ ମତେଇ ତାଙ୍କ ଶତ୍ରୁଙ୍କୁ ନଷ୍ଟଭ୍ରଷ୍ଟ କରିଦବାକୁ କହିଥିଲା । ସେ ଆଉଥରେ ଥମିଗଲେ । ତାଙ୍କ ଶତ୍ରୁକୁ ନଷ୍ଟ କରିବାକୁ କହିବାଟା ମାଗୀର ଦୋଷ କିମିତି ? କିନ୍ତୁ ତା'ର ମତଲବ କ'ଣ ? ସେ କିଏ ? ଏସବୁ ପଛରେ କିଛି ଗୋଟାଏ ଚକ୍ରାନ୍ତ ନିଶ୍ଚୟ ଅଛି ।

''ମୁଁ ପାଣ୍ଡୁ ନୁହେଁ, ମୁଁ ମହାସ୍କନ୍ଧ ।''

''କ'ଣ ହେଲା ! କିନ୍ତୁ...''

ସେ ମାଗୀର ଆଶ୍ଚର୍ଯ୍ୟାନ୍ୱିତ ମୁହଁକୁ ଚାହିଁଲେ, ଉଚ୍ଚା ଉଚ୍ଚା ଗାଲ ହାଡ଼ ପାଖେ ଝଲକୁଥିବା ଆଖିକୁ, ସେ ଅଳ୍ପ ଖୋଲା ଓଠକୁ, ଆଉ ପବନ ଉଡ଼ା ବାଳକୁ । ଫୁଟୁଥିବା ଫୁଲ ପରି କିନ୍ତୁ ଅପ୍ରତିହତ ଭାବରେ ଖୋଲି ଯାଉଥିବା ଫୁଲ, ଉଇଁଆସୁଥିବା ସୂର୍ଯ୍ୟପରି ।

''ତମେ ମାଗୀ !'' ମହାସ୍କନ୍ଧ କହିଲେ, ଯିମିତି ବୁଝିପାରୁଥିଲେ ଯେ ମାଗୀ ପ୍ରକୃତରେ ଅଛି ।

‘‘ମାଗୀ ତ ବଦଳି ଯାଇନି । ମୁଁ କ’ଣ ଏବେ ଅଲଗା ଦିଶୁଚି ? ହେଇ ଯାଇଥିବି ଅବା ।’’

ମଲା ମୁହଁରୁ ଟାଣି ଆଣି ଜୀବନ ଦବା ଲୋକ ଭିତେରେ ଚକ୍ରାନ୍ତ ରହିଲା କୋଉଠି ?

‘‘ମୋ ସାଙ୍ଗେ କ’ଣ କାମ ? ତମ ମତଲବ୍ କ’ଣ ?’’

‘‘ମୁଁ ଆସିଥିଲି ପଚାରିବାକୁ କାହିଁକି ତମେ ପାଣ୍ଡୁକୁ ମାରିବାକୁ ଚାହିଁଥିଲ । ତମେ ଏସବୁ କାହିଁକି କଲ ? କିନ୍ତୁ... କିନ୍ତୁ ତମେ ନିଜୁକୁ ମାରିବାକୁ ନିଜେ କିମିତି କହିଲ ?’’

‘‘ପାଣ୍ଡୁ ବୋଲି କେହି ନାହିଁ ।’’

‘‘ମୁଁ ଏବେ ବୁଝୁଚି । ମୋ ମୁଣ୍ଡରେ ସବୁ ଗୁଡ଼େଇ ତୁଡ଼େଇ ହେଇଯାଉଚି, କିନ୍ତୁ ପାଣ୍ଡୁ ତ ଥିଲା । ଥିବା ଦରକାର ବି ।’’

‘‘ନା ।’’

ତଥାପି ଏ ମାଇକିନା ପ୍ରତି ତାଙ୍କର ଆକ୍ରୋଶ ପ୍ରତିହତ କରିପାରୁ ନ ଥିଲେ ମହାସ୍କନ୍ଧ, ଯିମିତି ମାଗୀ ତାଙ୍କ ପରିଶେଷର ପ୍ରତୀକ, ତାଙ୍କର ପରିସମାପ୍ତି । ବିଲୟ । ତାଙ୍କୁ ବିବ୍ରତ ଲାଗିଲା । ସେ ନିଜେ କ’ଣ ଖଳପ୍ରକୃତିର । ନା ଖଳତା ଭିତରେ ଛନ୍ଦି ହେଇ ଯାଇଚନ୍ତି । ଯନ୍ତାରେ ପଡ଼ିଲା ପରି ଲାଗିଲା ତାଙ୍କୁ ।

‘‘ଦେଖ ମତେ କ’ଣ କରିଚ ।’’

‘‘କ’ଣ ?’’

‘‘ତମେ ଜାଣିନ ? ନା ତମେ ଜାଣିନ । ତମେ ଏଠୁ ଚାଲିଯାଅ ।’’

‘‘ନା, ଏମିତି ନୁହେଁ ।’’

‘‘ତମେ ମତେ ଧ୍ୱଂସ କରି ଦେଇଚ ।’’

‘‘ତମୁକୁ ଧ୍ୱଂସ କରିଚି ? ଡକାୟତ ମହାସ୍କନ୍ଧ ବିଶ୍ୱାଳକୁ ଧ୍ୱଂସ କରିଚି ? ତା ଧ୍ୱଂସ ତମ ପାଇଁ କ’ଣ ଶୁଭ ନୁହେଁ ?’’

‘‘ବଦମାସ୍ ମାଇକିନା !’’

‘‘ମୁଁ ବଦ୍‌ମାସ୍ ମାଇକିନା । ତମକୁ ଲାଜ ଲାଗୁନି ମତେ ଏ କଥା କହିବାକୁ ! ତମେ ଖୁନ୍‌କରା, ରେପ୍‌କରା, ଗୁଣ୍ଡାମୀକରା, ଲୁଟ୍‌ମାର୍‌କରା, ମା’ବାପା ହନ୍ତା !’’

ମହାସ୍କନ୍ଧର ମୁଣ୍ଡ ଝାଇଁ ଝାଇଁ ହେଇଗଲା । ତା ଫୁସ୍‌ଫୁସ୍‌ରୁ ପବନ ଟାଣି ହେଇ ବାହାରି ଆସିଲା ଆଉ ତା ଶବ୍ଦଗ୍ରନ୍ଥି ଚୁପ୍ ହେଇଗଲା ।

"ନା ।" ବୋଲି ଚିତ୍କାରଟା ତା ତୋଟିରେ ରୁନ୍ଧି ହେଇ ରହିଗଲା । ମୁଣ୍ଡ ଭିତରେ ତାର ଏତେ କଥା ଛନ୍ଦି ଗୁଡ଼େଇ ହେଇଯାଇଥିଲା ଯେ ସେ କିଛି ବି କହି ପାରିଲାନି ମାଗୀକୁ । କ'ଣ ବା କହିଥାନ୍ତା ଯାହା କରିଚି ତା ପରେ ।

ହଠାତ୍ ଦୁଆର ଖୋଲିଗଲା ଧଡ଼୍ କରି ସୈନିକ ପରି ଲୋକଟାଏ କାନ୍ଧରୁ ବନ୍ଧୁକ ଝୁଲେଇ ଧାଇଁ ଆସିଲା ହାତେରେ କର୍ଡ଼ଲେସ୍ ଟେଲିଫୋନ୍‌ଟାଏ ଧରି ।

"ସି.ଏମ୍.," ସେ କହିଲା । "ଖୁବ୍ ଜରୁରୀ ଲାଗୁଚି ।"

ମହାସ୍କନ୍ଧ ଫୋନ୍‌ଟା ନେଇ ଟିକିଏ ଦୂରେଇ ଗଲେ ଆଉ ସି.ଏମ୍‌ଙ୍କ କଥା ଶୁଣିଲେ । ପରିଶେଷରେ କହିଲେ, "ମତେ ପାଞ୍ଚମିନିଟ୍ ଛାଡ଼ି ଫୋନ୍ କରନ୍ତୁ ।" ତା ପରେ ସେ ମାଗୀ ଆଡ଼କୁ ବୁଲି କହିଲେ, "ଚାଲିଯାଅ । ଦୌଡ଼ି ପଳାଅ ମୋ ଆଗରୁ । ଆଉ କେବେ ମୋ ବାଟ କାଟିବାର ଧୃଷ୍ଟତା କରନି । ବର୍ତ୍ତମାନ ମତେ ବହୁତ କାମ କରିବାକୁ ଅଛି ।"

ଏତିକି କହି ବୁଲିପଡ଼ି ସେ ଘର ଭିତରକୁ ଚାଲିଗଲେ ।

ମାଗୀ କିଛିବେଳ ଛାଣୁପରି ଠିଆ ହେଇରହିଲା । ତା'ପରେ ସେ ତା ବ୍ୟାଗରୁ ପାଣ୍ଡୁର ପର୍ସଟା କାଢ଼ି ତଳେ ଥୋଇ ଦେଇ ଧୀରେ ଧୀରେ ବାହାରିଆସିଲା ।

## ॥ ୧୧ ॥

## ଯୋଉଠି ଜାବଡ଼ ଫିଟି ଯାଉଚି
## କଷ୍ଟ କ'ଣ କଲି ହଉଚି
## କାହାର ଗରଜ କିଏ ସହୁଚି

ଖରା ଯଦି ଟାଣ ଆଉ ନିଷ୍ଠୁର ହେଲା, ପୃଥିବୀରୁ ପାଣି ଶୋଷି ନେଇ ମଇଁଷିଆ ମେଘର ପେଟ ଫୁଲେଇଲା, ବର୍ଷା ତ ମୂଷଳ ବର୍ଷିବ, ନଈରେ ଅକାତ ପାଣି ମାଡ଼ିଆସିବ, ଅତଡ଼ା ତ ଖସିବ ଆଉ ବନ୍ଧ ଭାଙ୍ଗି ଗାଁ ଗଣ୍ଡା ସହର ସବୁ ଭସେଇ ନିଶ୍ଚିହ୍ନ ତ କରିଦବ, ସମୁଦ୍ର ବି ମାଡ଼ିଆସି ପୃଥିବୀକୁ ଗ୍ରାସିଯିବ ।

ପୃଥିବୀରୁ ଗଛ ବୃକ୍ଷ ଲୁଟିନେଲେ, ଭୂଇଁକୁ ଉଲଗ୍ନ କରି ଧର୍ଷିଗଲେ । ଆକାଶର କଣା ବାଟେ ଖରା ଟାଉଁ ଟାଉଁ ହେଲେ ସବୁ ଜଳିପୋଡ଼ି ନାରଖାର ହବଇ ହବ ।

ନେତା ବର୍ବର ହେଲେ, ଦେଶକୁ ଗ୍ରାସିଗଲେ, କ'ଣ ହବ ?

ଦୟାକରି ! ଏ ରୂପକ ବଚନ ବନ୍ଦକର ।

ଆମ୍ଭୁକୁ ଗପଟା କୁହ । ସେଇଟା ଜମି ଆସୁଥିଲା । ନେତାମାନେ ପରସ୍ପର ତୋଟି କାଟୁଥିଲେ ଆଉ ମିଳିମିଶି ତାଙ୍କ ହେଟା ଦାନ୍ତ ଲୋକଙ୍କ ତଣ୍ଟିରେ ଭୁକି ଦେଇଥିଲେ । ବାବା ବୁଗି ମହାକାଶରୁ କିଛି ଚିହ୍ନ ଫୋପାଡ଼ି ସାରି ସୌରମଣ୍ଡଳରେ ପ୍ରବେଶ କରୁଥିଲେ ଆଉ ବର୍ତ୍ତମାନ ସଜବାଜ ହଉଥିଲେ ଆକାଶରୁ ମହାବାର୍ତ୍ତା ପଠେଇବାକୁ । ଆଉ ମାଗୀ ତା ଅନ୍ଧାର ଭିତରୁ ବାହାରି ଆସିବାକୁ ଆରମ୍ଭ କରୁଥିଲା ।

ଏ ସମୟରେ ତମର ସେ ପ୍ରବଚନ ଆମର ଲୋଡ଼ା ନାହିଁ । ଆମ୍ଭୁକୁ ଖାଲି ଗପଟା କୁହ, ସିଧାସଳଖ ।

ହଉ ।

ପୃଥିବୀ ଉତ୍କଣ୍ଠିତ ଥିଲା । ଲୋକମାନେ ଖଣ୍ଡାଧାରରେ ଠିଆ ହେଇଥିଲେ । ସବୁକିଛି ଥିଲା ଘଡ଼ିସନ୍ଧି ବେଳେ । ମିଜାଜ୍ ଥିଲା ଉତ୍କ୍ଷିପ୍ତ ।

ମାଗୀ ଓପୁରୁକୁ ଚାହିଁଲା ସୂର୍ଯ୍ୟଙ୍କୁ, ମହାସ୍କନ୍ଧଙ୍କ ଘରୁ ବାହାରି ଆସିଲା ବେଳେ, ଆଉ ଠିକ୍ କରିନେଲା ମୁଖ୍ୟମନ୍ତ୍ରୀଙ୍କ ଘରୁକୁ ଯିବାକୁ ଯଥେଷ୍ଟ ସମୟ ଥିଲା । ତା ଯୋଜନା ବଦଳେଇବାର କିଛି କାରଣ ନ ଥିଲା । ଯଦିଓ ଧକ୍କା ଲାଗିଥିଲା ତାକୁ ମହାସ୍କନ୍ଧର ପ୍ରକୃତ ପରିଚୟ ପାଇ, ଯଦିଓ ସବୁ କଥା ସେ ଠିକ୍ ବୁଝି ପାରି ନ ଥିଲା, ମନଟା ତାର ଖୁବ୍ ଅଶାନ୍ତ ଆଉ ଆଲୋଡ଼ିତ ନ ଥିଲା । ତା ସରଳ ମନରେ ସେ ମୁଖ୍ୟମନ୍ତ୍ରୀଙ୍କୁ ପଚାରିବାକୁ ଚାହୁଁଥିଲା ସେ କ'ଣ ମହାସ୍କନ୍ଧର ମୃତ୍ୟୁ ଆଦେଶ ଦେଇଥିଲେ । ସେ ତାଙ୍କୁ ପଚାରିବାକୁ ଚାହୁଁଥିଲା ସେ ଦେଶଟାକୁ କାହିଁକି ନଷ୍ଟ କରି ପକୋଉଥିଲେ ଯେତେବେଳେ କି ସେ ତାଙ୍କ ସୃଜନୀଶକ୍ତି ନେଇ ଦେଶଟାକୁ ଗଢ଼ି ତୋଳି ବୀରଦର୍ପରେ ଚାଲିପାରନ୍ତେ । ସେ ଜଳୁଥିଲା ଶୁଣିବାକୁ ସେ କ'ଣ ଉତ୍ତର ଦେବେ । ସେ କ'ଣ କରିବେ । ଡାଃ ପ୍ରହରାଜ ଠିକ୍ କହିଥିଲେ । ଶବ୍ଦର ନିନାଦ ତୁଚ୍ଛା ହୁଏ ନାହିଁ ।

ସେ ଗେଟ୍‌ରୁ ବାହାରି ପୁରୀ ରୋଡ୍ ଆଡ଼େ ବସ୍ ଧରିବାକୁ ଗଲା ବେଳେ ନା ମାର୍କ୍ସ ଗ୍ୟାଙ୍ଗ ତାକୁ ଦେଖୁଥିବାର ଦେଖିପାରିଲା ରାଜରାଣୀ ମନ୍ଦିରବେଢ଼ାରେ, ନା ଦେଖିପାରିଲା ଭବାନୀ ଆଉ ମଲ୍‌ହୋତ୍ରାଙ୍କୁ ତାଙ୍କ ଆମ୍ବାସାଡର୍ ଟ୍ୟାକ୍ସିର କାଚ ତରବରରେ ଉଠେଇବାର, ପାନଦୋକାନ ପାଖେରେ ।

ସେ ଯାହା ପାରିବ କରିଯିବ ଯେତେପର୍ଯ୍ୟନ୍ତ ତା କଳ୍ପନା ତାକୁ କରେଇ ଦବ ଆଉ ଘରକୁ ଫେରିବାର ସମୟ ଥିବ ।

ସିଂହ ସାରା ରାତି ଅନିଦ୍ରା ଥିଲେ କ୍ଷମତାରେ କିମିତି ରହିବେ ଭାବି ଭାବି । ସେ ତାଙ୍କର ସବୁ ଜ୍ୟୋତିର୍ବିଦ୍‌ଙ୍କ ସାଙ୍ଗେ ମସୁଧା କଲେ । ସେ ଦୂରଦୂରାନ୍ତକୁ ଆଖିବୁଲେଇ ଭାବିଲେ, ସେ ତାରାମାନଙ୍କ ମଝି ଫାଙ୍କରେ ଆକାଶର ଗଭୀର ଅନ୍ଧାରକୁ ଚାହିଁଲେ ରାତିରେ ଆଉ ଗୋଟାଏ ନେଳିଆ କି ସବୁଜା ଢେଉ ପାଇଁ କିମ୍ବା ଶନି ବଳୟରେ

ଆଉ ଗୋଟାଏ ଉଦ୍‌ବାର୍ଯ୍ୟ ବିସ୍ଫୋରଣ ପାଇଁ, ଉପୁରୁ କିଛି ସାହାଯ୍ୟ ବା ଆସ୍ଥା ପାଇବା ପାଇଁ । ସେ ନିଜ ପୂର୍ବପୁରୁଷଙ୍କ ପ୍ରେତାତ୍ମାଙ୍କ ସାଙ୍ଗରେ ବି କଥାବାର୍ତ୍ତା ହେଉଥିଲେ ଭୋରର ମୁହଁ ଅନ୍ଧାରରେ । ସେ ବର୍ତ୍ତମାନ ତାଙ୍କ ହାଡ଼େ ହାଡ଼େ ଜାଣିସାରିଥିଲେ ଯେ ତାଙ୍କ ସମସ୍ୟାର ଗୋଟିଏ ମାତ୍ର ସମାଧାନ ।

ବିଜୟ ବଲ୍ଲଭ ପଟ୍ଟନାଏକଙ୍କ ହତ୍ୟା କରାଇବାକୁ ହବ ।

ଯୋଉ ମୁହୂର୍ତ୍ତରେ ସେ ଏକଥା ଭାବିଦେଲେ, ସେ ଠିକ୍ ବୁଝିପାରିଥିଲେ ଯେ ପଟ୍ଟନାଏକ ବି ସେଇକଥା ଭାବିଥିବ । ଏ ଭାବନା ସବୁ ହଳ ହଳ ହେଇ ଆସନ୍ତି । ବର୍ତ୍ତମାନ ସବୁକଥା ନିର୍ଭର କରୁଚି କିଏ କେତେ ଶୀଘ୍ର ଯା କରିପାରିବ, ଆଉ ଏକଥା ପରିସ୍ଥିତିର ସୁଅ ଓପରେ ନିର୍ଭର କରୁଚି । ଯିଏ ଆଗ ମରିଗଲା ସେ ହାରିଗଲା । ବର୍ତ୍ତମାନ ପାଇଁ ଖେଳ ସରିଯିବ । ଆଉ ଜଣେ କିଏ ଆଉଥରେ ଆରମ୍ଭ କଲା ପର୍ଯ୍ୟନ୍ତ ।

ଏଇଟା କଠିନ ସମୟ ଆଉ ଏଥିପାଇଁ ଦରକାର କଠୋର କାମ ଆଉ କର୍କଶ ହୃଦୟର ଲୋକ ।

ସେ ଗ୍ରେୱାଲ୍‌ଙ୍କୁ ରାତାରାତି ବଦଳି କରିଦେଲେ, ଆଉ ଆଣିଲେ ଜଣେ ଆଇ.ଏ.ଏସ୍. ବାଲାକୁ ଯାହାର ଚରିତ୍ରଟା କଳାମବ୍‌ମବ୍ ଫୋଟକା ଫୁଟା ଲୁହାର । ସେ ଯାହା କରିବାକୁ ଯାଉଥିଲେ ଗ୍ରେୱାଲ୍‌ଙ୍କ ଉପସ୍ଥିତିରେ କରିପାରି ନ ଥାନ୍ତେ । ସେ ବି ହୁଏତ ତା କରେଇ ଦେଇ ନ ଥାନ୍ତେ । ସେ ଆହତ ହେବେ । ହେଲେ ବି । କିନ୍ତୁ ପଦଟିଏ ବି କହିଲେନି ।

''ମୁଁ ତୁମକୁ ଗଭର୍ଣ୍ଣର କି ଆମ୍ବାସାଡର କରିଦେବି, ତମେ ରିଟାୟାର୍ କଲା ମାତ୍ରେ ।''

ସେ ଛାଇ ପରି ବାହାରି ଚାଲିଗଲେ । ସିଂହ ତାଙ୍କୁ ଆଉ ତିଳେ ବି ସମୟ ଦେଲେନି ତାଙ୍କ ଭାବନାରେ ।

''ଇବ୍ରାହିମ୍‌କୁ ଲଗାଅ । ଆଉ ନିଜେ ଚୋରେଇ ଶୁଣନି । ମୋ ସ୍ପେଶାଲ୍ ଫୋନ୍‌ରେ ଲଗାଅ, ଯୋଉଠି ବି ଥାଉ । ବର୍ତ୍ତମାନ ଲଗାଅ ।''

ପଶ୍ଚିମପଟର ସ୍ମଗଲିଂ ଧନ୍ଦା ତା'ର, କାଶ୍ମୀରରୁ କେପ୍ କମରିନ୍ ପର୍ଯ୍ୟନ୍ତ । ସେ ଅଞ୍ଚଳର ପରିଚାଳିତ ଅପରାଧ ସବୁ ତା ଅକ୍ତିଆରରେ ପଞ୍ଜାବ ଆଉ କାଶ୍ମୀରରେ କେତେକ ଆତଙ୍କବାଦି ଦଳ ତା ଅଧୀନରେ । ବମ୍ବେର ଫିଲ୍ମ ଧନ୍ଦା ତା ଟଙ୍କାରେ । ତା ନା' ଫୌଲାଦ୍ ଇବ୍ରାହିମ୍ । ସିଂହଙ୍କର ବିଶ୍ୱାସ ଥିଲା ଇବ୍ରାହିମ୍ ପଟ୍ଟନାଏକ୍‌କୁ ଚବିଶଘଣ୍ଟା ଭିତରେ ଉଡ଼େଇଦବ । ଅବଶ୍ୟ ପୂର୍ବଟା ତା'ର ଇଲାକା ନୁହେଁ, ମହାସ୍କନ୍ଧର, କିନ୍ତୁ କଲିକତାରେ ତା' ଲୋକ ଥା'ନ୍ତି । ନ ହେଲେ ଅବା ଅଠଚାଳିଶ ଘଣ୍ଟା । ଫୌଲାଦ୍ ଇବ୍ରାହିମ୍ କିଛି ପ୍ରଶ୍ନ ପଚାରି ନ ଥିଲା । ସେ ଦର କଥା ବି କରି ନ ଥିଲା । ସେ କହିଥିଲା ''ଠିକ୍ ଅଛି ।''

ବିଜୟବଲ୍ଲଭ ପଟ୍ଟନାଏକ୍ ତାଙ୍କ ଫାଇଲ୍‌ରୁ ଚମକି ଉଠିଲେ ସଜାଗ ହେଇ ତାଙ୍କ ସେକ୍ରେଟେରିଏଟ୍ କୋଠରି ଭିତେରେ, ଆଉ ଚାହିଁଲେ ଘେରିଥିବା ଗୁଡ଼ାଏ ନିଉଛୁଣା ମୁହଁକୁ, ଯୋଉଗୁଡ଼ାକ କ'ଣଗୁଡ଼ାଏ ବକର ବକର ହଉଥିଲେ । ସେ ଠିକ୍ ଜାଣି ପାରିଲେ ଯେ ମୁହାଁମୁହିଁ ହବାର ସମୟ ଆସିଗଲା । ଆଉ ସେ ସାଙ୍ଗେ ସାଙ୍ଗେ ବୁଝିପାରିଲେ ଯେ ଏଇଟା ଦ୍ୱିତୀୟ ମହାଭାରତ ଯୁଦ୍ଧ । ପ୍ରଧାନମନ୍ତ୍ରୀ ସିଂହ ଇବ୍ରାହିମ୍‌ର ରକ୍ଷା କବଚ ପିନ୍ଧିଥିଲେ, ତାକୁ ହିଁ ସେ ବ୍ୟବହାର କରିବେ । ପଟ୍ଟନାଏକ୍ ସେ ଦୁର୍ଯ୍ୟୋଧନକୁ କାବୁ କଲାପରି ବ୍ୟବହାର କରିପାରିବେ ତାଙ୍କର ଭୀମ ମହାସ୍କନ୍ଧକୁ, କଲିକତାରୁ ରାମେଶ୍ୱରମ୍ ପର୍ଯ୍ୟନ୍ତ ପୂର୍ବ ଉପକୂଳଟା ଯାହାର ରାଜ୍ୟ ଆଉ ଯିଏ ପଶ୍ଚିମ ଉପକୂଳକୁ ଅକ୍ତିଆର କରିବାକୁ ଆପ୍ରାଣ ଚେଷ୍ଟା କରୁଥିଲା । ଚଡ଼କ ପଡ଼ିଲା ତାଙ୍କ ମୁଣ୍ଡରେ ଭାବିଲାବେଳକୁ ଯେ ସେ ମହାସ୍କନ୍ଧକୁ ମାରିଦବାକୁ ଚେଷ୍ଟା କରୁଥିଲେ । ଈଶ୍ୱରଙ୍କ ଦୟାରେ ସେ ବଞ୍ଚିଗଲା, ଆଉ ତାଙ୍କ ନିଜ ଦୂରଦୃଷ୍ଟିରୁ ସେ କାଲି ରାତିରେ ତାକୁ ଛାଡ଼ି ଦେଲେ ।

''ମୁଁ ସେ ନାୟକ୍‌ଠୁଁ ଡବଲ ଦେବି ସାର୍ । ଦି'କୋଟି ଦେବି, ମତେ ସୋନପୁର ଡ୍ୟାମ୍‌ର ଚିଫ୍ ଇଞ୍ଜିନିଅର କରିଦିଅନ୍ତୁ ।'' ଯେ ଥିଲେ ଇଞ୍ଜିନିୟର ରାଏ, ହାତରେ ଫାଇଲ୍ ଧରି ନେହୁରା ହଉଥିଲେ ।

ଖାଲି ସେ ଦୟାକରି ଘରେ ଥାଉ ।

''ହେଇଟି ଫାଇଲ୍, ସାର୍, ଦୟାକରି ଦସ୍ତଖତ, ସାର୍, ଚିଫ୍‌ଇଞ୍ଜିନିଅର୍, ସାର୍ ।''

''ଏଠୁ ବାହାର । ବାହାର ବାହାର ବାହାର ବାହାର !''

ଏଇଟା ହବ ଏ ଶତାବ୍ଦୀର ଯୁଦ୍ଧ ।

ସେ ଡି.ଜି.ଙ୍କୁ ଡାକିଲେ । ''ମୋ ପ୍ରତିରକ୍ଷା ତିନିଗୁଣା କରିଦିଅ । ବର୍ତ୍ତମାନଠୁ ।''

ସେ ତାଙ୍କ ସେକ୍ରେଟାରୀକୁ ଡାକିଲେ । ''ଅଠଚାଳିଶ ଘଣ୍ଟା ପାଇଁ ମୋର ସବୁ କାମ ବାତିଲ୍ କରିଦିଅ ।''

ସେ ମହାସ୍କନ୍ଧକୁ ଡାକିଲେ ଓ ଫୋନ୍ ରଖିଦେଇ ପାଞ୍ଚମିନିଟ୍ ପରେ ଆଉ ଥରେ ଡାକିଲେ । ମହାସ୍କନ୍ଧ ନିଃଶବ୍ଦ ହେଇ ଶୁଣିଲେ, ତା' ପରେ ସ୍ଥିର ଭାବରେ କହିଲେ :

''ମୋ ପ୍ଲେନ୍‌ରେ ଅଧଘଣ୍ଟେ ଭିତରେ ତେଲ ପକେଇଦବାକୁ ଏଆରପୋର୍ଟକୁ ନିର୍ଦ୍ଦେଶ ଦିଅନ୍ତୁ ।''

''ତମେ ଜାଣିଚ ସେ କୋଉଠି ଅଛି ?''

''ସେ ବର୍ତ୍ତମାନ ଗୋଟାଏ ଚାଟର୍ଡ ୭୦୭ରେ କିଛି ଲୋକଙ୍କୁ ନେଇ କଲିକତା ପାଇଁ ବାହାରିଚି । ସେଠୁଁ ଓଡ଼ିଶାକୁ ଜାଣିଥିବା କିଛି ଲୋକଙ୍କୁ ନେଇ ଏଠିକି ଆସିବ ।''

"ଆହା, ତା ହେଲେ..."

କିନ୍ତୁ ମହାସ୍କନ୍ଧ ଫୋନ୍ ରଖିଦେଇଥିଲେ । ସେ ତାଙ୍କ ଲୋକମାନଙ୍କୁ ଆଦେଶ ଦେଇଦେଲେ, ତଳେ ମାଗୀକୁ ନଜରରେ ରଖ । ମାଗୀ ଭୂଇଁ ଓପରେ ସମସ୍ତଙ୍କ ଦୃଷ୍ଟିରେ ପକେଇ ଦେଲା ତାଙ୍କୁ ଦେଖେଇଥିବା ପର୍ସଟା, ଆଉ ଅଳ୍ପକ୍ଷଣ ଆକାଶରେ ସୂର୍ଯ୍ୟଙ୍କୁ ଚାହିଁ ଗେଟ୍ ଦେଇ ବାହାରିଗଲା ।

କ'ଣ ?

ବ୍ଲିପ୍-ବ୍ଲିପ୍-ବ୍ଲିପ୍-ବ୍ଲିପ୍-ବ୍ଲିପ୍-ବ୍ଲିପ୍-ବ୍ଲିପ୍ ବ୍ଲିପ୍ ।

କର୍କଟ ଆସିଗଲାଣି ।

ତାଙ୍କ ଅଶ୍ଳୀଳ ସ୍ୱପ୍ନ କବଚରୁ, ଯାହା ତାରକାନ୍ତର ଯାତ୍ରାରେ ଅନୁମୋଦିତ, ବାବା ବୁଗି ଉଠିଲେ, ଯୋଉଥିରେ ସବୁ ଐଶ୍ୱରିକ ଆସେମ୍ବ୍ଲି ଲାଇନ୍‌ର କାମଦାମ ଧୀର ଗତିରେ ପ୍ରାଞ୍ଜଳ ଭାବରେ ଦିଶୁଥିଲା, ଯୋଉଠି ସବୁ ଚିପ୍, ମାଇକ୍ରୋଚିପ୍ ସର୍କିଟରେ ଭିଡ଼ା ହୋଉଥିଲେ ଆନନ୍ଦଦାୟକ କୁଁ କାଁ ଶବ୍ଦ କରି, ବିଭିନ୍ନ ପ୍ରକାର ମୋଟେଇ ଓ ବଙ୍କେଇର ସ୍କ୍ରୁଡାଇଭରର ଚିପାଚିପି ବୁଲାବୁଲି ଖେଳ ଦେଇ, ଓ୍ୱେଲଡିଂ ଗନ୍‌ର କେଞ୍ଚା ଓ ସୋଲଡରିଂ ଆଇରନ୍‌ର ତରଳ ସୋଲ୍‌ଡର୍ ଗରମ ଉଦ୍‌ଗିରଣ ଦେଇ ।

ବାବା ବୁଗି ତାକୁ ବନ୍ଦ କରି ଚାରିଦିଗକୁ ଚାହିଁଲେ ।

ତା'ହେଲେ ଏଇଟା ହେଲା କର୍କଟର ସମୟ । ଦ୍ୱିପାଦର ଅତି ମହାଶୂନ୍ୟ ଚାଲିଗଲାଣି । ବାସୁକିର ଗାତ ଭାବନାର କୌଳବ ଶକ୍ତି ବିସ୍ଫୋଟନରେ ପାର ହେଇଗଲାଣି । ଚିତ୍ରା, ଶ୍ରବଣା, ମୃଗଶିରା, ଅଶ୍ଳେଷା, ଏପ୍‌ସିଲନ୍, ରୁଚବାଃ-। କ୍ୟାସିଓପିଆର ଗାମାବଳୟ ବି ପାର ହେଇଗଲାଣି ।

ଅଗ୍ନି କୋଣ ଶାନ୍ତ କରି ଦିଆଗଲାଣି ।

ମ୍ୟାଗ୍‌ନିଫିକେସନ୍ ବନ୍ଧା ହେଇଥିଲା ୧୫୩୪୬୦୦ ।

କ୍ୟାସିଓପିଆ ଆରପଟେ ବିସ୍ତୃତ ଆଣ୍ଡ୍ରୋମିଡ଼ା, ପର୍‌ସିଅସ୍, ଔରିଗା, ବୃଷ, ମିଥୁନ, ମନୋସେରୋସ୍, କ୍ୟାନିସ୍ ମାଇନର୍, କ୍ୟାନିସ୍ ମେଜର୍, ଜାଆଁଳା ଆମ୍ବ ଗହ୍ୱର ପାର ହେଇ ଆର୍ଗୋମହାଫାଟ ଭିତରକୁ ।

ଏଇଟାକୁ ସେ ଦେଖିବେ, ତାରା ପ୍ରବାହର ନିର୍ବାପନ, ବନ୍ଧନ, ଆର୍ଗୋର ମହା ଫାଟ ।

ଖୁଁ ଖୁଁ, କ୍ଳୁକ୍ କ୍ଳୁକ୍, କାଶିଲେ ପାରା-ସାଇବର୍ଗ ୩୨୧ ।

ଆଚ୍ଛା ବାବା, କହିଲେ ବାବା ବୁଗି । ମୁଁ ଉଠିପଡ଼ିଲିଣି ଏଥର ।

ନାହିଁ । ତମ ସର୍କିଟ୍‌ରେ ମ୍ୟାଗ୍ନନ୍ ପ୍ରବାହ ପୂର୍ଣ୍ଣ ଶକ୍ତିରେ ହେଇ ନାହିଁ ଏ ପର୍ଯ୍ୟନ୍ତ । ତମେ ପଛକୁ ଦେଖୁଚ, ଆଗକୁ ନୁହଁ ।

ହଉ, ହେଲା ୩୨୧ । ଏତେ ଶୀଘ୍ର ଆଉ ବକ୍ତୃତା ଆରମ୍ଭ କରନି । ମତେ ଗୋଟାଏ କଫି ସକ୍ ଦିଅ ।

ଗୋଟାଏ କଫି ସକ୍ ଆସିଗଲା ।

ୱା ୱା ୱା ୱା ।

ଏମ୍.ଏଫ୍. ବର୍ତ୍ତମାନ ପୂରାଶକ୍ତିରେ ।

ୱା ୱା... ୱା ୱା ୱା ।

ମଣିଷ ଛୁଆ ପରି ବ୍ୟବହାର କର ନାହିଁ ।

ହଉ ହଉ । ମତେ ଆଉ ହଇରାଣ କରନି । ପରୀକ୍ଷା ପ୍ରାନ୍ତରକୁ ଦେଖିବା ଏଥର । ସେ ମଞ୍ଜି ବଲ୍‌ଟା କୁଆଡ଼େ ଗଲା ? ମତେ ଏଥର ବାର୍ତ୍ତାଟା ପଠେଇବାକୁ ହବ ଘରା ? ସମୟ ହେଇଗଲା, ନାହିଁ ? ତାଙ୍କ ଭାଷାରେ, ମତେ ଟିକେ ଛାନିଆ ଲାଗୁଚି । ଏଇଟାଇ ସୌରମଣ୍ଡଳ ତ ?

ମାଗୀର ଅନ୍ତର୍ଦର୍ଶନ ହେଇ ଉଠୁଥିଲା ପ୍ରଖର ଯିମିତି ସେ ଏକଶିଙ୍ଗା ହେଇ ମାଡ଼ିଚାଲିଲା ମୁଖ୍ୟମନ୍ତ୍ରୀଙ୍କ ଘର ଆଡ଼େ । ସେ ବସ୍‌ଟିଏ ଧରି ପୁରୀ ରୋଡ଼ରୁ ଏକ ନମ୍ବର ମାର୍କେଟ ପର୍ଯ୍ୟନ୍ତ ଚାଲିଆସିଲା ।

ସେ ଦେଖିଲା ଲୋକଙ୍କ ମୁହଁରେ ସେମାନେ ତରବର ହେଇ ରାସ୍ତାରେ ଚାଲିଯାଉଥିଲା ବେଳେ ଆଶଙ୍କା ଆଉ ଡର ।

ଏକ ନମ୍ବର ମାର୍କେଟ୍ ପାଖରେ ସେ ଗୋଟିଏ ସ୍ତ୍ରୀକୁ ଦେଖିଲା ଯାହାର ମୁହଁ ତା ଦୃଷ୍ଟିକି ଭିଡ଼ି ଧରିଲା । ସ୍ତ୍ରୀଟି ଫୁଟ୍‌ପାଥ୍‌ରେ ଚାଲିଯାଉଥିଲା, ମୁଣ୍ଡରେ ଟୋକେଇଟିଏ ବୋହି । ସ୍ତ୍ରୀଟିର ଚରିତ୍ର ଥିଲା, ଭାବିଲା ମାଗୀ । ସେ ନିଶ୍ଚୟ ନିଜ ଇଚ୍ଛାରେଇ ଚଳୁଥିଲା, ଆଉ କାହାରି ଅଲକ୍ଷଣା କଥାକୁ ଭ୍ରୂକ୍ଷେପ କରୁ ନ ଥିଲା ।

ସେ ସ୍ତ୍ରୀଟି ଥିଲା ରୁଷାମ୍ମା, ଯିଏ. କି ପ୍ରଥମ ପରିଚ୍ଛେଦରେ କିଷ୍କିନ୍ଦା ମିଶ୍ରଙ୍କୁ ତାକୁ ଆଖେଇବାକୁ ସୁଯୋଗ ଦେଇଥିଲା ।

ଆଜି ସେ ତାଙ୍କୁ ତାକୁ ପଟେଇ ଘରୁକୁ ଡାକିବାକୁ ସୁଯୋଗ ଦେଇଥିଲା, ଯେତେବେଳେ କି ତାଙ୍କ ସ୍ତ୍ରୀ ଆକାଶରେ ଏସବୁ ଅଘଟଣ ଦେଖି ଏ ଭ୍ରଷ୍ଟ ସହର ଭୁବନେଶ୍ୱର ଛାଡ଼ି ପିଲାଙ୍କୁ ଧରି ମୟୂରଭଞ୍ଜର ଶିମିଳିପାଳ ପର୍ବତମାଳାରେ ତାଙ୍କ ଛୋଟିଆ ଗାଁକୁ ପଳେଇଥିଲେ, ଅନ୍ୟ ଅନେକଙ୍କ ପରି ।

ରୁଷାମ୍ମା ଗରଗର ହଉଥିଲା, କିନ୍ତୁ କଥା ଦେଇଥିଲା ବୋଲି ସେ ପ୍ରଫେସର କିଷ୍କିନ୍ଦା ମିଶ୍ରଙ୍କ ଘରକୁ ଗଲା । ସବୁଥର ପରି ସେ ଥରଥର କନକନ ଅବସ୍ଥାରେ ତାକୁ ଅପେକ୍ଷା କରୁଥିଲେ, ଆଉ ନିଶକୁ ପାଟି ଭିତରକୁ ଟାଣି ଆଣି ଚୁଚୁମୁଥିଲେ । ସେ ତାଙ୍କ କୋଡ଼ରେ ଧରିଥିବା ବିଡ଼ାଏ କାଗଜ ରୁଷାମ୍ମାକୁ ଦେଖେଇଲେ ।

''ରୁଷାମ୍ମା,'' ସେ ଡାକିଲେ ।

ରୁଷୀମ୍ମା ଗଲା ଓ ତାଙ୍କ କଡ଼ରେ ଖଟରେ ବସିପଡ଼ିଲା ।

''ରୁଷାମ୍ମା,'' ସେ ପୁଣି ଡାକିଲେ ।

ରୁଷାମ୍ମା ତା' ହାତକୁ ତାଙ୍କ ଜଙ୍ଘରେ ଥୋଇଲା ଓ କାଗଜତକ ଧୀରେ ଧୀରେ ଆଙ୍ଗୁଠିରେ ସଲ ସଲ କଲା ।

''ରୁଷାମ୍ମା,'' ସେ ତୃତୀୟ ଥର ପାଇଁ କାଗଜବିଡ଼ାଟିକୁ ହାତରେ ଧରି ହଲଉ ହଲଉ ଡାକିଲେ । ''ତୁ ଜାଣୁ ଏ କାଗଜରେ କ'ଣ ଅଛି ?''

ରୁଷାମ୍ମା ଚାହିଁଲା ଓ ଡଟ୍‌ପେନ୍‌ରେ ସେଥିରେ କ'ଣ ସବୁ ଗାରିଆ ହେଇଥିବାର ଦେଖିଲା ।

''ଏଗୁଡ଼ା କବିତା, କବିତା ତୁ ଜାଣୁ ?''

''ନା ମୁଁ ତାଙ୍କୁ ଜାଣିନି, କିଏ ସିଏ ? ତମ ତିର୍ଲା ?''

''କବିତା, କବିତା ତୁ ଜାଣୁନା ? ଆମ ଜୀବନ ହିଁ କବିତା, ତୁ କବିତା ମୁଁ କବିତା, ଯାହା ତତେ ଏଠାକୁ ଟାଣିଆଣିଚି ତା' କବିତା, ଏ ଖଟିଆରେ ଯାହା ଘଟିବ ତା' କବିତା ।''

ରୁଷାମ୍ମାକୁ ସେ ଶାଗ ପରି ଲାଗିଲେ ।

''ଥରେ ମୁଁ ଗୋଟିଏ କବିତା ଲେଖିଥିଲି । ଜାଣୁ କ'ଣ ହେଲା ?''

''କ'ଣ ହେଲା ?''

''ସେଇଦିନଠୁ ସମସ୍ତେ ମତେ କିଷ୍କିନ୍ଦା ମିଶ୍ର ଡାକିଲେ, ମୁଁ ପ୍ରସିଦ୍ଧ ହେଇଗଲି । ମୁଁ ତତେ ସେ କବିତା ପଢ଼ି ଶୁଣେଇବି । ଶୁଣୁ ।

''ମୁଁ ଯେବେ ଘର ଛାଡ଼ିଲି ।

ବୋଉ ପଚାରିଲା, କୁଆଡ଼େ ଯାଉଚୁ ?

ମୁଁ କହିଲି, କିଷ୍କିନ୍ଦା ।

ଯେତେବେଳେ ରିକ୍ସାରେ ଚଢ଼ିଲି, ରିକ୍ସାବାଲା ପଚାରିଲା, କୁଆଡ଼େ ବାବୁ ?

ମୁଁ କହିଲି, କିଷ୍କିନ୍ଦା ।

ଟିକଟ ଝରକାରେ
କିରାନି ପଚାରିଲା, କୁଆଡ଼େ ?
ମୁଁ କହିଲି, କିସ୍କିନ୍ଧା କିସ୍କିନ୍ଧା ।
ସେ କହିଲା, ଇମିତି ତ ଷ୍ଟେସନ ନାହିଁ ।
ମୁଁ କହିଲି, କିସ୍କିନ୍ଧା କିସ୍କିନ୍ଧା ।
ସବୁ ପୁଅମାନେ କିସ୍କିନ୍ଧା ଯା'ନ୍ତି
ସବୁ ରିକ୍ସା ସବୁ ରେଳଗାଡ଼ି ସବୁ ବସ୍ ଯା'ନ୍ତି କିସ୍କିନ୍ଧା ।
ମୁଁ ବି ଯିବି ଆଜି କିସ୍କିନ୍ଧା କିସ୍କିନ୍ଧା ।

''ସେଇ ଦିନଠୁଁ ପ୍ରସିଦ୍ଧ ହୋଇଗଲି । ସମସ୍ତେ ମତେ କିସ୍କିନ୍ଧା ମିଶ୍ର ଡାକିଲେ । କବିର ଜୀବନ ଭାରି କଷ୍ଟ । ମତେ ପୁରସ୍କାର ପାଇବା ପାଇଁ ରାଜ୍ୟ ସାହିତ୍ୟ ଏକାଡେମୀ ଟାଉଟରଙ୍କୁ ଭିକ ମାଗିବାକୁ ପଡ଼ିଲା । ଏବେ ମୁଁ ପୁଣି ସେମାନଙ୍କ ଜୋତା ସଫା କରୁଚି ଆଉ କେନ୍ଦ୍ରର ପୁରସ୍କାରଟା ପାଇବା ପାଇଁ ରାଜନୀତି କରୁଚି । କହତ କବିମାନଙ୍କର କ'ଣ ଏମିତି କରିବା ଉଚିତ ? ମୁଁ କିସ୍କିନ୍ଧା ଯିବାଲୋକ, ମତେ ଦେଖ୍ ।''

ରୁଷାମ୍ମା ତାଙ୍କୁ ଚାହିଁଲା । ଦେଖିବାକୁ ମନ୍ଦ ନ ଥିଲେ, ପିମ୍ପାପରି ମୁଦ୍ଗରିଆ ଗଢ଼ଣ, ଯଦିଓ ସେ କାହିଁକି ତାଙ୍କ ନିଶ ଚୁଚୁମୁଥିଲେ ସେ ଠଉରେଇ ପାରୁ ନ ଥିଲା । ସେ ତାଙ୍କୁ ଚିପି ଦେଲା ।

''ଆଉ ଏବେ ସେମାନେ ମତେ ବଦଳି କରି ଦେବାକୁ ଲାଗିଚନ୍ତି । ତୁ ଜାଣୁ ସେମାନେ କ'ଣ ମାଗୁଚନ୍ତି ? ଲାଞ୍ଚ । ଦଶ ପନ୍ଦର ହଜାର । ଏତେ ଟଙ୍କା ମୁଁ କୋଉଠୁ ଆଣିବି ? ମୁଁ ତ ଗରିବ ଶିକ୍ଷକ, ସାଦାସିଧା କବି । ଅବଶ୍ୟ ପରୀକ୍ଷା ବେଳ ଆସିଲାଣି ଆଉ ଲୋକେ ନମ୍ବର ପାଇଁ ଆସୁଚନ୍ତି, ଆଉ ମୁଁ ଠିକ୍ କରିଚି ଗତବର୍ଷ ପଚାଶ ଟଙ୍କା ବଦଳରେ ମୁଁ ଏବର୍ଷ ନମ୍ବର ବଢ଼େଇବା ପାଇଁ ଶହେ ନେବି । କାହାକୁ କହିବୁ ନାଇଁ ।''

''ହଉ ହଉ ବେସ୍ତ ହ'ନା, ପେଣ୍ଟ୍ କାଢ଼ ।''

''ସେ ସେକ୍ରେଟାରୀ ଯାହାକୁ ମୁଁ ଗୋଟାଏ ସ୍ପେଶାଲ ଉତ୍ସବ କରି ଡାକି ଆଣିଥିଲି ଆଉ ସେଥିରେ ତାକୁ କାହିଁରେ କ'ଣ ଟେକିଲି, କହୁଚି କ'ଣନା ଦେଇଥିଲେ ପାଇ । ଆଉ ମୁଁ ସେ ମନ୍ତ୍ରୀକୁ ଏପର୍ଯ୍ୟନ୍ତ ପଚାଶ କେଜି ଖଣ୍ଡେ ମିଠା ଦେଇସାରିବିଣି । ସେ କହିଚାଲିଚି ଦେଖିବା ଦେଖିବା, ନିର୍ବାଚନଟା ଆଗରେ ଅଛି ଟାଇଟ୍ ଅବସ୍ଥା, ପାର୍ଟିକୁ ସାହାଯ୍ୟ କର । ଆରେ ବାବୁ, ମୁଁ କ'ଣ ପାର୍ଟିକୁ ସାହାଯ୍ୟ କରିବା ପାଇଁ ଠିକା ନେଇଚି ?''

''ତମେ ଇଲାଷ୍ଟିକ୍‌ବାଲା ପିନ୍ଧୁନା କାହିଁକି ? ଏ ଦଉଡ଼ି ଗଣ୍ଠି ପଡ଼ିଗଲା । ରୁହ, ମୁଁ ଛିଣ୍ଡେଇ ଦେବି ଉଁ ! ଯା' ଛିଣ୍ଡିଗଲା । ଶୋଇପଡ଼ ଏବେ ।''

''ଆଉ ମୋ ସ୍ତ୍ରୀ । କାହିଁକି ତାକୁ ବାହାହେଲି ଈଶ୍ୱରଙ୍କୁ ଜଣା । ସବୁବେଳେ ତା' ମୁହଁଟାକୁ କର୍କ-ସ୍କ୍ର ଭଳିଆ ବୁଲେଇ ଦଉଚି ଯେମିତି ମୁଁ ଭାରି ଦୁର୍ଗନ୍ଧ । ଆଉ ଛୁଆଗୁଡ଼ା ତା'ରି ଭଳିଆ ହେଇଯାଉଚନ୍ତି । ଏଣେ ପ୍ରିନ୍‌ସିପାଲ୍ ଫଁ ଫଁ ହଉଚି ତମେ କଲେଜ ଆସୁନ, ତେଣେ ହେଡ୍ ଗଁ ଗଁ ହଉଚି ତମେ କ୍ଲାସ୍ ନଉନ । ହେଲେ ମୋର ଗୋଟାଏ ସାନ୍ତ୍ୱନା ମୁଁ ଚାଲି ଯାଉଥିଲାବେଳେ ମୋ ଛାତ୍ରମାନେ କିସ୍କିନ୍ଦା କିସ୍କିନ୍ଦା ହୁରି ଛାଡୁଚନ୍ତି ।''

''ଏଇଟା କିସ ?'' ରୁଷାଣ୍ଣା ଛାନିଆରେ କହିଲା । ''ମୁଁ ଛଚିନ୍ଦ୍ରା ଦେଖିଚି ବାବୁ, କାକୁଡ଼ି, ପୋଟଳ, ବେଳ ବେଳେ କଲରା, ହେଲେ ଏ କିସ୍କିନ୍ଦା କିସ ? ମୁଁ ଗରିବ ମାଇପିଲା ବାବୁ । କଷ୍ଟ କାମ କରି ପେଟ ପୋଷିବା ଲୁକ । ସକାଳ ଚାରିଟାରୁ ଉଠେ । ପିଜୁଳି ଦାନ୍ତକାଠି ଖଣ୍ଡେ ପାଟିରେ ଗେଞ୍ଜି ପ୍ଲାଷ୍ଟିକ୍ ଡାଳରେ ପାଣିଧରି ପଡ଼ିଆକୁ ଯାଏ । ସରକାର ଆମକୁ ଖଣ୍ଡଗିରି ସେପଟରେ କେତେ ଧୂରକୁ ଠେଲିଦେଇଚି ଯେ ଏବେ ଆମକୁ ସବୁଦିନ ଏତେବାଟ ଆସିବାକୁ ପଡୁଚି । ରାତିରେ କିଏ ରଖିନେଲେ, ସେଇଟା ନିଆରା କଥା । ଗୋଟେ ଭଲ ଜିନିଷ ସେଠି ହେଲା ଝାଡ଼ା ଯିବାକୁ ଭଉତୁ ଜାଗା । ଟାଉନ ଯୋଠି ଥିଲୁ ଆମଘର ପଛପଟର ସେ ଛୁଟ ଜାଗା ଏତେ ଫୁଲୁ ହେଇଥାଏ ଯେ ପାଦ ରଖିବାକୁ ଜାଗା ନ ଥିବ । ଗାଧେଇ, ଲୁଣ ଲଙ୍କା ଲଗେଇ ପଖାଳ ଖାଇ, ସୂର୍ଯ୍ୟ ଉଇଁଲା ବେଳକୁ ମୁଁ ପୂରା ରେଡ଼ି । ଗଲାକାଲିର ବାକିଆ ପରିବା ଝୁଡ଼ି ଆଉ ବଡ଼ ବସ୍ତା, ଯୋଉଟା ବଜାରରେ ବିଛେଇ ପରିବା ବିକେ, ଧରି ଫାଷ୍ଟ ବସ୍‌ରେ ଟାଉନ୍‌କୁ ଆସେ, ବସ୍‌ଷ୍ଟାଣ୍ଡରୁ ଏକ ନମ୍ବର ମାର୍କେଟ୍‌କୁ ମୁଣ୍ଡରେ ଝୁଡ଼ି ବୋହି ଯାଏ, ମାର୍କେଟ୍‌ରେ ଚାଲେ ହୋଲ୍‌ସେଲର୍ ପାଖକୁ ପରିବା ଆଣିବାକୁ ଆଉ ପଚାଶ କିଲ ବୋଝ ମୁଣ୍ଡେଇ ମୁଁ ମୋ ଜାଗାରେ ପହଞ୍ଚ, ଅଖା ପାରି ସବୁପ୍ରକାର ପରିବାକୁ ଅଲଗା ଅଲଗା କରି ରଖିଲା ବେଳକୁ ଟୁନାର ଦୋକାନ ଖୋଲିଯାଇଥାଏ । ତାଠୁ ମୁଁ ମୋ ବାଲ୍‌ତି ନେଇ ପାଣିଆଣେ ଆଉ ପରିବା ଉପୁରେ ଛିଞ୍ଚିଦିଏ ସେଯାକକୁ ତାଜା ଆଉ ଚିକ୍ ଚିକ୍ କରିବାକୁ । ତା' ପରେ ଟୁନାଠୁ ମୁଁ ମୋ ଠେଙ୍ଗାଟାଏ ନିଏ ଆଉ ଗାଈକୁ ଘଉଡ଼େଇବା ପାଇଁ ମୋ କଡ଼ରେ ରଖେ । ତା'ପରେ କଣ୍ଟାଟା ଧୋଇ ଟେକି ଦେଖିନିଏ । ତା'ପରେ ଧୂପକାଠି ଜଳେଇ ପ୍ରଣାମ କରେ । ତାପରେ ମୁଁ ସାରାଦିନ ବେପାର କରେ । ଖାଏ ସେଇଠି, ଚା' ପିଏ ସେଇଠି ଆଉ ସବୁକଥା ବାବୁ ସେଇଠି, ରାତି ଆଠଘଣ୍ଟ କି ନଅଘଣ୍ଟ ଯାଏ । ଯେତେବେଳେ ଅଣ୍ଟାପିଠି ବଥାକରେ ମୁଁ ମୋ ଜିନିଷ ବନ୍ଧାବନ୍ଧି କରି ଲାଷ୍ଟ୍ ବସ୍‌ରେ କଲୋନୀକୁ ଯାଏ । କେବେ କେମିତି ମତେ ନିଃଶ୍ୱାସ ନବାକୁ ଟିକେ ବେଳ ମିଳେ, ରକ୍କା କାଢ଼ିବାକୁ କି ଦିହରୁ ପରାଣ କାଢ଼ିବାକୁ, ଦିନସାରା ରଡ଼ିରଡ଼ି ପଡ଼ିଯାଇଥିବା ତଣ୍ଟିରେ ଟିକେ ମହୁଦବାକୁ ମୁଁ କାମଛାଡ଼ି

ବାହାରେ । ଆଜି ତମେ ଏତେ ବେସ୍ତ ହେଲ ବୋଲି ମୁଁ ଭୋକିଲା ଶୋଷିଲା ହେଇ ତମ ପାଖକୁ ଆସିଲି ହେଲେ ମିଳିଲା କିସ ? କିସ୍କିନ୍ଦା ! ଠିକ୍ ଅଛି, ବୁଲିପଡ଼ ।''

''ହେ ଭଗବାନ୍ ! ସେ କାକୁଡ଼ିଟା କ'ଣ କରିବୁ ? ଓଃ ଓଃ, ଓଃ ଓଃ ଆଃ ଆଃ ଆଃ ଆଃ, ଆଇ ଆଇ ଆଇ, ଉ ଉଃ... ।''

ହଠାତ୍ ତାଙ୍କ ତୋଟି ରୁନ୍ଧି ହେଇଗଲା ଆଉ ଗୋଟାଏ ଅଦ୍ଭୁତ ସ୍ୱର ଘର ପୂରେଇ ଦେଲା ଓ ତାଙ୍କ ଭିତରୁ ଫାଟି ବାହାରି ଆସିଲା । ରୁଷାମ୍ମା ଆଉ କିସ୍କିନ୍ଦା ମିଶ୍ର ନିର୍ବାକ୍ ହେଇଗଲେ ସେଇ ଭଙ୍ଗୀରେ ସ୍ଥାଣୁ ହେଇଯାଇ ।

କାହିଁକି ସେମାନେ ମୂର୍ଚ୍ଛା ହେଇଗଲେ, ଆପଣମାନେ ଶୀଘ୍ର ଜାଣିପାରିବେ ।

କିନ୍ତୁ ପ୍ରଥମେ ଆଉ କିଛି ଲୋକଙ୍କୁ ଦେଖନ୍ତୁ । ଇମିତି ନୁହଁ ଯେ ପୃଥିବୀର ଲୋକଗୁଡ଼ାକ ସବୁବେଳେ ବାଡ଼ିଆପିଟା ହଉଥାନ୍ତି ।

ମାଗୀ ଭୁବନେଶ୍ୱର କ୍ଲବ୍ ପାଖରେ ଅଟକି ମିଠାପାନ ଖଣ୍ଡେ ବରାଦ କଲା । ସେ ପୁରୁଣା ବସ୍‌ଷ୍ଟାଣ୍ଡ ପାଖେ ଓହ୍ଲେଇ ମୁଖ୍ୟମନ୍ତ୍ରୀଙ୍କ ଘରଆଡ଼େ ଚାଲିଚାଲି ଯାଉଥିଲା । ପାନବାଲା ପାନ ଦେଲାବେଳକୁ ପଚାରିଲା, ''କ'ଣ ଭାବୁଚନ୍ତି, ଭୁବନେଶ୍ୱର ଉପେରେ ଚଡ଼କ ପଡ଼ିବ ?''

ସ୍ତ୍ରୀଟିଏ ତାଙ୍କ ମୋପେଡ୍ ଅଟକେଇ ଚାରିଟା ଜର୍ଦା ପାନ ଅର୍ଡ଼ର ଦେଲେ । ମାଗୀ ଚାହିଁଲା ତାଙ୍କ ସୁନ୍ଦର ଆଖିର ଦୁଃଖକୁ ଆଉ ତାଙ୍କ ଓଠରେ ଫୁଟିଥିବା ଶକ୍ତିକୁ । ୟେ ଆଉ ଜଣେ, ମାଗୀ ଭାବିଲା । ପୃଥିବୀଟା ଜନଶୂନ୍ୟ ନ ଥିଲା । ସ୍ତ୍ରୀମାନେ ଥିଲେ । ସ୍ତ୍ରୀଟି ମାଗୀକୁ ଚାହିଁଲେ । ସ୍ତ୍ରୀମାନେ ଚାହିଁଲା ପରି ଗୋଡ଼ଠୁଁ ମୁଣ୍ଡ ପର୍ଯ୍ୟନ୍ତ ନୁହେଁ, ଆଖି ଭିତରକୁ ସେ ସ୍ମିତହାସ ଦେଲେ ।

''ପୃଥିବୀଟା ବଞ୍ଚିଯିବ ନିଶ୍ଚେ, ମୁ ଭାବୁଚି,'' ସେ ପାନବାଲାକୁ କହିଲେ ଆଉ ମୋପେଡ୍‌ରେ ଚଢ଼ି ସେକ୍ରେଟେରିୟେଟ୍ ଆଡ଼େ ଚାଲିଗଲେ ।

ସେ ସ୍ତ୍ରୀଟି ମାଧବୀ ଯାହାଙ୍କ ଅସ୍ତିତ୍ୱ ଆମେ ଆଘ୍ରାଣ କରିଥିଲୁ ପ୍ରଥମ ପରିଚ୍ଛେଦରେ । ତାଙ୍କୁ ଦେଖିଲେ, ତାଙ୍କ ଆଖି ଭିତରଟା ଯେ ଏତେ ଗଭୀର ଜାଣି ହବନି, ଅର୍ଥାତ୍ ତାଙ୍କୁ କି କି ପରିସ୍ଥିତି ଦେଇ ଯିବାକୁ ପଡ଼ିଚି ବୁଝି ହବନି । ସେ ବର୍ତ୍ତମାନ ପଡ଼ିଚନ୍ତି ପ୍ରଶାସକ ବାମାକାନ୍ତ ଦାସଙ୍କ ହାବୁଡ଼ରେ, ଯାହାଙ୍କୁ ବି ଆମେ ଭେଟିଥିଲେ ସେଇ ପ୍ରଥମ ପରିଚ୍ଛେଦ, ସେଇ ''ଦେଇଥିଲେ ପାଇ'' ଲୋକ : ନଥିଂ ବିଗେଟ୍‌ସ୍ ନଥିଂ ଲୋକ ।

ନିଜେ ଦେଖନ୍ତୁ ସେ କ'ଣ କରୁଚନ୍ତି । ମାଧବୀଙ୍କୁ ଲକ୍ଷ୍ୟ କରନ୍ତୁ ତାଙ୍କ ଜୀବନ ତନ୍ତୁ ବୁଣିଲା ବେଳେ ।

ମାଧବୀ ସଚିବାଳୟର ଶିକ୍ଷାବିଭାଗ ଆଲମାରି ଆଉ ଫାଇଲ୍ ର୍ୟାକ୍ ମଝିରେ ବନ୍ଦୀ ହେଇ ତାଙ୍କ ଟେବୁଲ୍ ପାଖରେ ବସିଥିଲେ । ତାଙ୍କ ଟେବୁଲ ଓପରେ ବିଶେଷ ଫାଇଲ୍ ନ ଥିଲା । ଅଫିସରଙ୍କର ଡାକରା ପର୍ଯ୍ୟନ୍ତ ବା ସମ୍ପୃକ୍ତ ଲୋକର ଚଞ୍ଚଳ କାମ ସାରିବା ପାଇଁ ଅନୁରୋଧ ପର୍ଯ୍ୟନ୍ତ କୌଣସି ଫାଇଲ୍‌କୁ ମାସ ମାସ ଧରି ପକେଇ ରଖିବାକୁ ସେ ପସନ୍ଦ କରୁ ନ ଥିଲେ । ସେ ତାଙ୍କ ଟେବୁଲ ସଫା ରଖିବାକୁ ପସନ୍ଦ କରୁଥିଲେ । ସେ ଠିଆ ହେଲେ, ତଳେ କାନ୍ଥ ପାଖରେ ଥିବା ମାଠିଆରୁ ଗ୍ଲାସ୍‌ରେ ପାଣି କାଢ଼ିଲେ ଓ ପୁଣି ଚେୟାର୍‌ରେ ବସିପଡ଼ି ଗ୍ଲାସ୍‌ଟିକୁ ଟେବୁଲ୍ ଓପରେ ଥୋଇଦେଲେ । ସେ ତାଙ୍କ ଅପେକ୍ଷାକୃତ ବଡ଼ ବାଦାମୀ ରଙ୍ଗର ହ୍ୟାଣ୍ଡ୍‌ବ୍ୟାଗ୍‌ରୁ ଗୋଟାଏ ପଲିଥିନ୍ ବ୍ୟାଗ୍ କାଢ଼ିଲେ । ସେ ପଲିଥିନ୍‌ବ୍ୟାଗ୍‌ରୁ ସେ ତାଙ୍କ ଲଞ୍ଚ୍ ଡବାଟି କାଢ଼ିଲେ । ସେ ଡବା ଖୋଲିଲେ ଆଉ ଘୋଡ଼ଣୀକୁ ଟେବୁଲ୍ ଉପରେ ରଖିଲେ ଡବା ପାଖରେ, ଯୋଉଥିରେ ଚାରୋଟି ଖଳିରୁଟି ଆଉ କିଛି ଆଳୁଭଜା ଥିଲା । ଡବାର ଗୋଟିଏ କଣରେ କିଛି ମିଠା ଆମ୍ବ ଆଚାର ଥିଲା, ଯାହା ତାଙ୍କୁ ଭାରି ଭଲ ଲାଗେ ।

ମାଧବୀ ଖାଇବାକୁ ଆରମ୍ଭ କଲେ ଆଉ ବାଁ ହାତରେ ଟେବୁଲ୍ ଡ୍ରୟାର୍‌ରୁ ବିଡ଼ାଏ କାଗଜ କାଢ଼ିଲେ । ଅଫିସ୍‌ରେ ହବାକୁ ଯାଉଥିବା ନାଟକର ସେଗୁଡ଼ାକ ଥିଲା ତାଙ୍କ ଡାୟଲଗ୍, କିନ୍ତୁ ତାଙ୍କ ମନ ସେଥିରେ ନ ଥିଲା । ତାଙ୍କୁ ହିରୋଇନ୍ ରୋଲ୍ ମିଳିବା ଉଚିତ ଥିଲା କାରଣ ନିନୀ ଆଉ ତାଙ୍କ ଭିତରେ ସେ ହିଁ ଭଲ ଦେଖିବାକୁ ଆଉ ଭଲ ଅଭିନେତ୍ରୀ, କିନ୍ତୁ ନିନୀ ଅବିବାହିତା ଆଉ ସହଜପ୍ରାପ୍ୟ ଥିଲା । ସୁବିରାମ, ଯିଏକି ତାଙ୍କ ବିଭାଗର ଡ୍ରାମା ଓସ୍ତାଦ୍ ଆଉ ନାଟକର କାର୍ପଟଦାର ଥିଲା ନିନୀଙ୍କ ପ୍ରେମିକ ।

ଯାହା ଘଟିବା କଥା ତା'ହିଁ ଘଟେ । ତାଙ୍କୁ ଦୁଃଖ ଲାଗିଲା । ତେବେ ଖୁବ୍ ଗୁଡ଼ାଏ ମନ ଦୁଃଖ କରିବାର ବିଶେଷ କାରଣ ନ ଥିଲା ବୋଲି ସେ ଭାବିଲେ, ହେଡ୍‌କ୍ଲର୍କ ରବିବାବୁ ଯିଏକି ମୁଖ୍ୟ ଭୂମିକାଟି କରୁଚନ୍ତି ତାଙ୍କୁ ପସନ୍ଦ କରନ୍ତି । ସେକ୍ରେଟାରୀ ବାମାକାନ୍ତବାବୁ ଯେ ତାଙ୍କ ପାଇଁ ହଂସା ଉଡ଼ିଗଲା ପରି ହଉଚନ୍ତି ସେ ଅନୁମାନ କରୁଥିଲେ କେତେ କାରଣରୁ : ନ ଥିବା ଫାଇଲ୍ ପାଇଁ ତାଙ୍କୁ ଯିମିତି ଡକେଇ ପଠାନ୍ତି, ତାଙ୍କ ଆଡ଼କୁ ଯିମିତି ଚାହାନ୍ତି, ତାଙ୍କ ସାମ୍ନାରେ ଯିମିତି ତାଙ୍କ ପାଟି ଖନି ବାଜିଯାଏ କ'ଣ ଚାହୁଁଚନ୍ତି ନ କହିପାରି ଆଉ ସେ ତାଙ୍କ କବିତା ଯିମିତି ଦେଖାନ୍ତି । ଓଡ଼ିଶାରେ, ମଧ୍ୟବିତ୍ତ ପରିବାରରେ - ସେ ଜାଣନ୍ତିନି ଅନ୍ୟବର୍ଗର ଲୋକ କିମିତି କ'ଣ କରନ୍ତି, ହୁଏତ ପାଶ୍ଚାତ୍ୟ ଦେଶରେ ମନୋଭାବ ପ୍ରକାଶ କରିବା ନିଶ୍ଚୟ ଖୋଲାଖୋଲି ହେଇଥିବ - ତମକୁ ସେଇ ଗୁପ୍ତ

ସୂଚନାମାନଙ୍କରୁ ହିଁ ସବୁକଥା ଠଉରେଇବାକୁ ପଡ଼ିବ । ଆଖିର ଆଉ ଓଠର ହସରେ ବା ତା'ର ଅନୁପସ୍ଥିତିରେ ଅନେକ କଥାବାର୍ତ୍ତା କରାଯାଏ । ବେଳେବେଳେ ସେକ୍ରେଟେରୀଙ୍କ ଏ.ସି. ରୁମ୍‌ରେ ସେ ଦିହେଁ ଭୀଷଣ ଗରମ ଅନୁଭବ କରୁଥିବାର ଆଉ ଖୁବ୍ ଝାଳେଇ ଯାଉଥିବାର ଅନୁଭବ କରି ସେ ମନେ ମନେ ହସନ୍ତି । କ୍ରମେ ଇମିତି ହେଲା ଯେ ସେ ବାମାକାନ୍ତଙ୍କୁ ପ୍ରେମ କରିବାକୁ ଚାହିଁଲେ ।

ମାଧବୀ ଖଣ୍ଡେ ଆମ୍ବ ଆଚାରକୁ ତୃପ୍ତ ଭାବରେ ଚୁଷି ପକେଇଲେ ।

କେବଳ ତାଙ୍କର ଛୋଟବେଳର ଯନ୍ତ୍ରଣାଦାୟକ ବିବାହ ଅନୁଭୂତି ହିଁ ତାଙ୍କର ଇଚ୍ଛାର ପ୍ରତିବନ୍ଧକ ହଉଥିଲା । ଯେତେବେଳେ ସେସବୁ ଘଟିଥିଲା, ଗୋଟି ଗୋଟି କରି ସବୁ ଘଟିଗଲା କାରଣ ତାଙ୍କୁ ଅନ୍ୟ କିଛି ବାଟ ଜଣା ନ ଥିଲା ।

ଯେତେବେଳେ ତାଙ୍କୁ ଅଠର ବର୍ଷ ହେଇଥିଲା, ସେ ପ୍ଲସ୍ ଟୁ ଫାଷ୍ଟ ଡିଭିଜନରେ ପାସ୍ କରିଥିଲେ, ତାଙ୍କ ବାପା ଦିନେ ଘରକୁ ଆସିଲେ ଆଉ ଖୁବ୍ ଖୁସିରେ କହିଲେ, ''ମୁଁ ତୋ ପାଇଁ ଭଲ ବରଟିଏ ପାଇଚି, ଥିଲାବାଲା ଘରର ।''

''ମୁଁ ପଢ଼ିବି ।''

ତାଙ୍କ ମା ଯିଏ ସେତେବେଳକୁ ରୋଷେଇଘରୁ ବାହାରି ଆସିଥିଲେ, କହିଲେ, ''ଏତୁଟିଏ ହେଲୁଣି ବାହାହବୁତ ପୁଣି । ମୁଁ ତ ତେର ବର୍ଷରେ ବାହା ହେଇଥିଲି । ବୟସ ଯେତିକି ଗଡ଼ିବ ଭଲ ବରଟିଏ ପାଇବା ସେତିକି କଷ୍ଟ ହବ ।

''ମୁଁ ବି.ଏ. ପାସ୍ କରିସାରେ ।''

ତାଙ୍କ ବାପା କହିଲେ, ''ବ୍ୟସ୍ତ ହ'ନା, ତତେ ପଢ଼େଇବା ପାଇଁ ମୁଁ ତାଙ୍କୁ କହିବି ।''

''ପିଲା କ'ଣ କରୁଚି ?''

''କରୁଚି ? ସାରଙ୍ଗପୁର ଚୌଧୁରୀଙ୍କର ଗୋଟିଏ ବୋଲି ପୁଅ । ବାପ ପରେ ସବୁ ସମ୍ପତ୍ତିର ମାଲିକ । ତାଙ୍କର ଭୁବନେଶ୍ୱରରେ ଦୋକାନଟିଏ ଅଛି ଯାହା ସେ ବୁଝାବୁଝି କରେ । ଭୁବନେଶ୍ୱରରେ ଘର ଅଛି ତତେ ବୋଧେ ସେଇଠି ରହିବାକୁ ପଡ଼ିବ । ଆଉ ଗାଁରେ ରହିବାକୁ ପଡ଼ିବନି ।''

''ହେଲେ ବାପା, ମୁଁ ବାହା ହବାକୁ ଚାହୁଁନି... ।''

''ଆଉ ହେଲେ ଫେଲେ କହନା ।''

ବାସ୍ । ତାଙ୍କୁ ବାହା କରି ଦିଆଗଲା । ଆଉ ଦୁଃସ୍ୱପ୍ନ ଆରମ୍ଭ ହେଇଗଲା ସ୍ୱାଭାବିକ ଭାବେ । ସୁରେଶ ଖୁସୀବାସିଆ ଆଉ ସ୍ନେହୀ ଥିଲେ କିନ୍ତୁ କେବେବି ତାଙ୍କୁ ସଙ୍ଗସୁଖ ଦବାକୁ ଚେଷ୍ଟା କରୁ ନ ଥିଲେ । ଅଳ୍ପ ଦିନ ଭିତରେ ସେ ଜାଣିଲେ ଯେ ସୁରେଶ ସମ୍ପୂର୍ଣ୍ଣ ନ ଥିଲେ, ତାଙ୍କ ପୁରୁଷତ୍ୱ ଅଫୁଟା ଥିଲା । ତାଙ୍କୁ ବୁଦ୍ଧି ଦିଶିଲାନି । ସେ ସ୍ଥିର କରିପାରିଲେନି କ'ଣ କରିବେ ।

''ବ୍ୟସ୍ତ ହୁଅନି,'' ସୁରେଶ କହିଥିଲେ, ''ତୁମେ ପୃଥିବୀର ସବୁଠୁ ସୁନ୍ଦର ପୁରୁଷକୁ ପାଇବ।''

''ମାନେ ?''

''ତମେ ଶୀଘ୍ର ଦେଖିବ। ସେ ଆଜି ରାତିରେ ଏଠିକି ଆସିବ।''

''ମୋର ଆଉ କେହି ଦରକାର ନାହିଁ। ତମେ ଡାକ୍ତର ଦେଖଉ ନାହଁ କାହିଁକି ? ଚାଲ ଡାକ୍ତରଙ୍କୁ ଦେଖେଇବା।''

ସେ ତାଙ୍କୁ ଆଉଁଶି ଦେଲେ ଆଉ ପ୍ରେମପୂର୍ଣ୍ଣ ଚୁମା ଦେଲେ।

''ମତେ ବିଶ୍ୱାସ କର,'' ସେ କହିଲେ, ''ସେ ମୋର ଅତି ପ୍ରିୟ ସାଙ୍ଗ, ମୋ ଜୀବନ ମୋ ରକ୍ତ। ସେ ହିଁ ମୁଁ। ଅବିଚ୍ଛେଦ୍ୟ। ମୋର ଗୋଟାଏ ପାଖ ତମେ ଦେଖିଚ। ଆଜି ରାତିରେ ଅନ୍ୟ ପାଖଟି ଦେଖିବ। ଆମେ ଦୁହେଁ ମିଶି ଏକ। ଆମେ ଦିହେଁ ମିଶି ତୁମର।''

''ନା, ମୁଁ ଘରକୁ ଯିବି।''

''ତାକୁ ଭେଟିବାଯାଏ ତମେ ଅପେକ୍ଷା କର।''

ସେଦିନ ରାତିରେ ଶ୍ରୀଧର ସେମାନଙ୍କ ସାଙ୍ଗେ ରହିବାକୁ ଆସିଲା। ଶ୍ରୀଧର ସୁରେଶଙ୍କ ଦୋକାନରେ କାମ କରେ। ସେଦିନ ଶ୍ରୀଧର ମାଧବୀଙ୍କୁ ବାରମ୍ବାର ରମଣ କଲା, ସୁରେଶଙ୍କର ଆଲିଙ୍ଗନ, ଚୁମ୍ବନ ଓ ଲେହନ ମଧ୍ୟରେ। ସେଦିନ ରାତିରେ କାମନାର ତୃପ୍ତିରେ ମାଧବୀ ଲାଜ ଆଉ ଲାଞ୍ଛନାରେ ମରିଯାଇଥିଲେ। ସେଦିନ ରାତିରେ ସେମାନଙ୍କ ଅଦ୍ଭୁତ ସମ୍ପର୍କ ବୈଧ ହେଇଯାଇଥିଲା।

ଅନେକ ଦିନ ପରେ ସେ ଆବିଷ୍କାର କଲେ ଯେ ତାଙ୍କ ସ୍ୱାମୀ ସୁରେଶ ଜଣେ ସମଲିଙ୍ଗାଚାରୀ ଥିଲେ ଯାହାଙ୍କ ସକ୍ରିୟ ସାଥି ଥିଲେ ଶ୍ରୀଧର। ମାଧବୀ ଓ ସୁରେଶ, ଜଣେ ସ୍ତ୍ରୀ ଆଉ ଜଣେ ପୁରୁଷ, ବର୍ତ୍ତମାନ ଶ୍ରୀଧରର ସ୍ତ୍ରୀ ଥିଲେ। ଆଉ ସେ ଥିଲେ ସ୍ତ୍ରୀର ସ୍ତ୍ରୀ, ନଂପୁସକର ସ୍ତ୍ରୀ, ତଥାପି ତାଙ୍କ ସ୍ୱାମୀକୁ ଦୂଷିତ କରିଥିବା ଲୋକର ଯୌନସଙ୍ଗୀ। ସବୁକଥା ଏତେ ଜଟିଳ ହୋଇଯାଇଥିଲା ଯେ ସେ ଚିନ୍ତା କରିବା ଛାଡ଼ି ଦେଇଥିଲେ। ଯେତେବେଳେ ସୁରେଶ ନ ଥିବାବେଳେ ଶ୍ରୀଧର ବାରମ୍ବାର ଲୁଚି ଲୁଚି ଆସୁଥିଲେ ଆଉ ଅବୈଧ ଭାବେ ସୁରେଶଙ୍କ କର୍ତ୍ତୃତ୍ୱକୁ ଅବମାନନା କରି କାମ କରୁଥିଲେ ସେ ଏକ ଲୁକ୍କାୟିତ ଆନନ୍ଦ ଅନୁଭବ କରୁଥିଲେ। ଏ ଅସ୍ପଷ୍ଟ କୁହୁଡ଼ିଆ ପରିବେଶ ଭିତରେ ତାଙ୍କୁ କିଛି ସ୍ପଷ୍ଟ ଦିଶୁନଥିଲା ଆଉ ତାଙ୍କ ଅସ୍ତିତ୍ୱର ଯେ ଆଉ କିଛି ବଞ୍ଚିରହିଚି ସେ ଜାଣିପାରୁ ନ ଥିଲେ। ଅବଶ୍ୟ ସେ ସାରଙ୍ଗପୁର ଜମିଦାରଙ୍କର ବୋହୂ ଆଉ ସେମାନଙ୍କର ସବୁ ସମ୍ପତ୍ତି ତାଙ୍କର ଆଉ ତାଙ୍କ ସ୍ୱାମୀଙ୍କର ହେଇଯିବ,

ତାଙ୍କ ସ୍ୱାମୀ ଯାହା ହେଇଥା'ନ୍ତୁ ପଛେ। ପିଲାଛୁଆ ଯଦି ହୁଅନ୍ତି, ସେ ଯାହାର ହେଲେ ବି, ନିଜ ଭାବରେ ତାଙ୍କୁ ବଢ଼ାଇ ପାରିବେ। ଟିକେ ମୋଡ଼ିଦିଅ, କୁକୁଡ଼ାର ବେକ ଭାଙ୍ଗିଯିବ ଆଉ ରନ୍ଧାପାଇଁ ତିଆର ହେଇଯିବ। ନୈତିକତା ସେଇଆ। ଯେକୌଣସି ବାଟରେ ମାଡ଼ିଯାଅ, ଯେତେ ଅଦ୍ଭୁତ ବା ଅଗମ୍ୟ ହଉ ପଛେ, ଯଦି ତମେ ମାଡ଼ି ଚାଲିଗଲ ଆରପଟକୁ ତେବେ ସେଇଟା ସବୁଦିନିଆ ବାଟଟେ ହେଇଯିବ। ସେ ଶ୍ରୀଧରଙ୍କୁ ପ୍ରତ୍ୟାଖାନ କରି ସୁରେଶଙ୍କ ଇଚ୍ଛା ବିରୋଧରେ ତାଙ୍କ ମନ ମୁତାବକ ପ୍ରେମିକଟେ ଯୋଗାଡ଼ କରିପାରନ୍ତି। ସେ ସୁରେଶଙ୍କୁ ସେଇଟା ତାଙ୍କ ଦୁଇଜଣଙ୍କ ଭିତରେ ଗୋଟାଏ ଗୁପ୍ତ ବୁଝାମଣା ଭାବରେ ରାଜି କରେଇବି ନେଇ ପାରିଥା'ନ୍ତେ। ମାତ୍ର ବର୍ତ୍ତମାନ ସୁରେଶ ତାଙ୍କ କାମରେ ଅଂଶୀଦାର ହଉଚନ୍ତି ଆଉ ଇମିତି ସରଳ ପିଲାଳିଆ ଆନନ୍ଦ ପାଉଚନ୍ତି ଯେ ବଞ୍ଚିତ ହେଲେ ସେ ଭାଙ୍ଗିପଡ଼ିବେ।

ସେ ସବୁଠୁ ତୁଷ୍ଟ ହେଇଥାନ୍ତେ ସୁରେଶ ଯିମିତି ଅଛନ୍ତି ସିମିତି ତାଙ୍କୁ ଗ୍ରହଣ କରିନେଇଥିଲେ ଆଉ ତାଙ୍କର ସେଇ ସ୍ଥିତିରୁ ଯାହା ମିଳିଲା ସେତିକି ଆନନ୍ଦରେ ସନ୍ତୁଷ୍ଟ ରହିଥିଲେ। ସେ କୋଉଠି ପଢ଼ିଥିଲେ ବୋଧହୁଏ କି କଲେଜର ଝିଅମାନଙ୍କର କୁରୁକୁରୁ ଫୁସୁରୁଫାସୁରୁ କଥାରୁ ଶୁଣିଥିଲେ ଯେ ପୁରୁଷ ନାରୀପାଇଁ ଏକାନ୍ତ ଅପରିହାର୍ଯ୍ୟ ନୁହେଁ। ଆହୁରି ଅନେକ ରାସ୍ତା ଅଛି ଯିମିତି ହାତ, ଓଠ ଓ ଜିଭ, ଯାହା ଖୁବ୍ ତୃପ୍ତିଦାୟକ। ନାରୀତ୍ୱବାଦୀମାନେ ତ ପୁରୁଷମାନଙ୍କୁ ସମ୍ପୂର୍ଣ୍ଣ ଅନାବଶ୍ୟକ ମନେକରନ୍ତି। ସୁରେଶ ଯଦି ଚାହିଁଥା'ନ୍ତେ ଏତେ ବାଟ ବି ଯିବାକୁ ପଡ଼ି ନ ଥାନ୍ତା, କିନ୍ତୁ ସୁରେଶ କ'ଣ ତାଙ୍କ ପ୍ରେମିକକୁ ଛାଡ଼ିପାରିଥାନ୍ତେ ? ମାଧବୀଙ୍କର କ'ଣ ଚାରା ଥିଲା ? କ'ଣ କ'ଣ ସବୁ ଘଟିଯାଉଚି ? ଏତେଗୁଡ଼ିଏ ଆଲୋଡ଼ନର ଉଦ୍‌ଗିରଣକୁ ଯେ ସେ କିମିତି ଭିତରେ ଚାପିରଖିଥିଲେ, ଆଉ ତା କିମିତି ଯେ ତାଙ୍କୁ ଧ୍ୱଂସ କରିଦଉ ନ ଥିଲା, ସେ ଜାଣି ନ ଥିଲେ। ଅନେକ ସମୟରେ ଆକୁଳ ହେଇ ଭାବନାରୁ ବର୍ତ୍ତିବାପାଇଁ ଘରକାମରେ ନିଜକୁ ଜୋରସୋର୍‌ରେ ନିୟୋଜିତ କରୁଥିଲେ। ସେତେବେଳକୁ ତାଙ୍କ ଆତ୍ମା ମରିଯାଇଥିଲା ବୋଲି ସେ ଭାବୁଥିଲେ।

ସେ ସେତେବେଳେ ଜାଣି ନ ଥିଲେ ଯେ ଆତ୍ମା ହଉଚି ଗୋଟାଏ ତେଲିଆ କାଗଜ ଯୋଉଥିରୁ ମଇଳାପାଣି ଇଚ୍ଛାମୁତାବକ ଝାଡ଼ି ଦିଆଯାଇପାରିବ, ନା ସେ ଜାଣିଥିଲେ ଦେହ କଳୁଷିତ କରାଯାଉଥିବା ପ୍ରକ୍ରିୟାରେ ହିଁ ନିଜକୁ ପବିତ୍ର କରିଦିଏ। ହୁଏତ ସେ ତା ଜାଣିଥିଲେ, ନିଜର ଗଭୀରତା ଭିତରେ।

ସେ ବି.ଏ. ପଢ଼ିଲେ। ପ୍ରତିଯୋଗିତାରେ ବସିଲେ ଆଉ ଏ ଚାକିରି ପାଇଲେ। ସେ ଦରଖାସ୍ତ ଦେଲେ, କୁହାବୋଲା କଲେ ସରକାରୀ କ୍ୱାର୍ଟର ପାଇଲେ। ତାପରେ, ଦିନେ ସକାଳୁ ସେ ସମସ୍ତଙ୍କୁ ଛାଡ଼ିଦେଲେ। ସୁରେଶର ପରିବାର, ନିଜ ପରିବାର, ଶ୍ରୀଧର, ସମସ୍ତଙ୍କୁ।

ଏଇ ଗତବର୍ଷ ସୁରେଶ ଆତ୍ମହତ୍ୟା କଲେ, ଯେତେବେଳେ ଶ୍ରୀଧର ସୁରେଶର ଝିଆରୀକୁ ଅନ୍ତଃସତ୍ତ୍ୱା କରିଦେଲା । ତା' ପ୍ରେମିକର ପ୍ରତାରଣା ଯୋଗୁ ସେ ହୁଏତ ଲାଞ୍ଛନା ଅନୁଭବ କରିଥିବେ । ମାଧବୀ ଜାଣିଥିଲେ ମଲାବେଳେ ସୁରେଶ ତାଙ୍କୁ ସେମାନଙ୍କ ସମ୍ପର୍କ ଭଙ୍ଗ କରିଥିବାରୁ ଅଭିଶାପ ଦେଇଥିବେ । ଯଦି ସେମାନେ ଏପର୍ଯ୍ୟନ୍ତ ଏକାଠି ଥାନ୍ତେ ହୁଏତ ସୁରେଶ ଆଜି ବି ବଞ୍ଚିଥାନ୍ତେ ।

କିନ୍ତୁ ତାଙ୍କ ମନରେ କୌଣସି ପାପବୋଧ ନ ଥିଲା । ସୁରେଶଙ୍କ ପ୍ରତି ବି ତାଙ୍କ ମନରେ କୌଣସି କଠୋର ଭାବ ନ ଥିଲା । ଏ ଘଟଣା ଥିଲା ଗୋଟିଏ ବହିପରି, ପଢ଼ାଗଲା ଆଉ ବୁଜିଦିଆଗଲା । ବହିର ଯାହାକିଛି ତାଙ୍କ ଭିତରକୁ ଚାଲିଆସିଲା, ତାଙ୍କ ସାଙ୍ଗେ ରହିଗଲା ଆଉ ବହିରେ ଯାହା ରହିଗଲା ତା ବହିରେଇ ରହିଗଲେ ଭଲ ।

ସେ ଦ୍ୱିତୀୟ ରୁଟିରେ ହାତ ଦେଲେ, ଖଣ୍ଡେ ଛିଣ୍ଡେଇଲେ, ସେଥେରେ ଆଳୁଖଣ୍ଡକୁ ଚିମୁଟି ଧରିଲେ । ତା'ପରେ ପାଟିରେ ପୁରେଇ ଧୀରେ ଧୀରେ ଚୋବେଇଲେ । ସେ ତୁଇଁ ଶିବକୁ ଅପେକ୍ଷା କରୁଥିଲେ ତାଙ୍କ ଚା' ଧରି ଆସିବ ବୋଲି । ଶିବର ବୟସ ଦଶବର୍ଷ ହବ ସେକ୍ରେଟାରିଏଟ୍ ବାହାରର ଚା' ଦୋକାନରେ ସେ କାମ କରେ । ତାଙ୍କୁ ସେ ଭଲ ଲାଗେ । ତା' ପାଇଁ ସେ ଦୁଇଟି ରୁଟି ଆଣି ଥା'ନ୍ତି ଯାହା ସେ ଲାଜେଇ ଲାଜେଇ ମନ ଖୁସୀରେ ଖାଏ ଓ ତା' ଗାଁ ଆଉ ଘରକଥା ଗପିଯାଏ ।

ଶିବ ଚା' ଧରି ଆସିଲା, ଖାଇଲା, ଗପିଲା ଆଉ ଚାଲିଗଲା, ହୁଏତ ସେ ତାକୁ ତାଙ୍କ ଘରେ କାମ କରିବାକୁ ପ୍ରବର୍ତ୍ତେଇବେ ।

ଗରାବତ୍ତୁ, ସେକ୍ରେଟାରୀଙ୍କ ପିଅନ ଧଇଁସଇଁ ହେଇ ଆସି କହିଲା, "ମ୍ୟାଡାମ୍, ସାର୍ ନବରଙ୍ଗପୁର କଲେଜ ଫାଇଲ୍‌ଟା ଖୋଜୁଚନ୍ତି ।"

ସେ ଠିଆହେଲେ ଆଉ ଫାଇଲ୍‌ଟିଏ ଟାଣିଆଣିଲେ । ତାଙ୍କ ପାଖରେ ନବରଙ୍ଗପୁର କଲେଜ ଫାଇଲ୍ କେବେବି ନ ଥିଲା. କିନ୍ତୁ ସେ ଡକରାର ଅର୍ଥ ଜାଣିପାରିଲେ । ସେ ଏପର୍ଯ୍ୟନ୍ତ ବାମାକାନ୍ତଙ୍କ ଆକାଂକ୍ଷାର ଉତ୍ତର ଖୋଜି ପାଇ ନ ଥିଲେ, ଯଦିବା ବାମାକାନ୍ତ ସାହସ କରି ତା ପ୍ରକାଶ କରନ୍ତେ । ସେ ନିଜର ଆସକ୍ତି ସମ୍ପର୍କରେ ସଚେତନ ଥିଲେ କିନ୍ତୁ ନିଜର ଉତ୍ତରଟି ଜାଣି ନ ଥିଲେ ।

ତାଙ୍କ କବାଟରେ ମୃଦୁ ଆଘାତ କରି ସେ ପଶିଲେ । ବାମାକାନ୍ତ ତାଙ୍କ ଟେବୁଲ୍ ଆରପଟେ ଠିଆ ହେଇଥିଲେ । କୋଠରିଟି ଥଣ୍ଡା ଥିଲା । ଏୟାର୍‌କଣ୍ଡିସନର୍‌ର ଘୁର୍ ଘୁର୍ ଶବ୍ଦ ଶୁଭୁଥିଲା । ପରଦାଗୁଡ଼ିକ ଟଣା ହେଇଥିଲା । ବାମାକାନ୍ତ ବୁଲିଲେ । ତାଙ୍କ ଆଖିରେ ଯନ୍ତ୍ରଣା ପରି କିଛି ଲୁଚି ରହିଥିଲା । ସେ ଟେବୁଲ୍ ଧାରେ ଧାରେ ମାଧବୀଙ୍କ ଆଡ଼କୁ ବୁଲିଆସିଲେ, ତାଙ୍କ ହାତରୁ ଫାଇଲ୍‌ଟି ନେଇ ଟେବୁଲ୍ ଓପରକୁ ଫିଙ୍ଗିଦେଲେ ଆଉ ହାତ ବଢ଼େଇ ଛାତିକୁ ଟାଣି ଆଣିଲେ । ମାଧବୀ ବି ପରସ୍ପର ଭିତରେ ଥିବା ଫୁଟେ ଦୂରତ୍ୱ ଦୌଡ଼ି ଅତିକ୍ରମ କରି ଚାଲିଯାଇଥିଲେ ତାଙ୍କ ଆଲିଙ୍ଗନକୁ ।

ସେମାନଙ୍କ ଦେହ ଯେତେବେଳେ ପରସ୍ପରକୁ ଛୁଇଁଦେଲା ହଠାତ୍ ସେମାନେ ଦାରୁଭୂତ ହେଇଗଲେ, ଯିମିତି ସମୟଟା ବନ୍ଦ ହେଇଯାଇଛି ।

ତା ପରେ ଆସିଗଲା । ତାଙ୍କ ଭିତରେ ଗୋଟାଏ ସ୍ତବ୍ଧକାରୀ ଶବ୍ଦର ବିସ୍ଫୋରଣ ।

କୋଉ ଶବ୍ଦ କଥା କହିହଉଚ ତମେ ?

ଅପେକ୍ଷା କରନ୍ତୁ । ଆପଣମାନେ ବି ଶୁଣିପାରିବେ । ସମସ୍ତେ ଶୁଣିବେ । ଶୀଘ୍ର । ଖାଲି ଧର୍ଯ୍ୟ ଧରନ୍ତୁ ଆଉ ଏଇ ଦେଖନ୍ତୁ ।

ମାଗୀ ମୁଖ୍ୟମନ୍ତ୍ରୀଙ୍କ ଘର ସାମନାରେ ରହିଗଲା । ସେ ମୁଖ୍ୟ ରାସ୍ତାରୁ ତାଙ୍କ ଫାଟକ ଆଡ଼େ ଯିମିତି ବୁଲିଲା ଦେଖିଲା ଦଳେ ପୁଲିସବାଲା । ସେ ପାଖେରେ ପହଞ୍ଚିଲା ବେଳୁକୁ ସେମାନେ ତାକୁ ଅଟକେଇଲେ ।

''କ'ଣ ଦରକାର ?'' ଜଣେ ଇନ୍ସପେକ୍ଟର୍ ପଚାରିଲେ ।

''ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବାକୁ ଚାହେଁ ।''

''ସେ ଏଠି ନାହାନ୍ତି, ଅଫିସ୍‌ରେ । ସେ ଯାହାହଉ ତାଙ୍କ ସାଙ୍ଗେ ଦେଖାକରି ପାରିବନି । ସେ କାହାରିକୁ ଦେଖା ଦଉ ନାହାନ୍ତି । କାହାରିକୁ ବି ନୁହେଁ ।''

''କାହିଁକି ?''

ଚାର୍ଯ୍‌ରେ ଥିବା ଡି.ଏସ୍.ପି. ଟହଲି ଟହଲି ତାଙ୍କ ଆଡ଼େ ଆସିଲେ ଆଉ ଇନ୍ସପେକ୍ଟରଙ୍କୁ ପଚାରିଲେ, ''କ'ଣ ହେଲା ?''

''ପଚାରୁଚି କାହିଁକି ସି.ଏମ୍. କାହାରିକୁ ଦେଖା କରୁ ନାହାନ୍ତି ।''

''ଆଚ୍ଛା,'' କହି ସେ ଟହଲି ଟହଲି ଫେରି ଯାଉଯାଉ ଚପା ଗଳାରେ, କିନ୍ତୁ ଶୁଣାଗଲା ପରି କହିଲେ, ''କହିବ ଯଦି ଆଉ କିଛି ଦର୍ଶନ କରେଇଦବା ।''

''ଦେଖାନ୍ତୁ,'' କହିଲା ମାଗୀ । ତା ଆଖି ଦି'ଟା ନିଆଁ ପରି ଚାହିଁଥିଲା ସେ ଡି.ଏସ୍.ପି.ଙ୍କ ମୁଣ୍ଡର ପଛକୁ, ଆଉ ଇନ୍ସପେକ୍ଟରଙ୍କ ପାଟିରୁ ବାହାରି ଆସୁଥିବା ହସଟା ମାଡ଼ିହେଇ ଫେରି ପଶିଗଲା ତାଙ୍କ ତଣ୍ଟି ଭିତେରେ ।

ମୁଖ୍ୟମନ୍ତ୍ରୀ କହିଲେ, ''ଏଁ, ଆଃ, ଓଃ, ନା ନା, ଦେଖ, କଥା କ'ଣ କି, କିଏ କ'ଣ କରିବ, ମାନେ, ବୁଝି ପାରୁନ, ଆଃ, ଖୁଁ ଖୁଁ, କିଛି ନାହିଁ, ତେଣୁ ବୁଝିଲେ ତ, ଯଦି, ଯେମିତି, ଏମିତି ଯଦି ହୁଏ, ଯେତିକି, ଅଳ୍ପ ଟିକିଏ, ଚୁଁ ଚୁଁ, ହେ ହେ, ବିଚିତ୍ର ଭାବରେ, ତା ସତ୍ତ୍ୱେ, କୋଉଠି କେହି ନାହାନ୍ତି ନା କ'ଣ, ତେଣୁ, ଅତଏବ, ଇତ୍ୟାଦି, ତମେ ଭିତରକୁ ଆସିଲ କେମିତି ? ଆସିଲ କେମିତି ? ଦେଖି ନବକାଳିକା ବକାଳିକାମାଳିକାରେବାଳିକାଚନ୍ଦ୍ରକାଳିକା...''

''ଚୋପ୍ ।''

ଡି.ଏସ୍.ପି. ଠିଆହେଇଗଲେ, କିନ୍ତୁ ଖାଲି ମୁହୂର୍ତ୍ତକ ପାଇଁ। ସେ ଧଡ଼ପଡ଼ ହେଇ ବର୍ତ୍ତମାନ ଆଗୁକୁ ଚାଲିଲେ ଗେଟ୍ ଖୋଲିବାକୁ, କାରଣ ମୁଖ୍ୟମନ୍ତ୍ରୀଙ୍କ ମର୍ସେଡିଜ୍ ବାହାରି ଆସୁଥିଲା ଶ୍ରୀମତୀ ସି.ଏମ୍.ଙ୍କୁ ଧରି। ସେ ପ୍ରବଳ ଭାବରେ ସାଲ୍ୟୁଟ୍ କଲାବେଳେ ହାତ ବାଡ଼େଇ ହେଇ ତାଙ୍କ ଟୋପିଟା ଗଡ଼ିପଡ଼ିଲା ମୁଣ୍ଡରୁ। ସି.ଏମ୍.ଙ୍କ ସ୍ତ୍ରୀ, ମାହେଶୀ, ହସିଲେ। ତା'ପରେ ତାଙ୍କ ଆଖି ପଡ଼ିଲା ଜଣେ ସ୍ତ୍ରୀ ଉପରେ ଯାହା ଭିତେରେ ସେ ବୁଡ଼ିଗଲେ।

''ଗାଡ଼ି ରଖ !'' ସେ କହିଲେ।

ଗାଡ଼ି ରହିଲା। ମାହେଶୀ ଓହ୍ଲେଇଲେ।

''ତମେ କିଏ ? ମୁଁ କିଛି କରିପାରିବି କି ତମ ପାଇଁ ?''

''ମୁଁ ମାଗୀ, କୋଣାର୍କରୁ ଆସିଚି। ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବାକୁ ଆସିଚି। ଆଉ ଆପଣ ?''

''ମୁଁ ମାହେଶୀ। ମୁଁ ଥିଲି ତମ ମୁଖ୍ୟମନ୍ତ୍ରୀଙ୍କ ସ୍ତ୍ରୀ। କ'ଣ କରିଚନ୍ତି ସେ ଏଥର ?''

''ଦେଶଟାକୁ ଧ୍ୱଂସ କରିଚନ୍ତି।''

ମାହେଶୀ ନିରେଖି ଚାହିଁଲେ ସ୍ତ୍ରୀଟିକୁ ଆଉ ପାଇଲେ ତରଙ୍ଗର ଅଦ୍ଭୁତ ମେଳ।

''ଆସ। ମୋ ପାଇଁ ଯୁଦ୍ଧ କର। ମୁଁ ଇଲେକ୍ସନ୍ ଲଢୁଚି।''

''ନା। ମୋର ଅନ୍ୟ କାମ ଅଛି। ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରି ପାରିବିକି ?''

''ନା। ସେ ପରା ଲୁଚିଚନ୍ତି।''

ଅନିଚ୍ଛା ସତ୍ତ୍ୱେ ମାହେଶୀ ଗାଡ଼ିରେ ବସିଲେ ଆଉ ଗାଡ଼ି ଚାଲିଗଲା ତାଙ୍କୁ ନେଇ।

ମାଗୀ ଗରଗର ହେଇ ଟରାଟିଥିବା ଡି.ଏସ୍.ପି.ଙ୍କୁ ଚାହିଁଲା ଆଉ ବୁଲିପଡ଼ିଲା। ଭାବୁଥିଲା ଏ ସ୍ତ୍ରୀଟି କଥା ଯାହା ଭିତେରେ ବି ଥିଲା କିଛି ଗୋଟାଏ।

ମୁଖ୍ୟମନ୍ତ୍ରୀଙ୍କ ସ୍ତ୍ରୀ ମାହେଶୀ ପଟ୍ଟନାଏକ ବିବ୍ରତ ଥିଲେ, ଯଦିଓ ତାଙ୍କ ମୁହଁ ସେ ଗଭୀର ସମୁଦ୍ରର ଆଲୋଡ଼ନକୁ ପ୍ରକାଶ କରୁ ନ ଥିଲା। ନିର୍ଦ୍ଦିଷ୍ଟ କିଛି ପାଇଁ ନୁହେଁ। ସେ ଠିକ୍ ଭାବେ ଜାଣିପାରୁ ନ ଥିଲେ ସେଇଟା କ'ଣ, କିନ୍ତୁ ତାଙ୍କ ପେଟ ଭିତରେ ଗୋଟାଏ ଧ୍ୱଂସାତ୍ମକ କ୍ଲେଶ ଅନୁଭବ କରୁଥିଲେ। ତାଙ୍କ ସ୍ୱାମୀ ସବୁବେଳେ ତାଙ୍କ ରାଜନୈତିକ ଗତିବିଧିକୁ ନିଜ ଭିତରେ ସୀମିତ ରଖୁଥିଲେ, କିନ୍ତୁ ଏବେ ସେ ତାଙ୍କ ପ୍ରତି ଦୟାପରବଶ ହେଇ ଯାଉଥିଲେ ଯାହାର ଅର୍ଥ, ତାଙ୍କ ବିଚାରରେ, ସେ ଅତ୍ୟନ୍ତ

କଠୋର ସ୍ଥିତିରେ ଥିଲେ । ତାଙ୍କର ପ୍ରତିଟି ଦୟାପରବଂଶ ପ୍ରସ୍ତାବରେ, ସେ ଅନୁଭବ କରୁଥିଲେ ଯେ ସେ ଭୟାନକ ଭାବେ ନୀତିଭ୍ରଷ୍ଟ ହେଇଯାଉଥିଲେ । ସେ ଯାହା ଦେଖୁଥିଲେ ସେଥିରୁ ସେ ବୁଝିଥିଲେ ଯେ, ବିଜୟବଲ୍ଲଭ ତିଷ୍ଠିବା ପାଇଁ ସଂଗ୍ରାମ କରୁଥିଲେ । ରାଜନୈତିକ ଉଦ୍‌ବର୍ତ୍ତନ ଆଉ ରାଜନୈତିକ ଆରୋହଣର ମୂଲ୍ୟ ମାହେଶୀଙ୍କଠାରୁ ତାଙ୍କ ପାଖରେ ବେଶି ଥିଲା । ଏ ଦେଶର ତଣ୍ଟିକଟା ରାଜନୀତି ପ୍ରତି ମାହେଶୀଙ୍କର ମନେରେ ଗୋଟାଏ ଅବ୍ୟକ୍ତ ଘୃଣା ବୃଦ୍ଧି ପାଇଥିଲା । ଯା କାହିଁକି ଓ କିମିତି ହେଲା ସେ ଜାଣି ନ ଥିଲେ, କିନ୍ତୁ ଇମିତି ହେଇଗଲାଣି, ସେ ଜାଣିଥିଲେ । ଯଦି ବିଜୟବଲ୍ଲଭ ରାଜନୀତିରୁ ବିଦାୟ ନିଅନ୍ତି ତାଙ୍କର କିଛି କ୍ଷତି ହୁଅନ୍ତାନି । ତାଙ୍କ ପାଖରେ ଦୁଇପୁରୁଷ ଯାଏ ଆନନ୍ଦରେ ଚଳିବା ପାଇଁ ଯଥେଷ୍ଟ ପଇସା ଅଛି । ଯଦି ବିଜୟବଲ୍ଲଭ ଆରମ୍ଭ କରିଥିବା ବେନାମୀ ବ୍ୟବସାୟଗୁଡ଼ିକ ସମ୍ଭାଳନ୍ତି, ମାନେ ବେନାମୀ ମାଲିକମାନେ ଯଦି ପ୍ରକୃତ ମାଲିକଙ୍କୁ ବ୍ୟବସାୟ ଫେରେଇ ଦିଅନ୍ତି ତେବେ ତା ଗୋଟାଏ ଖୁବ୍ ବଡ଼ କର୍ପୋରେସନ୍ ଚଳେଇଲା ପରି କାମ ହବ ଯାହାକି ତାଙ୍କୁ ଚବିଶ ଘଣ୍ଟା ବ୍ୟସ୍ତ ରଖିବ, କିନ୍ତୁ ସେ ଭାବୁନାହାନ୍ତି ଯେ ବିଜୟବଲ୍ଲଭ ବ୍ୟବସାୟଟିକୁ ଚଳେଇ ପାରିବେ । ସେ ସେଇଥିପାଇଁ ଗଢ଼ା ହେଇ ନାହାନ୍ତି । ତାଙ୍କ କଲେଜ୍ ଦାଦା ବେଳଠୁଁ ସେ ନିଜକୁ ରାଜନୀତିର କଠିନ ଓ ଭୟାନକ ଖେଳ ସମ୍ଭାଳିବାକୁ ତାଲିମ୍ ଦେଇଥିଲେ : ଅଧକ୍ଷ ଆଉ ଶିକ୍ଷକଙ୍କୁ ପିଟିବା । ବିପକ୍ଷ ଦଳ ସାଙ୍ଗେ ବାଡ଼ିଆପିଟା କରିବା, ପରୀକ୍ଷାରେ କପି ଯୋଗେଇ ବ୍ୟାଘାତ ଉପୁଜେଇବା, ଧର୍ମଘଟର ନେତୃତ୍ୱ ନବା ଆଉ ରାସ୍ତା ଯୁଦ୍ଧ କରିବା । ଥରେ ଗାଦିଚ୍ୟୁତ ହେଲେ ସେ ହୁଏତ ଝାଉଁଳିପଡ଼ି ମରିଯିବେ, ରଷ୍ଟ ହେଇ ନିଜ ଖୋଳ ଭିତରେ ପଶିଯିବେ ଓ ସଢ଼ିଯିବେ । ବିଜୟବଲ୍ଲଭ ଅତୀତରୁ କ'ଣ ଥିଲେ, ମାହେଶୀ ତାକୁ ଅନୁମୋଦନ କରୁ ନ ଥିଲେ, ହେଲେ ତାଙ୍କ ଅତୀତଟା ମାହେଶୀଙ୍କର ପରିସର ବାହାରେ ଥିଲା । ବାହାହବା ଦିନଠୁଁ ହିଁ ତାଙ୍କ ଭିତରେ ମାନବିକ ଦୂରତ୍ୱ ରହିଆସିଚି ଯାହା ସମୟ ଅତିକ୍ରାନ୍ତ ହବାସହ ବଢ଼ିଚି ସିନା ତା ଉପରେ ପୋଲ ଗଢ଼ାଯାଇ ପାରି ନାହିଁ । ଯୌନସମ୍ପର୍କ ଦୃଷ୍ଟିରୁ ପ୍ରାଥମିକ ଅବସ୍ଥାରେ ସେମାନଙ୍କର ସୁନ୍ଦର ଯୋଡ଼ି ଥିଲା, କିନ୍ତୁ କିଛି ବର୍ଷହେଲା ତା ବି ନାହିଁ । ବର୍ତ୍ତମାନର ଏଇ ଅଦୃଶ୍ୟ ହିଂସ୍ରତା ଯାହା ସେ ଅନୁଭବ କରୁଥିଲେ ତାଙ୍କୁ ବିବ୍ରତ କରୁଥିଲା ।

ଗତ ସପ୍ତାହରେ ଯେତେବେଳେ ତାଙ୍କୁ କଟକରୁ ନିର୍ବାଚନ ଲଢ଼ିବାପାଇଁ ବିଜୟବଲ୍ଲଭ ପ୍ରସ୍ତାବ ଦେଲେ, ସେ ମନେକଲେ ଶେଷରେ ତାଙ୍କ ସାଙ୍ଗେ ସେ ସମ୍ପର୍କ ଛିନ୍ନ କରୁଛନ୍ତି ଆଉ ଏଣିକି ସେମାନେ ନିଜ ନିଜ ରାସ୍ତାରେ ଯିବେ । ଏଇ ଯନ୍ତ୍ରଣାଦାୟକ ଅନୁଭବ ତାଙ୍କ ଭିତରେ ଗୋଟାଏ ଅସହାୟତା ସୃଷ୍ଟି କରୁଥିଲା ଯାହା ସାଙ୍ଗେ ସେ ଏପର୍ଯ୍ୟନ୍ତ ବୁଝାମଣା କରିପାରି ନ ଥିଲେ, ଇମିତି ଗୋଟାଏ ଅସହାୟତା ଯାହା ସେ ତାଙ୍କ

ନିତିଦିନିଆ ବ୍ୟବହାରରେ ଆଦୌ ପ୍ରଦର୍ଶିତ କରି ନ ଥିଲେ କିନ୍ତୁ ତାଙ୍କ ଭିତରେ ଏଇଟା ବସା ବାନ୍ଧି ଯାଇଥିଲା । ଗତ ସପ୍ତାହରେ ତିନି ରାତିରେ ଝରକା ପାଖରୁ 'ମା' ଡାକର ଚିତ୍କାର ଶୁଣି ନିଦରୁ ଚମକି ଉଠିଥିଲେ । ସେ ଅନ୍ଧବିଶ୍ୱାସରେ ଆସ୍ଥା ରଖୁଥିବା ନାରୀ ନ ଥିଲେ । ନା ସେ ସହଜରେ ଡରିଯିବା ଲୋକ । କିନ୍ତୁ ସେ ବଷ୍ଟନ୍ ଆଉ ଦିଲ୍ଲୀରେ ଥିବା ତାଙ୍କ ଝିଅମାନଙ୍କ ପାଖକୁ ଫୋନ୍ କରି ବୁଝିନେଲେ ଯେ ସେମାନେ ଭଲ ଅଛନ୍ତି । ଦ୍ରୌପଦୀ ଆଉ ସ୍ୱାମୀ ଫଣିଭୂଷଣ ତାଙ୍କର ଗୋଟିଏ ବୋଲି ପୁଅ କ୍ରାନ୍ତିକୁମାର ସାଙ୍ଗେ ବଷ୍ଟନ୍‌ରେ ରହୁଥିଲେ । ଦ୍ରୌପଦୀ ଆଉ ଫଣୀ ଦିହେଁ ଡାକ୍ତର ଥିଲେ । କ୍ରାନ୍ତି କେବଳ ତିନିବର୍ଷର ଥିଲା ଆଉ କ୍ରେଚ୍ ଯିବାକୁ ଆରମ୍ଭ କରିଥିଲା । ତାଙ୍କର ଶେଷ ସନ୍ତାନ ଅପର୍ଣ୍ଣା ମିରାଣ୍ଡା ହାଉସ୍‌ରେ ରହୁଥିଲା ଆଉ ଦିଲ୍ଲୀ ସ୍କୁଲ ଅଫ୍ ଇକନମିକ୍ସରେ ଅର୍ଥଶାସ୍ତ୍ର ପଢୁଥିଲା । ସେ ମାହେଶୀଙ୍କ ଅନୁରୂପ ଥିଲା, ସୁସ୍ଥ, ସୁନ୍ଦରୀ ଆଉ ବିଚକ୍ଷଣା, ସେ ଥିଲା ଗୋଟିଏ ମେଧାବୀ ଛାତ୍ରୀ, କିନ୍ତୁ ବାପାପରି ତା ଭିତରର ଗୋଟାଏ ଆବେଗହୀନତା ମାହେଶୀଙ୍କୁ ହତୋତ୍ସାହ କରିଦଉଥିଲା । ତାଙ୍କର ଦି'ଟିଯାକ ଝିଅ ଭଲ ଥିବାର ଜାଣି ସେ ଆଶ୍ୱସ୍ତ ହେଲେ ।

ହୁଏତ ସେ ରାଜନୀତିରେ ପଶିବା ପାଇଁ ରାଜି ହେଇଯିବା ଉଚିତ ଆଉ କଟକରୁ ଲଢ଼ିବା ପାଇଁ ବି ନିଜକୁ ପ୍ରସ୍ତୁତ କରିନେବା ଉଚିତ । ଯଦି ସେ ତା କରିବେ ତେବେ ତାଙ୍କୁ ତାଙ୍କ ନିର୍ବାଚନମଣ୍ଡଳୀକୁ ଖୁବ୍ ଶୀଘ୍ର ଯିବା ଦରକାର । କାରଣ ହାତରେ ସମୟ ବହୁତ କମ୍ ।

''ଠିକ୍ ଅଛି,'' ସେ ସ୍ଥିର କଲେ, ''ମୁଁ ରାଜନୀତିରେ ପଶିବି ।'' ହୁଏତ ସୁଯୋଗ ପାଇଲେ ସେ ତାଙ୍କ ସ୍ୱାମୀଙ୍କଠୁଁ ଭଲ ମୁଖ୍ୟମନ୍ତ୍ରୀ ହେବେ । ହୁଏତ ନାରୀମାନେ ରାଜନୀତିରେ ସଭ୍ୟତା ଆଣିବେ, କିନ୍ତୁ ସେ ଇନ୍ଦିରାଗାନ୍ଧୀଙ୍କୁ ପସନ୍ଦ କରୁ ନ ଥିଲେ । ତାଙ୍କ ମୂର୍ତ୍ତିରେ ସେ ହିଂସ୍ରତାର ଗୋଟାଏ ଆଭାସ ଲକ୍ଷ୍ୟ କରିଥିଲେ । ନା ଦୟା, ନା କରୁଣା । ସ୍ଥିର ଧୂର୍ତ୍ତତା । ଯେତେବେଳେ ସେ ତାଙ୍କ ଅନୁଭବକୁ ବିଜୟବଲ୍ଲଭଙ୍କୁ କହିଥିଲେ, ସେ ହସି ଉଠିଥିଲେ ।

''ତମେ ଈର୍ଷା କରୁଚ ।'' ସେ ହସି ହସି କହିଥିଲେ, ''ମାଇକିନା ସଦାବେଳେ ମାଇକିନା ।''

''ସତେ ଯେମିତି ପୁରୁଷମାନେ ଈର୍ଷା କରନ୍ତିନି । ସିଂହ ଆଉ ତମ ଭିତରେ ସେଇଟା କମ୍ ?''

''ପ୍ରକୃତରେ ଇନ୍ଦିରା ଖୁବ୍ ଦୟାଶୀଳା ଥିଲେ ।''

ସେ ସେକ୍ରେଟାରିଏଟ୍‌କୁ ତାଙ୍କ ସ୍ୱାମୀଙ୍କ ପାଖକୁ ଫୋନ୍ ଲଗେଇବାକୁ କହିଲେ ।

ବିଜୟବଲ୍ଲଭ କଡ଼ା ପହରା ଭିତରେ ତାଙ୍କ ଅଫିସ୍‌ରେ ବସିଥିଲେ । ଫାଇଲ୍‌କୁ ଚାହିଁଲେ ସତ । କିନ୍ତୁ ତାଙ୍କ ମନ ଭିତେରେ ଅନେକ ଗୋଳମାଳିଆ ଚିତ୍ର ଉବୁକି ଉଠୁଥିଲା, ଆଉ ତାଙ୍କ ଛାତିଟା ଚିପି ହେଇଗଲାପରି ଲାଗୁଥିଲା । ଧନୁରୁ ତୀର ବାହାରି ଗଲାଣି । ସୈନ୍ୟମାନେ ଆକାଶରେ । ଶୀଘ୍ର ଭାଗ୍ୟ ମୀମାଂସା ହେଇଯିବ ।

ଟେଲିଫୋନ୍‌ଟା ବାଜି ଉଠିଲାରୁ ସେ ଚମକି ପଡ଼ିଲେ ।

''ତମେ ?'' ବିଜୟବଲ୍ଲଭ ବିରକ୍ତିରେ ପଚାରିଲେ । ''କ'ଣ ହେଲା ?''

''ମୁଁ ମୋ କ୍ୟାମ୍ପେନ୍ ଯୋଗାଯୋଗ ସକାଶେ କଟକ ଯାଉଚି । ମୁଁ ଟିକେଟ୍ ପାଇବା ତୁମ କାମ ।''

''ତମକୁ ଟିକେଟ୍ ମିଳିବ, କିନ୍ତୁ ତମେ ଏମିତିଆ ବାହାରିଲେ ହବନି । ସମୟଟା ଭାରି ଗଣ୍ଡଗୋଳିଆ । ମୁଁ ଲୋକାଲ୍ ପାର୍ଟି ଲୋକଙ୍କୁ ତମ ଯିବାପାଇଁ ସବୁ ବ୍ୟବସ୍ଥା କରିବାକୁ କୁହେଁ ।''

''ସେଗୁଡ଼ା ମତେ ମୋ ବାଟରେ କରିବାକୁ ଦିଅ ।''

''ପିଲାଙ୍କ ପରି ହୁଅନି । ତମେ ନିଜେ ନିଜେ କୁଆଡ଼େ ଯିବ ? କ'ଣ କରିବ ? ରାସ୍ତାରେ ଠିଆ ହେଇ ଲୋକମାନଙ୍କ ସାଙ୍ଗେ କଥାବାର୍ତ୍ତା କରିବ ? ତମକୁ ସେମାନେ ଭିକାରି ଭାବିବେ । ତମେ ରାଣୀଭଳିଆ ଯିବା କଥା । ରାଜନୀତି ଭିତରେ ପଶିଲେ ପାର୍ଟି ସଂଗଠନ ବିନା କିଛି କରିପାରିବ ନାହିଁ । ତେଣୁ ଆସନ୍ତା ସପ୍ତାହ ପର୍ଯ୍ୟନ୍ତ ଅପେକ୍ଷା କର, ତାହେଲେ ସେଠିକି ଢଙ୍ଗରେ ଯିବ ।''

''ବଢ଼ିଆ । ତମେ ପାର୍ଟିକୁ ଠିକ୍ କର ମୁଁ ଆଉଥରେ ଯିବି, କିନ୍ତୁ ଆଜି ମୁଁ ଏକା ଯିବି ।''

''ତମକୁ ସତର୍କ କରିଦଉଚି । ତମକୁ ଦେଖି ଲୋକେ ହସିବେ ।''

''ତମ କଳାପରି ରାଜନୀତିରୁ ଛାଡ଼ ପାଇବା ପାଇଁ ଲୋକଙ୍କର ଟିକେ ହସିବା ଦରକାର ।''

''ମୋ ସାଙ୍ଗରେ ଲଢ଼ନି, ମୁଁ ତମକୁ ସାବଧାନ କରୁଚି ।''

''ମୁଁ ରାଜନୀତିରେ ପଶିଲିଣି ଯେତେବେଳେ ମୋ ବିରୋଧରେ ଯିଏ ବି ଖେଳପଡ଼ିଆ ଆରପଟେ ଠିଆ ହବ ମୁଁ ତା ସାଙ୍ଗେ ଲଢ଼ିବି ।''

''କିନ୍ତୁ ତମେ କଟକରେ ଯିବ କୁଆଡ଼େ ? କରିବ କ'ଣ ?''

''ମୁଁ ମୋର ବ୍ୟକ୍ତି ଭେଟ ଅଭିଯାନ ଆରମ୍ଭ କରୁଚି ।''

''କି ଅଭିଯାନ ?''

''ବ୍ୟକ୍ତି ଭେଟ ଅଭିଯାନ ।''

ବିଜୟବଲ୍ଲଭ କିଛି ସମୟ ପାଇଁ ଚୁପ୍ ହେଲେ । ତା'ପରେ କୁଣ୍ଠାର ସହ କହିଲେ, ''ମନ୍ଦ ନୁହେଁ ଯେ, ସେଇଟା କିନ୍ତୁ ଭୋଟ୍-ରାଜନୀତି ନୁହେଁ ।''

''ମୋ ରାଜନୀତି ମୁଁ ଠିକ୍ କରିବି । ଆଉ ହଁ, କ'ଣ ଗୋଟାଏ ହଉଚି କି ? ଆମ ଘର ଚାରିପଟେ ପୁଲିସ୍ ଘେରି ଗଲେଣି ।''

''ପରେ କହିବି । କଟକରେ କାହାକୁ ଭେଟିବ ?''

''ସେଇଟା ମୋ ଉପରେ ଛାଡ଼ । ମୁଁ ମର୍ସିଡିସ୍‌ଟା ନଉଚି ଆଉ ଡ୍ରାଇଭର ସୁବ୍ରତକୁ ।''

''ଆରେ ବାବା ଗୋଟାଏ ଇଣ୍ଡିଆନ୍ କାର୍ ନିଅ । ଇମ୍ପୋର୍ଟେଡ୍ ଗାଡ଼ି ନୁହେଁ, ତମେ ରାଜନୀତିର କିଛି ବି ଜାଣିନ, ବୁଝିଲ ?''

''ତମର ଏ ଲୋକଦେଖାଣିଆ ରାଜନୀତି ବନ୍ଦ ହବା ଦରକାର । ଆଉ ଆଜିଠୁ ବନ୍ଦ ହେଲା । ମୁଁ ମର୍ସିଡିସ୍‌ଟା ନଉଚି । ମୋର ଡେରିହବ । ନା, ଆଜିରାତିରେ ମୁଁ ଫେରି ପାରିବିନି । କାଲି ସନ୍ଧ୍ୟା ସୁଦ୍ଧା ଫେରିବି ।''

''ରହିବ କୋଉଠି ?''

''ବ୍ୟସ୍ତ ହୁଅନି ।''

''ଫୋନ୍ କରିବ । ଘରେ ଥିବି । ଅଧ ଘଣ୍ଟାକରେ ପହଞ୍ଚୁଚି ।''

''ମୋ ଆଖପାଖରେ ଫୋନ୍ ନ ଥାଇପାରେ । ମୋର ମଙ୍ଗଳକାମନା କର ।''

''ଅବଶ୍ୟ, ଗୁଡ୍‌ଲକ୍ ।''

ସେ ଛାଡ଼ିଦେଲେ । ବିଜୟବଲ୍ଲଭ ରାଗିଯାଇଥିଲେ, ଭୀଷଣ ରାଗିଯାଇଥିଲେ କିନ୍ତୁ ହଠାତ୍ ତାଙ୍କ ରାଗ ଶାନ୍ତ ହଉଥିବାର ସେ ଅନୁଭବ କଲେ ।

''ଆରେ !'' ସେ ମନେ ମନେ କହିଲେ, ''ମୁଁ କାହିଁକି ବ୍ୟସ୍ତ ହଉଚି ? ମୁଁ ତ ମୁକ୍ତି ପାଇଗଲି ।''

ମାହେଶୀ ଦର୍ପଣ ସାମ୍ନାରେ ଠିଆ ହେଇ ଧୀରେ ଧୀରେ ଦେହରୁ ଲୁଗା କାଢ଼ିଲେ । ପତଳା ଲମ୍ୱା, ଭିଡ଼ିଲା ଭିଡ଼ିଲା, ହାଡୁଆ ଦେହ ତାଙ୍କର ବୟାଳିଶ ବର୍ଷ କ୍ଷତର ଚିହ୍ନ ସବୁ ରଖିବାକୁ ଅସ୍ୱୀକାର କରି ପ୍ରସ୍ଫୁଟିତ ରହିଥିଲା ସଜ ଫୁଲପରି । ସେଇ ଦେହ ପାଇଁ ତାଙ୍କର ଗୋଟାଏ କାମନା ଜଳିଉଠିଲା । ସେ ଲୁଗା ପିନ୍ଧିଲେ, ବ୍ୟାଗ୍ ଧରିଲେ, ଯୋଉଥିରେ ସେ ତାଙ୍କ ପରିଚିତ ଲୋକଙ୍କ ଠିକଣା ଆଉ ନୋଟ୍ ବିଡ଼ାଏ ପୂରେଇଥିଲେ ।

ସେ ଶେଷଥର ପାଇଁ ଦର୍ପଣରେ ନିଜକୁ ଚାହିଁଲେ । ସୁନ୍ଦର ଦିଶୁଥିଲେ ବୋଲି ଭାବିଲେ । ସେ ହସ ହସ ମୁହଁରେ ନିଜକୁ ଦର୍ପଣରେ ଆଖିମାରି ମନଖୁସୀରେ ବାହାରି ପଡ଼ିଲେ ।

ଫାଟକ ପାଖରେ ସେ ଦେଖିଲେ ଜଣେ ଭୁଲି ନ ପାରିଲା ଭଳିଆ ସ୍ତ୍ରୀକୁ, ଯାହାକୁ ସେ ସାଙ୍ଗେ ସାଙ୍ଗେ ବନ୍ଧୁ ଭାବରେ ଚାହିଁଥିଲେ । ସେ ନିଶ୍ଚିତ ଥିଲେ ଯେ ତାକୁ ଖୋଜି ବାହାର କରିବେ ପୁଣି ଥରେ ।

ଗଲାବେଳେ ଫୁଲନଖରା ପାଖରେ, ସେ ବିଶାଳ ବରଗଛ ତଳେ, ଯୋଉଠି କୁହାଯାଏ ରାତିଅଧରେ ଗୋଟାଏ ଶାଢ଼ି ପିନ୍ଧିଥିବା ଭୂତ ଗାଡ଼ିରେ ଯାଉଥିବା ଲୋକମାନଙ୍କୁ ଦେଖାଦିଏ, ବହୁତ ଦୁର୍ଘଟଣା କରାଏ, ସେ ପଛକୁ ଆଉଜି ପଡ଼ିଲେ ଆଉ ଆଖି ବନ୍ଦ କଲେ । ହଠାତ୍ ସେଇ ମୁହୂର୍ତ୍ତରେ ଗଛର ଅନ୍ଧାର ଭିତରୁ ଅସ୍ପଷ୍ଟ ଭାବରେ ବାହାରି ଗୋଟାଏ ଅତି ସୁନ୍ଦର ଅସୁର ତାଙ୍କୁ ଅଟକେଇଦେଲା ଆଉ କହିଲା, ''ତମକୁ ମୋ ପ୍ରଶ୍ନର ଉତ୍ତର ଦବାକୁ ପଡ଼ିବ ନାରୀ, ନଚେତ୍ ମୁଁ ତମକୁ ଯିବାକୁ ଦେବିନି ।''

''ପଚାର,'' ସାଙ୍ଗେ ସାଙ୍ଗେ କହିଲେ ମାହେଶୀ, ଆଗରୁ ପ୍ରସ୍ତୁତ ଥିଲାପରି, ଭୟଶୂନ୍ୟ ଭାବରେ, ''କିନ୍ତୁ ମୋର ଗୋଟିଏ ସର୍ତ୍ତ ଅଛି ।''

''କୌଣସି ସର୍ତ୍ତ ତୁମର ଥିବା କଥା ନୁହେଁ ।''

''କିନ୍ତୁ ମୋର ଅଛି ।''

''ତା ହବା କଥା ନୁହେଁ । ଠିକ୍ ବି ନୁହେଁ । ଏଇଟା କୋଉଠି ବି ବାସ୍ତବତାର ନ୍ୟାଯ୍ୟ ଅଂଶ ଭାବରେ ନିଆଯାଇନି । ତେଣୁ ସେଇଟା କେମିତି ହବ ?''

''ଏଥର ହବ । ସଠିକ୍ ଭାବରେ ହବ । ମୁଁ ତାକୁ ଏଇଠି ସାଙ୍ଗେ ସାଙ୍ଗେ ନ୍ୟାଯ୍ୟ କରିଦେଲି ।''

''ମୁଁ ବୁଝିପାରୁନି ଯେ କି ଜୀବ ।''

''ହେଲେ ବି ।''

''ଠିକ୍ ଅଛି, ତୁମର ସର୍ତ୍ତ କ'ଣ ?''

''ଏକଦା ହିମାଳୟର ପାର୍ବତ୍ୟ ରାଜ୍ୟରେ ଜଣେ ରାଜା ଥିଲେ । ତାଙ୍କର ଥିଲେ ତିନୋଟି ପୁଅ, କିନ୍ତୁ ତାଙ୍କର ଆଦୌ ଝିଅ ନ ଥିଲେ । ତେଣୁ ସେ ଖୁସୀ ଥିଲେ । ଦିନେ... ।''

''ତମେ ତ ଗୋଟାଏ ଗପ କହୁଚ ।''

''ହଁ ତ କହୁଛି ।''

''ତମ ସର୍ତ୍ତ କାହିଁ ?''

"ସେ କଥା ମୁଁ କହିବି । ପ୍ରଥମେ ଶୁଣ । ଦିନେ ଜଣେ ଦୂତ ଆସିଲା ଓ ରାଜାଙ୍କୁ କହିଲା ଯେ ଗୋଟାଏ ଅତି ଦୁର୍ଦ୍ଦାନ୍ତ ଅସୁରୁଣୀ ଜଙ୍ଗଲରେ ଉତ୍ପାତ କରୁଚି ଯାହାଫଳରେ ଜଙ୍ଗଲର ସବୁ ପୁରୁଷ ଆଉ ପଶୁମାନେ ତ୍ରାହି ତ୍ରାହି ଡାକି ଜଙ୍ଗଲ ଛାଡ଼ି ପଳାଉଚନ୍ତି, କିନ୍ତୁ ସବୁ ସ୍ତ୍ରୀଲୋକମାନେ ନଈକୁ ଯାଇ ମନଖୁସୀରେ ଗାଧୋଉଚନ୍ତି । ଏକଥା ଶୁଣି ରାଜା ତାଙ୍କ ପୁଅମାନଙ୍କୁ ଆଦେଶ ଦେଲେ, "ଯାଅ, ସେ ଅସୁରୁଣୀକୁ ମାରିଦିଅ ଆଉ ତା ମୁଣ୍ଡ ମୋ ପାଖକୁ ଆଣ ।"

"ଅସୁର ଅସୁରୁଣୀଙ୍କୁ ମାରିବା ଗପ ମତେ ଭଲ ଲାଗେନି । ଏଗୁଡ଼ାକ ଅପ୍ରାକୃତିକ ଆଉ ଅନ୍ୟାୟ । ମୋ ଆଡ଼କୁ ଦେଖ, ମୁଁ କ'ଣ ଭୟାନକ ଦିଶୁଚି ? ବରଂ ମୁଁ ସୁନ୍ଦରଂ ହିଁ ଦିଶୁଚି ।"

"ତମେ ମୋ କଥା ଶୁଣିବ ନା ନାହିଁ ?"

"ମତେ ଇମିତି ଗପ ଭଲ ଲାଗେନି । ଆଉ ମୋ ପ୍ରଶ୍ନ କଥା କ'ଣ ହେଲା ? ମତେ କାହିଁକି ପଚାରିବାକୁ ଦଉନ ?"

"ଯଦି ତମେ ମୋ କଥା ନ ଶୁଣିବ ତେବେ ମୁଁ ତମ ପ୍ରଶ୍ନର ଉତ୍ତର ଦେବି ନାହିଁ । ଏବେ ଶୁଣ, ଯେତେବେଳେ ରାଜା ତାଙ୍କ ପୁଅମାନଙ୍କୁ ଆଦେଶ ଦେଲେ ସେମାନେ ହସିଦେଲେ । ବଡ଼ଟି କହିଲା, "ଗୋଟାଏ ତୀରରେ ମୁଁ ତା ଆଖି ଫୁଟାଇଦେବି ।" ଦ୍ୱିତୀୟ କହିଲା, "ଏକା ଗଦାମାଡ଼ରେ ମୁଁ ତା ଜଙ୍ଘ ଭାଙ୍ଗିଦେବି ।" ତୃତୀୟ କହିଲା, "ମୋ ଖଣ୍ଡାର ସାମାନ୍ୟ ଆଘାତରେ ମୁଁ ତାକୁ ଦୁଇଗଡ଼ କରିଦେବି ।"

"ଏଗୁଡ଼ା ଅତି ବିରକ୍ତିକର, ନିଷ୍ଠୁର ଆଉ ଅସଭ୍ୟ । ମୁଁ ଏ ଗପ ଶୁଣିବି ନାହିଁ ।"

"ଗପ ତ ଗପ ।"

"ତା ବୋଲି ତମେ ମନଇଚ୍ଛା ଗପଟି କହିପାରିବ ନାହିଁ ।"

"କାହିଁକି ନୁହଁ ?"

"କାହିଁକି ନୁହଁ ? ଦେଖ, ବିଚାର କର । ତମେ ଏସବୁ କିମିତି କହି ପକେଇବ ? ମୁଁ ଗୋଟିଏ ପ୍ରକୃତ ଅସୁର ଆଉ ମୋର ଗୋଟିଏ ବିଧିବଦ୍ଧ ପ୍ରଶ୍ନ ଅଛି ଆଉ ମୁଁ ଠିକ୍ ପରିସ୍ଥିତିରେ ପହଞ୍ଚିଛି । ତମେ ମୋ ପ୍ରଶ୍ନଟା ଶୁଣିବା ଉଚିତ ଆଉ ଉତ୍ତର ଦବାକୁ ଚେଷ୍ଟା କରିବା ଉଚିତ, କିନ୍ତୁ ଏ ଗୁଡ଼ା କ'ଣ ?"

"ମୁଁ ତମକୁ ସତର୍କ କରିଦେଉଚି ।"

"ଠିକ୍ ଅଛି, ଠିକ୍ ଅଛି, ହେଲେ ଟିକେ ଜଲ୍‌ଦି ।"

''ଜଲ୍‌ଦି କେମିତି ହବ ? ଗପ ତା ବାଟରେ ଯିବ । ଯଦି ମୁଁ ଶୀଘ୍ର ସାରେ ବୋଲି ତମେ ଚାହୁଁଚ· ମଝିରେ ଇଆଡୁ ସିଆଡୁ ନ କହି ମନ ଦେଇ ଶୁଣ । ତା'ପରେ ରାଜାଙ୍କ ତିନି ପୁଅ ନିଜ ନିଜର ଅସ୍ତ୍ରଶସ୍ତ୍ର ଧରି ଘୋଡ଼ାରେ ଚଢ଼ିଲେ ଆଉ ଘଞ୍ଚ ଜଙ୍ଗଲ ଭିତରେ ଧସେଇ ପଶିଲେ । ଯେତେବେଳେ ସେମାନେ ଅସୁରୁଣୀଟିକୁ ଦେଖିଲେ ତା ସୌନ୍ଦର୍ଯ୍ୟରେ ଅଭିଭୂତ ହେଇଗଲେ । ସେ ଅସୁରୁଣୀ ଜଙ୍ଗଲର ସ୍ତ୍ରୀଲୋକମାନଙ୍କୁ ରଜାପୁଅମାନଙ୍କୁ ନଈକୁ ନେଇ ଗାଧେଇପାଧେଇ ସଫା କରିଆଣିବାକୁ କହିଲେ । ଜଙ୍ଗଲର ସ୍ତ୍ରୀମାନେ ତିନି ରଜାପୁଅଙ୍କୁ ନଈ ଭିତରକୁ ଟେକି ନେଇଗଲେ, ଆଉ ସେମାନେ ମଇଳା ଓ ଗନ୍ଧିଆ ଥିବାରୁ ତାଙ୍କୁ ପରିଷ୍କାର କରି ଗାଧେଇଦେଲେ । ତାପରେ ସେମାନେ ତିନିଭାଇଙ୍କୁ ତିନୋଟି ଝୁଡ଼ିରେ ଭର୍ତ୍ତିକରି ଅସୁରୁଣୀ ପାଖକୁ ଆଣିଲେ । ଅସୁରୁଣୀ କହିଲା, 'ବର୍ତ୍ତମାନ ତୁମ ଭିତରୁ କିଏ ମତେ ମାରିବାକୁ ଚାହୁଁଚ ?' ତିନି ଭାଇଯାକ ଏକସ୍ୱରରେ କହିଲେ, 'ମୁଁ ତୁମକୁ ବାହାହବାକୁ ଚାହେଁ ।' ବର୍ତ୍ତମାନ ମୋ ପ୍ରଶ୍ନ ହେଉଚି ଅସୁରୁଣୀ କ'ଣ କରିବ ?''

''କିନ୍ତୁ ତମେ ମତେ ତମ ସର୍ତ୍ତ କହିବା କଥା, ତମେତ ପ୍ରଶ୍ନ ପଚାରି ପାରିବନି ।''

''ମୁଁ ପାରିବି ।''

''ନାଃ ।''

ଏତିକି ବେଳକୁ କାର୍‌ଟା ଗିଅରରେ ଥିଲାବେଳେ ଇଞ୍ଜିନ୍ ବନ୍ଦ ହେଇଗଲା ଭଳି ସଶବ୍ଦେ ଧକ୍‌କା ଖାଇ ରହିଗଲା ଆଉ ମାହେଶୀ ଆଗକୁ ଛାଟି ହେଇ ପଡ଼ିଲେ । ପାଞ୍ଚ ନମ୍ବର ହାଇୱେ ଓପରେ ହଠାତ୍ ଧଡ଼ଧାଡ଼ କେଁ କାଁ ହେଇ ଟ୍ରକ୍, ବସ୍, ଜିପ୍, ସ୍କୁଟର୍ ସବୁ ଅକାମୀ ହେଇ ରହିଗଲେ, ସମସ୍ତଙ୍କ ଇଞ୍ଜିନ୍ ଏକା ସମୟରେ ବନ୍ଦ ହେଇ ଯାଇଥିଲା ।

ତା'ପରେ, ପବନରୁ ଗୋଟାଏ ସ୍ୱର ଫାଟିପଡ଼ି ମାଡ଼ିଗଲା ଚାରିଆଡ଼େ ।

ଠିକ୍ ସେତିକିବେଳେ, ଚାଟର୍ଡ଼ ବୋଇଂ ଉଡ଼ାଜାହାଜ ଭିତେରେ, ଫୌଲାଦ୍ ଇବ୍ରାହିମ୍ ତା ଲୋକମାନଙ୍କୁ ବୁଝେଉଥିଲା ।

''ଚାରିଟା କାର୍ ଅପେକ୍ଷା କରୁଥିବ ଆମେ ଭୁବନେଶ୍ୱର ଛୁଇଁଲା ବେଳକୁ । ପ୍ରତି ଦଳର ଦୁଇଟା କରି କାର୍, ପ୍ରତି ଦଳରେ ଦଶଜଣ । ଡ୍ରାଇଭର ଆଉ ବାଟଦେଖିବା ଲୋକ ଦମଦମରେ ଚଢ଼ିବେ । ଆମେ ବି ସେଠି ପ୍ଲେନ୍ ବଦଳାଇବା । ପରିସ୍ଥିତିକୁ ଗୋଳମାଳିଆ ରଖିବା ପାଇଁ । ପ୍ରଥମ ଦଳ ସି.ଏମ୍.ଙ୍କ ଘରକୁ ଯିବ ଆଉ ଦ୍ୱିତୀୟ ଦଳ ଯିବ ମହାସ୍କନ୍ଧ ଘରକୁ । ପ୍ରଶ୍ନ ନାହିଁ, ଡେରି ନାହିଁ, ଗୁଳିମାରି ଧସେଇ ପଶିଯିବ, ତମ ଲୋକକୁ ମାରି ପକେଇ ଆସିବ । ସି.ଏମ୍. ତା ସବୁ କାମ ବାତିଲ କରି ତା

କ୍ୱାର୍ଟରରେ ବସିଚି । କୋଡ଼ିଏ ପୁଲିସ୍‌ବାଲା ବାଡ଼ିଧରି, ଦଶ .୩୦୩ ଧରି । ଗୋଟାଏ ଇନ୍‌ସପେକ୍ଟର, ଗୋଟିଏ ଏସ୍.ଆଇ. ରିଭଲ୍‌ଭର ଧରି । ବାସ୍ । ଆଉ ସେ ମହାସ୍କନ୍ଧ ତା ଘରେ ଲୁଚିଚି । ଛ'ଟା ଭଡ଼ାଟିଆ ତାଙ୍କୁ ଜଗିଚନ୍ତି, ଦୁଇ ଦାଣ୍ଡ ଦୁଆର ଭିତରେ, ଦୁଇ ବାଡ଼ି ଦୁଆର ଭିତରେ, ଦୁଇ ଛାତ ଉପରେ ସମସ୍ତଙ୍କ ପାଖରେ ଏ.କେ. ୪୭ । ଏଆରପୋର୍ଟକୁ ଫେରିବ ତିରିଶ ମିନିଟ୍‌ରେ । ଖବର ପୁଲିସ୍ ଜାଣିଲା ବେଳକୁ ଆମେ ଉଡ଼ି ଯାଇଥିବା । ଏମ୍.ପି.ରେ ପାରାଚ୍ୟୁଟ୍ କରି ଓହ୍ଲେଇ ପଡ଼ିବା, ପ୍ଲେନ୍ ଚାଲିଯିବ ବମ୍ବେ । ହେଲା ?''

ମହାସ୍କନ୍ଧଙ୍କର ଛୋଟ ଉଡ଼ାଜାହାଜଟା ତା ମନ୍ଥର ଗତିରେ ଗର୍ଜି ଗର୍ଜି ଉଡ଼ି ଚାଲିଥିଲା ଆକାଶରେ ଦମ୍‌ଦମ୍ ଏୟାରପୋର୍ଟ ଆଡ଼େ । ମହାସ୍କନ୍ଧ ତାଙ୍କର ଯୋଜନା ବୁଝେଇ ଦେଇଥିଲେ ।

''କିଛି ଅସୁବିଧା ନାହିଁ । ଆମେ ପ୍ଲେନ୍‌ରେ ରହି ଦମ୍‌ଦମ୍ ଏୟାରପୋର୍ଟ ଚାରିପଟେ ଘୂରିବୁଲିବା ସେମାନେ ଏୟାରପୋର୍ଟ ପାଖେଇବା ପର୍ଯ୍ୟନ୍ତ । ଟାୱାର୍‌ରୁ ତାଙ୍କ ଲ୍ୟାଣ୍ଡିଂ ପ୍ୟାଟର୍ଣ୍ଣ ଶୁଣିବାମାତ୍ରେ ଆମେ ପାଖେଇଯିବା । ଆଉ ତାଙ୍କୁ ଦେଖିବାମାତ୍ରେ ଆକାଶେ ଆକାଶେ ଉଡ଼େଇ ଦେଇ ଦିଲ୍ଲୀ ଆଡ଼େ ବାହାରିଯିବ । କେହି କିଛି ଜାଣି ପାରିବେନି କ'ଣ ହେଲା । ହେଲା ?''

ସେମାନଙ୍କ ଉଡ଼ାଜାହାଜମାନେ ଉଡ଼ିଚାଲିଥିବା ବେଳେ ସମୟ ଆସିଗଲା । ହଠାତ୍ ତାଙ୍କ ଇଞ୍ଜିନ୍‌ମାନ ବନ୍ଦ ହେଇଗଲା, ତାଙ୍କ ତଣ୍ଟି ସବୁ ରୁନ୍ଧିହେଇ ଗଲା । ଆଉ ତାଙ୍କ ଉଡ଼ାଜାହାଜମାନ ଆକାଶରେ ଝୁଲି ରହିଗଲା । ସେତିକିବେଳେ ସେ ସ୍ୱରର ବିସ୍ଫୋରଣ ହେଲା ବଜ୍ର ନିନାଦରେ ।

## ॥ ୧୨ ॥

## ଟଣାଧନୁର ବାଣ ଅବ୍ୟର୍ଥ

ଯେତେବେଳେ ସୃଷ୍ଟି ସମୟ ୦.୩ ୪ଜ .୭୫କ ୨୦ମ ୪୦୧ ମଧ୍ୟାହ୍ନ ଜଗନ୍ନାଥ ଆଉ ଅନ୍ୟାନ୍ୟ ପୃଥିବୀ ସମୟ ଗ୍ରହସାରା, ସେତେବେଳେ ଗୋଟାଏ ଚମତ୍କାର ପୃଥିବୀରେ ଘଟିଲା ।

ସବୁ ସରବରାହ ବ୍ୟବସ୍ଥା ଅକାମୀ ହେଇଗଲେ ।

ଟେଲିଫୋନ୍ ଅକାମୀ ।

ରେଡିଓ ସଞ୍ଚାରଣ ଅକାମୀ ।

ଟି.ଭି. ଟ୍ରାନ୍ସମିଟର ଅକାମୀ ।

ସରବରାହ ଉପଗ୍ରହ ଅକାମୀ ।

ରାଡ଼ାର ଅକାମୀ ।

ଭୋକାଲ କର୍ଡ଼ ସ୍ଥାଣୁ ହେଇଗଲା ।

ସେରିବ୍ରାଲ୍ କର୍ଟେକ୍ସରେ ବ୍ରୋକାଙ୍କ ଟ୍ରିଗର ପଥର ପାଲଟିଗଲା ।

ତା ପରେ ଆହୁରି କିଛି ଘଟିଲା ।

ସବୁ ବିଜୁଳି ବ୍ୟବସ୍ଥା ବନ୍ଦ ହେଇଗଲା ।

ସବୁ ମଟରଗାଡ଼ି ବନ୍ଦ ହେଇଗଲା ।

ସବୁ ରେଳଗାଡ଼ି ବନ୍ଦ ହେଇଗଲା ।

ସବୁ ଉଡ଼ାଜାହାଜ ବନ୍ଦ ହେଇଗଲା ।

ସବୁ ରକେଟ୍ ବନ୍ଦ ହେଇଗଲା ।

ପୃଥିବୀର କେନ୍ଦ୍ରମଣ୍ଡଳ ଥଣ୍ଡା ହେଇଗଲା ।

କ'ଣ ହେଲା ବୋଲି କେହି କିଛି ବୁଝିବା ପୂର୍ବରୁ ସବୁ ସରବରାହ ବ୍ୟବସ୍ଥା ଝିଂ ଝିଂ ହେଇଉଠିଲା ।

ସବୁ ବିଜୁଳି ବ୍ୟବସ୍ଥା ସଜାଗ ହେଇଗଲା ।

ସବୁ ରେଡିଓ ବାଜିବାକୁ ଲାଗିଲା ।

ସବୁ ଟେଲିଭିଜନ ଜଳିଉଠିଲା ।

ସବୁ ପ୍ଲେକ୍ସସ୍ ଆଉ ଗ୍ୟାଙ୍ଗଲିଅନ ଚେଇଁଉଠିଲେ ଆଉ ମନ ଉଚ୍ଚାଟ ହେଲା ।

ତା ପରେ ଚମତ୍କାରଟି ଘଟିଲା ।

ପ୍ରତ୍ୟେକ ଟି.ଭି. ଆଉ ରେଡିଓରେ, ପ୍ରତ୍ୟେକ ଟେଲିଫୋନ୍ ଆଉ ଉପଗ୍ରହ ବ୍ୟବସ୍ଥାରେ ସେ ସ୍ୱର ଆସିଲା । ଲୋକେ ତାକୁ ଟି.ଭି.ରେ ଶୁଣିଲେ, ରେଡିଓରେ ଶୁଣିଲେ । ନିଜ ଭିତରେ ସେ ସ୍ୱର ଫୁଟିବାର ଶୁଣିଲେ, ଅଫିସ୍‌ରେ ବସିଲାବେଳେ, ଖେତ ଚଷୁଥିଲାବେଳେ, ରାସ୍ତାରେ ଚାଲୁଥିଲାବେଳେ, ମେଜରେ ଶୋଇଥିଲାବେଳେ, ସେମାନେ କ୍ଲାସ୍‌ରେ ଶୁଣିଲେ, ଖେଳପଡ଼ିଆରେ ଶୁଣିଲେ, ନିଦରେ ଶୁଣିଲେ, ଚେଇଁଥିବାବେଳେ ଶୁଣିଲେ, ଯୋଉଠି ଯିଏ ଯାହା ଥିଲେ ବି ସେ ସ୍ୱର ଶୁଣିବାକୁ ପାଇଲେ ।

ଆଉ ସେମାନେ ତଟସ୍ଥ ହେଇ ଚାହିଁଲେ ଆକାଶକୁ ଆଉ ଆକାଶ ଡେଇଁ ସ୍ୱର୍ଗକୁ ।

ଜଙ୍ଗଲର ହରିଣମାନେ କାନ ଦି'ଟା ଟେକି ଆକାଶଆଡ଼କୁ ଚାହିଁ ନାଚି ପକେଇଲେ ହରିଣଡିଆଁ । ମୟୂରମାନେ ପୁଚ୍ଛ ଖୋଲି ନାଚିଗଲେ ମୟୂରଚାଲି । ଜିଆନାଡ଼ମାନେ ମାଟି ଚହଲାଇ ବାହାରକୁ ଝୁଲିପଡ଼ିଲେ । ତିମିମାଛ ପାଣି ଭାଙ୍ଗି ଆକାଶକୁ ପାଣିର ପିଚକାରି ଛାଡ଼ିବାକୁ ଲାଗିଲେ ।

ସେ ସ୍ୱର ଥିଲା ଘଡ଼ଘଡ଼ି ପରି ଆଉ ପ୍ରେମିକର ନରମ ମର୍ମର ପରି । ଲାଗୁଥିଲା ସାହାରା ଖରାରେ ବରଫ ପାଣି ପିଇଲାପରି ଆଉ ଆର୍କଟିକ୍ ଥଣ୍ଡାରେ ଜଙ୍ଗଲ ପୋଡ଼ିର ଗରମ ପରି ସେଥିରେ ଥିଲା ସୂର୍ଯ୍ୟକିରଣର ସମସ୍ତ ରଙ୍ଗ, ଆହୁରି ଅନେକ କିଛି । ସଙ୍ଗୀତର ସମସ୍ତ ସ୍ୱର ଛଡ଼ା ଆଉବି ଅନେକ ଅଶୁଣା ସ୍ୱର ଥିଲା ସେଥିରେ । ସେ ସ୍ୱର ସମସ୍ତଙ୍କ ଭିତରେ କହୁଥିଲା,

*ମୁଁ ବାବାବୁଗି, ଆସିଚି ପୁଣି ତୁମ ରକ୍ଷାପାଇଁ*
*ଯେ ବିବର୍ତ୍ତନର ସମୟ*
*ନୂଆ ମଞ୍ଜିର ସମୟ*
*ନୂଆ ନାଚ ଗୀତର ସମୟ*
*ସମୟ ଆସିଚି ପରିତ୍ୟାଗର*
*ମୁଁ ସନ୍ଦିତ ହେବି ଆଉ ଅଦ୍‌ଭୁତ ଶୁଆ*
*ଉଡ଼ିଆସିବ*
*ତୁମେ ଚାହିଁବ ବାହାରି ଦେଖିବାକୁ*
*ଆଉ ମୁଁ ଗଢ଼ାହେବି ଆଉଥରେ*
*ଉଠ ଆନନ୍ଦକର ତୁମେ ସବୁ ମୁକ୍ତି ପାଇବ*
*ଉଠ ଆନନ୍ଦକର ତୁମେ ସବୁ ରକ୍ଷା ପାଇବ*
*ଉଠ ଯାଅ ବହୁତ କାମ ଅଛି*
*ଆବିର୍ଭାବ ତଥ୍ୟ*
*ମନେରଖ*
*୦.୩ବ ୪ଜ .୭୫କ ୨୦ମ ୪୦୧.୧ ସୂକ୍ଷ୍ମ ୩ ସୃଷ୍ଟି ସମୟ*
*ମନେରଖ*
*୪ କାବୁଜ ୧ମାତା ୬ଓଡା ୮କ୍ୱମ୍ ୯ସ ଲକ୍ଷ୍ୟସମୟ ।*

*ପାଞ୍ଚଗୁଣ ଦଶମିକ ତାରା ଉଦୟର ।*

*ମନେରଖ*

*୮୬ .୧୦୪ ତାରା ଆଡ଼େ ତାରା ଦେଖା ପଥରଠୁଁ*

*୭୦ ୫୧ ୧୯ .୪୯ ବରଫ ସମୁଦ୍ରଠୁଁ*

*କଳା ପଥର ରାଜାର ନେଳି ପାହାଡ଼ରେ ।*

*ଲେଖ ଲେଖ ଲେଖ ।*

ଧରାମଣ୍ଡଳ ଆଶ୍ଚର୍ଯ୍ୟ ହେଇ ଚୁପ୍ ହେଇଗଲା । ପରେ ଫୁସ୍‌ଫାସ୍ ଓ କୁଁ କାଁ ଆରମ୍ଭ ହେଲା । ଆଉ ବହୁତ ଦୂରରୁ ଘଡ଼ଘଡ଼ିର ଶବ୍ଦ ମାଡ଼ି ଆସିଲା ।

ଲୋକେ ଉତ୍ତେଜିତ ହେଇଯାଇଥିଲେ, ଲୋକେ ଡରିଯାଇଥିଲେ, ଲୋକେ ବାଉଳା ହେଇଯାଇଥିଲେ । ଅଫିସ୍‌ରେ ସେଇକଥା, ଘରେ ସେଇକଥା ମନ ଭିତରେ ସେଇକଥା । ସେମାନେ ସାରା ଦିନ ଟି.ଭି.ରେ ଖବର ଶୁଣିଲେ ଆଉ ରେଡିଓଟାବି ତା ସଙ୍ଗେରେ ଖୋଲା ରଖିଲେ । ସେମାନେ ଚପା ଗଳାରେ କଥାବାର୍ତ୍ତା ହେଲେ ଆଉ ଭବିଷ୍ୟତ ବିଷୟରେ କଳ୍ପନା କଲେ । ସାରା ପୃଥିବୀରେ ସମସ୍ତେ ଯେତେସମୟ ସମ୍ଭବ ଘରବାହାରେ ଖୋଲାରେ ବୁଲିଲେ ଆଉ ଆକାଶକୁ ଥରକୁ ଥର ଚାହିଁଲେ ଆଉ କିଛି ସଙ୍କେତ ପାଇଁ । ଯୋଉମାନେ ଆକାଶରେ ନେଳି ଜୁଆର ଆଉ ଶନିବଳୟରେ ହଟଚମଟ ଦେଖିଥିଲେ ସେମାନେ କଥା କହିବା ବନ୍ଦ କଲେନି ଆଉ ଯୋଉମାନେ ଦେଖି ନ ଥିଲେ ସେମାନେ ସର୍ବହରା ପରି ମ୍ରିୟମାଣ ଥିଲେ । ଆତଙ୍କବାଦୀମାନେ ଲୁଚି ରହିଲେ, ଚୋର, ରେପିଷ୍ଟ ଆଉ ସବୁଧରଣର ଦୋଷୀମାନେ ଏପଟ ସେପଟ ଧାଉଁଥିଲେ ଅତି କାତର ହେଇ ଭୂତ ଦେଖିଲା ପରି ।

''ଆମର କ'ଣ ହବ ?'' ସମସ୍ତେ ପଚାରୁଥିଲେ ।

ଲୋକେ ଯୋଉଠି ହବ ସେଠିକି ଯିବାକୁ ପ୍ରସ୍ତୁତ ହେଲେ ସବୁ ସମ୍ବଳ ଝାଡ଼ିଝୁଡ଼ି ଏକାଠି କରି ।

''ହେ ଭଗବାନ୍,'' ସେମାନେ କହିଲେ ।

କୁଆଡ଼େ ? କୁଆଡ଼େ ? ଚିତ୍କାର ଶୁଭିଲା ।

ତାରା ଦେଖା ପଥର କୋଉଠି ?

ବରଫ ସମୁଦ୍ର କୋ୍ଉଠି ?

କୋଉଠି ନେଳି ପାହାଡ଼ ଆଉ କଳା ପଥର ରାଜା ?

କୋଉଠି କ'ଣ ଥିଲା ?

''ବରଫ ସମୁଦ୍ର ହୁଏତ ମେରୁ । ଲେଖାଟି ୧୯.୪୯ ଉତ୍ତର ଅକ୍ଷାଂଶ ସହ ମେଳ ଖାଉଚି ।''

''ତାରା ଦେଖା ପଥର କୋଉଠି ଯେ, ଧେତ୍ ?''

''ଯଦି ଏଇଟା ପେରୁର ନାଜ୍‌କା ହେଇଥାଏ ତେବେ ଅବତରଣ ମାଲିରେ ।''

''ଏଭରେଷ୍ଟ ବି ହେଇପାରେ, କିନ୍ତୁ ତା ହେଲେ ଅବତରଣ ପ୍ରଶାନ୍ତ ମହାସାଗରରେ ହବ ।''

''କାଞ୍ଚନଜଙ୍ଘା ବି ସେଇଆ ।''

''ଗୀଜାର ସ୍ଫିଙ୍କ୍‌ସ୍ ବି ହେଇପାରେ । ତା ହେଲେ ଓହ୍ଲେଇବ ଦକ୍ଷିଣ ଚୀନୀୟ ସାଗର ? ନା ।''

''ଇଷ୍ଟର ଦ୍ୱୀପପୁଞ୍ଜ ଯଦି ହୁଏ ?''

''ଅବତରଣ ଧରାଯାଇପାରେ ଦକ୍ଷିଣ ଆଟଲାଣ୍ଟିକ୍‌ରେ ।''

''ଏଇଟା ଇକ୍ୱେଡର୍‌ର ମାଚାଲା ହେଇପାରେ ଆଉ ଅବତରଣ ପୁଣି ମାଲିରେ ।''

''ତା ହେଲେ ସେଇଟା ମାଲି ହେଇଥିବ ।''

''କିନ୍ତୁ ନେଳି ପାହାଡ଼ ଆଉ କଳା ପଥର ରାଜା କୋଉଠି ?''

''ଯାଞ୍ଚ ଆରମ୍ଭ କର ।''

''ସୁପର କମ୍ପ୍ୟୁଟରରେ ମେଳ ଖାଉନି ।''

''ଜେରୁଜେଲମ ବି ହେଇପାରେ ଆଉ ଅବତରଣ ଫିଲିପାଇନ୍‌ସ୍‌ରେ ।''

''ଆଚ୍ଛା ବରମୁଡ଼ା ତ୍ରିକୋଣ ବିଷୟରେ କ'ଣ ଭାବୁଚ ? ବା ମକ୍କା ବା ଏଥେନ୍‌ସ ବା ଲକ୍ସର ବା ସାକ୍କାରା ବା ସାଇନାଇ ଶୃଙ୍ଗ ବା ମାଛୁ ପିଛୁ ବା ଗ୍ରାଣ୍ଡ୍‌କାନିୟନ୍ ବା କିଲିମାଞ୍ଜାରୋ ବା ବେଥେଲେହେମ୍ ବା ଆଙ୍କୋର୍‌ଭାଟ୍ ବା ଆଟ୍‌ଲାଣ୍ଟିସ୍ ବା ଆକାପୁଲ୍‌କୋ ବା ଟାସ୍ସିଲି ପର୍ବତ ବା ଗୁଆଟେମାଲା ବା ମେଂଫିସ୍ ବା ମାରାକାଇବୋ ହ୍ରଦ ବା ସାକ୍‌ସାଇହୁଆମାନ୍ ବା ଟିଆହୁଆନାକୋ ବା ଫାଲ୍‌କନ୍ ରକ୍ ବା...''

''ଧାତ୍ ତେରିକା ।''

''କ'ଣ କରିବା ?''

"ତାରା ଦେଖା ପଥର । ଷ୍ଟୋନ୍‌ହେଞ୍ଜ୍‌କି ? ତା ହେଲେ ଅବତରଣ ସ୍ଥାନଟି, ଦେଖିବା, ହେଇଟି ଗୋଟିଏ ଜାଗା, ପୁରୀ ବୋଲି ।"

"ସୂଚନା ମଗାଅ ।"

"ହେଇଟି, ସୁପରରେ ଦେଖ । ଭାରତରେ, ଓଡ଼ିଶା ।"

"କିନ୍ତୁ କେଳି ପାହାଡ଼ ?"

"ଅପେକ୍ଷାକର, ଅଧିକ ସୂଚନା ଆସୁଚି । ସେଠି ଗୋଟାଏ ମନ୍ଦିର ଅଛି ।"

"କିନ୍ତୁ ଦେଖ । ପରଦାକୁ ଦେଖ । ତା' ଭିତରେ କୌଣସି ପଥର ମୂର୍ତ୍ତି ନାହିଁ । କାଠ ମୂର୍ତ୍ତି । ଏଇଟା ନୁହେଁ ତେବେ ।"

"କଳାପଥର ଠାକୁରକୁ ଖୋଜ । ଭାରତୀୟମାନଙ୍କର ତ ଶହ ଶହ ପଥର ମୂର୍ତ୍ତି ଅଛି ।"

"ଆଃ, ଏଇଠି, ପାହୁଣ୍ଡେ ବାଟରେ, ରାଜ୍ୟର ରାଜଧାନୀରେ, ଜାଗାଟାର ନାଁ ଭୁବନେଶ୍ୱର । ସେଇଠି ଗୋଟାଏ ଶିଉଳିଲଗା ମନ୍ଦିର ଅଛି ଯେଉଁଟା କି କେଳି ପାହାଡ଼ ହେଇପାରେ ।"

"ମୂର୍ତ୍ତି, ମୂର୍ତ୍ତି ବିଷୟରେ ଖବର କାଢ଼ ।"

"ଏକଦମ୍ ଲକ୍ଷ୍ୟଭେଦ । ଏଇଠି ଗୋଟିଏ କଳାପଥରର ବିଗ୍ରହ ଅଛି ଯାହାକୁ କହନ୍ତି ଲିଙ୍ଗମାନଙ୍କର ରାଜା ।"

"ରାଜା ? କଳା ପଥର ? ଏଇଟା ଠିକ୍ ଜାଗା ।"

"କିନ୍ତୁ ଏଇଟାତ କମ୍ପାସ ମାପରୁ ବେଶ୍ ଦୂର ।"

"ଅଳ୍ପଦୂର ସତ କିନ୍ତୁ ଏଇଟାଇ ଠିକ୍ ଜାଗା । କମ୍ପ୍ୟୁଟରରେ ଏଇଟି ସବୁଠୁ ବେଶୀ ମେଳ ଖାଉଚି । ଏଇଟା ହିଁ । ଠିକ୍ ଅଛି । ଖବର ଛାଡ଼ିଦିଅ ।"

"ଐତିହାସିକ ପରିବର୍ତ୍ତନ ବିଷୟରେ କ'ଣ କରାଯିବ ?"

"ଭୁଲିଯାଅ ବାବୁ । ସମୟ କାହିଁ ? ଏଥର ଲାଣ୍ଡିଂ ସମୟ ଉପରେ କାମ କରାଯାଉ । ଚାଲ ଚାଲ ଚାଲ ।"

ଆହା, ଆହା, ଆହା । ଏଇଟାଇ ମୁଁ ଦେଖିବାକୁ ଭଲପାଏ । ତୁମେ ଭାବୁନାହଁକି ମୁଁ ଯେତେବେଳେ ପହଞ୍ଚିବି ମନ ପୂରିଲାପରି ଚମତ୍କାର ଦୃଶ୍ୟଟେ ହବ, ନା କ'ଣ ? ଆରେ ମୁଁ ସେଗୁଡ଼ାଙ୍କ ଭାଷା ବି କହୁଚି, ହେଁ ?

ତାଙ୍କ ଭାଷାରେ, ସତେ ? ଏଥର ଶୁଣ : ସେମାନେ ଭୁଲଜାଗା ବାଛିଚନ୍ତି ।

ହ୍ୟାଁ ! ତା ହେଲେ ଆମେ କ'ଣ କରିବା ?

ସେମାନେ ଡିକୋଡ୍ କରି ବୁଝିପାରିବା କଥା । ଯଦି ସେମାନେ କରିପାରୁ ନାହାନ୍ତି, ସେମାନେ ତୁମ ପାଇଁ ପ୍ରସ୍ତୁତ ନୁହନ୍ତି ।

ମୁଁ ଓହ୍ଲେଇବି ଗୋଟାଏ ଶୂନ୍‌ଶାନ ରାସ୍ତାରେ ? ନା, ଜମା ନୁହେଁ । ତାଙ୍କର, କ'ଣ ତାକୁ କହୁଚନ୍ତିଟି, ହଁ ସୁପର୍ କମ୍ପ୍ୟୁଟର, ତା ଭିତେରେ ଧସେଇ ପଶୁନ ।

ନିୟମ ୯୧୩୨୧ ଅନୁଯାୟୀ ବର୍ତ୍ତମାନ ପର୍ଯ୍ୟନ୍ତ କୌଣସି ହସ୍ତକ୍ଷେପ କରାଯାଇ ପାରିବ ନାହିଁ । ତାଙ୍କୁ ଯୋଗ୍ୟ ହବାକୁ ହବ ନିଜ ଶକ୍ତିରେ ।

ଧାତ୍ ।

ଅଭଦ୍ର ଭାଷା ବ୍ୟବହାର କର ନାହିଁ ।

ହ୍ୱାଇଟ ହାଉସ୍‌ର ତାଙ୍କ ଚୌକିରେ ଆମେରିକାର ରାଷ୍ଟ୍ରପତି ବିବ୍ରତ ହେଇ ବସିଥିଲେ ।

''ଭାରତ କାହିଁକି ?'' ସେ ଗୁଡୁରୁ ଗୁଡୁରୁ ହେଲେ ।

''ଆମେ ସେମାନଙ୍କୁ ସାରା ଆକାଶ ନିରେଖି ଖୋଜୁଚୁ ଏବେ,'' ନାସା କହିଲା । '' ଆମେ ସେମାନଙ୍କୁ ପୁରୁଣା ଭାଷାଗୁଡ଼ିକ ସହ ପୃଥିବୀର ସମସ୍ତ ଭାଷାରେ ସୂଚନା ପଠାଇ କେପ୍ କେନେଡ଼ି ବା ନେଭାଡ଼ା ବା ୱାଶିଂଟନରେ ଅବତରଣ କରିବାକୁ କହୁଚୁ । ଆମେ ସେମାନଙ୍କୁ ଜାଗାର ସ୍ଥିତି ମାପ ବି ଦଉଚୁ ।''

''ଭାରତ କାହିଁକି ?'' ରାଷ୍ଟ୍ରପତି ନିଜକୁ ନିଜେ ପଚାରିଲେ ।

''ତାରକା ଯୁଦ୍ଧର ସମସ୍ତ ଅସ୍ତ୍ର ଆମେ ମହାକାଶରେ ଖଞ୍ଜିଦେଇଛୁ,'' ପେଣ୍ଟାଗନ କହିଲା । ''ଆମେ ଆମର ଅଧା ନୌଭେଳା ବଙ୍ଗୋପସାଗର ଆଡ଼କୁ ପଠାଇ ଦେଇଛୁ । ବି-52 ଓ ଷ୍ଟେଲ୍‌ଥ୍ ବମ୍ଵରଯାକ ଲକ୍ଷ୍ୟଆଡ଼କୁ ମୁହଁକରି ଅଛନ୍ତି । ଆପଣଙ୍କ ଆଦେଶକୁ ଅପେକ୍ଷା କରୁଛୁ ।''

''ଏତେସବୁ ଜାଗା ଭିତରୁ ଭାରତ ହିଁ ଥିଲା ? ପୁଣି କ'ଣ ହେଲା ?''

''ଆମ ସୂଚନା ରଶ୍ମି ବଙ୍କେଇ ଆମ ପାଖକୁ ଫେରେଇ ଦିଆଯାଇଛି । ଆମ ଆର୍ମି, ନେଭି ଓ ଏୟାରଫୋର୍ସ ସମସ୍ତଙ୍କୁ ନିଶ୍ଚଳ କରିଦିଆଯାଇଛି ।''

''ହେ ଭଗବାନ୍ ! ମୋ ପ୍ଲେନ୍ ଉଡ଼ିବ କି ନାହିଁ ? ମତେ କ'ଣ ସେ ଅଲକ୍ଷଣା ଦେଶକୁ ଚାଲିଚାଲି ଯିବାକୁ ହବ ?''

ରାଣୀ ଖୁସୀ ଥିଲେ ।

''ଭାରତ ଆମର ଥିଲା, ନୁହେଁ ? ଆମେ ବନ୍ଧୁ, ମୁଁ ଭାବିପାରୁନି କାହିଁକି ପ୍ରଧାନମନ୍ତ୍ରୀ ଯିବେ । ସେ ଚାହିଁଲେ ଆସିପାରନ୍ତି, କିନ୍ତୁ ଆମେ ଯିବୁ, ଆମର ଯଦି ଠିକ୍ ମନେ ଅଛି, ଆମେ ସେମାନଙ୍କୁ ସ୍ୱାଧୀନତା ଦେଇଛୁ । ପୁରସ୍କାର ତାଲିକାରେ ସେଠାରେ ଜଣକୁ ରଖାଯାଉ । କାହିଁକି ଲୋକମାନେ ଭୟଭୀତ ହୋଇ ସହର ଛାଡୁଛନ୍ତି ? ସେମାନଙ୍କୁ ଭୟଭୀତ ନ ହେବାକୁ କୁହ । ଆମେ ଆମ ଭିଡିଓରେ ''ଇ.ଟି.'' ଦେଖିଲୁ । ଆମେ ଡରିଲୁନି । ତାଙ୍କୁ କହିଦିଅ ।''

''ଖବର । ଖବର ? ଓହ, ଖବର । ଦୁଶ୍ଚିନ୍ତା, ଚାରିଆଡ଼େ ଦୁଶ୍ଚିନ୍ତା । ମଣିଷ କ'ଣ କେବେ ବି ମୁକ୍ତ ହେଇପାରିବ ନାହିଁ ? ସେମାନେ କ'ଣ ଚାହାନ୍ତି ? ମୋ ରକ୍ତ ? ସାଧାରଣତନ୍ତ୍ରଗୁଡ଼ାକ ମୋ ସହ ରହିପାରିବେ ନାହିଁ କି ? ମୁଁ ଏ ସମସ୍ତ ଚିକ୍କାରଖୋର୍ ଜାତୀୟବାଦୀମାନଙ୍କୁ ଘୃଣାକରେ । ମୋ କହିବା କଥା ଚାଲ ମିଳିମିଶି ରହିବା । ଠିକ୍ ଅଛି । ଠିକ୍ ଅଛି ହୁଏତ ସେମାନେ ଆସିଗଲେ ଅବସ୍ଥା ବଦଳିଯିବ । ମୁଁ ପରିବର୍ତ୍ତନ ଅନୁଭବ କରୁଛି । ଆଉ ମୁଁ ତ ସବୁ ପରିବର୍ତ୍ତନ କରିସାରିଲିଣି । ହୁଏତ ମୁଁ ସେମାନଙ୍କର ଅଦୃଶ୍ୟ ବାର୍ତ୍ତା ସମୟ ପୂର୍ବରୁ ପାଇଯାଇଥିଲି । ସେମାନଙ୍କୁ ପେରେସ୍ତୋଇକା ଓ ଗ୍ଲାସ୍‌ନୋସ୍ତ ବିଷୟରେ କୁହ । ମାର୍କେଟ୍ ଇକୋନୋମି କଥା କୁହ । ପୃଥିବୀରେ ଆଉ କ'ଣ ଅଛି ଯେ ? ସେ ଯିଏ ବି ହୁଅନ୍ତୁ ତାଙ୍କୁ ଇଉନାଇଟେଡ ଷ୍ଟେଟ୍‌ସ୍ ଅଫ୍ ରୁଷିଆର ନିମନ୍ତ୍ରଣ ଦିଅ । ନା, ଆର୍ମି ନୁହେଁ, ନେଭି ନୁହଁ, କିଛି ନୁହଁ । ଆମେ ବହୁତ ବ୍ୟସ୍ତ । ମୁଁ କ୍ଲାନ୍ତ । କିନ୍ତୁ ମୁଁ ଯିବି, ସେ ବ୍ୟବସ୍ଥା କର ।''

''ଆମେ ପେରେସ୍ତୋଇକା ଓ ଗ୍ଲାସ୍‌କାସ୍ତ ଘୋଷଣା କରୁଛୁ, ଓଃ ସରି, ଆମେ ବର୍ଣ୍ଣ ପ୍ରଥାର ଉଚ୍ଛେଦ ଘୋଷଣା କରୁଛୁ । ସମସ୍ତ ମଧ୍ୟବର୍ତ୍ତୀ ରଙ୍ଗମାନଙ୍କ ସହ କଳା ଓ ଧଳା ପୁନଶ୍ଚ ଭାଇ ଭାଇ । ଆମେ ସମସ୍ତ ମଣିଷଙ୍କ ପାଇଁ ପୃଥିବୀର ଅନ୍ୟ ଯେକୌଣସି ସ୍ଥାନ ଅପେକ୍ଷା ଅଧିକ ସମାନ ସୁଯୋଗ ଘୋଷଣା କରୁଛୁ । କଳା ହେଇଥିଲେ ତ ଭଲ, ନ ହେଇଥିଲେ ବି ଚଳେଇନବୁ । ଆମେ ଘୋଷଣା କରୁଛୁ ଯେ...''

ଆମ ପାଖରେ କନଫୁସିଅସ୍‌ଙ୍କର, ମାଓଙ୍କର, ତିଆନାନ୍‌ମେନ୍‌ର ଏବଂ ସେଥିରେ ମୁଁ ମୋ ନାଁ ଯୋଡ଼ିବି କି, ଏ ସମସ୍ତଙ୍କର ବିଜ୍ଞତା ଅଛି । ଆମ ବିଜ୍ଞତା ଯୋଗୁ ଆମେ କିଛି ନ କରି ଅପେକ୍ଷା କରିବୁ ।

''ମୁଁ ତୁମକୁ ଉପପ୍ରଧାନମନ୍ତ୍ରୀ କରିଦେବି ପଟ୍ଟନାଏକ୍ କିନ୍ତୁ ସେମାନଙ୍କୁ ଦିଲ୍ଲୀକୁ ଆସିବା ପାଇଁ ଦିଆଯାଉ । ଭୁବନେଶ୍ୱର କ'ଣ ଗୋଟାଏ ଜାଗା ? ଏଇଟା ସେମାନଙ୍କ ପାଇଁ ଉପଯୁକ୍ତ ଜାଗା ନୁହେଁ । ସେମାନଙ୍କୁ ମନାଅ । ଆମ ଝଗଡ଼ା କଥା ଭୁଲିଯାଅ । ତୁମେ ମୋ ଭାଇ ?''

''ଯେମିତି ଆଫଜଲ ଖାଁ ?''

''ନା ନା ସତରେ । ମତେ କ'ଣ ମିଆଁ ବୋଲି ଭାବିଚ ? ଦିଅ, ଏଥର ମହାସ୍କନ୍ଧକୁ ରୋକିଦିଅ ।''

''ଆଉ ଇବ୍ରାହିମ୍ ?''

''ମୁଁ ହଟେଇଦେଲିଣି । ଗଲାଣି ଭାରି ଏକାଥରେ ଦୁବାଇ ।''

''ଆମେ ବନ୍ଧୁ ?''

''ହଁ, ଘଟଣା ବଦଳି ଗଲାଣି । ଚାଲ ହାତ ମିଳାଇବା ।''

''ଠିକ୍ ଅଛି ତେବେ । କିନ୍ତୁ ମୁଁ ସେମାନଙ୍କୁ ଦିଲ୍ଲୀ ପଠେଇ ପାରିବିନି । କିମିତି ପଠେଇବି ? ସେମାନେ କୋଉଠି ବି ମୁଁ ଜାଣିନି । ମୁଁ ତାଙ୍କୁ କହିବି କିମିତି ? ମୋ ହାତରେ କିଛି ବି ନାହିଁ ।''

''ତୁମେ ପାରିବନି ?''

''ନା ।''

''ତାହେଲେ ସେମାନଙ୍କ ସାଙ୍ଗେ ଡାଏସ୍ ଉପରେ ମୋ ଚଉକି ପକେଇବ ।''

''ଠିକ୍ ଅଛି ।''

''ସମସ୍ତେ ତମ ଆଡ଼କୁ ଧାଇଁଚନ୍ତି । ବଡ଼ ଜାଗାର ବନ୍ଦୋବସ୍ତ ଅଛି ତ ? ବଡ଼ ଜାଗାଟିଏର ବ୍ୟବସ୍ଥା କର ।''

''ସାର ! ସାର୍ !''

''ଏବେ କ'ଣ ହେଲା ?''

''ୱାଶିଂଟନ୍ ଓ ମସ୍କୋରୁ ଜରୁରୀ ବାର୍ତ୍ତା ।''

''ଠିକ୍ ଅଛି ପଟ୍ଟନାଏକ୍, ୱାଶିଂଟନ୍ ଓ ମସ୍କୋରୁ କିଛି ଆସିଲା ପରି ଲାଗୁଛି । ଶୀଘ୍ର ତ ଦେଖାହବ ।''

''ଧେତ୍ ତେରିକା, ଧେତ୍ ତେରିକା, ଏଠିକି ଆସୁଥିବା ସବୁ ଦେଶର ମୁଖ୍ୟଙ୍କ ପାଇଁ ବଡ଼ ଅଡ଼ିଟୋରିୟମ୍‌ଟିଏ ବି ନାହିଁ । ଆଉ ଯୋଉ କୋଟିକୋଟି ଲୋକ

ଆସୁଚନ୍ତି, ସେମାନଙ୍କ କଥା ତ ଛାଡ଼ । ମୁଁ କ'ଣ କରିବି ? ପ୍ରଧାନମନ୍ତ୍ରୀ ଘଟଣାସ୍ଥଳଟି ଦିଲ୍ଲୀକୁ ଉଠେଇ ନବାକୁ ଚାହାନ୍ତି । ଅନ୍ୟମାନେ ୱାଶିଂଟନ, ମସ୍କୋ, ଲଣ୍ଡନ, ପ୍ୟାରିସ୍, ରୋମ୍, ପ୍ରାହା, ଭିଏନା, ନାଇରୋବି, ଆଡ଼ିଲେଡ଼, କାଇରୋ, ଖାର୍ଟୁମ୍, ବାଡ଼େନ୍ ବାଡ଼େନ୍, ଜେରୁଜେଲମ୍, ମକ୍କା, ବ୍ରାସିଲିଆ, ବୁଏନ୍ସ୍ ଆରିଏସ୍, ହନୁଲୁରୁ, ଟୋକିଓ ବା ପେଇପିଙ୍ଗକୁ ଉଠାଇ ନବାକୁ ଚାହୁଁଚନ୍ତି । ଆହୁରି ଅନେକ ଜାଗାର ନାଁ ମୋର ମନେ ରହୁନି । ମୋ ପାଖରେ ଭଲ ଆଟ୍‌ଲାସ୍‌ଟିଏ ବି ନାହିଁ । ମୁଁ କ'ଣ କରିବି ?''

''ଆମକୁ ଅନୁମତି ଦିଅନ୍ତୁ... ।'' ମୁଖ୍ୟ ସଚିବ ରବିକାନ୍ତ ଦାସ କହିଲେ ।

''ସେମାନେ ମତେ ହିଁ ବାଛିଲେ, ମତେ ମତେ ! ମୁଁ ବଛାହେଲି, ସାରା ପୃଥିବୀରେ ମୁଁ ଜଣେ ହିଁ । ଆରେ କିଛି କବିଙ୍କୁ ଡାକ । ସେ କିଷ୍କିନ୍ଧା ମିଶ୍ରକୁ ଡାକ, କୁହ ତାକୁ ମୋ ଉପରେ କିଛି କବିତା ଲେଖୁ । ତା ଉପରେ ଥିବା ଧର୍ଷଣ, ଲାଞ୍ଚ ଆଉ ଡ୍ରଗ୍ କେସ୍ ମୁଁ ଉଠେଇଦେବି । ସେ ଯୋଉଠିକି ଚାହୁଁଚି ମୁଁ ତାର ବଦଳି ଫଦଳି କରିଦେବି । ଯାହା ଚାହିଁବ । ନ ହେଲେ ନାବିକ ସ୍କୁଲର ହେଡ୍‌ମାଷ୍ଟ୍ର, କି ଏ.ଜି., କି କେନ୍ଦ୍ର ସେକ୍ରେଟେରୀ, କି ସେ ପାଞ୍ଚଣ ମନ୍ତ୍ରୀକୁ ଡାକୁନ । ସେମାନେ ବି ତ କବିତା ଲେଖନ୍ତି । ସମସ୍ତିଙ୍କି ଡାକିଦଉନ ଗୋଟେ ଲକ୍ଷେଟଙ୍କିଆ କମ୍ପିଟେସନ୍ କରି, ଶଳେ ମାଡ଼ିଆସିବେ ବଳେ ।''

''ଯାହା ଚାହିଁବା କରିହବନି ସାର୍ ।''

''କାହିଁକି ହବନି ? ଏ ସବୁ ପରିବର୍ତ୍ତନର ସମୟ । ଯାହାକୁ କହନ୍ତି ପ୍ରକୃଷ୍ଟ ସମୟ । ନା ଏଇଟା ବିକୃତ ସମୟ ? ସବୁ ଗୋଳମାଳିଆ ହେଇ ଗୁଡ଼େଇତୁଡ଼େଇ ହେଇଯାଉଚି । ଏତେ କାମ ବାକି ଅଛି, ହାତରେ ଜମାରୁ ଚବିଶ ଘଣ୍ଟା । ମୁ କ'ଣ କରିବି ? କେହି କିଛି କରୁନାହାନ୍ତି । ସେ କବିକୁ ଡକେଇଲ କି ନାହିଁ । ଆମେ ଏଠି ଅଳସୁଆଙ୍କ ପରି କାହିଁକି ବସିଚେ, ଧେତ୍ !''

''ଜାଗା, ସାର୍ । ଜାଗା ଆଉ ଷ୍ଟେଜ୍ ତିନିଶ' ବିଦେଶୀ ଶାସନ ମୁଖ୍ୟ ବସିପାରିଲା ପରି ।''

''ଶହେ ସତ୍‌ଚାଳିଶି, ତିନିଶ' ନୁହଁ, ମୂର୍ଖ ।''

''ଷ୍ଟେଜରେ ଶାସନ ମୁଖ୍ୟଙ୍କ ହିସାବରେ କଡ଼ା ନିରାପତ୍ତା ବ୍ୟବସ୍ଥା ଦରକାର, ସିକ୍ୟୁରିଟିବାଲା ରହିବେ ।''

''ସେମାନଙ୍କୁ ଭିସା ଦବାରଇ ନ ଥିଲା । ସେମାନେ ମୋ ପାଇଁ କ'ଣ କରିଚନ୍ତି ? ମୁଁ ଗୋଟି ଗୋଟି କରି ଦେଖିଚି । ତାଙ୍କ ଭିତରୁ ଜଣେ ବି ମୋ ସୁଇସ୍ ବ୍ୟାଙ୍କ୍ ଆକାଉଣ୍ଟରେ କଣା ପଇସାଟାଏ ବି ରଖି ନାହାନ୍ତି । ମୁଁ ଆକାଉଣ୍ଟଯାକ କାହିଁକି ଯେ

ଖୋଲିଲି ଭଗବାନ୍ ହିଁ ଜାଣନ୍ତି। ଜଣେ କେହି ବି ମତେ ଥରେ ତାଙ୍କ ଦେଶକୁ ମୋଫତରେ ବୁଲିବାକୁ ବି ଡାକି ନାହାନ୍ତି !''

''କିନ୍ତୁ ସାର୍...''

''ମୁଁ ସେମାନଙ୍କୁ ମଞ୍ଚ ଉପରେ ଜାଗା ଦେବିନି। ସେମାନେ ଦର୍ଶକମାନଙ୍କ ମଝିରେ ବସନ୍ତୁ। ତାଛଡ଼ା ମୁଁ ସେମାନଙ୍କୁ ନିରାପତ୍ତା ଯୋଗାଇପାରିବି ନାହିଁ। ସେମାନେ ନିଜ ବ୍ୟବସ୍ଥା ନିଜେ କରନ୍ତୁ। ମୁଁ ଶସ୍ତା ନୁହେଁ। ପ୍ରଧାନମନ୍ତ୍ରୀ ବି ସେମାନଙ୍କ ସହ ବସନ୍ତୁ। ମଞ୍ଚ ଉପରେ ମୁଁ, ଭାରତର ରାଷ୍ଟ୍ରପତି ଓ ବାବାବୁଗି ରହିବେ। ତମେ ଯଦି ଚାହୁଁଚ ମୋ ପଛପଟକୁ ଚଉକିଟେ ପକାଇ ବସିପାର, ପାଣିପାଣି ଦବାକୁ, ମାଇକ୍ ଟେକିବାକୁ ଦରକାର ହେଇପାରେ।''

''ଧନ୍ୟବାଦ୍ ସାର୍,'' ମୁଖ୍ୟସଚିବ କହିଲେ, ''କିନ୍ତୁ ସଭାସ୍ଥଳର କଥା କ'ଣ ହେଲା ?''

''ଠିକ୍ ଅଛି, ଠିକ୍ ଅଛି। ତମେ ଯଦି କହୁଚ କଳିଙ୍ଗ ଷ୍ଟାଡିୟମ୍‌ଟି ଛୋଟ ହବ, ଆମେ ଏକାମ୍ର କାନନରେ କରିବା, କ'ଣ ଅଛି।''

''ଜାଗାଟା ନଷ୍ଟ ହେଇଯିବ।''

''ଆମେ ଆଉଥରେ ଗଢ଼ିଦବା, ଧାତ୍। ଆଗେଇଚାଲ। ସମ୍ପୂର୍ଣ୍ଣ ଭାବେ। ସେ ମୁଣ୍ଡିଆ ଓ ହ୍ରଦକୁ ବି ନେଇଯାଅ। ମଞ୍ଚଟି ତିନିଶ'ଙ୍କ ପାଇଁ ତୁମେ ଯେମିତି ଚାହୁଁଚ କର। ଠିଆ ହୁଅନି, ଦୌଡ଼।''

''କିନ୍ତୁ ସାର୍'' ମୁଖ୍ୟସଚିବ ରବିକାନ୍ତ ଦାସ, ଆଗକୁ ଫାଇଲଟିଏ ବଢ଼େଇ ଦେଇ କହିଲେ, '' ଏଇଟା ଗୋଟିଏ ଛୋଟ କଥାଟିଏ। ଶହେ ଏକରର ଛୋଟ ସଂରକ୍ଷିତ ଜଙ୍ଗଲଟିରୁ ଗଛକାଟି ମଞ୍ଚତିଆରି କରିବା ପାଇଁ ଅର୍ଡ଼ର୍ କରିବା କଥା।''

''ହଁ। ଏଇଠିଇ ତା ହେଲେ କଥାର ମଞ୍ଜି,'' ମୁଖ୍ୟମନ୍ତ୍ରୀ ପଟ୍ଟନାଏକ୍ ରବିକାନ୍ତଙ୍କୁ ଅର୍ଥପୂର୍ଣ୍ଣ ଭାବେ ଦେଖି କହିଲେ, ''କେତେ ?''

''ଆପଣଙ୍କର ଦଶ ପର୍‌ସେଣ୍ଟ୍ ସାର୍।''

''ତମର ?''

''ଏକ।''

''ମତେ ହସାଅନି।''

''ଅନେକ ଲୋକ ଅଛନ୍ତି ସାର୍। ଜଙ୍ଗଲ ବିଭାଗ, ପରିବେଶ ବିଭାଗ, ଓ୍ୱାର୍କ୍ସ ଡିପାର୍ଟମେଣ୍ଟ୍...''

''ଠିକ୍ ଅଛି, ଠିକ୍ ଅଛି, ମୁଁ କୋଉଠି ଦସ୍ତଖତ କରିବି ? କିନ୍ତୁ ଦେଖ, ତମର ଯେତିକି ଦରକାର ନିଅ । ମୋର କିଛି ଦରକାର ନାହିଁ । ସତକହିଲେ, ମୋର କାହିଁକି ଇଚ୍ଛା ହଉନି ।''

''ଏଇଠି, ସାର୍ । ଆଉ ସାର୍, ମୋ ଏକ୍ସଟେନ୍‌ସନ୍... ।''

''ରୁହହେ । ତମେ ସତେଇଶ୍ ଘଣ୍ଟା ଭିତରେ କେମିତି ଗଛ କାଟିବ, ତାକୁ ବୋହିବ ଆଉ ରୋଷ୍ଟ୍ରମ୍ ତିଆରି କରିବ ?''

''କିଛି ଅସୁବିଧା ନାହିଁ ସାର୍ । ଆମେ ସବୁ ସ'ମିଲ୍‌ରୁ କାଠ ବୁହେଇବା ଆରମ୍ଭ କରି ଦେଲୁଣି । ଜଙ୍ଗଲଟା ମିଲ୍‌ବାଲାଙ୍କୁ ଛାଡ଼ିଦେବୁ ।''

''ସବୁ କାମ ଯେମିତି ସମୟରେ ହବ ।''

ଏତିକିବେଳେ ମୁଖ୍ୟମନ୍ତ୍ରୀଙ୍କ ଶାସନାଧ୍ୟକ୍ଷ ଲସର ପସର ହେଇ ଭିତରକୁ ପଶିଲେ : ''ସାର୍, ସାର୍ । ୱାଶିଂଟନ୍, ମସ୍କୋ ଆଉ ନୂଆଦିଲ୍ଲୀରୁ ଖବର ଆସିଚି ସାର୍ । ଘଟଣାସ୍ଥଳଟି ଭୁବନେଶ୍ୱର ନୁହେଁ ସାର୍ ।''

''କ'ଣ ? ଭୁବନେଶ୍ୱର ନୁହେଁ !'' ମୁଖ୍ୟମନ୍ତ୍ରୀ କାବା ହେଇ ପଡ଼ିଗଲେ ଚଉକି ଉପରେ ।

''ପୁରୀରେ, ବଡ଼ଦାଣ୍ଡରେ, ଜଗନ୍ନାଥ ମନ୍ଦିରର ଠିକ୍ ସାମ୍‌ନାରେ, ସାର୍ । ଅକ୍ଷାଂଶ ଆଉ ଦ୍ରାଘିମା ଗଣନା ଅନୁସାରେ ସେଇ ଜାଗା ବାହାରୁଚି । ୱାଶିଂଟନ ଆଉ ମସ୍କୋ ଦିହେଁ ରାଜି ହେଇଚନ୍ତି ଆଉ ପ୍ରଧାନମନ୍ତ୍ରୀ କାନ୍ଦୁଚନ୍ତି ।''

''ଆଉଥରେ କୁହ ?'' ଆଶ୍ଚର୍ଯ୍ୟଭାବରେ ମୁଖ୍ୟମନ୍ତ୍ରୀ ପଚାରିଲେ ।

''କାନ୍ଦୁଚନ୍ତି ସାର୍ । ସେ କାନ୍ଦୁଚନ୍ତି ।''

''ସେ କଥା ନୁହେଁ, ତା' ପୂର୍ବ ଅଂଶଟା ।''

''ସେଇଟା ତ ଦୁଃଖ ସାର୍ । ସବୁ ଭଣ୍ଡୁର ହେଇଗଲା । ସ୍ଥାନଟା ପୁରୀ ।''

''କ'ଣ କହିଲ ? ମୋ ନିର୍ବାଚନମଣ୍ଡଳୀ ? ପୁରୀ ? ପଠାଅ ଲକ୍ଷେଲୋକ ସାଙ୍ଗେ ସାଙ୍ଗେ କ୍ୟାବିନଗୁଡ଼ାକୁ ଉଠେଇବା ପାଇଁ । ବୋହିନିଅ ସେଗୁଡ଼ା, ଜଳେଇଦିଅ, ଯାହା ଇଚ୍ଛା କର । ଟ୍ରକ୍ ଆଣ, ବସ୍ ଆଣ, ଶଗଡ଼ ଆଣ, ଯାହା ପାଉଚ ଆଣ । କାଠ ଆଉ ବଢ଼େଇମାନଙ୍କୁ ପୁରୀ ପଠାଅ । ଯାଅ ଯାଅ ଯାଅ ।''

ମୁଖ୍ୟ ସଚିବ ଦାସେ ଦୌଡ଼ିଲେ ।

''ଆଉ ତମେ,'' ସେ ଶାସନାଧ୍ୟକ୍ଷଙ୍କୁ କହିଲେ ଯିଏ କି ମୁଖ୍ୟମନ୍ତ୍ରୀଙ୍କ ସଚିବ ଥିଲେ, ''ପ୍ରଧାନମନ୍ତ୍ରୀଙ୍କୁ ଡାକ । ବାବାବୁଗି ମୋ ନିର୍ବାଚନମଣ୍ଡଳୀରେ, ମୋ ସହରରେ ! ହେ ଭଗବାନ୍ !''

ବଢ଼େଇମାନେ ଧାଇଁଲେ, କୁଲିମାନେ ଧାଇଁଲେ, ଠିକାଦାରମାନେ ଧାଇଁଲେ, ସରକାରୀ ଅଫିସରମାନେ ଧାଇଁଲେ, କିରାଣିମାନେ ଧାଇଁଲେ, ପିଅନମାନେ ଧାଇଁଲେ, ରାଜନୀତିଜ୍ଞମାନେ ଧାଇଁଲେ, ଶିକ୍ଷକମାନେ ଧାଇଁଲେ, ଛାତ୍ରମାନେ ଧାଇଁଲେ, କୃଷକମାନେ ଧାଇଁଲେ, ବେସରକାରୀ ଅଫିସରମାନେ ଧାଇଁଲେ । ସମସ୍ତେ ଧାଇଁଲେ ଧାଇଁଲେ ଆଉ ଧାଇଁଲେ ।

ବସ୍‌ଯାକ ଲୋକମାନଙ୍କ ଦ୍ୱାରା ଖୁନ୍ଦିହେଇଥିଲା । ରେଳଗାଡ଼ି ଭର୍ତ୍ତି ହେଇ ଛାତ ପୂରିଗଲା, କାର୍, ସାଇକେଲ୍, ସ୍କୁଟର, ଶଗଡ଼, ପଦାତିକ ଏମାନେ ସାରା ରାସ୍ତାରେ ଛାଇ ହେଇଗଲେ ଆଉ ଉଡ଼ାଜାହାଜ, ହେଲିକେପ୍‌ଟରଙ୍କ ଅସରନ୍ତି ଘାଏଁ ଘାଏଁରେ ଆକାଶ ଅନ୍ଧାରୁଆ ହେଇଗଲା ।

ଲୋକେ ଆସିଲେ, ଲୋକେ ଆସିଲାଗିଲେ । ଆହୁରି ଲୋକ ଆସିଲେ । ଚାରିଆଡ଼େ ଲୋକାର୍ଣ୍ଣବ ହେଇଗଲା ।

''ହେ ଭଗବାନ୍,'' ଲୋକମାନେ କହୁଥିଲେ ବାଟଯାକ ।

ବର୍ତ୍ତମାନ କ'ଣ ?

ଏ ଘଡ଼ିସନ୍ଧି ମୁହୂର୍ତ୍ତରେ କିଏ କହିପାରିବ ? କିଛି ବି ଘଟିପାରେ ।

## ॥ ୧୩ ॥

## ତରକି ଥିବ ତେରକୁ
## ତାଙ୍କର ଆମର ଲାଗିବ ହୁନ୍ଦର
## ସତ ମାଡ଼ିଯିବ ଭିତରକୁ

ଜଗନ୍ନାଥଙ୍କ ବିରାଟ ବଡ଼ଦାଣ୍ଡରେ ଏତେ ଲୋକ ଭର୍ତ୍ତି ହେଇ ଯାଇଥିଲେ ଯେ ସୋରିଷଟିଏ ବି ପକେଇବାକୁ ଜାଗା ନ ଥିଲା । ମନ୍ଦିର ପଟରେ ଯୋଉଠି ଆଷାଢ଼ମାସରେ ରଥଯାତ୍ରାବେଳେ ପହଣ୍ଡି ପାଇଁ ରଥମାନେ ଲାଗନ୍ତି, ସେଇଠି ଏମାର ମଠର ପିଣ୍ଡାକୁ ଲାଗି ଗୋଟିଏ ବିରାଟ ରୋଷ୍ଟ୍ରମ୍, ଚଉତରା ବା ମଞ୍ଚ ଗଢ଼ାଯାଇଥିଲା । ତା' ଉପରେ ଧାଡ଼ିହେଇ ପ୍ରଥମଧାଡ଼ିରେ ଦେଢ଼ଶହ ଚଉକି ପଡ଼ିଥିଲା । ଶହେ ଶତଚାଳିଶଟି ବିଦେଶୀ ଅତିଥି ରାଷ୍ଟ୍ରମୁଖ୍ୟଙ୍କ ପାଇଁ, ଆଉ ଅନ୍ୟ ତିନୋଟି ଯଥାକ୍ରମେ ଭାରତର ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ପାଇଁ । ଅନ୍ୟ କେନ୍ଦ୍ରମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ସାଧାରଣ ମନ୍ତ୍ରୀମାନେ ମଞ୍ଚରେ ଆସ୍ଥାନଟିଏ ପାଇବା ପାଇଁ ଯଦିଓ ଜିଦ୍ କରିଥିଲେ ବିଜୟବଲ୍ଲଭ ସେମାନଙ୍କୁ ସିଧାସଳଖ ମନା କରିଦେଇଥିଲେ । ସେମାନଙ୍କୁ ତିନି

ପଟରେ ଥିବା କୋଠାମାନଙ୍କର ଛାତକୁ ପଠେଇ ଦେଇଥିଲେ । ପଛପଟର ଅନ୍ୟ ଏକ ଧାଡ଼ିରେ ବିଦେଶୀ ରାଷ୍ଟ୍ରମୁଖ୍ୟମାନଙ୍କର ମୁଖ୍ୟ ସହାୟକ ଅଫିସର ବା ସେକ୍ରେଟାରୀମାନେ ବସିଥିଲେ । ତାଙ୍କ ପଛରେ ଥିଲେ ମୁଖ୍ୟ ନିରାପତ୍ତା ଅଧିକାରୀ ଆଉ ତାଙ୍କ ପଛକୁ ନିରାପତ୍ତା ରକ୍ଷୀ । ତିନିପଟେ କୋଠାଛାତ ସବୁ ଭାରତୀୟ ସେନାଧିକାରୀ ଆଉ ଅନ୍ୟନେତାମାନଙ୍କ ଦ୍ୱାରା ପୂରିଯାଇଥିଲା, ଭାଷଣ ଟେବୁଲ୍‌କୁ ମୁହଁକରି ବାଁ ଓ ଡାହାଣରେ ମାଇକ୍ରୋଫୋନ୍ ଗୁଡ଼ିକ ଥିଲା । ଠିକ୍ ମଝିରେ ଗୋଟିଏ ବଡ଼ ଚଉକି ବାବାବୁଗିଙ୍କ ପାଇଁ ଅନିଶ୍ଚିତ ଭାବେ ଖାଲି ପଡ଼ିଥିଲା ଯେହେତୁ ତାଙ୍କର ଆକାର ପ୍ରକାର ବା ଇଛା ବିଷୟରେ କାହାକୁ କିଛି ଜଣା ନ ଥିଲା ।

ଆସିଥିବା ଲକ୍ଷ ଲକ୍ଷ ସାଧାରଣ ଲୋକମାନେ, ମଞ୍ଚମୁହଁରୁ ଆରମ୍ଭ କରି ବଡ଼ଦାଣ୍ଡରେ ଦୁଇକିଲୋମିଟର ଦୂରରେ ଥିବା ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ, ଯୋଉଠିକି ଜଗନ୍ନାଥ ରଥଯାତ୍ରା ବେଳେ ଯାଆନ୍ତି, ଖୁନ୍ଦିହେଇ ବସିପଡ଼ିଥିଲେ ।

ବାବାବୁଗିଙ୍କ ପହଞ୍ଚିବା ସମୟ ନେଇ କିଛି ଅବୁଝାମଣା ଥିଲା । ସେ ନିଜ ପହଞ୍ଚିବାର ଜାଗତିକ, ସୌର ଓ ଚନ୍ଦ୍ରସମୟ ଅକ୍ଷାଂଶ ଆଉ ଦ୍ରାଘିମା ଅନୁସାରେ ପଠେଇଥିଲେ, ଯାହାକି ପୃଥିବୀର ବୈଜ୍ଞାନିକମାନଙ୍କ ପାଇଁ ଜଟିଳ ଥିଲା । କିନ୍ତୁ ସମୟଟି ଭାରତୀୟ ସମୟରେ ଅପରାହ୍ଣ ଚାରିଟା ବୋଲି ବିଶେଷଜ୍ଞମାନେ ଏକ ମତ ଥିଲେ ।

ଅନ୍ୟାନ୍ୟ ସମସ୍ୟା ବି ଥିଲା । ବାବାବୁଗିଙ୍କ ଆସିବା ରାସ୍ତା କାହାକୁ ଜଣା ନ ଥିଲା । ତେଣୁ ସେ ଆସିବେ ବୋଲି ହସ୍‌ପିଟାଲ୍ ଛକରୁ ଓ କୋଣାର୍କର ମାରାଇନ୍ ଡ୍ରାଇଭଙ୍ଗପଟୁ ଆସୁଥିବା ରାସ୍ତା ମୁଣ୍ଡରୁ ବାଟଟାଏ ସଫା କରାଯାଇ ଥିଲା, ଯାହାଦେଇ ତାଙ୍କ ଗାଡ଼ି ସିଧାସଳଖ ମଞ୍ଚ ପାଖକୁ ଆସିପାରିବ । କିନ୍ତୁ ଅଦମ୍ୟ ଜନତା ଲହଡ଼ି ପରି ମାଡ଼ିଆସି ବଡ଼ଦାଣ୍ଡର ପ୍ରତିଟି ଇଞ୍ଚ ମାଡ଼ିବସୁଥିଲେ, ସେମାନଙ୍କୁ ରୋକିବା ପାଇଁ ନିରାପତ୍ତା ବାହିନୀମାନେ ଅସହାୟ ଥିଲେ । ତେଣୁ ଠିକ୍ ସହର ବାହାରେ ସହର ଭିତରକୁ ଆସୁଥିବା ଦୁଇଟି ରାସ୍ତାମୁଣ୍ଡରେ ବାବାବୁଗିଙ୍କୁ ମଞ୍ଚକୁ ଆଣିବା ପାଇଁ ଜରୁରିକାଳୀନ ବ୍ୟବସ୍ଥା ସ୍ୱରୂପ ଦୁଇଟି ହେଲିକୋପ୍‌ଟର୍ ରଖାଯାଇଥିଲା ।

ଛୋଟ ଛୋଟ ଦଳ ହେଇ ଲୋକମାନେ ମନ୍ତ୍ରପାଠ କରିବାକୁ ଲାଗିଲେ, ଭକ୍ତିଗୀତ ଗାଇବାକୁ ଲାଗିଲେ, ଶଙ୍ଖ ଫୁଙ୍କିଲେ, ଘଣ୍ଟାନାଦ କଲେ ଆଉ ତୁହାକୁ ତୁହା ''ହୁଳହୁଳି'' ଦେଲେ । ପରିବେଶ ଥିଲା ଯାତ୍ରା ମହୋତ୍ସବର ଓ ଉର୍ଦ୍ଧ୍ୱମୁଖୀ । ସମସ୍ତଙ୍କ ହୃଦୟ ଭଗବଦ୍ ଚିନ୍ତା ଓ ମହାଜାଗତିକ ଚମତ୍କାରିତା ଦ୍ୱାରା ହାଲ୍‌କା ଥିଲା, ତା ସାଙ୍ଗକୁ ଏଇଟା ଥିଲା ଏମିତି ଗୋଟାଏ ସମାଗମ ଯୋଉଥିରେ ସାରାବିଶ୍ୱ ସମ୍ମିଳିତ ଥିଲା, ଯୋଉଥିରେ ନେତାମାନେ, ସେମାନଙ୍କ ଲୋକ, ଚୋର, ପୋଲିସ୍, ବିଶ୍ୱାସୀ ଓ

ନାସ୍ତିକ, ସ୍ତ୍ରୀ, ପୁରୁଷ, ନପୁଂସକ ଆଉ ଛୋଟପିଲାମାନେ ହାତଗୋଡ଼ ଖଣ୍ଡିଆ କାଳିଆ ଭୁଷୁଣ୍ଡା ଜଗନ୍ନାଥଙ୍କ ଧୂଳିପୂର୍ଣ୍ଣ ବଡ଼ଦାଣ୍ଡରେ ଏକାଠି ହେଇଥିଲେ, ସେଇ ପବିତ୍ର ସ୍ଥାନ ଯୋଉଟା ସତୀପୀଠବି ଥିଲା, ଯୋଉଠି ଶିବଙ୍କ ତାଣ୍ଡବ ସମୟରେ ସତୀଙ୍କ ମଲା ଦେହ ଥରି ଉଠିଥିଲା, ଯେତେବେଳେ ସତୀ ତାଙ୍କ ରାଜକୀୟ ପିତାଙ୍କର ତାଙ୍କ ସ୍ୱାମୀ ଶିବଙ୍କୁ ଅସ୍ପୃଶ୍ୟ ଚଣ୍ଡାଳ କହି ଭର୍ତ୍ସନା କରିବା ସହି ନ ପାରି ଆତ୍ମହତ୍ୟା କରିଥିଲେ ଓ ଶିବ ଭୀଷଣ ରାଗରେ ସତୀଙ୍କ ଦେହକୁ ତାଙ୍କ ଫୁଙ୍ଗୁଳା କାନ୍ଧରେ ପକାଇ ନାଚିଗଲେ ବିଶ୍ୱସାରା ।

ଲୋକେ ଆକାଶକୁ ଚାହୁଁଥିଲେ ଆଉ ମଝିରେ ମଝିରେ ହରିବୋଲ ଧ୍ୱନି ଦଉଥିଲେ । ଲୋକେ ମନ୍ଦିର ଉପରେ ଥିବା ପତିତପାବନ ବାନାକୁ ହାଲ୍‌କା ପବନରେ ଉଡୁଥିବାର ଦେଖିଲେ ଓ ‘‘ଚକାଡୋଳା’’ ବୋଲି ଡାକ ଛାଡ଼ିଲେ । କାନ୍ଦୁଥିବା ପିଲାମାନଙ୍କୁ ଫୁସ୍‌ଫୁସ୍ କରି ବାବାବୁଗି ଆସୁଚନ୍ତି ବୋଲି ଆକାଶକୁ ଆଙ୍ଗୁଠି ଦେଖେଇ କୁହାଗଲା ଓ ସେମାନେ ଅବୁଝାଭାବ ନେଇ ଆକାଶକୁ ଚାହିଁରହିଲେ ।

ଠିକ୍ ଚାରିଟା ଏକମିନିଟ୍ ଅଣତିରିଶ ସେକେଣ୍ଡ୍ ଭାରତୀୟ ସମୟବେଳେ ଆକାଶରେ ଗୋଟାଏ ଅଶୁଣା ଶବ୍ଦ ଶୁଭିଲା ଆଉ ମନ୍ଦିର ପାଖେରେ ଗୋଟାଏ ଅକଳ୍ପନୀୟ ରଙ୍ଗର ଫୁଲହାର ଦେଖାଗଲା ଆଉ ହଠାତ୍ ବାବାବୁଗି ମଞ୍ଚଉପରେ ଆବିର୍ଭାବ ହେଇଗଲେ ଚମକପ୍ରଦ ଧାତୁରେ ଆବୃତ ହେଇ, ଯାହା ଝଲସୁଥିଲେ ବି ଦୃଷ୍ଟିକଟୁ ନ ଥିଲା । ତାଙ୍କର ଦଶଟି ସରୁ ହାତ ଥିଲା ଯୋଉଥିରେ ପ୍ରତିଟିରେ ପାଞ୍ଚଟି ଲେଖାଏଁ ଆଙ୍ଗୁଠି ଥିଲା । ଧାତୁ ମୂର୍ତ୍ତିର ଉପରିଭାଗରେ ତାଙ୍କର ଗୋଲ୍ ଗୋଲ୍ ଆଖି ଥିଲା ଆଉ ମୁଣ୍ଡ, ଛାତି ଓ ପେଟର ବିଭିନ୍ନ ସ୍ଥାନରେ ରଙ୍ଗିନ୍ କଣାମାନ ତାଳରେ ଧପ୍‌ଧପ୍ କରୁଥିଲେ । ତାଙ୍କର ଗୋଡ଼ ନ ଥିଲା । ସେ ଦୋଳାୟମାନ ଭାବେ ମଞ୍ଚ ଉପରେ ଉଡ଼ି ଠିଆ ହେଇଥିଲେ ଆଉ ପରେ ଚେୟାର ଉପରେ ଆବିର୍ଭାବ ହେଲେ । ଲୋକମାନଙ୍କ ଭିତରୁ ଏକ ସ୍ୱରରେ ଗୋଟାଏ ଶବ୍ଦ ଗଢ଼ିଉଠି ଆକାଶ ଚିରିଦେଲା ।

‘‘ମଣିଷମାନଙ୍କୁ ଶୁଭେଚ୍ଛା,’’ ବାବାବୁଗିଙ୍କର ଏ ସ୍ୱର ସମସ୍ତଙ୍କ ଭିତରେ ଶୁଭିଲା, ‘‘ମୁଁ ପୁଣି ତୁମମାନଙ୍କ ଘର ସଜାଡ଼ିବାକୁ ଆସିଚି, ତୁମ ଭାଷାରେ ।’’

ଆମେରିକା ଓ ରୁଷିଆର ପ୍ରେସିଡେଣ୍ଟଙ୍କ ସହାୟକମାନେ ଯୋଉମାନେ ସେମାନଙ୍କ ଉପଗ୍ରହ ଟେଲିଫୋନ୍ ଶୁଣୁଥିଲେ, ଆଗକୁ ଲଇଁପଡ଼ି ସେମାନଙ୍କ କର୍ତ୍ତାମାନଙ୍କ କାନରେ କହିଲେ, ‘‘ଆମ ରାଡ଼ାର ଜାଲରୁ ସେ ଖସିଯାଇଚି । ରାଡ଼ାର ପରଦାରେ ଚିତ୍ର କି ଶବ୍ଦ କିଛି ନାହିଁ ।’’

‘‘ଆମର ଏ କୌଶଳଟା ଅକ୍ତିଆର କରିବା ଦରକାର,’’ ମୁଖ୍ୟମାନେ ଫୁସ୍‌ଫାସ୍ ଉତ୍ତର ଫେରେଇଲେ ।

ବାବାବୁଗି ତାଙ୍କ ମୁଣ୍ଡଟିକୁ ଘୂରକରି ଗୋଟେ ଘେରା ସେମାନଙ୍କ ଆଡ଼କୁ ବୁଲେଇଦେଇ କହିଲେ, ''ତୁମର ପୁରୁଣା ରାଡ଼ାର ମେଟାଚାର୍ମ ଟେଲିପୋର୍ଟ ରଶ୍ମିକୁ ଛୁଇଁପାରିବ ନାହିଁ । ତେଣୁ କ୍ଷାନ୍ତ ହୁଅ ଆଉ ଚିନ୍ତା ରାଜ୍ୟକୁ ବିଶୃଙ୍ଖଳିତ କର ନାହିଁ ।''

ଚାରିଆଡ଼ ନିଃଶବ୍ଦ ହେଇଗଲା ।

''ମୁଁ ତୁମମାନଙ୍କୁ ନିୟମ ଦେବି,'' ସେ କହିଲେ, ''ତୁମେ ପାଳନ କରିବ ।''

ମାଗୀ, ଯିଏକି କିଛି ମିଟର ଦୂରରେ ଗହଳି ମଝିରେ ଗୋଟିଏ ବତିଖୁଣ୍ଟ ପାଖରେ ବସିଥିଲା, ଠିଆ ହେଇପଡ଼ିଲା । ସରଳା, ଯୂଇ, ଯାମିନୀ, ସାନା, ଟୁସୀ ଓ ଶିରୀ ଯୋଉମାନେ ବତିଖୁଣ୍ଟର ପଛପଟକୁ ବସିଥିଲେ, ତା' ଆଡ଼କୁ ଉଲ୍ଲସିତ ହେଇ ଚାହିଁଲେ । ରଙ୍ଗୁ ସେମାନଙ୍କ ସାଙ୍ଗରେ ଥିଲା, କାମ୍‌ଦା ବି' ଚାରି ଧାଡ଼ି ପଛରେ ବସିଥିଲା । ମହାସ୍କନ୍ଧ ମନ୍ଦିର ଆଡ଼କୁ ବାଁ ପଟକୁ, ମଲହୋତ୍ରା ଓ ତାଙ୍କ ଲୋକମାନଙ୍କ ଗହଣରେ ବସିଥିଲା । ମାର୍କ୍ସଦଳ ହସ୍‌ପିଟାଲ କ୍ରସିଂ ଦେଇ ପଶିଆସିଲେ ଓ ମହାସ୍କନ୍ଧକୁ ଖୋଜି ଖୋଜି ଆଗୋଉଥିଲେ । ଭବାନୀ, ତ୍ରିପାଠୀ ଓ ସଉରାଙ୍କୁ ନେଇ, ଠିକ୍ ସେମାନଙ୍କ ପଛରେ ଥିଲେ । ଡଃ ପ୍ରହରାଜ, ଈଶ୍ୱରୀ ଓ କପିଳା ଆର୍ଟ ଏମ୍ପୋରିୟମ ବାରଣ୍ଡାରେ ଠିଆ ହେଇଥିଲେ ।

''ଆଃ !'' ବାବାବୁଗି କହିଲେ । ''ତୁମେ ମୋ ବଛା ମଣିଷ, କୁହ ।''

''ଫାଦର ଜାକବ୍ କହନ୍ତି ତୁମେ ଆମକୁ ଥରେ ଗୋଟିଏ ପାହାଡ଼ ଉପରେ ନିଆଁ ବୁନ୍ଦାରୁ ନିୟମ ଦେଇଚ । ଥରେ ତୁମେ ଆମ ସହରଗୁଡ଼ିକୁ ଧ୍ୱଂସ କରିଥିଲ । ଥରେ ତୁମେ ସମ୍ପୂର୍ଣ୍ଣ ପୃଥିବୀକୁ ବି ଧ୍ୱଂସ କରିଥିଲ । ବ୍ରହ୍ମାନନ୍ଦ ବାବାଜି ମତେ କହିଥିଲେ ଯେ ତୁମେ ପୃଥିବୀକୁ ସଜାଡ଼ିବାକୁ ଦଶଥର ଆସିଲଣି । ସବୁଥର ଇମିତି ବିଫଳ କାହିଁକି ହଉଚ ?''

''ତୁମ ଭାଷାରେ ତୁମେ ଜଣେ ନାସ୍ତିକ,'' ବାବାବୁଗି କହିଲେ, ''ତୁମେ ନାସ୍ତିକ କି ?''

''ମୁଁ ସେ ଶବ୍ଦର ଅର୍ଥ ଜାଣିନି ।''

''ତୁମେ ଯେତେବେଳେ ମୋ ଦ୍ୱାରା ବଛାଯାଇଚ, ତୁମେ କିମିତି ନାସ୍ତିକ ହବ ?''

''ସେଇଟା ଗୋଟାଏ ଗଣ୍ଡଗୋଳିଆ ସ୍ତ୍ରୀଲୋକ,'' ବାବାବୁଗିଙ୍କ କଡ଼ରେ ବସିଥିବା ମୁଖ୍ୟମନ୍ତ୍ରୀ ପଟ୍ଟନାଏକ୍ କହିଲେ, ''ଭାରି ଗଣ୍ଡଗୋଳିଆ, ବର୍ତ୍ତମାନ...''

''ଯେ ସେଇ ସ୍ତ୍ରୀଲୋକ ?'' ପ୍ରଧାନମନ୍ତ୍ରୀ ତାଙ୍କ ସେକ୍ରେଟାରୀଙ୍କୁ ପଚାରିଲେ ଯିଏ କି ନିରାପତ୍ତା ମୁଖ୍ୟଙ୍କୁ ପଚାରିଲେ ଯିଏ ୱାକିଟକି ମାଧ୍ୟମରେ ଛାତ ଉପରର ସୈନ୍ୟମାନଙ୍କୁ ସତର୍କ କରିଦେଲେ । ସୈନ୍ୟମାନେ ସେମାନଙ୍କ ଆକ୍ରମଣକାରୀ ବନ୍ଧୁକକୁ ବତିଖୁଣ୍ଟ ପାଖେ ଠିଆ ହେଇଥିବା ମାଗୀ ଉପରକୁ ଲକ୍ଷ୍ୟ କରି ଧରି ଠିଆହେଲେ ଆଦେଶ ଅପେକ୍ଷାରେ ।

ମୁଖ୍ୟମନ୍ତ୍ରୀ ବାବାବୁଗିଙ୍କ ଆଡ଼କୁ ଢଳିଗଲେ ଓ ତାଙ୍କୁ ଗୋଟିଏ କାଗଜ ଦେଖେଇଲେ ।

''ଦେଖନ୍ତୁ, ଏଇଟା ହେଲା ସଭାର କାର୍ଯ୍ୟକ୍ରମ,'' ସେ ଚୁପଚୁପ୍ କହିଲେ । ''ମୁଁ ସଭାପତିତ୍ୱ କରୁଚି । ଆପଣ ମୁଖ୍ୟ ଅତିଥି ।''

ରାଷ୍ଟ୍ରପତି, ଯିଏ ଏ କଥା ଶୁଣିପକେଇଲେ, ତାଙ୍କ ସେକ୍ରେଟେରୀଙ୍କ ଆଡ଼କୁ ଢଳିଗଲେ ଓ ତାଙ୍କ କାନରେ ଫୁସ୍‌ଫୁସ୍ କହିଲେ ଏବଂ ପରେ ମୁଖ୍ୟମନ୍ତ୍ରୀଙ୍କ ଆଡ଼କୁ ଝୁଙ୍କିପଡ଼ି କହିଲେ, ''ମୁଁ ରାଷ୍ଟ୍ରପତି, ମୁଁ ଥାଉ ଥାଉ ତୁମେ କେମିତି ସଭାପତିତ୍ୱ କରିବ ? ଏମିତିକି ପ୍ରଧାନମନ୍ତ୍ରୀ ବି ତା କରିପାରିବେ ନାହିଁ । ତୁମ ପ୍ରୋଟୋକଲ୍ ପରାମର୍ଶଦାତା କିଏ ?''

''ଏଇଟା ମୋ ନିର୍ବାଚନମଣ୍ଡଳୀ, ମୋ ନିଜ ସହର ଓ ମୋ ରାଜ୍ୟ, ଯାହାକୁ ବାବାବୁଗି ବାଛିଚନ୍ତି । ମୁଁ ସଭାପତିତ୍ୱ କରିବି । ଆପଣମାନେ ସମସ୍ତେ ସମ୍ମାନନୀୟ ଅତିଥି । ସେଇଟା ପକ୍କା ହେଇଯାଇଚି ।''

''କିନ୍ତୁ ପ୍ରୋଟୋକଲ ?'' ରାଷ୍ଟ୍ରପତିଙ୍କ ସେକ୍ରେଟାରୀ ପାଟିକଲେ ।

''ହଁ ପ୍ରୋଟୋକଲ ?'' ରାଷ୍ଟ୍ରପତି ପାଟିକଲେ ।

''ଆଉ ମୋ କଥା ?'' ପ୍ରଧାନମନ୍ତ୍ରୀ କିଛି ବୁଝି ନ ପାରି ଚିତ୍କାର କଲେ ।

ମୁଖ୍ୟମନ୍ତ୍ରୀ ପ୍ରତିରୋଧକୁ କର୍ଣ୍ଣପାତ ନ କରି ଆଗକୁ ଝୁଙ୍କିପଡ଼ି ବାବାବୁଗିଙ୍କୁ କହିଲେ ''କାର୍ଯ୍ୟସୂଚୀର ପ୍ରଥମ ଆଇଟମ୍‌ଟି ହଉଚି ମୁଖ୍ୟ ଅତିଥିଙ୍କ ପରିଚୟ । ଆପଣଙ୍କ ପାଖରେ ଆତ୍ମପରିଚୟ ବିବରଣୀ ବା ସେମିତି କିଛି ଅଛି କି ?''

''ମୁଁ ସମସ୍ତଙ୍କ ହୃଦୟରେ ପରିଚିତ । ତୁମ ଭାଷାରେ, ଉଡ଼ାଅ ଏ ଆଇଟମ୍ ।''

''ପରବର୍ତ୍ତୀ କାର୍ଯ୍ୟକ୍ରମ ହଉଚି ରାଷ୍ଟ୍ରପତିଙ୍କ ସହ ପରିଚୟ ତଥା ପ୍ରଧାନମନ୍ତ୍ରୀ ଓ ବିଦେଶାଗତ ରାଷ୍ଟ୍ରମୁଖ୍ୟଙ୍କ ସହ ।''

''ମୁଁ ସେ ସମସ୍ତଙ୍କୁ ଜାଣେ । ସବୁଗୁଡ଼ା, ତୁମ ଭାଷାରେ, ଚୋର, ତୁମରି ପରି । ଯାକୁ ବି ଛାଡ଼ ।''

ସେକ୍ରେଟାରୀମାନେ ରାଗିଗଲେ । ସେମାନେ ଆଗକୁ ଝୁଙ୍କିପଡ଼ି ଫୁଟ୍‌ଫାଟ୍ ହେଲେ । ରାଷ୍ଟ୍ରପତି ଚମକିପଡ଼ିଲେ । ପ୍ରଧାନମନ୍ତ୍ରୀ ବିକଳ ହେଇ ଚାହିଁଲେ । ବିଦେଶ ମୁଖ୍ୟମାନେ କ୍ରୋଧାନ୍ୱିତ ହେଲେ ।

''ଆମେ କ'ଣ ଏଠି ବସି ଏ ଅପମାନ ସହିବା ?'' ତାଙ୍କରି ଭିତରୁ ଜଣେ ଫୁସ୍‌ଫୁସ୍ କହିଲେ ।

''ସେ ନିଜକୁ କ'ଣ ବୋଲି ଭାବୁଚି କି, ଏ ଟିଣଡବା !'' ଆଉ ଜଣେ ଫୁସ୍‌ଫୁସ୍ ହେଇ କହିଲେ ।

ବାବାବୁଗି ତାଙ୍କ ମୁଣ୍ଡକୁ ପୁଣିଥରେ ସର୍‌ର୍ କରି ବୁଲେଇଦେଇ କହିଲେ : ''ସତ କଥାରେ ତୁମେ ବିରକ୍ତ କାହିଁକି ହଉଚ ? ତମେ ଦୋମୁଣ୍ଡିଆ । ସତ କଥାକୁ ମାନିଯାଅ । ତୁମେ ଯୁଦ୍ଧ କରି ମଣିଷ ମାର । ତୁମେ ତୁମ ନିଜ ଲୋକଙ୍କ ଉପରେ ଅତ୍ୟାଚାର କର: କଳା, ଧଳା, ଇହୁଦୀ, ଖ୍ରୀଷ୍ଟିଆନ୍, ଆରବୀ, ହିନ୍ଦୁ, ଚାଇନିଜ୍ ଇତ୍ୟାଦି ଇତ୍ୟାଦି । ତୁମେ ନିଜ ଲାଭ ପାଇଁ ଭଡ଼ାଟିଆ ଘାତକଙ୍କୁ ଲଗେଇ ନିଜ ଲୋକଙ୍କୁ ମରାଅ, ନ ହେଲେ ପରସ୍ପର ହଣାକଟା କରିବା ପାଇଁ ଉସୁକାଅ । ତୁମେ ନିଜ ଖୁସୀରେ ପ୍ରଶାସକ ଓ ସୈନ୍ୟଦଳ ନେଇ ଲୁଟ୍‌ମାର ଓ ଭଙ୍ଗାରୁଜା କର । ତୁମେ ମୃତ୍ୟୁ ଓ ଧ୍ୱଂସର ଅସ୍ତ୍ର ତିଆରି କରିଚ । ତୁମର ନିଜ ଲୋକଙ୍କଠୁଁ, କ'ଣ କହନ୍ତିଟି ତୁମ ଭାଷାରେ, କର ଆଦାୟ କରିବା ମତେ ଆଶ୍ଚର୍ଯ୍ୟ କରିଚି । ତୁମେ, କ'ଣ କହନ୍ତିଟି ତମ ଭାଷାରେ, ଲାଞ୍ଚ ନଉଚ ଆଉ ଅନ୍ୟ ଦେଶରେ ଲୁଚେଇ ରଖୁଚ ! ତେଣୁ ତୁମେ ନିର୍ଭୁଲ ଭାବେ ବର୍ଣ୍ଣିତ ହବାକୁ କାହିଁକି ମନା କରୁଚ ? ପାରା ସାଇବର୍ଗ ୩୨୧ 'ଚୋର' ଶବ୍ଦଟି କହୁଚି । ଏଇଟା କ'ଣ ନିର୍ଭୁଲ୍ ନୁହେଁ ? ସେ ଅନ୍ୟ ଶବ୍ଦଗୁଡ଼ିଏ ବି ଦେଇଚି, ତମ ଭାଷାରେ : ଠକ, ଖଣ୍ଡ, ଖଳ, ଘାତକ, ଧର୍ଷକ, ଲୁଣ୍ଠନକାରୀ, ଦସ୍ୟୁ, ଡକେଇତ, ଦୁଷ୍ଟ, ଭିଲେନ୍, ଦେଶଦ୍ରୋହୀ, ପ୍ରତାରକ, ସରୀସୃପ, ବିଶ୍ୱାସଘାତକ, ରାକ୍ଷସ, ଶକୁନି, କୁକୁର, ଜାରଜ, ଆବର୍ଜନା, ନେତା...''

''ଘୋର ନିନ୍ଦା,'' ରାଷ୍ଟ୍ରପତି ପ୍ରଧାନମନ୍ତ୍ରୀଙ୍କୁ କହିଲେ କର୍କଶ ସ୍ୱରରେ ।

''ମାନହାନି,'' ଅନ୍ୟଜଣେ ଧୀରେ କହିଲେ ।

''ତାକୁ ଆରେଷ୍ଟ୍ କରିବା ଦରକାର,'' ତୃତୀୟଜଣକ ପ୍ରଧାନମନ୍ତ୍ରୀଙ୍କୁ କହିଲେ ।

''ଏ ଦେଶରେ କ'ଣ ନିୟମ କାନୁନ୍ କିଛି ନାହିଁ ?''

''ଏଇଟା ସରକାର ବିଷୟରେ କିଛି ଜାଣେନି । ସରକାରକୁ ମନା କରୁଚି ।''

''ୟାକୁ ବନ୍ଦନା କରାଯିବା, ମାନେ ବନ୍ଦୀ କରାଯିବା, ଉଚିତ ।''

''ବନ୍ଦୀ କର ବନ୍ଦୀ କର, ''ଚିତ୍କାର ଉଠିଲା ।

''ଆରେଷ୍ଟ ହିମ୍,'' ପ୍ରଧାନମନ୍ତ୍ରୀ କହିଲେ ।

ନିରାପତ୍ତା ରକ୍ଷୀ ଛୁଟିଗଲେ ଓ ବାବାବୁଗିଙ୍କ ଦଶୋଟିଯାକ ହାତରେ ହାତକଡ଼ି ଲଗେଇ ଦେଲେ । ଯିମିତି ଏତକ ସରିଚି ପ୍ରଧାନମନ୍ତ୍ରୀ ଆଗକୁ ଡେଇଁପଡ଼ିଲେ ଓ ମାଇକ୍ରୋଫୋନ୍‌ଟିକୁ ଟାଣି ଆଣିଲେ ।

ମାଗୀ ବଂତିଖୁଣ୍ଟ ପାଖରେ ଠିଆ ହେଇ ପାଟିକଲା, ''ତାଙ୍କୁ ଛାଡ଼ିଦିଅ, ତାଙ୍କୁ ଛାଡ଼ିଦିଅ । ସେ ସତକଥା କହୁଚନ୍ତି । ତୁମେ ତାଙ୍କୁ ଆରେଷ୍ଟ କରିପାରିବ ନାହିଁ । ତମେ ବର୍ବର । ତମେ ଖୁନ୍ କରୁଚ, ଧର୍ଷଣ କରୁଚ, ଲୁଟ୍ କରୁଚ, ଲୋକମାନଙ୍କୁ ଭୋକିଲା ରଖୁଚ, ସେମାନଙ୍କୁ ଚାକର କରୁଚ, ଯନ୍ତ୍ରଣା ଦଉଚ ଆଉ କେହି କିଛି କହି ପାରିବେନି ? ଛାଡ଼ ତାଙ୍କୁ, ବାବାବୁଗିଙ୍କୁ ଛାଡ଼ ।''

ଲୋକମାନେ ଫୁସ୍‌ଫାସ୍ ହେବାକୁ ଲାଗିଲେ ।

''ଧର ତାକୁ,'' ପ୍ରଧାନମନ୍ତ୍ରୀ ମୁତ୍ତେଜ ହେଇ ପାଟିକଲେ । ''ଫାଶୀଦିଅ ତାକୁ ।''

ମାଗୀ ତା ମାଛକଟା ଛୁରିଟା କାଢ଼ିଆଣି ଉଞ୍ଚେଇଲା ।

ସେ କହିଲା : ''ତମେ କାହା କାହାକୁ ଧରିପାରିବ ? କେତେ ଜଣଙ୍କୁ ? ଆମ ସମସ୍ତଙ୍କୁ ? ତୁମ ଚାରିକଡ଼କୁ ଚାହଁ ।''

ଫୁସ୍‌ଫାସ୍ କଥାବାର୍ତ୍ତା ଗୋଟାଏ ଅସ୍ପଷ୍ଟ ମର୍ମର ରୂପ ନେଲା, ଦୂରର ପାହାଡ଼ କୋଡ଼ରୁ ଉଠୁଥିବା ପବନ ପରି ଲକ୍ଷ ଲକ୍ଷ ଲୋକଙ୍କ ନିଃଶ୍ୱାସ ଓ ଯନ୍ତ୍ରଣାକୁ ଗୋଟେଇ ନେଇ ସମୁଦ୍ରର ବିଶୃଙ୍ଖଳିତ ଘୂର୍ଣ୍ଣିର ପ୍ରଚଣ୍ଡ ସ୍ୱର ନେଲା ।

''ତୁମେ କିଛି ଶୁଣିପାରୁଚ ?'' ମାଗୀ ଚିତ୍କାର କଲା, ''ତୁମେ ଯାକୁ ବନ୍ଦୀ କରିପାରିବେ ? ଆମ ସମସ୍ତଙ୍କୁ ଫାଶୀ ଦବାକୁ ତୁମ ପାଖରେ ଯଥେଷ୍ଟ ଦଉଡ଼ି ଅଛି ତ ?''

''ସେ ଶାଳୀ ଗୋଟାଏ ବିପ୍ଳବୀ । ପୂରାଅ ତାକୁ ଜେଲ୍‌ରେ । ମୁଁ ସିଂ ସିଂ ଦେଇଦେବି ତା ପାଇଁ ।''

''ଆମେ ତମ୍ଭକୁ ସାଇବେରିଆ ଖୋଲିଦବୁ ।''

''ଆମର ତ ନିଜସ୍ୱ 'ତିହାର' ଅଛି ।''

''ଆମେ ତମ୍ଭକୁ ଆଣ୍ଡାମାନ ଦେଇଥିଲୁ ଇମିତି ପରିସ୍ଥିତି ପାଇଁ ।''

''ଆପଣମାନେ ଜ୍ଞାନୀ ଥିଲେ । ମୁଁ ବର୍ତ୍ତମାନ ବୁଝିପାରୁଚି ।''

''ଆମ ସମସ୍ତଙ୍କୁ ତମେ ଫାଶୀ ଦେଇପାରିବ ?'' ମାଗୀ ଚିତ୍କାର କଲା ।

ପ୍ରଧାନମନ୍ତ୍ରୀ ତାଙ୍କ ସେକ୍ରେଟାରୀ ପାଖକୁ ନଇଁଗଲେ : ''ସେ ଆମକୁ ଚାଲେଞ୍ଜ୍ କରୁଚି ହୋ । ଆମ ପାଖରେ ଏ ସମସ୍ତଙ୍କୁ ଫାଶୀ ଦବାକୁ ଯଥେଷ୍ଟ ଦଉଡ଼ି ଅଛି ?''

ସେକ୍ରେଟାରୀଜଣକ ମୁଖ୍ୟମନ୍ତ୍ରୀ ତଥା ଅନ୍ୟମାନଙ୍କ ସହ କଥା ବାର୍ତ୍ତା କଲେ ।

''ବର୍ତ୍ତମାନ ନାହିଁ ସାର ।''

''ଆରେ ଆମେ ଖଣ୍ଡେ ଦଉଡ଼ି ତ ନିଶ୍ଚୟ ପାଇବା, ଆଉ ଜଣକ ପରେ ଜଣକୁ ଫାଶୀ ଦେଇପାରିବା ।''

"ଠିକ୍ କଥା ସାର୍ ।"

"ତା କେତେ ସମୟ ନବ ?"

"ଟିକେ ଅପେକ୍ଷା କରନ୍ତୁ ସାର୍," ସେ ତାଙ୍କ ପକେଟ୍ କାଲ୍‌କୁଲେଟର କାଢ଼ିଲେ । "ଏକ ନିୟୁତ ଗୁଣନ ଦଶ ମିନିଟ୍ ବିଭକ୍ତ ଷାଠିଏ ମିନିଟ୍ ବିଭକ୍ତ ଚବିଶ ଘଣ୍ଟା ହରଣ ତିନିଶ ଷାଠିଏ ଦିନ, ପାଖାପାଖି କୋଡ଼ିଏ ବର୍ଷ ସାର ।"

"ଧାତ୍ । ଆସନ୍ତା ଇଲେକ୍‌ସନ୍ ଆଗରୁ ମୋ ହାତରେ ଅତିବେଶିରେ ମାସଟେ ଅଛି । ମତେ ଯୋଉମାନେ ଭୋଟ ଦେବେନି କେବଳ ସେଇମାନଙ୍କୁ ଫାଶୀ ଦବାକୁ କେତେ ସମୟ ଲାଗିବ ?"

"ପାଖାପାଖି କୋଡ଼ିଏ ବର୍ଷ ସାର୍ ।"

"ମୋ କଥା ଶୁଣ," ମାଗୀ ସମ୍ପୂର୍ଣ୍ଣଭାବେ ଗଳା ଖୋଲି ବଡ଼ପାଟିରେ ଚିତ୍କାର କଲା, ଛୁରିଟା ସେମିତି ଉଞ୍ଚେଇ, "ତୁମକୁ ବଦଳିବାକୁ ପଡ଼ିବ । ତୁମକୁ ପୂରା ବ୍ୟବସ୍ଥାକୁ ବଦଳେଇବାକୁ ପଡ଼ିବ । ଶାସକ ଆଉ ଶାସିତ ହେଇ କାହିଁକି କେହି ରହିବେ ? କେହି ନେତା ତ କେହି ଜନତା ହେଇ କାହିଁକି ରହିବେ ? ଧନୀ ଗରିବ । ଅତ୍ୟାଚାରୀ ଓ ଅତ୍ୟାଚାରିତ, କର, ନିୟନ୍ତ୍ରଣ, ହଇରାଣ୍ ହରକତ  କାହିଁକି ଏ ସବୁ ରହିବ ?"

"ସେଇଟା ଆତଙ୍କବାଦୀ ।"

"ତାକୁ ମାରିଦିଅ," ପ୍ରଧାନମନ୍ତ୍ରୀ ଚିତ୍କାର କଲେ, "ଗୁଳିକର ତାକୁ । ଆରେ ଗୁଳିକର ତାକୁ ଗୁଳିକର ।"

ଗୁଳିର ଗୋଟାଏ ସୁଅ ତା' କାନ୍ଧ ଫୁଟେଇ ତା ହାଡ଼ ମାଂସ ବିଦାରି ତାକୁ ବତିଖୁଣ୍ଟରେ ପିଟିଦେଲା । ବିସ୍ଫୋରିତ ମାଂସପେଶୀରୁ ରକ୍ତ ବୋହିବାକୁ ସମୟ ଲାଗିଲା । ଆଉ ଗୋଟାଏ ଛେକ ଗୁଳି ତା ପେଟ ଫୁଟେଇ କଣାବାଟେ ରକ୍ତ କାଦୁଅ ବୁହାଇଲା ଆଉ ଅନ୍ତନାଡ଼ି ସାପପରି ବାହାରକୁ ବାହାରିଆସିଲା । ମାଗୀ ଅବଶ ହେଇ ମାଟିରେ ପଡ଼ିଗଲା । ଅନ୍ତନାଡ଼ିଗୁଡ଼ିକ ତଳେ ପଡ଼ିବା ପୂର୍ବରୁ ସରଳା ଆଗକୁ ଡେଇଁପଡ଼ି ସେଗୁଡ଼ିକୁ ତୋଳି ଧରିଲା । ଅନ୍ୟମାନଙ୍କର ନିଶ୍ୱାସ ରୁନ୍ଧି ହେଇଗଲା । ରଙ୍ଗୁର ମୁଣ୍ଡ ବୁଲେଇଦେଲା ଆଉ ସେ ମାଟିରେ ଟଳି ପଡ଼ିଲା । ପଛରେ ବସିଥିବା ଦଳେ ସ୍କୁଲ ପିଲା ରାଗରେ ନାକ ଫୁଲେଇଲେ । ମାର୍କ୍ସଦଳ ଖସି ପଳାଇଲେ । ଭବାନୀ, ମହାସ୍କନ୍ଦ ଓ ମଲହୋତ୍ରା ଏ ବୀଭତ୍ସତାରେ ଦାରୁଭୂତ ହେଇଗଲେ ।

ଲୋକମାନେ, ଯୋଉମାନେ ସ୍ତମ୍ଭିତ ହେଇ ବସିଥିଲେ, କ'ଣ ହଉଚି ଓ କାହିଁକି ହଉଚି ବୁଝି ନ ପାରି ବର୍ତ୍ତମାନ ବିଶୃଙ୍ଖଳିତ ହବାକୁ ଆରମ୍ଭ କଲେ ।

ତୃତୀୟ ଛେକଟି ତାର ଜଙ୍ଘ ଓ ଆଣ୍ଠୁକୁ ଛତୁ କରିଦେଲା ।

''ଠିକ୍ କରିଚ, ମାର ତାକୁ, ମାରିଦିଅ,'' ପ୍ରଧାନମନ୍ତ୍ରୀ ବର୍ତ୍ତମାନ ମଞ୍ଚରେ ଡେଇଁବାକୁ ଲାଗିଲେ । ''ଆରେ ତା ହାଡ଼ ଭାଙ୍ଗିଦିଅ । ଛତୁ କରିଦିଅ ତାକୁ । ମତେ ଚାଲେଞ୍ଜ୍ କରୁଚି ! ମତେ ! ତା ଉପରେ ରୋଲର୍ ଚଲେଇ ଦିଅ । ମାଟିରେ ମିଶେଇଦିଅ ତାକୁ ।''

ବାବାବୁଗି ସେଠି ବସି ଦେଖୁଥିଲେ, 'ବନ୍ଦୀ' ହେଇ, ତାଙ୍କର ଦଶଟିଯାକ ହାତରେ ହ୍ୟାଣ୍ଡକଫ୍ ଲାଗିଥିଲା ଆଉ ଜଣେ ଖଣ୍ଡେ ଏ. କେ.-47 ତାଙ୍କ ଆଡ଼କୁ ମୁହାଁଇଥିଲା । 'ବନ୍ଦୀ' ହଃ ! କ'ଣ କରିବା କଥା ଯଦି ତମକୁ ପାର୍ଥିବ ଭାବେ ଏପଟ ସେପଟ, ଠେଲା ପେଲା, କ'ଣ କହନ୍ତି ତାଙ୍କ ଭାଷାରେ ? ହାଁ ପଙ୍ଗୁ କରିଦିଆଗଲା, କାରାରୁଦ୍ଧ କରାଗଲା, ଅବରୁଦ୍ଧ କରାଗଲା, ବାନ୍ଧି ଦିଆଗଲା, କଷାଘାତ ବଜାଗଲା, ଶ୍ୱାସରୁଦ୍ଧ କରିଦିଆଗଲା, ଶିକୁଳିରେ ବନ୍ଧାଗଲା, ନାକରେ ଦଉଡ଼ି ଦିଆହେଲା, ପାଟିରେ ତୁଣ୍ଡି ମଡ଼ାଗଲା, ଖୁଣ୍ଟରେ ବାନ୍ଧିଦିଆଗଲା, ଯନ୍ତାରେ ବନ୍ଦକରାଗଲା, ଘେରି ଦିଆଗଲା, କଡ଼ା ଲଗାଗଲା, ଶୂଳିରେ ଚଢ଼ାଗଲା, କଣ୍ଟା ପିଟାଗଲା... । ଆଁ ହାଁ, ଗଲାଥର ମୁଁ ଯେତେବେଳେ ମଣିଷ ହେଇଥିଲି ସେମାନେ ମତେ ଏଇଆ କରିଥିଲେ । କଣ୍ଟା ପିଟିଥିଲେ, ନାହିଁ ? ମୁଁ କ'ଣ କହୁଥିଲି ? ଆରେ ହଁ, ତୁମକୁ ଯଦି କଣ୍ଟା ପିଟିଦେବେ ତୁମେ କ'ଣ କରିବ ?

ଲୋକ କୁହୁଳିବାକୁ ଆରମ୍ଭ କଲେ । ଲେଖକ, ଯିଏ କି ତୃତୀୟ ଧାଡ଼ିରେ ବସିଥିଲେ, ଭୟରେ ବୁଲିପଡ଼ି ପଛପଟର ବଡିଖୁଣ୍ଟ ଆଡ଼େ ଚାହିଁଲେ, ଆଉ ତାପରେ ବୁଲିପଡ଼ି ଡାହାଣପଟ ଉପରକୁ ଚାହିଁ ଦେଖିଲେ ଯେ ମନ୍ଦିରର ପତାକା ଫରଫର ହେଇ ଉଡୁଥିଲା । ଭବାନୀ ଓ ମଲହୋତ୍ରା ଲୋକ ଆଡ଼େଇ ମାଗୀ ଆଡ଼କୁ ଠେଲି ପେଲି ଆସିବାକୁ ଚେଷ୍ଟାକଲେ ଜଲ୍ଦି ଜଲ୍ଦି, ଡାଃ ପ୍ରହରାଜ ବାରଣ୍ଡାରୁ ଡେଇଁ ପଡ଼ିଲେ, ଈଶ୍ୱରୀ ଓ କପିଳା ତାଙ୍କୁ ଅନୁସରଣ କଲେ । ସମସ୍ତଙ୍କର କିଛି କିଛି ମାଗୀ ଆଡ଼କୁ ମାଡ଼ି ଚାଲିଲେ ।

କିନ୍ତୁ ମଞ୍ଚରେ ବସିଥିବା ସମ୍ମାନିତ ଅତିଥିମାନଙ୍କ ଭିତରୁ ଗୋଟାଏ କର୍କଶ କୋଳାହଳ ଉଠିଲା ।

''ବଜାଅ ଶାଳୀକି ।''

''ଆତଙ୍କବାଦ ମୂଳପୋଛ କର ।''

''ମାନବାଧିକାର କଥା କ'ଣ କରିବା ?''

''କି ମାନବାଧିକାର ମ ? ସେ ପରା ଆମ ପ୍ରଭୁତ୍ୱକୁ ଚାଲେଞ୍ଜ୍ କରୁଚି ।''

"ସେ ଆମକୁ ଚାଲେଞ୍ଜ୍ କରିବ, ଆମ ପ୍ରଥାକୁ ?"

"କିନ୍ତୁ ମାନବାଧିକାର ? ମାନବୋଚିତ ସାହାଯ୍ୟ ?"

"ଆରେ ଏଇଟା ତାଙ୍କର ଆଭ୍ୟନ୍ତରୀଣ ବ୍ୟାପାର ।"

"ଆଞ୍ଚଳିକ କ୍ଷମତାର ପ୍ରଭୁତ୍ୱ । ସେମାନେ ହଉଥା'ନ୍ତୁ ସିମିତି ।"

"କିଛି ଅସୁବିଧା ନାହିଁ । ଆମେ ନିରପେକ୍ଷ ରହିବା ।"

"ହେଲେ ସେ ଝିଅଟା କିଏ ?"

"କେଉଟୁଣୀ ବୋଲି ଶୁଣାଯାଉଚି ।"

"ଗୋଟାଏ ସାଧାରଣ ମାଛବାଲୀ ? ଆଉ ଏତେ ବିରାଟ ବ୍ୟାପାର କ'ଣ ?"

"ଧୃଷ୍ଟତା ଦେଖ ! ଦୁର୍ନୀତି ବିରୋଧରେ ଅଭିଯୋଗ କରୁଚି ! ନିର୍ଯ୍ୟାତନା, ଭୋକ, ରୋଗ, ଯୁଦ୍ଧ, ପ୍ରିୟାପ୍ରୀତି, ଧର୍ଷଣ, ହତ୍ୟା, ଶୋଷଣ, ଅସମତା ଆଉ ଅସଭ୍ୟ ବ୍ୟବହାର ବିରୋଧରେ କହୁଚି !"

"ଶୋଷଣ ? ସେ ଶୋଷଣ କଥା କହିଲା ? କି ଶୋଷଣ ?"

"ଅସମତା କଥା କ'ଣ ଉଠେଇଚି ମ ? ୟେ କ'ଣ ଫରାସୀ ବିପ୍ଳବ ନା ରୁଷିଆ ବିପ୍ଳବ ନା ସିମିତି କିଛି ହେଇଚି ?"

"ପୁଣି ଅସଭ୍ୟତା ! କିଏ କହୁଚି ଶୁଣ । କେଉଟୁଣୀ !"

"ମାରିମାରି ମାଟିରେ ପୂରେଇ ଦିଅ ।"

ଲୋକମାନେ ରାଗରେ ଗୁଞ୍ଜିବାକୁ ଆରମ୍ଭ କଲେ ।

"ତାକୁ ସୃଷ୍ଟି କଲା କିଏ ?"

"ଏଇ ଟିଣଡବା ? ଆମକୁ ଆଦେଶ ଦେଇ ପକୋଉଚି !"

ୱା ୱା ୱା ୱା । ହେଲା ହେଲା ବନ୍ଦକର ୩୨୧ ।

ବାବାବୁଗିଙ୍କର ହଠାତ୍ ମନେପଡ଼ିଗଲା । ତେଣୁ ତମ୍ଭୁକୁ କଣ୍ଠା ବାଡ଼େଇଲେ ତମେ ଏଇଆ କରିବ ।

ଲୋକଙ୍କ ପାଟିତୁଣ୍ଡ ବଢ଼ିଲା । ଲେଖକ ହାମୁଡ଼ି ହାମୁଡ଼ି ବତିଖୁଣ୍ଟ ଆଡ଼କୁ ଆଗେଇଲେ । ସରଳା ଆଉ ଯୂଇ, ତାଙ୍କୁ ଦେଖିଦେଇ ଶଙ୍କିଗଲେ । ଅନ୍ୟଝିଅମାନେ ସିଆଡ଼େ ଚାହିଁ ଓଠ କାମୁଡ଼ିଲେ । ଭବାନୀ ଆଉ ମଲ୍ହୋତ୍ରା ଠେଲି ଗୁଞ୍ଜି ବାଟକାଢ଼ି ଆସିବାରେ ବ୍ୟସ୍ତ ଥିଲେ । ମହାସ୍କନ୍ଧ ବି ବର୍ତ୍ତମାନ ସେମାନଙ୍କୁ ଅନୁସରଣ କରୁଥିଲା । ଡା. ପ୍ରହରାଜଙ୍କ ଦଳ ଆଗକୁ ଯିବାର ଚେଷ୍ଟାରେ ଲାଗି ରହିଥିଲେ ।

ବର୍ତ୍ତମାନ ନିଶ୍ଚଳ ହେଇ ଖେଳେଇ ପଡ଼ିଥିବା ମାଗୀ ଦେହରେ ଆହୁରି ଗୁହାଏ ଗୁଳି କୁଟି ହେଇଗଲା ।

''ହାଁ, ଠିକ୍ ଅଛି, ଠିକ୍ ମାରିଚ ।''

ବାବା ବୁଗିଙ୍କର ମନେ ପଡ଼ିଯିବାରୁ ସେ ଚୁପ୍‌ଚାପ୍ ହସିଦେଲେ । ହାତକଡ଼ିଗୁଡ଼ାକ ମଞ୍ଚ ଉପରେ ପଡ଼ିଗଲା । ପୁଲିସ୍‌ବାଲାମାନେ ତାଙ୍କ ଆଙ୍ଗୁଠିକୁ ଟ୍ରିଗର୍‌ରେ ଶକ୍ତ କଲେ । ବାବାବୁଗି ମୁରୁକିହସା ଦେଲେ । ସବୁ ବନ୍ଧୁକ ବାଷ୍ପୀଭୂତ ହେଇଗଲା, ପୁଲିସ୍‌ବାଲାମାନେ ଚାହିଁ ରହିଗଲେ । ରାଷ୍ଟ୍ରମୁଖ୍ୟମାନେ ସେମାନଙ୍କ ବେକ ଲମ୍ବେଇ ଚାହିଁଲେ । ବାବାବୁଗି ଧୀରେ ହସିଉଠିଲେ । ମଞ୍ଚଉପରୁ ସମସ୍ତ ଚଉକି ଉଭେଇଗଲା ଓ ରାଷ୍ଟ୍ରମୁଖ୍ୟମାନେ କଚାଡ଼ିହେଇ ପଡ଼ିଲେ ରୋଷ୍ଟ୍ରମ୍‌ରେ ।

''ଆମେମାନେ ନିରପେକ୍ଷ,'' ସେମାନେ ଆଣ୍ଠେଇଥିବା ବେଳେ ଚିତ୍କାର କଲେ ।

''ଆମେ କିଛି କରି ନାହୁଁ,'' ସେମାନେ ଠିଆ ହଉହଉ ଚିତ୍କାର କଲେ ।

''ତାଛଡ଼ା ଏଇଟା ଆମର ଦେଶ ବି ନୁହେଁ ।'' ସେମାନେ ତାଙ୍କ ଲୁଗାପଟା ଝାଡ଼ୁଝାଡ଼ୁ ଚିତ୍କାର କଲେ ।

''ଆମେ ଖାଲି ଅତିଥି,'' ସେମାନେ ସଳଖଭାବେ ଠିଆହେଇ ଚିତ୍କାର କଲେ ।

''ସେମାନେ କରିଚନ୍ତି,'' ସେମାନେ ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କ ଆଡ଼କୁ ଦେଖେଇ କହିଲେ ।

''ମୁଁ ନୁହେଁ,'' ପ୍ରଧାନମନ୍ତ୍ରୀ କହିଲେ, ''ମୁଁ ତ ଖାଲି ତତ୍ତ୍ୱାବଧାରକ ପ୍ରଧାନମନ୍ତ୍ରୀ । ଏଇଟା ତାଙ୍କ ରାଜ୍ୟ । ସେ ହିଁ ଦାୟୀ ।''

ବିଜୟବଲ୍ଲଭ ପଟ୍ଟନାଏକ ଏକଦମ୍ ବିବ୍ରତ ହେଇ ଏପଟକୁ ସେପଟକୁ ଚାହିଁଲେ ।

''ଟିକେ ରୁହନ୍ତୁ ଟିକେ ରୁହନ୍ତୁ,'' ସେ ପ୍ରଧାନମନ୍ତ୍ରୀଙ୍କ ଆଡ଼କୁ କଟମଟ କରି ଚାହିଁ କହିଲେ, ''ମୁଁ ଦାୟୀ ମାନେ କ'ଣ ! ମୋ ମେଳାରେ ତମେ ଗେଞ୍ଜିପେଲି ହେଇ ପଶିଚ । ନିଜ ପୋଲିସ୍ ଓ ଆର୍ମି ଆଣିଚ । ଏଇକ୍ଷଣି ପରା ମଞ୍ଚରେ ଦୌଡ଼ି ଦୌଡ଼ି ଆଦେଶ ଦଉଥିଲ ରାଷ୍ଟ୍ରପତିକି ପଛରେ ବସେଇ । ସମସ୍ତେ ତା' ଦେଖିଚନ୍ତି । ମୁଁ ବୋଲି କେମିତି କହୁଚ ?''

''ମୁଁ ଇସ୍ତଫା ଦଉଚି । ମୁଁ ପାର୍ଲ୍ୟାମେଣ୍ଟ୍ ଓ ବିଧାନସଭା ଭାଙ୍ଗିଦବାକୁ ଓ ସାନି ନିର୍ବାଚନ କରେଇବାକୁ ସୁପାରିସ୍ କରୁଚି । ଏବେ ମୁଁ ଚାଲିଲି ।''

''ତମେ ତା କରିପାରିବ ନାହିଁ । ତମେ କୌଣସି ଜିନିଷରୁ ପଳେଇଯାଇ ପାରିବ ନାହିଁ । ଚୀନ୍, ପାକିସ୍ଥାନ, ବାଙ୍ଗଲାଦେଶ ଓ ଶ୍ରୀଲଙ୍କା ସହ ଯୁଦ୍ଧ କଥା କ'ଣ ହବ ?

ବୋଫର୍ସ, ସେଣ୍ଟ୍ କିଟ୍ସ୍, ଅବକାରି ଠକେଇ, ଷ୍ଟକ୍ ଠକେଇ, ଚିନି ଠକେଇ, ସୁଟ୍‌କେଶ କଥା କ'ଣ ହବ....''

''ଚୁପ୍‌କର,'' ବାବାବୁଗି ଚିତ୍କାର କଲେ ଓ ଶବ୍ଦଟା ସମସ୍ତଙ୍କ ମୁଣ୍ଡ ଭିତେରେ ଚଡ଼କ ପରି ଫାଟିପଡ଼ିଲା ।

ହଠାତ୍ ସବୁ ଚୁପ୍‌ଚାପ୍ ହେଇଗଲା ।

ବାବାବୁଗି ନୀରବଭାବେ କହିଲେ ଯାହା ସମସ୍ତଙ୍କ ଅନ୍ତର ଭିତେରେ ଉଚ୍ଚ ସ୍ୱରରେ ଓ ସ୍ପଷ୍ଟ ଭାବରେ ଶୁଭିଲା ''ମୁଁ ହିଁ ମୁଁ । ସୋଽହଂ ମୁଁ ତୁମମାନଙ୍କୁ ସୃଷ୍ଟି କରିଚି, ଅର୍ଥାତ୍ ମୋ ପିତା କରିଚନ୍ତି । ଏକା କଥା । ମୋ ଦୟାରୁ ତୁମେ ଜୀବନ ପାଇଚ । ଯେବେ ଯେବେ ତୁମେ ଭ୍ରଷ୍ଟାଚାରୀ ହେଇଚ ସେବେ ସେବେ ମୁଁ ତୁମକୁ ରକ୍ଷା କରିବା ପାଇଁ ଆସିଚି । ଏଥର ମୁଁ ପୁଣି ଏଠିକି ଆସିଚି । ମୁଁ ହେଲି ମାଲିକ । ତୁମ କାମ ହେଲା ମତେ ମାନିବା । ଶୁଭିଲା ? କେବଳ ମାନିବା, ନ ହେଲେ ମୁଁ ତୁମମାନଙ୍କୁ କଚାଡ଼ି ଦେବି, ଯେମିତି ତୁମେ ଯାହାକୁ ରାଷ୍ଟ୍ରମୁଖ୍ୟ କହୁଚ ତାଙ୍କୁ ଏବେ କଲି । ମୁଁ ତୁମର ସୃଷ୍ଟିକର୍ତ୍ତା, ମୁଁ ତୁମର ପ୍ରଭୁ । ମୁଁ ତୁମର ରକ୍ଷାକର୍ତ୍ତା ଆଉ ମୁଁ ତୁମର ଧ୍ୱଂସକର୍ତ୍ତା । ମୋ ଇଚ୍ଛା ଅନୁସାରେ ବିଶ୍ୱବ୍ରହ୍ମାଣ୍ଡ ଘୂରୁଚି । ମାନ । ମାନିଯାଅ । ଶାସକମାନେ ମତେ ମାନିବ, ଶାସିତମାନେ ମତେ ମାନିବ । ଆଜି ସମସ୍ତ ଭେଦଭାବ ଶେଷ ହବ, ସବୁ ବିପ୍ଳବ ଶେଷ ହବ । ସବୁ ମନ୍ଦ ଆଜି ଶେଷ ହବ । ମୋ ଇଚ୍ଛାହିଁ ରହିବ, ସମସ୍ତେ ମୋଠୁଁ ସେମାନଙ୍କ ଜୀବନ ନେବେ ଆଉ ମୃତ୍ୟୁ ମତେ ଦେବେ । ମାନ । ମାନିଯାଅ ।''

ପୃଥିବୀର ସବୁଆଡ଼େ, ସମସ୍ତେ ଏ ସ୍ୱର ଶୁଣିଲେ । ସବୁଠି ମୃତ୍ୟୁର ନୀରବତା ଛାଇଥିଲା ।

କେବଳ ମଞ୍ଚ ଉପରେ ଗୋଟିଏ ଛୋଟ ଫୁସ୍‌ଫୁସ୍ ଶବ୍ଦ ଶୁଭିଲା : ''ବର୍ତ୍ତମାନ ସେ ଆମ ଭଳିଆ କଥାବାର୍ତ୍ତା କରୁଚି ।''

କିନ୍ତୁ ତାପରେ ହଠାତ୍ ବତିଖୁଣ୍ଟ ପାଖରୁ ଗୋଟିଏ ସ୍ୱରର ହସ ଶୁଭିଲା । ସମସ୍ତେ ବେକ ବୁଲେଇ ସିଆଡ଼କୁ ଚାହିଁଲେ ଏବଂ ବାବାବୁଗି ଦେଖିଲେ ଲେଖକ ଜଣକ ବତିଖୁଣ୍ଟ ପାଖରେ ଠିଆ ହେଇ ହସୁଚନ୍ତି ଯୋଉଠି ମାଗୀର କ୍ଷତବିକ୍ଷତ ଶରୀର ପଡ଼ିଚି । ସେ ଗୋଟିଏ ଅବର୍ଣ୍ଣନୀୟ ଲୋକ, ବାବାବୁଗି ଦେଖିଲେ । ଗୋରା ରଙ୍ଗ, ଖରାଖାଇ କଳାପଡ଼ି ଯାଇଚି, ବୟସରୁ ହଳଦିଆ, ଆଉ ପକେଟମାନଙ୍କରେ ଅନେକ କଲମ ଗେଞ୍ଜା ହେଇଚି । ସେ ହସୁଥିଲେ ସତେଯେମିତି ପାଗଳ ହେଇଯାଇଚନ୍ତି ।

ଯେତେବେଳେ ସେ ହସ ବନ୍ଦ ହେଲା, ବାବାବୁଗି ପଚାରିଲେ : ''ତୁମେ କାହିଁକି ହସୁଚ, ମନୁଷ୍ୟ ?''

''ମୁଁ ଆପଣଙ୍କ ବଡ଼ିମା ପାଇଁ ହସୁଚି,'' ଲେଖକ କହିଲେ । ''ଆପଣ ନିଜକୁ ସୃଷ୍ଟିକର୍ତ୍ତା କହୁଚନ୍ତି । କିନ୍ତୁ ଆପଣଙ୍କୁ ସୃଷ୍ଟି କଲା କିଏ ?''

''ତୁମେ ମୂର୍ଖ, ମୋ ପିତା ମତେ ସୃଷ୍ଟି କରିଚନ୍ତି । ସେ ହିଁ ଈଶ୍ୱର ।''

''କିନ୍ତୁ, କୁହନ୍ତୁ ଆପଣଙ୍କ ପିତାଙ୍କୁ କିଏ ସୃଷ୍ଟି କରିଚି ? ଈଶ୍ୱରଙ୍କୁ କିଏ ସୃଷ୍ଟି କରିଚି ?''

''ତାଙ୍କୁ କେହି ସୃଷ୍ଟି କରି ନ ଥିଲେ । ସେ ପୂର୍ବରୁ ଥିଲେ ।''

''ପ୍ରଥମେ ତ କିଛି ନ ଥିଲା ।''

''ଠିକ୍ ନୁହେଁ, ମୂଳରୁ ଭଗବାନ୍ ରହିଥିଲେ ।''

''ଭାଣ୍ଡାମୀ, ବାଜେ କଥା । ମୁଁ ଗଢ଼ିଚି ଭଗବାନ୍‌ଙ୍କୁ । ମୁଁ ତୁମକୁ ତାଙ୍କ ପୁତ୍ର ଭାବେ ଗଢ଼ିଚି । ଏଠିକାର ସବୁ କିଛି ମୁଁ ଗଢ଼ିଚି । ତୁମେ ଯାହା ସବୁ କରିଚ ଓ ତୁମ ଦ୍ୱାରା କୁହାଯାଉଥିବା ପ୍ରତ୍ୟେକ ଶବ୍ଦ ମୋ ଦ୍ୱାରା ସୃଷ୍ଟ । ମୁଁ ଯାହାକୁ ଚାହିଁବି ଗଢ଼ିପାରିବି ବା ଭାଙ୍ଗିପାରିବି । ଦେଖ । ତୁମେ ବିପ୍ଳବକୁ ନଷ୍ଟ କରିଚ ଓ ଏହି ସ୍ତ୍ରୀଲୋକଟିକୁ ହତ୍ୟା କରିଚ । ମୁଁ ତାକୁ ପୁନର୍ଜୀବିତ କରିବି ।'' ଲେଖକ କଲମ ହଲାଇଲେ ।

ମାଗୀ ନିଜକୁ ଏକାଠି କରି ଜିଇଁ ଉଠି ଠିଆ ହେଲା । ସେ ଚାରିଆଡ଼କୁ ଚାହିଁ ଦୃଶ୍ୟଟିକୁ ବୁଝିବାକୁ ଚେଷ୍ଟାକଲା । ସରଳାର ହୃଦୟ ଖୁସୀରେ ଫାଟି ପଡୁଥିଲା । ସମସ୍ତେ ଖୁସୀ ହେଇଗଲେ । ପାଟିଟାଏ ଗୁଞ୍ଜରିଉଠିଲା ଚାରିଆଡୁ । ମାଗୀ ଲେଖକଙ୍କୁ ଅଚିହ୍ନା ଭାବରେ ଚାହିଁଲା । ସେ ନଇଁପଡ଼ି ତା ମାଛକଟା ଛୁରିଟି ଗୋଟେଇନେଲା ।

''ତୁମ ଭାଷାରେ, ହଃ !'' ବାବାବୁଗି କହିଲେ, ''ଏଇଟା ଖୁବ୍ ସହଜ । ମୁଁ ତ ଯା ଶହେଥର କରିଚି । ଲାଜାରସ୍ କଥା ମନେଅଛି ? ଦେଖ, ଏଥର ମୁଁ ତୁମକୁ କିଛି ଦେଖେଇବି । ମୁଁ ଏଠି ଥିବା ହଜାର ହଜାର ଲୋକଙ୍କୁ ଧ୍ୱଂସ କରିଦେବି ।''

ବାବାବୁଗି ତାଙ୍କ ପଞ୍ଚମ ହସ୍ତର ତୃତୀୟ ଆଙ୍ଗୁଠିକୁ ତାଙ୍କ ମୁଣ୍ଡରେ ଥିବା ଗାତରେ ପୂରେଇଲେ ଆଉ ଅନ୍ୟ ହାତଗୁଡ଼ିକୁ ହଲେଇଲେ । ଗୋଟିଏ ଚମକ ସୃଷ୍ଟି ହେଲା ଆଉ ସେଠି ଥିବା ଲୋକମାନେ ଜଣେ ବି ସେଠି ଆଉ ନ ଥିଲେ । ରାଷ୍ଟ୍ରମୁଖ୍ୟମାନେ ତାଳି ମାରିଲେ ।

•

ଲେଖକ ମାଗୀ ଆଡ଼େ ଚାହିଁଲେ ଆଉ ତାଙ୍କ ପକେଟରୁ କଲମଟିଏ ବାଛି, କ୍ୟାପ୍ ଖୋଲି ସେଇଟିକୁ ଦୋହଲେଇଲେ । ସଙ୍ଗେ ସଙ୍ଗେ ଯୋଉମାନେ ଉଭେଇଯାଇଥିଲେ ସେମାନେ ଯଥାସ୍ଥାନକୁ ଫେରିଆସିଲେ, ସେମାନଙ୍କ ବାଳଟିଏ ବି ଏପଟ ସେପଟ ହେଇ ନ ଥିଲା ।

''ବର୍ତ୍ତମାନ ଦେଖ,'' ବାବାବୁଗି ତାଙ୍କ ହାତ ହଲେଇ କହିଲେ ।

ମଞ୍ଚଟି ଉଭାନ ହୋଇଗଲା ଓ ରାଷ୍ଟ୍ରମୁଖ୍ୟମାନେ କଚାଡ଼ି ହେଇ ଭୂଇଁରେ ପଡ଼ିଗଲେ । ସେମାନେ ଗଁ ଗଁ ହେଲେ ଓ ଦାନ୍ତ କଡ଼ ମଡ଼ କଲେ ଓ ମାଟିରୁ ଉଠି ଝାଡ଼ିଝୁଡ଼ି ହେଲେ ।

''ଏଇଟା କିଛି ନୁହଁ,'' ଲେଖକ ଉତ୍‌ଫୁଲ୍ଲିତ ହେଇ କହିଲେ । ''ମୁଁ ବର୍ତ୍ତମାନ ଅର୍ଥ ବାହାର କରିବି ଯାହାକୁ ତୁମ ଜେଜେବାପା ବି ବୁଝିପାରିବେନି ।''

''ମୋର ଜେଜେବାପା ନାହାନ୍ତି ।''

''ମୁଁ ତୁମକୁ ଗୋଟିଏ ଦେଇପାରେ, କିନ୍ତୁ ତା ଗୁରୁତ୍ୱହୀନ । ହେଇଚି ଦେଖ ।''

ସେ ନିଜ କଲମଟିକୁ ଭୟଭୀତ ରାଷ୍ଟମୁଖ୍ୟମାନଙ୍କ ଆଡ଼କୁ କରି ହଲେଇଲେ ଆଉ ତାଙ୍କ ଭିତରୁ ଅଧେ ଅଦୃଶ୍ୟ ହେଇଗଲେ । ଅନ୍ୟମାନେ ପରସ୍ପରକୁ ଚୁହାଁଚୁହିଁ ହେଲେ ।

''କାଷ୍ଟ୍ରୋ କୁଆଡ଼େ ଗଲେ ?''

''ଗର୍ବି କୁଆଡ଼େ ଗଲେ ?''

''ଝାଓ କୋଉଠି ?''

''ଦେଖ, ସେ କମ୍ୟୁନିଷ୍ଟଙ୍କୁ ଧ୍ୱଂସ କଲା ।''

''କିନ୍ତୁ, ମୋ କଥା କ'ଣ ହେଲା,'' ବସ୍ସୁ ଛାତ ଉପରୁ ଚିତ୍କାର କଲେ । ''ତମେ ମତେ ଛାଡ଼ି ଯାଇପାରିବ ନାହିଁ । ମୁଁ ବି ଜଣେ.... ମାନେ ମୁଁ କ'ଣ.... ?''

''ଦେଖ, ମୁଁ ଅର୍ଥର ସୃଷ୍ଟି କଲି,'' ଲେଖକ କହିଲେ ।

ବାବାବୁଗି ଉତ୍ତେଜିତ ହେଇ କହିଲେ ''ତୁମେ ତାହେଲେ ଯାହା କହନ୍ତି ପୁଞ୍ଜିବାଦୀ ।''

''ମତେ ଅପମାନିତ କର ନାହିଁ । ମୁଁ କେବଳ ପ୍ରଦର୍ଶିତ କରୁଚି । ଡାରଉଇନ୍ କହିଥିଲେ 'ପ୍ରାକୃତିକ ନିର୍ବାଚନ' । ମୁଁ କହୁଚି : 'ଲେଖକୀୟ ନିର୍ବାଚନ' । ପ୍ରକୃତିରେ ଭାଷାରେ ସୃଷ୍ଟି କରାଯାଇଥିବା ଜିନିଷ ଛଡ଼ା ଆଉ କିଛି ବି ରହିପାରିବ ନାହିଁ । ପ୍ରକୃତି କ'ଣ ମ ? ଭାଷା ହିଁ ବିଶ୍ୱକୁ ତିଆରି କରିଚି ।''

ବାବାବୁଗି ବଡ଼ ହେଉଡ଼ିଟିଏ ମାରି ହାତ ହଲେଇଲେ, ଆଉ ଉଭାନ ହେଇ ଯାଇଥିବା ସବୁ ରାଷ୍ଟ୍ରମୁଖ୍ୟମାନେ ନିଜ ଜାଗାକୁ ପୁଣି ଆସିଗଲେ ।

''ଏଥର,'' ବାବାବୁଗି ନିଜକୁ ଦୂରବହନ କରାଇ ଲେଖକଙ୍କ ଆଗରେ ଠିଆ କରାଇଲେ । ''ଏଥର ହେ ଦ୍ୱିଜିହ୍ୱାଧାରୀ, ମୁଁ ତୁମକୁ ଧ୍ୱଂସ କରିବି ।''

ଲେଖକ ତାଙ୍କ କଲମଟିକୁ ସଳଖଭାବେ ଧରି ଉଚ୍ଚସ୍ୱରରେ ତଥା ସ୍ପଷ୍ଟ ଭାବେ କହିଲେ : ''ଏବଂ ମୁଁ ତୁମକୁ ଏ ଗଳ୍ପରୁ କାଢ଼ିଦେବି ।''

ବର୍ତ୍ତମାନ ଲୋକମାନେ ତ୍ରସ୍ତ ହେଇ ବିଳାପ କରିବାକୁ ଲାଗିଲେ ଆଉ ଦେଶ ମୁଖ୍ୟମାନେ ଭୟରେ ପଛକୁ ଘୁଞ୍ଚିଗଲେ । ମାଗୀ ତା ମାଛକଟା ଛୁରି ଧରି ବାବାବୁଗି ଆଉ ଲେଖକଙ୍କ ମଝିକୁ କୁଦା ମାରିଲା ।

'ବନ୍ଦକର ଏସବୁ । ମୁଁ କହୁଚି ବନ୍ଦକର ।'' ସେ ଚିତ୍କାର କଲା ।

''ମତେ ବନ୍ଦ କରନି ନାରୀ,'' ବାବାବୁଗି ଚିତ୍କାର କଲେ, ''ମୁଁ ତୁମର ସୃଷ୍ଟିକର୍ତ୍ତା, ମତେ ମାନ ।''

''ମୁଁ ତମର ସୃଷ୍ଟିକର୍ତ୍ତା,'' ଲେଖକ କହିଲେ, ''ତୁମେ ମୋ ବିରୋଧରେ କିମିତି ଯିବ ? ଦୂରରେ ଠିଆ ହୁଅ ଓ ମତେ ତାଙ୍କ ସହ କାରବାର କରିବାକୁ ଦିଅ ନଚେତ୍ ମୁଁ ତୁମକୁ ବି ଏ ଗଳ୍ପରୁ ବାହାର କରିଦେବି ।''

''ବହୁତ ସମୟ ହେଲା,'' ମାଗୀ କହିଲା, ''ବହୁତ ସମୟ ହେଲା ମୁଁ ତୁମକୁ ମୋ ଉପରେ ଅନଧିକାର ହସ୍ତକ୍ଷେପ କରିବାକୁ ସୁଯୋଗ ଦେଇଚି, ତୁମ ଦୁଇଜଣଙ୍କୁ । କିନ୍ତୁ ଆଉ ନୁହେଁ । ଏଇଟା ମୋ ଯୁଦ୍ଧ । ମୁଁ ତୁମମାନଙ୍କ ହସ୍ତକ୍ଷେପ ଦ୍ୱାରା ପରିଣତିକୁ ଛାରଖାର କରିବାକୁ ଦେବିନି । ବାହାର, ଦିହେଁଯାକ ବାହାର !''

''ଉଦ୍ଧତ ମାନବ,'' ବାବାବୁଗି ଚିତ୍କାର କଲେ ଆଉ ମାଗୀ ଆଡ଼କୁ ଦେଖେଇ ହାତ ହଲେଇଲେ ।

କିଛି ହେଲାନି ।

ହେ ଏପ୍‌ସିଲନ୍ ! ଯେ କ'ଣ ହଉଚି ୩୨୧ ? ଶକ୍ତି ବଢ଼ାଅ ! ହୁଁ !

''ଅସମ୍ଭବ ନାରୀ,'' ଲେଖକ ଚିତ୍କାର କଲେ, ''ତୁମେ ନିଜକୁ ବହୁତ ବଡ଼ ବୋଲି ଭାବୁଚ ? ବହୁତ ବଡ଼ ଭାବୁଚ ନିଜକୁ ? ତୁମେ ବାହାରିଯାଅ !'' ଲେଖକ ତାଙ୍କ କଲମ ହଲେଇଲେ ।

କିଛି ବି ହେଲାନି ।

''ହ୍ୱାଟ୍ ତେରେ ! କାଳି ସରିଗଲା ।''

ସେ ତାଙ୍କ ଅନ୍ୟ କଲମରୁ ଗୋଟିଏ ଆଣିବାକୁ ଚେଷ୍ଟା କରୁଥିବାବେଳେ ମାଗୀ ସେଗୁଡ଼ାକୁ ଛଡ଼େଇ ଆଣି ତା ପଛରେ ବସିଥିବା ସ୍କୁଲପିଲାଙ୍କ ଆଡ଼କୁ ଫିଙ୍ଗିଦେଲା, ଯୋଉମାନେ କଲମଗୁଡ଼ିକୁ ଧରି ପକେଇଲେ । ବାବାବୁଗି ଆଉ ଲେଖକ ମାଗୀକୁ ମୁହାଁଇ ଠିଆହେଲେ ।

ମାଗୀ ପିଲାମାନଙ୍କୁ ପାଟିକରି କହିଲା, ''ତମ ଭିତରୁ ଯିଏ ବି ଲେଖା ଲେଖି କରି ଶିଖିଚି, ଏ ଦିହିଁଙ୍କ ବିଷୟରେ ଲେଖ, ଶୀଘ୍ର।''

''ଠିକ୍ ଅଛି ମିଜ୍,'' ତାଙ୍କ ଭିତରୁ ଜଣେ କଲମ ହଲେଇ କହିଲା।

ଲେଖକ ହଠାତ୍ ବୁଲିପଡ଼ିଲେ ଓ ଭିଡ଼ ଭିତର ଦେଇ ସୁଆର ସାହି ଆଡ଼କୁ ଅତର୍ଚ୍ଛ୍ୟା ହେଇ ଧାଇଁଲେ। ଅଧାବାଟରେ ତାଙ୍କ ପ୍ୟାଣ୍ଟ ଖସିପଡ଼ିଲା। ଆଉଟିକେ ପରେ ତାଙ୍କ ଚଡ଼ିର ଇଲାଷ୍ଟିକ୍ ହୁଗୁଳିଗଲା। ଖୁବ୍ ଜୋର୍‌ରେ ପବନ ଆସିଲା ଆଉ ତାଙ୍କ ଜାମା ଉଡ଼ାଇ ନେଇଗଲା। ନର୍ଦ୍ଦମା ନାଳ ପାଖାପାଖି ବିଚରା ଲେଖକଟି ଲାଜରେ ତରଳିଗଲେ। ଯୋଉଠି ସେ ତରଳି ମାଟିରେ ପଡ଼ିଯାଇଥିଲେ, ସେଇଠୁଁ ଗୋଟିଏ ଲାଜକୁଳୀ ଲତା ବାହାରିଆସିଲା ଯାହାର ପତ୍ର ପୂର୍ବସ୍ପର୍ଶିତ ପରି ବୁଜି ହେଇଥିଲା।

ଆଉ ଗୋଟିଏ ଛୋଟ ଝିଅ ଯିଏ କଲମଟେ ପାଇଥିଲା, କହିଲା, ''ମତେ ସେ ଆରଟାକୁ ସାବାଡ଼୍ କରିବାକୁ ଦିଅ।''

ବାବାବୁଗି ଯିମିତି ନିଜକୁ ଦୂରବହନ କରିବାକୁ ଚାହିଁଲେ, ତାଙ୍କ ପେଟ ଉପରର ଟିଣ ଖୋଳଟା ଖୋଲିଗଲା। ଭିତରେ ଗୋଟିଏ ଗଦିପକା ଗର୍ତ୍ତ ଭିତରେ ପିଲାଟିଏ ବସି ଗୋଟିଏ ପର୍ସନାଲ କମ୍ପ୍ୟୁଟର ଧରି ଖେଳୁଥିଲା। ସେ ମଞ୍ଚଆଡ଼କୁ ନାକ କୁଞ୍ଚି ଖତେଇ ହେଲା, ଲୋକମାନଙ୍କୁ ଜିଭ ଦେଖେଇଲା। ଝିଅଟିକୁ ଚୁମାଟିଏ ଉଡ଼େଇ ଦେଲା, ଆଉ ଗୋଟିଏ ଆଲୁଅ ଝଟକାରେ ଉଭେଇଗଲା।

''ହାତ୍, ଏଇଟା କିଛି ହେଲାନି। ଝିଅଙ୍କ ଗପପରି ହେଇଗଲା,'' ଯୋଉ ପୁଅଟି ହାତରେ କଲମ ଥିଲା ସେ କହିଲା, ''ମୁଁ ଠିକ୍ ଲେଖି ଦେଖେଇବି। ମୁଁ ମାଛବାଲୀର ବ୍ୟବସ୍ଥା କରୁଚି।''

''ସିମିତି କରନି,'' କାମ୍‌ଦା ଲୋକମାନଙ୍କୁ ଆଡ଼େଇ ଆଗକୁ ଧାଇଁ ଆସିଲା, ଆଉ ମାଗୀ କଡ଼ରେ ଠିଆହେଇ ଧଇଁସଇଁ ହେଇ କହିଲା, ''ତାକୁ ମୋ ପାଇଁ ଛାଡ଼ିଦିଅ। ଦୟାକରି। ସେ ମତେ ବାହାହଉ ବୋଲି ମୁଁ ଚାହୁଁଚି। ମୁଁ ଚାହୁଁଚି ସେ ମୋ ପାଇଁ, ମୋ ପିଲାପିଲିଙ୍କ ପାଇଁ ଆଉ ବନ୍ଧୁବାନ୍ଧବଙ୍କ ପାଇଁ ରୋଷେଇ କରୁ ଆଉ ଆମ ପାଇଁ ଲୁଗାକଚା, ଓଳିଆ ପୋଛା ଓ ସିଲେଇ ଫିଲେଇ କରୁ। ସେ ତ ଶିଖିଗଲାଣି, ଆମ ପାଇଁ ମାଛ ବି ଧରିପାରିବ। ଯଦି ମୋ ପାଇଁ ସେ ଆହୁରି ଅଧିକା ରୋଜଗାର କରିବାକୁ ଚାହିଁବ ତେବେ ରବିବାରିଆ ସ୍କୁଲରେ ବି ପଢ଼େଇ ପାରିବ। ମୁଁ ସାରା ଜୀବନ ତାର ଯତ୍ନ ନେବି ଆଉ ସେ ମରିଗଲେ ତାକୁ ଭଲରେ

ଦାହ କରି ପଛକୁ ଆଉ ଗୋଟିଏ ମାଇକିନାକୁ ବାହାହେବି । ଦୟାକରି ତାକୁ ମୋ ପାଇଁ ଛାଡ଼ିଦିଅ, ମୁଁ ତାକୁ ଭଲ ପାଏ ।''

''ନା, ନା, ନା,'' ପିଲାମାନେ ଚିତ୍କାର କଲେ ।

ମାଗୀ ହସିଲା । ସେ ତା' ହାତ ବଢ଼େଇ କାମ୍‌ଦା କାନେରେ କିଛି କହିବ ବୋଲି ନିଜଆଡ଼କୁ ଟାଣି ଆଣିଲା । ଯେତେବେଳେ ସେ କହିସାରିଲା, କାମ୍‌ଦା ଛଳଛଳ ଆଖିରେ ବୁଲିପଡ଼ି ଶୀଘ୍ର ଦୂରେଇଗଲା । ଭବାନୀ, ମଲ୍‌ହୋତ୍ରା, ମହାସ୍କନ୍ଧ ଆଉ ଡା. ପ୍ରହରାଜ, ଯୋଉମାନେ ଏବେ ପାଖରେ ପହଞ୍ଚିଯାଇଥିଲେ, ବିବ୍ରତ ହେଇ ଠିଆ ହେଇଗଲେ ଆଉ ଅନ୍ୟମାନଙ୍କ ଦ୍ୱାରା ଟଣାହେଇ ବସାଇ ଦିଆଗଲେ କାରଣ ସେମାନେ ଅନ୍ୟମାନଙ୍କ ଦେଖିବାରେ ବ୍ୟାଘାତ ଉପୁଜାଉଥିଲେ ।

''ଆଉ ଏଥର,'' ମାଗୀ ପିଲାମାନଙ୍କୁ କହିଲା, ''ତୁମ ଭିତରୁ ଜଣେ ଏ ବିଦେଶୀମାନଙ୍କୁ ତାଙ୍କ ଦେଶକୁ ପଠାଇଲ ।''

''ଆମେ ସେମାନଙ୍କୁ କାହିଁକି ପଠାଇବୁ ?'' କହିଲା ଗୋଟିଏ ଚିକ୍କଣ କାଳିଆ ଆଦିବାସୀ ପିଲା ଯିଏ ମୋଟା ଚଷମାଟେ ପିନ୍ଧିଥିଲା । ''ସେମାନେ କଳା, ହଳଦିଆ ଓ ଧଳା, ଆମ ମନ୍ଦିରର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରଙ୍ଗ । ସେମାନଙ୍କୁ ରହିବାକୁ ଦିଆଯାଉ ।''

ମାଗୀ ଚିନ୍ତାକଲା ।

ନର୍ଦ୍ଦମା ପାଖରେ ଲାଜକୁଳୀ ଲତାଟି ତା' ପତ୍ରଗୁଡ଼ିକୁ ଖୋଲିଲା, ସେ ଯିମିତି କହିବାକୁ ଚାହୁଁଥିଲା : ''ଏଥର ଗପଟା ପଡ଼ିଚି ଘଣାରେ ଗୁଡ଼ାଏ ଲେଖକଙ୍କ ହାତରେ । କାହାରି ଆୟତ୍ତରେ ନାହିଁ ।''

''ଠିକ୍ ଅଛି ତେବେ, କିନ୍ତୁ ଯାହା ଘଟିବାକୁ ଯାଉଚି ତା ଆମମାନଙ୍କ ଭିତରେ ଆଉ ସେଠି ବସିଥିବା ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ, ରାଷ୍ଟ୍ରପତି ଆଉ ସେମାନଙ୍କ ନେତା ପଲ ଭିତରେ ।''

ରାଷ୍ଟ୍ରପତି, ଯାହାଙ୍କର ବାଳରେ ଯତ୍ନ ସହକାରେ ତେଲ ଲଗାଯାଇ କୁଣ୍ଡା ଯାଇଥିଲା, ତାଙ୍କର କଣ୍ଠ ସଫାକରି ସାବଧାନତା ସହ ଆରମ୍ଭ କଲେ : ''ଆପଣମାନେ ଦେଖନ୍ତୁ ଘଟଣାଟି, ଆମ ସମ୍ବିଧାନ ଅନୁସାରେ ମୁଁ ପ୍ରକୃତରେ କିଛି ନୁହେଁ । ପ୍ରଧାନମନ୍ତ୍ରୀ ମତେ ଯୋଉଥିରେ ଦସ୍ତଖତ କରିବାକୁ କହନ୍ତି ମୁଁ ସେଇଥିରେ ଦସ୍ତଖତ କରେ । ଯଦି ବି ମୁଁ ମନାକରେ ସେ ତଥାପି ମତେ ତାହା କରିବା ପାଇଁ ବାଧ୍ୟ କରନ୍ତି । ତେଣୁ ଆପଣମାନେ ମତେ ନ ମିଶେଇବା ଉଚିତ । ସେଇମାନେ ଅସଲ ଲୋକ ।

ଆପଣମାନଙ୍କର ଯାହାବି କାର୍ଯ୍ୟକାରୀ କରିବାର ଥିବ, ମୁଁ ସମ୍ମତି ଦେବି । ମୁଁ ତାହାକୁ ଆଗତୁରା ଦସ୍ତଖତ କରିଦେବି ।''

ପ୍ରଧାନମନ୍ତ୍ରୀ ରକ୍ତଚାଉଳ ଚୋବେଇଲା ପରି ଲାଗୁଥିଲେ, ''ମୁଁ ତମ ଆମେରିକା ଗସ୍ତ ବନ୍ଦ କରିଦେବି,'' ସେ ମନେ ମନେ କହିଲେ ଏବଂ ପ୍ରକାଶ୍ୟରେ କହିଲେ, ''ମୁଁ ବର୍ତ୍ତମାନ ଯାଉଚି ।''

''ସମସ୍ତେ ରହିବେ,'' ମାଗୀ କହିଲା । '' କେହି ଯାଇ ପାରିବେନି । ଆମର ଅନେକ କାମ କରିବାକୁ ବାଁକି ଅଛି ।''

''କ୍ଷମା କରିବ,'' ଲେଖକକୁ ବିଦା କରିଦେଇଥିବା ପିଲାଟି କହିଲା, ''ତମେ ଆମକୁ କଲମ ଦେଇଚ । ତେଣୁ ଆମକୁ କାମ କରିବାକୁ ଦିଅ । ଯଦି ତମେ ସବୁ କରିବ ଆମେ କଲମ ଧରିଚୁ କାହିଁକି ?''

''କିନ୍ତୁ ମୁଁ ତ ମୂଳରୁ ସବୁ କାମ କରି ଆସିଚି ଏ ପର୍ଯ୍ୟନ୍ତ । ମତେ ତମେ ବର୍ତ୍ତମାନ କିମିତି ବାଦ୍‌ଦବ ? ସେଇଟା ଠିକ୍‌ହବନି । ଗପଟା ସିମିତି ଯାଇ ପାରିବନି । ମୋ କଥା ଶୁଣ । ତୁମେ ତ ସମ୍ପୃକ୍ତ ସବୁ ବିଷୟଗୁଡ଼ାକ ବି ଜାଣିନ ।''

ଯୋଉ ଝିଅଟି ବାବାବୁଗିଙ୍କୁ ଘଉଡ଼ାଇଥିଲା, ଯାହାର ନାଁ ଥିଲା ସୁନୀ, ତା' ସାଙ୍ଗକୁ କହିଲା, ''ବୁଢ଼ୀ ମରହଟ୍ଟୀ ସାଙ୍ଗରେ ପାଟିତୁଣ୍ଡ କରି କି ଲାଭ ? ତମେ କେବେ ବି ଜିତି ପାରିବନି । ତେଣୁ ତାକୁ ଲେଖି କାଢ଼ି ଦିଆଯାଉ ।''

''ଠିକ୍ ଅଛି ସେଇଆ କରାଯାଉ ।''

''ରୁହ !'' ମାଗୀ ଚିତ୍କାର କଲା ।

''ସେଇଆ କର । ସେଇଆ କର ପିଲେ,'' ମୁଖ୍ୟମନ୍ତ୍ରୀ ଓ ପ୍ରଧାନମନ୍ତ୍ରୀ ପାଟିକଲେ ।

ମାଗୀ ନ ଚାହିଁ ବି ଦୀର୍ଘଶ୍ୱାସ ନେଲା, ବୁଲି ପଡ଼ିଲା ଆଉ ବାଧ୍ୟ ହେଇ ଲୋକ ଗହଳିରୁ ବାହାରି ମନ୍ଦିରର ସିଂହଦ୍ୱାର ପାଖକୁ ଗଲା । ସେ ବାଇଶି ପାହାଚ ଚଢ଼ି ବେଢ଼ା ବୁଲି ଶୂନ୍‌ଶାନ୍ ଗର୍ଭଗୃହ ଭିତରକୁ ଗଲା ଯୋଉଠି ଗ୍ରାନାଇଟ୍‌ର ମେଜିଆ ଉପରେ ଡାହାଣରୁ ବାଁକୁ ଜଗନ୍ନାଥ, ସୁଭଦ୍ରା ଆଉ ବଳଭଦ୍ର ଠିଆ ହେଇଥିଲେ । ଯେତେବେଳେ ଜଗନ୍ନାଥଙ୍କୁ ଚାହିଁଲା ସେ ଦେଖିଲା ବାବାବୁଗିଙ୍କୁ ।

ସେ କହୁଥିଲେ : ''ତୁ ଡର୍‌ନା । ତୁ ଭାବୁଚୁକି କଲମଧାରୀମାନେ ତତେ ବା ମତେ ଲୋପ କରିପାରିବେ ? ବୋକୀ । ସେମାନେ ତାଙ୍କ ଗପ ଦ୍ୱାରା ଯା ଇଚ୍ଛା ତା କରିପାରିବେ । କିନ୍ତୁ ଆମେତ ଗପ ବାହାରେ, ତମ ଭାଷାରେ 'ଗର୍ଭଗୃହରେ',

ସେଠି । ଆମକୁ ପ୍ରକୃତ ପୃଥିବୀକୁ ଠିକ୍‌ଠାକ୍ କରିବାକୁ ପଡ଼ିବ । ଆମର ଲେଖକ ବା ପିଲା ବା ଅନ୍ୟ କାହାର ପ୍ରୟୋଜନ ନାହିଁ । ତୁ ଯାହା କଲୁ ଯଥେଷ୍ଟ । ଯାହା କରିବାର ଥିଲା ତୁ କଲୁ । ବର୍ତ୍ତମାନ ଆରାମ୍ କର । ବାକିତକ ମୁଁ କରିବି । ମୁଁ ସେଇଥିପାଇଁ ଆସିଚି ଆଉ ଯେତେବେଳ ପର୍ଯ୍ୟନ୍ତ..ସବୁ ଠିକ୍‌ଠାକ୍ ନ ହେଇଚି ଏଇ ଆଖପାଖରେ ଥିବି । ସେ ପିଲାଗୁଡ଼ାକ କ'ଣ କରିବେ ? କିଛି ନାହିଁ ।''

ଗୋଟାଏ ଗର୍ଜନ ଉଠିଲା ମନ୍ଦିର ବାହାରୁ ବଡ଼ଦାଣ୍ଡରୁ ଲକ୍ଷ ଲକ୍ଷ ଲୋକଙ୍କର । ସେ ନିନାଦରେ ମନ୍ଦିରର କୋଟିକୋଟି ମହଣ ଓଜନର ପଥର ଥରିଉଠିଲା ।

''ଦେଖାଯାଉ,'' ବାବାବୁଗି କହିଲେ ।

ଲୋକମାନେ ମାତିଉଠି ଉଚ୍ଛୃଙ୍ଖଳ ହୋଇଯାଇଥିଲେ । ସେମାନେ ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଆଉ ମୁଖ୍ୟମନ୍ତ୍ରୀଙ୍କୁ ଧରିନେଇଥିଲେ । ସେମାନେ ସମସ୍ତ ବାଚସ୍ପତି, ମନ୍ତ୍ରୀ, ଏମ୍.ଏଲ୍.ଏ., ପ୍ରଶାସକ, ପୁଲିସ୍, ଜଜ୍, କିରାନି, ମାଷ୍ଟ୍ରଙ୍କୁ ଧରି ନେଇଥିଲେ, ଯୋଉମାନେ ଭ୍ରଷ୍ଟ ଥିଲେ । ସେମାନେ ତାଙ୍କ ଦେହାଂଶକୁ ଟାଣି ଛିଣ୍ଡାଉଥିଲେ । ଲକ୍ଷ ଲକ୍ଷ ହାତ ସେମାନଙ୍କୁ ଖଣ୍ଡିଆଖାବରା କରି ଦେହରୁ ପୁଳା ପୁଳା ଛିଣ୍ଡେଇ ନେଇ ପଳାଉଥିଲେ । ସମ୍ମାନିତ ଅତିଥିମାନେ ଭୟରେ ଥରୁଥିଲେ ଓ ରୋଷ୍ଟ୍ରମ୍ ଉପରେ ପରସ୍ପର ଭିତରେ ଠେଲାପେଲା ହେଇ ଆର୍ମାଡିଲୋ ପରି ଗୋଲ ବାନ୍ଧିଯାଇଥିଲେ । ବଡ଼ଦାଣ୍ଡ ରକ୍ତମାଂସରେ ଭରିଯାଇଥିଲା । ମରୁଥିବା ଲୋକଙ୍କ ଚିତ୍କାର ଆକାଶ ପୂରେଇ ଦଉଥିଲା ।

''ଆମକୁ ବଞ୍ଚାଅ, ବଞ୍ଚାଅ ଆମକୁ,'' ସେମାନେ ଚିତ୍କାର କରୁଥିଲେ ।

''ଆମକୁ ଛାଡ଼ିଦିଅ, ଆମକୁ ଛାଡ଼ିଦିଅ,'' ସେମାନେ ନେହୁରା ହଉଥିଲେ ।

''ରକ୍ଷା କର,'' ସେ ମାଗୀକୁ ଦେଖି କହିଲେ । ମାଗୀ ବର୍ତ୍ତମାନ ବାବାବୁଗିଙ୍କ ସାଙ୍ଗେ ମନ୍ଦିର ଉପର ସ୍ନାନବେଦୀରେ ଠିଆ ହେଇଥିଲା ।

''ଉଦ୍ଧାର କର,'' ସେମାନେ ଭିକ୍ଷା ଚାହିଁଲେ । ପିଲାମାନେ ଏମାର ମଠର ବାଲ୍‌କୋନି ଉପରକୁ ଚଢ଼ିଯାଇ ବସି ନିର୍ଦ୍ଦୟ ଭାବେ ଲେଖି ଚାଲିଥିଲେ ।

''ଏସବୁ ବନ୍ଦକର !'' ମାଗୀ ପାଟି କରି ଉଠିଲା ।

ପିଲାଏ ଉପରକୁ ଚାହିଁଲେ ।

''ବହୁତ ହେଇଗଲା,'' ମାଗୀ ଚିତ୍କାର କଲା ।

ଲୋକମାନେ ଚୁପ୍ ହେଇଗଲେ ।

''ସମସ୍ତେ ଘରକୁ ଯାଅ,'' ମାଗୀ କହିଲା ।

ତା କଥା ମାନି ସମସ୍ତେ ଘରକୁ ଫେରିଲେ ତା ପାଖକୁ ।

''ତମ ଭାଷାରେ, ବଡ଼ ଦୁଃଖର କଥା,'' ବାବାବୁଗି କହିଲେ, ''ଏମିତି କାଣ୍ଡ ଘଟିଗଲା ।''

ମାଗୀ ଯେତେବେଳେ ତାଙ୍କ ଆଡ଼କୁ ଚାହିଁଲା ସେ ସେଠି ଶାନ୍ତି ଓ ନୀରବତା ଓ ପେଟେ ପ୍ରେମର ପୂର୍ଣ୍ଣତା ଦେଖିବାକୁ ପାଇଲା । ସେ ପଚାରିଲା : ''ସତରେ କ'ଣ ତମ ପେଟରେ ପିଲାଟିଏ ଲୁଚିଚି ?''

ବାବାବୁଗି କହିଲେ : ''ତୋ ମୋ ଭିତରେ ହିଁ ପ୍ରକୃତ ଇଣ୍ଟର୍‌ଫେସ୍ ରହିଚି । ଆଉ କେହି ଯିମିତି ବ୍ୟାଘାତ ନ ଦିଅନ୍ତି । ତୁ'ତ ବୁଝୁଥିବୁ ।''

''ସେଇଟି ମୋ ଦେଖିବାରେ ସବୁଠୁ ସୁନ୍ଦର ପିଲା, ତୁମ ପେଟ ଭିତରେ, ମୁଁ ଯାହାକୁ ଦେଖିଲି । ତୁମେ କ'ଣ.... ?''

''ତୋ ମୋ ଭିତରେ ହିଁ ପ୍ରକୃତ ତତ୍ତ୍ୱ ଅଛି । ଆମେ କାହାକୁ ତା' ଭିତରକୁ ଆଣିବା ନାହିଁ । କୌଣସି କଲମ, ବନ୍ଧୁକ ବା ଈଶ୍ୱର ଆମ ଭିତରକୁ ଆସିପାରିବେ ନାହିଁ । ଭଗବାନ୍‌ଙ୍କୁ ବହୁତ ଦିନ ହେଲା ବ୍ୟବହାର କରାଗଲାଣି । ମୁଁ ଈଶ୍ୱରଙ୍କର ଅନ୍ତ ।'' ତୃତୀୟ ପରିବର୍ତ୍ତନ ବାଣକୁ ସଶସ୍ତ୍ର କର, ୩୨୧ ।

ବଛା ଲୋକମାନେ ଚିହ୍ନଟ ରଶ୍ମିରେ । ପରିବର୍ତ୍ତନ ବାଣ ସଶସ୍ତ୍ର ।

''ତାର କି କଉତୁକିଆ ଆଖି ଆଉ ଓଠ,'' ମାଗୀ କହିଲା ।

''ଭଗବାନ୍ । ଟିଟୁନ୍‌ଟୁଟୁନ୍ ଫାର୍ଟ, ମୁଁ କହେ । ମୁଁ ହିଁ ବିଶ୍ୱବ୍ରହ୍ମାଣ୍ଡ । ମୁଁ ଏପର୍ଯ୍ୟନ୍ତ ଗଢ଼ା ସରିଥିବା ଭିତରୁ ନୁହେଁ । ଯୋଉ ଅର୍ଥ ଗଢ଼ା ହବାକୁ ଯାଉଛି ମୁଁ ସେ । ମୁଁ ତୁମ ଆଦିମ ଜଳରେ ଭାସମାନ, ତୁମେ କ'ଣ କୁହଟି, ଦେହ । ମୁଁ ତୁମ ଏକ୍ସ ଓ ୱାଇ ଗୁଣସୂତ୍ର କ୍ରୋମୋଜୋମ୍‌ର ସ୍ପନ୍ଦନ । ଡି.ଏନ୍.ଏ. ଚେନ୍‌ର ସଙ୍ଗୀତ ମୁଁ । ମସ୍ତିଷ୍କର ଆବର୍ତ୍ତନକୁ କେବେ ବି ଅସ୍ୱଚ୍ଛ କରନି ।. କଲେ ସେମାନେ ତୁମକୁ ସେମାନଙ୍କର ସର୍ପକୁଣ୍ଡଳିରେ ବାନ୍ଧିଦେବେ । ସ୍ୱଚ୍ଛ ରୁହ । ତେବେ ଯାଇ ତମେ ମୁଁ ଓ ମୁଁ ତମେ ।'' ୩୨୧, ବାଣ ଛାଡ଼, ଲକ୍ଷ୍ୟଭେଦ କର ।

ବାଣ ଉନ୍ମୁକ୍ତ । କିନ୍ତୁ । କିନ୍ତୁ । କିନ୍ତୁ । ମାତଙ୍ଗୀ ତୁମକୁ ନିଷ୍କାସିତ କରିଛି ।

''ମୁଁ ତମ ପେଟକୁ ଛୁଇଁପାରିବି ? ଛୁଇଁବି ?'' ମାଗୀ ପଚାରିଲା ।

ନିଷ୍କାସିତ ମତେ କରିଚି ? ମତେ ? ଠିକ୍ ଅଛି । ଏଇଟା କ'ଣ ଦୁଃଖର କଥା ?

''ଥଣ୍ଡା । ତମେ ଶୀତଳ । ତମେ ଭାରି ଶାନ୍ତ,'' ମାଗୀ କହିଲା ।

ଦୂରତା । ଦୂରତା । ଏତେ ଗୁଡ଼ାଏ ଦୂରତା ।

ବଡ଼ଦାଣ୍ଡ ଖାଲି ହେଇଗଲା । ଦୋକାନୀମାନେ ସେମାନଙ୍କ କାଠ ଦୋକାନକୁ ବୋହି ଆଣିବାକୁ ଆରମ୍ଭ କଲେ । ତୀର୍ଥଯାତ୍ରୀମାନେ ଦଳଦଳ ହେଇ ମନ୍ଦିରକୁ ଆସିବାକୁ ଲାଗିଲେ । ଛୁଟି କଟାଳିମାନେ ସମୁଦ୍ର କୂଳରେ ଗହଳି କଲେ । ରାସ୍ତାର ଆଲୁଅ ଜଳିଉଠିଲା । ଟ୍ରାଫିକ୍ ପୋଲିସ୍ ନିଜ ଆସ୍ଥାନରେ ଠିଆ ହେଲେ । ଲୋକମାନେ ରାସ୍ତାକୁ ଭିଡ଼ କଲେ । ସମସ୍ତଙ୍କ ଆଖିରେ ଥିଲା ଚମକ ଆଉ ହୃଦୟରେ ଥିଲା ଏକ ଭିନ୍ନତା । ରାଷ୍ଟ୍ରମୁଖ୍ୟମାନେ ନିଜ ଦେଶକୁ ଯାଇ କ୍ଳେଶପୂର୍ଣ୍ଣ ଭାବେ ନିଜ ଶୋଇବାଘରେ ଘୁଙ୍ଗୁଡ଼ି ମାରିଲେ । ଭୁବନେଶ୍ୱରରେ ମୁଖ୍ୟମନ୍ତ୍ରୀ ଘୋଷଣା କଲେ ଯେ ପରବର୍ତ୍ତୀ ନିର୍ବାଚନ ଲଢ଼ିବେ ନାହିଁ । ଦିଲ୍ଲୀରେ ପ୍ରଧାନମନ୍ତ୍ରୀ ଗୋଟିଏ ସାମ୍ବାଦିକ ସମ୍ମିଳନୀ ଡାକି ତାଙ୍କର ଇସ୍ତଫା ଉପରେ ହଉଥିବା କଳ୍ପନାଜଳ୍ପନାର ସ୍ପଷ୍ଟୀକରଣ ଦେଲେ ।

ଲୋକଟି ତା ସାମ୍ନାରେ ଅନ୍ଧାରରେ ଠିଆ ହେଇଗଲେ ଆଉ ଚାହିଁଲେ ତାଙ୍କ ଆଖିର ଧଳାରୁ ଯାହାକି ତାଙ୍କ ଦେହର ଏକମାତ୍ର ଦେଖାଯାଉଥିବା ଅଂଶ ଥିଲା । ସେ ତା ପାଇଁ ସାରା ଦିନ ଅପେକ୍ଷା କରିଥିଲେ ଶେଷରେ ରାତିର ଅନ୍ଧାରରେ ଆସିଥିଲେ ।

"ତୁମେ ମତେ ଜାଣ ।"

"ହଁ ।"

"ମୁଁ ତୁମକୁ ଚାହେଁ ।"

"ପ୍ଲିଜ୍ ।"

"ମୁଁ ସେ ଲତା ଭାବରେ ଅଭିଶପ୍ତ ହେଇ ରହିଯିବି ଯେପର୍ଯ୍ୟନ୍ତ ତମେ ମତେ ଛୁଇଁବନି ।"

"ନା ।"

"ମୁଁ ତୁମକୁ ଗଢ଼ିଚି । ମୁଁ ତୁମକୁ ମୋର ସବୁ ପ୍ରେମ ଦେଇ ଦେଇ ନିଜେ ଶୁଖି ଜଳିଗଲି । ଯେତେବେଳେ ସେମାନେ ତୁମକୁ ମାରିଦେଇଥିଲେ ମୁଁ ସେମାନଙ୍କ ସାମ୍ନା କରି ତୁମକୁ ପୁଣି ଜୀବନ୍ୟାସ ଦେଲି । ମୁଁ ମଝିରେ ଗପର ସୁଅ ବଦଳେଇ ତୁମକୁ ମୁଖ୍ୟ ନାୟିକା କଲି । ତୁମ ଦେହର ପ୍ରତିଟି ଅଂଶ ମୁଁ ମୋ ତନ୍ତ୍ରୀରୁ ଗଢ଼ିଚି । ତୁମର ଉନ୍ମାଦ ଆଉ ଭାବ ମୋରି । ଦୟାକରି ମୋ ସାଙ୍ଗେ ଆସ ।"

"ନା ।"

"ମୁଁ ତେବେ କ'ଣ କରିବି ? ବଞ୍ଚିବି କିମିତି ?"

"ଯାଅ, ଆଉ କାହାକୁ ଖୋଜ । ତୁମେ ମୋ ପାଇଁ ଆଉ କାମର ନୁହଁ ।"

ସେ ଏକେବାରେ ଝାଉଁଳି ପଡ଼ିଲେ ଯନ୍ତ୍ରଣାରେ, କିନ୍ତୁ ଶୀଘ୍ର ବୁଲିପଡ଼ି ଚାଲିଗଲେ ରାତିର ଅନ୍ଧାର ଭିତରକୁ ଧୀରେ ଧୀରେ ବାଲିରେ କ୍ଳାନ୍ତ ପାଦ ଚଳେଇ । ପବନ ଆଉ ଲହଡ଼ି ବାଲିରେ ତାଙ୍କ ପାଦ ଚିହ୍ନକୁ ଲିଭେଇ ଦେଲେ ।

କୋଣାର୍କରେ ମାଗୀ ତା ଚାରି ବନ୍ଧୁଙ୍କ ସାଙ୍ଗେ ତା ଘରର ଛୋଟ ବାରଣ୍ଡାରେ ବସିଥିଲା, ଯୋଉଠି ଏ ପର୍ଯ୍ୟନ୍ତ ମୁର୍ମୁର ସ୍ମୃତି ପଡ଼ିରହିଥିଲା । ରଙ୍ଗୁ ସମୁଦ୍ର କୂଳରେ ବସିଥିଲା ତାଙ୍କ ଆଡ଼କୁ ଚାହିଁ । କାମ୍‌ଦା ଆଉ ଲୁଚିବନି ନିର୍ଣ୍ଣୟ କରି ଗୋଟାଏ ସର୍ବତ ଦୋକାନ କରିବ ବୋଲି କ୍ୟାବିନ୍ ବସଉଥିଲା ମନ୍ଦିର ପାଖରେ । ଗାଁଟା ସାରା ମାଗୀ ଆଡ଼କୁ ଚାହୁଁଥିଲେ ସନ୍ଦିହାନ ଭାବରେ । ସନ୍ଧ୍ୟାଟା ନେଳିଆ ଆକାଶର ଗଭୀରତାରେ ତାରା ଫୁଟେଇ ରାତି ହେଇ ଯାଉଥିଲା । ଶୁଖିଲା ପବନ ଖୁରୁସେଇ ଉଠିଲା ଭୂଇଁଆଡୁ କେତେ ଗନ୍ଧ ନେଇ, ଗଛର ପତ୍ର ଦୋହଲେଇ, ବାଲି କଙ୍କଡ଼ାଙ୍କୁ ଉପରକୁ ଡାକି ।

"ଆଜି ରାତିରେ ଚାଲ ଆଉଥରେ ଯିବା, ମୁଁ ଭାବୁଚି," ମାଗୀ ସନ୍ଧ୍ୟା ଆକାଶର ଛୋଟ ଛୋଟ ଧୂଆଁଳିଆ ମେଘକୁ ଚାହିଁ କହିଲା ।

"ହଁ," ତା ସାଙ୍ଗମାନେ କହିଲେ, "ରାତିଟା ପରଖାଯାଉ ।"

"ଆଜି ରାତିଟା ଠିକ୍ ହବ," ସେ କହିଲା । "ଜହ୍ନ ଉଇଁ ଆସୁଚି ଆଉ ଆମେ ଫେରିବା ନୂଆ ସୂର୍ଯ୍ୟଙ୍କ ସାଙ୍ଗରେ ।"





ବାବାବୁଗି ବିୟତ୍‌କେଶଙ୍କର ପଞ୍ଚମ ଉପନ୍ୟାସ । ଏହାର ଇଂଲିଶ ରୂପାନ୍ତର ପ୍ରକାଶିତ ହୋଇସାରିଛି । ସମାଲୋଚକମାନେ ଏହାକୁ ଏକ ଇଣ୍ଟରନ୍ୟାସନାଲ୍ ମେଟାଫିକ୍ସନ୍ ବା ଆନ୍ତର୍ଜାତିକ ଅଧୋପନ୍ୟାସ ଆଖ୍ୟା ଦେଇଛନ୍ତି ।

ପୃଥିବୀ ଓ ମାନବ ସମାଜକୁ ରକ୍ଷା କରିବାକୁ ଈଶ୍ୱରପୁତ୍ର ବାବାବୁଗି ସ୍ୱର୍ଗରୁ ଉଡ଼ିଆସୁଛନ୍ତି । ପୃଥିବୀରେ ପହଞ୍ଚି ତାଙ୍କର ମାନବ ଦର୍ଶନ ତାଙ୍କୁ ଆଶ୍ଚର୍ଯ୍ୟ କରିଛି । ମଣିଷକୁ ଯେ କଣ କରିବେ ଜାଣିପାରୁ ନାହାନ୍ତି । ତାଙ୍କୁ ବାଟ କଢ଼ଉଛି ଗୋଟିଏ କେଉଟୁଣୀ ଝିଅ । କିଏ ସଂସାର ଉଦ୍ଧାର କରିବ ? ସଂସାର ଉଦ୍ଧାର ହବ ନା ଧ୍ୱଂସ ହବ, କିଏ ଜାଣେ ?

ବାବାବୁଗି ବିୟତ୍‌କେଶ ତ୍ରିପାଠୀଙ୍କ ପଞ୍ଚମ ଉପନ୍ୟାସ । ତାଙ୍କର ଅନ୍ୟାନ୍ୟ ଉପନ୍ୟାସ ଓ ଗଳ୍ପ ସଙ୍କଳନ ହେଲା : **ତୁଷାର ମାନବ, ଟାକ୍‌ଓ୍ୱେନା ଦ୍ୱୀପ, କଥାଟିଏ କହୁଁ** (ଓଡ଼ିଆରେ) ଓ **Baba Bugi, Vagrant** (ଇଂଲିଶରେ) । ତାଙ୍କର ଆଦିବାସୀ କିମ୍ବଦନ୍ତୀ ଉପରେ ଆଧାରିତ ବହି **Myths & Legends of Orissa** ଓ ଅକ୍ସଫୋର୍ଡ୍ ୟୁନିଭରସିଟି ପ୍ରକାଶିତ **ଇଂଲିଶ-ଇଂଲିଶ -ଓଡ଼ିଆ ଡିକ୍ସନାରୀ** ସୁପରିଚିତ ।

**ବିଦ୍ୟାପୁରୀ**
ବାଲୁବଜାର, କଟକ ୭୫୩୦୦୨
ISBN 81-7411-514-5
www.vidyapuri.com